"...ସେ ଏକାଧାରରେ ଥିଲେ ଜଣେ ବିଚକ୍ଷଣ ରାଜନୀତିଜ୍ଞ, ସୁଦକ୍ଷ ସାଂସଦ, ଅତି ସଫଳ ମୁଖ୍ୟମନ୍ତ୍ରୀ, ଚମତ୍କାର ସାମ୍ବାଦିକ, ଏକ ସମ୍ଭ୍ରାନ୍ତ ପତ୍ରିକାର ଧୁରୀଣ ସଂପାଦକ ଓ ଜଣେ ପ୍ରତିଭାଶାଳୀ ଲେଖକ । ତାଙ୍କ ମୃତ୍ୟୁରେ ମୁଁ ଜଣେ ଘନିଷ୍ଠ ବନ୍ଧୁଙ୍କୁ ହରାଇଲି, ରାଜ୍ୟ ଜଣେ ଦୂରଦ୍ରଷ୍ଟାଙ୍କୁ ହରାଇଲା, ସାହିତ୍ୟଜଗତ ଜଣେ ଧୀଶକ୍ତିସମ୍ପନ୍ନ ସ୍ରଷ୍ଟାଙ୍କୁ ହରାଇଲା ଓ ଦେଶ ହରାଇଲା ଜଣେ ସୁଯୋଗ୍ୟ ସନ୍ତାନଙ୍କୁ ।"

**– ଡକ୍ଟର ଏସ୍.ସି.ଜମିର, ରାଜ୍ୟପାଳ, ଓଡ଼ିଶା**

# ଜନନାୟକ
# ଜାନକୀବଲ୍ଲଭ

ସଂପାଦକ

ଡକ୍ଟର ଗୋବିନ୍ଦ ଭୂୟାଁ

ଜାନକୀବଲ୍ଲଭ ସ୍ମାରକୀ ପ୍ରତିଷ୍ଠାନ
ମହାନଦୀ ବିହାର, କଟକ

JANANĀYAK
JANAKIBALLAV
Edited by Dr. Govinda Bhuyan

ପ୍ରୟାସ ଓ ପ୍ରେରଣା
ଶ୍ରୀ ଅନ୍ନଦା ପ୍ରସାଦ ରାୟ
ପ୍ରଫେସର ବୈଷ୍ଣବ ଚରଣ ସାମଲ
ଇଂ. ପ୍ରଭାକର ସ୍ବାଇଁ
ଶ୍ରୀ ଧରଣୀଧର ନାୟକ (ଆଡ଼ଭୋକେଟ୍)
ଡକ୍ଟର ବାବାଜୀଚରଣ ପଟ୍ଟନାୟକ

ପ୍ରକାଶକ
ଜାନକୀବଲ୍ଲଭ ସ୍ମାରକୀ ପ୍ରତିଷ୍ଠାନ
ମହାନଦୀ ବିହାର, କଟକ

ପ୍ରଥମ ପ୍ରକାଶ
୨୧ ଅପ୍ରେଲ, ୨୦୧୬

ପ୍ରଚ୍ଛଦ
ବିଜୟ କୁମାର ପ୍ରଧାନ

ଲିପି ସଂଯୋଜନ
ମା' ଗ୍ରାଫିକ୍ସ
ବାଦାମବାଡ଼ି, କଟକ ୭୫୩ ୦୧୨

ମୁଦ୍ରଣ
ଜଗନ୍ନାଥ ପ୍ରୋସେସ୍ ପ୍ରା. ଲିଃ
କଟକ

ପରିବେଷକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ମୂଲ୍ୟ ଟ ୨୦୦.୦୦

# ଭୂମିକା

ପ୍ରଜ୍ଞା ଓ ପୁରୋଦୃଷ୍ଟି, ପ୍ରତିଭା ଓ ସାଧନା ଏବଂ ସାଧନାରେ ନିରନ୍ତର ନିଷ୍ଠା; ଏ ସମସ୍ତ ଏକତ୍ର ହେଲେ, ମଣିଷ ସଫଳତାର ଯେଉଁ ଉଚ୍ଚତାକୁ ଉଠିପାରେ; ତାହା ଅନନ୍ୟ। ଏଗୁଡ଼ିକର ବାଞ୍ଛିତ ସଂଯୋଗ ବା ଈପ୍ସିତ ସମୀକରଣ ନିଶ୍ଚୟ ଏକ ଉତ୍କୃଷ୍ଟ ଉପଲବ୍ଧି; ଏବଂ ଏପରି ଘଟଣା କ୍ୱଚିତ୍ ଘଟିଥାଏ। ପୁଣି ଯେଉଁଠି ତାହା ସଂଘଟିତ ବା ସମନ୍ୱିତ ହୁଏ, ସେଠି ଯଦି ନମ୍ରତା ଭଳି ଦୁର୍ଲଭ ଗୁଣ ବିରାଜିତ ଥାଏ, ତାଙ୍କୁ ତ ଆମେ ପୂର୍ଣ୍ଣ ମଣିଷ ବୋଲି କହିଥାଉ। ଏବଂ ସେ ନିଜ କର୍ମଭୂମିରେ ପାଲଟିଯାଆନ୍ତି ସ୍ୱପ୍ନର, ଉଦ୍‌ଯୋଗର, ଉତ୍ସାହର ସୌଦାଗର। ତାଙ୍କ କର୍ମ, କର୍ମପ୍ରବଣତା ଓ କର୍ମପ୍ରେରଣା ଜାତିକୁ ନୂଆ ଦୃଷ୍ଟି ଦିଏ, ନେତୃତ୍ୱ ଦିଏ ଏବଂ କେବଳ ସେତିକି ନୁହେଁ, ସେ ଇତିହାସ ପାଇଁ ବି ଛାଡ଼ିଯାଆନ୍ତି ବିଶ୍ୱାସ ଓ ଉଲ୍ଲାସ, ସାହସ ଓ ଶକ୍ତି, ଦମ୍ଭ ଓ ଦିଶା। ଜାନକୀବଲ୍ଲଭ ପଟ୍ଟନାୟକ ଥିଲେ ସେହିପରି ଜଣେ ପୂର୍ଣ୍ଣ ମଣିଷ; ଯୋଗଜନ୍ମା, ଯେ ନିଜେ କେବଳ ବଡ଼ ନ ଥିଲେ, ଜାତିକୁ, ଜାତିର ଉତ୍ତର ପିଢ଼ିକୁ ବଡ଼ ହେବାର ମନ୍ତ୍ର ଶୁଣାଉଥିଲେ, ଅନୁପ୍ରେରିତ କରୁଥିଲେ; ସାହିତ୍ୟ ମାଧ୍ୟମରେ ଓ ରାଜନୀତି ମାଧ୍ୟମରେ। ସାହିତ୍ୟ ଓ ରାଜନୀତି ଉଭୟ କ୍ଷେତ୍ରରେ ସେ ଥିଲେ ସଫଳ; ଶୀର୍ଷ-ସ୍ପର୍ଶୀ ମଣିଷ। ଉଭୟ ଭିତରେ ସେ ସାରାଜୀବନ ନିବିଡ଼ ଭାବରେ ନିମଗ୍ନ ଥିଲେ।

'ଆତ୍ମଚେଷ୍ଟା ଉନ୍ନତିର ସୋପାନ'–ଜୀବନର ପ୍ରତ୍ୟେକଟି ପଦପାତରେ ଜାନକୀବଲ୍ଲଭ ଏହାର ପରିଶୀଳନ ଓ ପରିଚର୍ଯ୍ୟା କରିଛନ୍ତି। ଆଘାତକୁ, କଣ୍ଟାକୁ, ଜଞ୍ଜାଳକୁ ଅତିକ୍ରମ କଲାବେଳେ ସେଥିରେ ଦବି ନ ଯାଇ ବରଂ ସେଥିରୁ ଶକ୍ତି ସଂଗ୍ରହ ଓ ସଂଚୟ କରିଛନ୍ତି; ଯାହାକି ଲମ୍ବା ଯାତ୍ରାପଥରେ ତାଙ୍କୁ ଦେଇଛି ଯଥେଷ୍ଟ ସାହଚର୍ଯ୍ୟ, ପ୍ରଚୁର ସିଦ୍ଧି। ଜୀବନର ଏକ ବଡ଼ ମୋଡ଼ରେ, ୧୯୬୭ ମସିହାରେ, ପ୍ରଜାତନ୍ତ୍ର ପ୍ରଚାର ସମିତିରେ ଦୀର୍ଘ ସତର ବର୍ଷର ସମ୍ପର୍କ ବିତେଇ ସାରିବାପରେ ସେ ପ୍ରକାଶ କରିଛନ୍ତି ମାସିକ ପତ୍ରିକା 'ପୌରୁଷ'। ଜୀବନରେ ଯେଉଁ ଅବ୍ୟର୍ଥ ବୀଜମନ୍ତ୍ରଟି ଦ୍ୱାରା ସେ ଉଦ୍‌ବୁଦ୍ଧ ଓ ଅଭିମନ୍ତ୍ରିତ ହୋଇଛନ୍ତି, ସେ ମନ୍ତ୍ରଟି ହେଲା– 'ଉଚ୍ଚ କୁଳରେ ଜାତ ହେବା ଦୈବର ଅଧୀନ; ମାତ୍ର ପୁରୁଷକାର ମୋର ଅଧୀନ' (ଦୈବାୟତ୍ତଂ କୁଳେ ଜନ୍ମ ମଦାୟତ୍ତଂ ତୁ ପୌରୁଷମ୍)। ଏହି ଶୁଦ୍ଧ-ଶାଶ୍ୱତ ବାଣୀଟି ପ୍ରାୟ ୧୪୦୦ ବର୍ଷ ତଳେ ସଂସ୍କୃତ 'ବେଣୀ ସଂହାରମ୍' ନାଟକରେ ନାଟ୍ୟକାର ଭଟ୍ଟନାରାୟଣ ମହାଭାରତର ଅନ୍ୟତମ ମହାଯୋଦ୍ଧା କର୍ଣ୍ଣଙ୍କ ମୁହଁରେ କହିଥିଲେ।

'ପୌରୁଷ' ପ୍ରକାଶନ କାଳରୁ ଏହି ବାଣୀଟି ପତ୍ରିକାର ପ୍ରଥମ ପୃଷ୍ଠାରେ ପ୍ରକାଶିତ ହୋଇଆସୁଅଛି। ଏହି ମହାର୍ଘ ବାଣୀଟି ଏକ ଉଜ୍ଜ୍ୱଳ ଉପଲକ୍ଷ୍ୟ, ଯେଉଁଥିରେ ଜାନକୀବଲ୍ଲଭଙ୍କ ବ୍ୟକ୍ତିସତ୍ତାର ସାମଗ୍ରିକ ପରିବୃତ୍ତ ପ୍ରକଟିତ ହୋଇଛି; ସେଥିରେ ଅଛି ସ୍ୱପ୍ନ, ସାହସ, ସଂକଳ୍ପ, ସାଧନା, ସଂଗ୍ରାମ, ସ୍ୱାଭିମାନ ଓ ସାମର୍ଥ୍ୟ। ଜାନକୀବଲ୍ଲଭ ଚାହିଁଛନ୍ତି ଏହି ଚିରନ୍ତନୀ ବାଣୀଟି ବାରମ୍ବାର ଉଚ୍ଚାରିତ ଓ ନିନାଦିତ ହେଉ ଏବଂ ଏ ଜାତି ଭିତରେ ଅଖଣ୍ଡ ଆତ୍ମପ୍ରତ୍ୟୟ ଜାତ ହେଉ। କାହାର ଅନୁଗ୍ରହ ବା କରୁଣା ନୁହେଁ; ଆତ୍ମବଳ, ଆତ୍ମପ୍ରତ୍ୟୟ ହେଉଛି ସଫଳତାର କଞ୍ଚିକାଠି; ଯାହାକୁ ଆଧାର ଓ ଅବଲମ୍ବନ କରି ଜାନକୀବଲ୍ଲଭ ନିଜ ଜୀବନରେ ଅଜସ୍ର ସଫଳତା ଅର୍ଜନ କରିଛନ୍ତି ।

ସେହି ଯଶସ୍ୱୀ ଜନନାୟକଙ୍କ ସଂପର୍କରେ ୪୫ ଜଣ କୃତବିଦ୍ୟ ବ୍ୟକ୍ତି ଉକ୍ତ ଗ୍ରନ୍ଥରେ ବିଭିନ୍ନ ଦିଗରୁ ନିଜ ନିଜର ବିଚାର ଲିପିବଦ୍ଧ କରିଛନ୍ତି। ଆମେ ଏଥିରେ ତାଙ୍କ ନିଜସ୍ୱ ଲେଖାଟିଏ ମଧ୍ୟ ସ୍ଥାନିତ କରିଛୁ; ଯାହାଥିଲା ତାଙ୍କର ଅନ୍ତିମ ରଚନା। ଲେଖାଟି ପ୍ରସ୍ତୁତ ହୋଇଥିଲା ତିରୁପତି ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ କୁଳାଧିପତିଙ୍କ ଅଭିଭାଷଣ ଭାବରେ। ମାତ୍ର ପଢ଼ିବାର ସୁଯୋଗ କାଳ ତାଙ୍କୁ ଦେଲା ନାହିଁ। ହେଲେ, ଲେଖାରେ ତାଙ୍କ ବ୍ୟକ୍ତି-ଚରିତ୍ରର ଯେଉଁ ଅଲିଭା ଆଭାଟି ଉତ୍କୀର୍ଣ୍ଣ ଓ ଉତ୍ତୀର୍ଣ୍ଣ ହୋଇଛି, ନିରବଧି ନିଷ୍ଠୁର କାଳ ତାକୁ କଦାପି ନିଷ୍ପ୍ରଭ କରିପାରିବ ନାହିଁ। ମହାମନା ଜାନକୀବଲ୍ଲଭ ଲେଖିଛନ୍ତି, 'ଜ୍ଞାନ ହେଉଛି ଶକ୍ତି; କିନ୍ତୁ ନମ୍ରତାଯୁକ୍ତ ଶକ୍ତି ହେଉଛି ସଫଳତାର ସୂତ୍ର।' ଏ ମହାଜାତିର ଉତ୍ତରପୁରୁଷଙ୍କପାଇଁ ଏହା ହେଉଛି ପ୍ରାଜ୍ଞ ଜାନକୀବଲ୍ଲଭଙ୍କର ଅନ୍ତିମ ବାର୍ତ୍ତା।

'ଜାନକୀବଲ୍ଲଭ ସ୍ମାରକୀ ପ୍ରତିଷ୍ଠାନ' ପ୍ରିୟ ନେତାଙ୍କ ଜୀବନର ଆଲୋକିତ ଦିଗଗୁଡ଼ିକ ଜନମାନସରେ ଚିରକାଳ ପ୍ରାଣବନ୍ତ ରଖିବାକୁ ନାନାମତେ ପ୍ରୟାସ କରିବ। ସେଥିମଧ୍ୟରୁ ଏହି ପୁସ୍ତକ ପ୍ରକାଶନ ଉଦ୍ୟମଟି ଅନ୍ୟତମ। ଆମର ଅନୁରୋଧରେ ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ନିଜର ଉପାଦେୟ ଲେଖା ପ୍ରଦାନ କରି, ପୁସ୍ତକର କଳେବର ପୁଷ୍ଟ କରିଛନ୍ତି, ସେମାନଙ୍କୁ ଗଭୀର କୃତଜ୍ଞତା ଜଣାଉଛୁ। ପୁସ୍ତକର ପରିବେଷଣ ଦାୟିତ୍ୱ ଶ୍ରଦ୍ଧାର ସହିତ ଗ୍ରହଣ କରିଛନ୍ତି 'ବିଦ୍ୟାପୁରୀ'ର ପ୍ରତିଷ୍ଠାତା ଶ୍ରୀ ପୀତାମ୍ବର ମିଶ୍ର। ତାଙ୍କୁ ସମ୍ମାନ ଓ ଧନ୍ୟବାଦ ଜ୍ଞାପନ କରୁଅଛୁ।

ସଂକଳନଟି ଗୁଣୀଜନଙ୍କ ମନକୁ ଛୁଇଁଲେ ଅନୁଷ୍ଠାନ ଉତ୍ସାହିତ ହେବ।

ମହାବିଷୁବ ସଂକ୍ରାନ୍ତି, ୨୦୧୬
ଜାନକୀବଲ୍ଲଭ ସ୍ମାରକୀ ପ୍ରତିଷ୍ଠାନ, କଟକ

ଗୋବିନ୍ଦ ଭୂୟାଁ

# କ୍ରମ

●



ଆସାମ ରାଜଭବନ : ଦରବାର ହଲ୍
ରାଜ୍ୟପାଳ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଶପଥ ଗ୍ରହଣ । ଶପଥ ପାଠ
କରାଉଛନ୍ତି ହାଇକୋର୍ଟର ମୁଖ୍ୟ ବିଚାରପତି ଶ୍ରୀ ଜଷ୍ଟି ଚେଲମେଶ୍ୱର ।
(ତା୧୧।୧୨।୨୦୦୯ରିଖ)



ଏକ ଅଳସ ଅପରାହ୍ନ,
ଆସାମ ରାଜଭବନ ଉଦ୍ୟାନରେ : ସସ୍ତ୍ରୀକ ରାଜ୍ୟପାଳ ଜାନକୀବଲ୍ଲଭ



ତତ୍କାଳୀନ ରାଷ୍ଟ୍ରପତି ଶ୍ରୀମତୀ ପ୍ରତିଭା ଦେବୀ ପାଟିଲଙ୍କୁ ସ୍ୱାଗତ କରୁଛନ୍ତି
ରାଜ୍ୟପାଳ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ



ରାଜ୍ୟପାଳ ଶ୍ରୀ ଜାନକୀବଲ୍ଲଭଙ୍କୁ
ସମ୍ବର୍ଦ୍ଧନା ଜଣାଉଛନ୍ତି
ଆସାମ ମୁଖ୍ୟମନ୍ତ୍ରୀ ଶ୍ରୀ ତରୁଣ ଗୋଗୋଇ




ଆସାମ ବିଧାନସଭାର
ପ୍ଲାଟିନମ୍ ଜୁବୁଲୀ ଅବକାଶରେ
ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ,
ରାଜ୍ୟପାଳ ଶ୍ରୀ ପଟ୍ଟନାୟକ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ତରୁଣ ଗୋଗୋଇ ।



ଆସାମରେ,
'ବିହୁ' ନୃତ୍ୟଶିଳ୍ପୀଙ୍କ ଗହଣରେ,
ରାଜ୍ୟପାଳ ଦମ୍ପତି : ଏକ ଖୁସିର ମୁହୂର୍ତ୍ତରେ ।




ଏକ ବିରଳ ମୁହୂର୍ତ୍ତ :
ରାଷ୍ଟ୍ରପତି ଭବନରେ ରାଷ୍ଟ୍ରପତି ପ୍ରଣବ ମୁଖାର୍ଜୀଙ୍କ ସହ
ଶ୍ରୀ ଜାନକୀବଲ୍ଲଭ, ଡକ୍ଟର କରଣ ସିଂହ
ଓ ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ (ତା ୨୨।୮।୨୦୧୩ରିଖ)



ତତ୍କାଳୀନ ରାଷ୍ଟ୍ରପତି ଡକ୍ଟର ଅବଦୁଲ କାଲାମଙ୍କ ସହ
ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ



ଗୁଜୁରାଟ : ପ୍ରସିଦ୍ଧ ସାବରମତି ଆଶ୍ରମରେ ଗାନ୍ଧିଜୀଙ୍କ ଫଟୋଚିତ୍ରରେ
ଯଥାବିଧି ମାଲ୍ୟାର୍ପଣ କରୁଛନ୍ତି ସ-ସ୍ତ୍ରୀକ ରାଜ୍ୟପାଳ ଜାନକୀବଲ୍ଲଭ,
ପାର୍ଶ୍ୱରେ ଡକ୍ଟର ଗୋବିନ୍ଦ ଭୂୟାଁ ।



ଆସାମର ବିଖ୍ୟାତ ଆଜାନପୀର ଦରଘା :
ମୁସଲମାନ ସଂପ୍ରଦାୟର ପୁରୁଷ ଓ ମହିଳାଙ୍କ ଗହଣରେ ରାଜ୍ୟପାଳ ଦମ୍ପତି



ଆସାମର ଦିବ୍ରୁଗଡ଼ : ଶ୍ରୀ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ଉତ୍ସବରେ
ହଜାର ହଜାର ଭକ୍ତଙ୍କ ଗହଣରେ ରାଜ୍ୟପାଳ ଦମ୍ପତି
(ତା ୫/୧୨/୨୦୧୪ରିଖ)



ବ୍ରହ୍ମପୁତ୍ର କୂଳରେ, ପ୍ରସିଦ୍ଧ କାମାକ୍ଷା ପାହାଡ଼ର ଭୁବନେଶ୍ୱରୀ ମନ୍ଦିର ନିକଟରେ
ସ୍ୱାମୀ ନିଗମାନନ୍ଦ ସରସ୍ୱତୀଙ୍କର ପବିତ୍ର 'ନିର୍ବିକଳ୍ପ ସିଦ୍ଧିସ୍ଥଳ 'ର
ଉଦ୍‌ଘାଟନ କରୁଛନ୍ତି ରାଜ୍ୟପାଳ ଶ୍ରୀ ଜାନକୀବଲ୍ଲଭ
ପାର୍ଶ୍ୱରେ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ ଓ ଡକ୍ଟର ଗୋବିନ୍ଦ ଭୂୟାଁ ।
(ତା ୨୦।୧୨।୨୦୧୨ରିଖ)



'ସମ୍ବାଦ'ର ଉନ୍ମୋଚନ ଦିବସ:
ମୁଖ୍ୟଅତିଥି ତତ୍କାଳୀନ ଓଡ଼ିଶାର ରାଜ୍ୟପାଳ ବିଶ୍ୱମ୍ଭରନାଥ ପାଣ୍ଡେଙ୍କ ସହିତ
ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ, ପାର୍ଶ୍ୱରେ ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ



ଖୁସିର ମୁହୂର୍ତ୍ତ : ପତ୍ନୀ ଜୟନ୍ତୀ ଓ କନ୍ୟା ସୁଦତ୍ତାଙ୍କସହ ଜାନକୀବଲ୍ଲଭ




ଆସାମର ଗୌହାଟି ସହର
ଶ୍ରୀଜଗନ୍ନାଥ ମନ୍ଦିରର ଶିଳାନ୍ୟାସ ଉତ୍ସବରେ
ସସ୍ତ୍ରୀକ ରାଜ୍ୟପାଳ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ।




କାଶ୍ମୀର ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ କକ୍ଷ
ଅଖିଳ ଭାରତ ପ୍ରାଚ୍ୟ ବିଦ୍ୟା ସମ୍ମେଳନର ୪୬ତମ ଅଧିବେଶନରେ ଅଧ୍ୟକ୍ଷତା କରୁଛନ୍ତି
ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ (ତା୧।୧୦।୨୦୧୨ରିଖ)



ଆସାମ ରାଜଭବନ : ରାଜଭବନର ପ୍ରମୁଖ ପଦାଧିକାରୀଙ୍କ ଗହଣରେ
ରାଷ୍ଟ୍ରପତି ପ୍ରଣବ ମୁଖାର୍ଜୀ ଓ ରାଜ୍ୟପାଳ ଶ୍ରୀ ପଟ୍ଟନାୟକ



ରାଜଭବନରେ : ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦୀଙ୍କୁ ସ୍ୱାଗତ କରୁଛନ୍ତି
ରାଜ୍ୟପାଳ ଶ୍ରୀ ପଟ୍ଟନାୟକ । ପାର୍ଶ୍ୱରେ ଡକ୍ଟର ଗୋବିନ୍ଦ ଭୂୟାଁ ଓ ପଦାଧିକାରୀବୃନ୍ଦ



ଓଡ଼ିଶା ରାଜଭବନ
ଆସାମ ରାଜ୍ୟପାଳ ଶ୍ରୀ ପଟ୍ଟନାୟକଙ୍କୁ
ସ୍ୱାଗତ କରୁଛନ୍ତି ଓଡ଼ିଶା ରାଜ୍ୟପାଳ
ଡକ୍ଟର ଏସ୍. ସି. ଜମିର ଓ ଶ୍ରୀମତୀ ଜମିର ।



ଓଡ଼ିଶା ବିଧାନସଭାର ବିରୋଧୀଦଳ ନେତା
ଶ୍ରୀ ଜାନକୀବଲ୍ଲଭ ଓ ରାଜ୍ୟ ମୁଖ୍ୟମନ୍ତ୍ରୀ
ଶ୍ରୀ ନବୀନ ପଟ୍ଟନାୟକ



ଓଡ଼ିଶା ରାଜଭବନର ଅଭିଷେକ ହଲ : ଡକ୍ଟର ଗୋବିନ୍ଦ ଭୂୟାଁଙ୍କ ଲିଖିତ
'ସାର୍ଥକ ସାରଥି ଜାନକୀବଲ୍ଲଭ' ଗ୍ରନ୍ଥର ଲୋକାର୍ପଣ ଉତ୍ସବ ।
ମଞ୍ଚରେ ଦୁଇରାଜ୍ୟପାଳ ଡକ୍ଟର ଏସ୍.ସି.ଜମିର ଓ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ।
ମଞ୍ଚରେ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ, କବି ସୀତାକାନ୍ତ ମହାପାତ୍ର,
ପ୍ରଫେସର ହରେକୃଷ୍ଣ ଶତପଥୀ ଓ ଲେଖକ (ତା ୩/୨/୨୦୧୪)



ଭୁବନେଶ୍ୱର ପୁସ୍ତକମେଳାକୁ ଉଦ୍‌ଘାଟନ କରୁଛନ୍ତି
ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ। ପାର୍ଶ୍ୱରେ ଶ୍ରୀ ବରେନ୍ଦ୍ରକୃଷ୍ଣ ଧଳ ।




ତିରୁପତି ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟ :
ବିଶ୍ୱବିଦ୍ୟାଳୟର କୁଳାଧିପତି ତଥା ଆସାମର ରାଜ୍ୟପାଳ ଶ୍ରୀ ପଟ୍ଟନାୟକ
ଲୋକସେବକ ମଣ୍ଡଳର ସଭାପତି ଶ୍ରୀ ମନୁଭାଇ ପଟେଲଙ୍କୁ
ସମ୍ମାନଜନକ ଡକ୍ଟରେଟ୍ ପ୍ରଦାନ କରୁଛନ୍ତି । ପାର୍ଶ୍ୱରେ
ସୁପ୍ରିମ୍‌କୋର୍ଟର ପୂର୍ବତନ ବିଚାରପତି ମୁକୁନ୍ଦକାମ ଶର୍ମା
ଓ କୁଳପତି ପ୍ରଫେସର ହରେକୃଷ୍ଣ ଶତପଥୀ । (ତା ୬ । ୩ । ୨୦୧୩ରିଖ)



ସାରଳା ସାହିତ୍ୟ ସଂସଦର ବାର୍ଷିକ ଉତ୍ସବ : କବୀ ମନୋରମା ମହାପାତ୍ରଙ୍କୁ
ସାରଳା ସମ୍ମାନ ପ୍ରଦାନ କରୁଛନ୍ତି ରାଜ୍ୟପାଳ ଶ୍ରୀ ଜାନକୀବଲ୍ଲଭ । ପାର୍ଶ୍ୱରେ
ମହାପାତ୍ର ନୀଳମଣି ସାହୁ, ଡକ୍ଟର ପ୍ରତିଭା ରାୟ, ଇଂ. ପ୍ରଭାକର ସ୍ୱାଇଁ, ଶ୍ରୀ ସହଦେବ ସାହୁ,
ଇଂ ଅଂଶୁମାନ ଦାସ, ଡକ୍ଟର ଅର୍ଚ୍ଚନା ନାୟକ ଓ ଶ୍ରୀମତୀ ଝୁମ୍‌ଝୁମ୍ ନାୟକ ।



ଶ୍ରୀ ଜାନକୀବଲ୍ଲଭଙ୍କୁ 'ସାହିତ୍ୟ ଭାରତୀ' ସମ୍ମାନ ପ୍ରଦାନ କରୁଛନ୍ତି
ମୁଖ୍ୟଅତିଥି ସୁପ୍ରିମକୋର୍ଟର ପ୍ରାକ୍ତନ ମୁଖ୍ୟବିଚାରପତି
ଶ୍ରୀ ଗୋପାଳବଲ୍ଲଭ ପଟ୍ଟନାୟକ । ପାର୍ଶ୍ୱରେ ଡାକ୍ତର ଜୟନ୍ତ ରଥ ।
(ତା ୯।୩।୨୦୧୩ରିଖ : ସହିଦ୍‌ଭବନ, କଟକ)



କଟକ ମହାନଦୀ ବିହାର : ସାରସ୍ୱତ ସଂସ୍ଥାନର ବାର୍ଷିକ ଉତ୍ସବରେ ମୁଖ୍ୟଅତିଥି
ଆସାମ ରାଜ୍ୟପାଳଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି ଅନୁଷ୍ଠାନର କର୍ମକର୍ତ୍ତା
ଇଂ. ଗୋପାଳକୃଷ୍ଣ ବେହେରା, ଡକ୍ଟର ଗୋବିନ୍ଦ ଭୂୟାଁ, ଶ୍ରୀ ନକୁଳ ଚନ୍ଦ୍ର ରାଉତ,
ଶ୍ରୀ କୃଷ୍ଣଚନ୍ଦ୍ର ଆଇଚ୍, ଡାକ୍ତର ସୁଦର୍ଶନ ପଟ୍ଟନାୟକ । (ତା. ୩/୨/୨୦୧୩ରିଖ)



କଟକ ଶତାବ୍ଦୀ ଭବନରେ ସାରସ୍ୱତ ପୁରୁଷ ଜାନକୀବଲ୍ଲଭଙ୍କ ସହିତ
ଶ୍ରୀ ସୌମ୍ୟରଞ୍ଜନ ପଟ୍ଟନାୟକ, ଡକ୍ଟର ବାବାଜୀ ଚରଣ ପଟ୍ଟନାୟକ, ଶ୍ରୀ ଅସିତ୍
ମହାନ୍ତି, ଶ୍ରୀ ରବି କାନୁନ୍‌ଗୋ ଓ ଶ୍ରୀ ପ୍ରଦ୍ୟୁମ୍ନ ଶତପଥୀ । (ତା-୮/୨/୨୦୧୫)



ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ 'ଉତ୍କଳ ସାହିତ୍ୟ ସମାଜ'
ତରଫରୁ 'ଉତ୍କଳ ରତ୍ନ' ସମ୍ମାନ ପ୍ରଦାନ କରୁଛନ୍ତି ଓଡ଼ିଶାର ରାଜ୍ୟପାଳ
ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ । ପାର୍ଶ୍ୱରେ ଅଧିବକ୍ତା ଦେବସ୍ମାନ ଦାସ ।



ଜନନେତା ଜାନକୀବଲ୍ଲଭଙ୍କ ସହ ସାହିତ୍ୟିକ ତଥା ରାଜନେତା
ଶ୍ରୀ ଅନ୍ନଦାପ୍ରସାଦ ରାୟ : ଏକ ସାରସ୍ୱତ ସମାରୋହରେ ।



କଟକରେ : ଓଡ଼ିଶା ପାଠକ ସଂସଦର ବାର୍ଷିକ ଉତ୍ସବରେ ସାହିତ୍ୟିକ
ଇଂ ରାଜେନ୍ଦ୍ର ନାରାୟଣ ଦାସଙ୍କୁ ବାଇମୁଣ୍ଡି ସମ୍ମାନ ପ୍ରଦାନ କରୁଛନ୍ତି
ଶ୍ରୀ ଜାନକୀବଲ୍ଲଭ ।



ତ୍ରିପୁରା ରାଜଭବନ
ଆସାମ ରାଜ୍ୟପାଳ ଶ୍ରୀ ପଟ୍ଟନାୟକଙ୍କୁ ସ୍ୱାଗତ କରୁଛନ୍ତି
ତ୍ରିପୁରା ରାଜ୍ୟପାଳ ଶ୍ରୀ ଦେବାନନ୍ଦ କନୱାର୍



ଆଲୋଚନାରତ ଦୁଇ ରାଜ୍ୟପାଳ
ଆସାମ ରାଜ୍ୟପାଳ ଶ୍ରୀ ଜାନକୀବଲ୍ଲଭ ଓ
ମେଘାଳୟର ରାଜ୍ୟପାଳ ଶ୍ରୀ ଆର୍. ଏସ୍. ମୁସାହାରି



କାଶ୍ମୀର ରାଜଭବନ : ଆଲୋଚନାମଗ୍ନ ଦୁଇ ରାଜ୍ୟପାଳ
ଆସାମ ରାଜ୍ୟପାଳ ଶ୍ରୀ ପଟ୍ଟନାୟକ ଓ ଜମ୍ମୁ-କାଶ୍ମୀର ରାଜ୍ୟପାଳ
ଶ୍ରୀ ଏନ୍. ଏନ୍. ଭୋରା । (ତା ୨ । ୧୦ । ୨୦୧୨ରିଖ)




କୋଲକତା ପୁସ୍ତକ ମେଳା : ଡକ୍ଟର ଗୋବିନ୍ଦ ଭୂୟାଁଙ୍କ 'ସାର୍ଥକ ସାରଥି' ପୁସ୍ତକର
ବଙ୍ଗଳା ଅନୁବାଦ ଉନ୍ମୋଚନ : ମୁଖ୍ୟଅତିଥି ପ୍ରାକ୍ତନ କେନ୍ଦ୍ର ଶିକ୍ଷାମନ୍ତ୍ରୀ
ପ୍ରତାପଚନ୍ଦ୍ର ଚନ୍ଦ୍ରଙ୍କସହ ଶ୍ରୀ ଜାନକୀବଲ୍ଲଭ : ପାର୍ଶ୍ୱରେ ଡକ୍ଟର ଭୂୟାଁ, ଅନୁବାଦିକା
ଶ୍ରୀମତୀ ଭାରତୀ ନନ୍ଦୀ ପ୍ରମୁଖ ।



ଶେଷ ଫଟୋଚିତ୍ର : ପ୍ରଭୁ ବାଲାଜୀଙ୍କ ସନ୍ଧ୍ୟା ଦର୍ଶନରୁ ଫେରି
ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟର ଅତିଥିଶାଳାରେ ଶ୍ରୀ ଜାନକୀବଲ୍ଲଭ, କାନ୍ଧରେ
ଶୋଭାପାଉଛି ଦେବାଙ୍ଗ ଖଣ୍ଡୁଆ । ପାର୍ଶ୍ୱରେ ଲେଖକ ଡକ୍ଟର ସଦାନନ୍ଦ ଅଗ୍ରୱାଲ ।

# ନମ୍ରତାଯୁକ୍ତଶକ୍ତି ହିଁ ସଫଳତାର ସୂତ୍ର

ଜାନକୀବଲ୍ଲଭ ପଟ୍ଟନାୟକ

*୨୧ ଅପ୍ରେଲ, ୨୦୧୫ରେ ତିରୁପତି ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟର ଅଷ୍ଟାଦଶ ସମାବର୍ତ୍ତନ ଉତ୍ସବରେ ଅଧ୍ୟକ୍ଷତାକରି ଅନୁଷ୍ଠାନର କୁଳାଧିପତି ଭାବେ ଜାନକୀବଲ୍ଲଭ ପଟ୍ଟନାୟକ ଅଭିଭାଷଣ ଦେବା ପୂର୍ବରୁ ପ୍ରତ୍ୟୁଷରେ ଇହଲୀଳା ସମ୍ବରଣ କଲେ । ତାଙ୍କ ପ୍ରସ୍ତୁତ ଇଂରାଜୀ ଅଭିଭାଷଣର ଓଡ଼ିଆ ଅନୁବାଦ ଉପସ୍ଥାପନ କରାଯାଉଛି ।*

*ବିଭିନ୍ନ ସମୟରେ ଉପଲବ୍ଧ ଶକ୍ତି ତାଙ୍କ ଭିତରର ଚିରନ୍ତନୀ ଦିବ୍ୟଗୁଣ ନମ୍ରତାଯୁକ୍ତ ହୋଇ କିପରି ତାଙ୍କୁ ବାରମ୍ବାର ସଫଳତା-ସ୍ପର୍ଶୀ କରିପାରିଛି; ବୋଧହୁଏ ନିଜ ଜୀବନର ଅନୁଭୂତ-ଆସ୍ଥା ଜାତିର ଉତ୍ତରପିଢ଼ିପାଇଁ ଏ ଲେଖାରେ ସେ ବାଢ଼ିଛନ୍ତି ।*

– ସଂପାଦକ

ପ୍ରଣମାମି ଜଗନ୍ନାଥଂ ସର୍ବଜିନବରାର୍ଚ୍ଚିତମ୍ ।
ସର୍ବବୁଦ୍ଧମୟଂ ଦେବଂ ବ୍ୟାପିନଂ ଗଗନୋପମମ୍ ॥
ପ୍ରଣମାମି ଭେଙ୍କଟେଶଂ ସର୍ବଦେବମୟଂ ହରିମ୍ ।
ଗୋବିନ୍ଦଂ ପରମାନନ୍ଦଂ ସର୍ବଦୁଃଖବିମୋଚନମ୍ ॥

ସମାବର୍ତ୍ତନ ସମାରୋହର ମୁଖ୍ୟ ଅତିଥି ଡକ୍ଟର ଜୟନ୍ତୀ ରବି, କୁଳପତି ପ୍ରଫେସର ହରେକୃଷ୍ଣ ଶତପଥୀ, କାର୍ଯ୍ୟକାରିଣୀ ମଣ୍ଡଳୀ ଓ ଏକାଡେମିକ୍ କାଉନ୍‌ସିଲ୍‌ର ସଦସ୍ୟଗଣ, ଅଧ୍ୟାପକଗଣ ଓ କର୍ମଚାରୀବୃନ୍ଦ, ସମ୍ମାନିତ ହେବାକୁ ଯାଉଥିବା ବିଶିଷ୍ଟ ବିଦ୍ୱାନ୍‌ଗଣ, ନିମନ୍ତ୍ରିତ ଅତିଥିବୃନ୍ଦ, ଗଣମାଧ୍ୟମର ବନ୍ଧୁମାନେ, ପ୍ରିୟ ସ୍ନାତକଗଣ, ଛାତ୍ରଛାତ୍ରୀଗଣ ତଥା ବନ୍ଧୁଗଣ, ତିରୁପତି ରାଷ୍ଟ୍ରୀୟ ସଂସ୍କୃତ ବିଦ୍ୟାପୀଠର ଅଷ୍ଟାଦଶ ସମାବର୍ତ୍ତନ ଦିବସ ଉତ୍ସବରେ ଅଧ୍ୟକ୍ଷତା କରିବା ମୋ'ପାଇଁ ସୌଭାଗ୍ୟର ବିଷୟ ।

ସମାବର୍ତ୍ତନ ଉତ୍ସବ କୌଣସି ବିଶ୍ୱବିଦ୍ୟାଳୟପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ଛାତ୍ରଛାତ୍ରୀ, ଅଧ୍ୟାପକ, ସଂପୃକ୍ତ ଅଭିଭାବକ ତଥା ବିଶ୍ୱବିଦ୍ୟାଳୟର ଅନ୍ୟ କର୍ମଚାରୀଙ୍କ ସମେତ ସବୁ ଶିକ୍ଷିତ ଲୋକଙ୍କପାଇଁ ଏହା ଏକ ପବିତ୍ର ଅବସର । କାରଣ ସମାବର୍ତ୍ତନ ଉତ୍ସବର ସଫଳତା ପାଇଁ ସବୁ କର୍ମଚାରୀ ଓ ବିଭାଗ ଭିତରେ ପାରସ୍ପରିକ ସହଯୋଗ ଅତ୍ୟନ୍ତ ଜରୁରି ।

ମୁଁ ଆନନ୍ଦିତ ଯେ ଏହି ଦିନଟିକୁ ଏ ବିଶ୍ୱବିଦ୍ୟାଳୟ ବର୍ଣ୍ଣାଢ଼୍ୟ ସହକାରେ ତଥା ଉତ୍ସାହର ସହିତ ପାଳନ କରୁଛି।

ବିଗତ ବର୍ଷମାନଙ୍କ ଭଳି, ଚଳିତ ବର୍ଷ ମଧ୍ୟ ମୋଟ୍ ୧୨୯ ଜଣ ଛାତ୍ରଛାତ୍ରୀ ଶାସ୍ତ୍ରୀ ଉପାଧି ଲାଭ କରିଛନ୍ତି, ୩୨୪ ଜଣ ଛାତ୍ରଛାତ୍ରୀଙ୍କୁ ପିଜି/ଆଚାର୍ଯ୍ୟ ଡିଗ୍ରୀ ପ୍ରଦାନ କରାଯାଇଛି, ୫୯ଜଣ ପ୍ରାର୍ଥୀ ଏବଂ ୭୦ଜଣ ବିଦ୍ୱାନ୍‌ଙ୍କୁ ଯଥାକ୍ରମେ ବିଶିଷ୍ଟାଚାର୍ଯ୍ୟ ବା ଏମ୍.ଫିଲ୍ ଓ ବିଦ୍ୟାବାରିଧି ବା ପିଏଚ୍.ଡି. ଉପାଧି ପ୍ରଦାନ କରାଯାଇଛି। ଏହି ଅବସରରେ ମୁଁ ସେମାନଙ୍କୁ ଅଭିନନ୍ଦନ ଜଣାଇବା ସହିତ ସେମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଛି। ମୁଁ ଏହି ସମାବର୍ତ୍ତନ ଅବସରରେ ସମସ୍ତ ଛାତ୍ରଛାତ୍ରୀ, କର୍ମଚାରୀ ଓ ଉପସ୍ଥିତ ନିମନ୍ତ୍ରିତ ବ୍ୟକ୍ତିମାନଙ୍କୁ ମଧ୍ୟ ଅଭିନନ୍ଦନ ଜଣାଉଛି।

ଏହି ଅବସରରେ ଚାରି ଜଣ ପ୍ରସିଦ୍ଧ ସଂସ୍କୃତ ବିଦ୍ୱାନ୍, ଯଥା– ଡକ୍ଟର ମାଲ୍ଲାଦି ଚନ୍ଦ୍ରଶେଖର ଶାସ୍ତ୍ରୀ, ପ୍ରଫେସର କମଲେଶ ଦତ୍ତ ତ୍ରିପାଠୀ, ପଣ୍ଡିତ ଦୋରବାଲା ପ୍ରଭାକର ଶର୍ମା ଓ ପଣ୍ଡିତ କୃଷ୍ଣ ଯାଗିଙ୍କୁ ମହାମହୋପାଧ୍ୟାୟ ଉପାଧି ପ୍ରଦାନ କରାଯାଇଛି ଏବଂ ଚାରି ଜଣ ସମ୍ମାନିତ ବ୍ୟକ୍ତିତ୍ୱ, ଯଥା– ପ୍ରଫେସର୍ ଅକ୍କୁଭୋଟଲ ଶର୍ମା, ଡକ୍ଟର୍ ରାଜଲକ୍ଷ୍ମୀ ଶ୍ରୀନିବାସନ, ଡକ୍ଟର୍ ଆର୍.ଭି.ଏସ୍.ଏସ୍. ଅବଧାନୁଲୁ ଓ ଡକ୍ଟର୍ ସଦାନନ୍ଦ ଅଗ୍ରୱାଲ୍‌ଙ୍କୁ ବାଚସ୍ପତି ବା ସମ୍ମାନଜନକ ଡି.ଲିଟ୍ ପ୍ରଦାନ କରାଯାଇଛି। ଏହି ବିଶିଷ୍ଟ ବ୍ୟକ୍ତିଗଣ ସଂସ୍କୃତ ଭାଷା ଓ ଭାରତୀୟ ସଂସ୍କୃତିର ବିକାଶ ଏବଂ ଉନ୍ନତିପାଇଁ ଉଲ୍ଲେଖନୀୟ ଭାବେ ଅବଦାନ କରିଛନ୍ତି। ସେମାନଙ୍କୁ ସମ୍ମାନିତ କରି ବିଶ୍ୱବିଦ୍ୟାଳୟ ଗର୍ବ ଅନୁଭବ କରୁଛି। ଦେଶ ପାଇଁ ସେମାନଙ୍କର ଏହି ବିପୁଳ ସେବା ନିମନ୍ତେ ମୁଁ ସେମାନଙ୍କୁ ଅଭିନନ୍ଦନ ଜଣାଉଛି।

ସମୟକ୍ରମେ ବିଭିନ୍ନ କ୍ଷେତ୍ରରେ ଏହି ବିଶ୍ୱବିଦ୍ୟାଳୟର ଅଗ୍ରଗତି ଆମମାନଙ୍କପାଇଁ ବେଶ୍ ଆନନ୍ଦଦାୟକ। ବିଭିନ୍ନ ପାଠ୍ୟକ୍ରମରେ ନାମ ଲେଖାଉଥିବା ଛାତ୍ରମାନଙ୍କର ସଂଖ୍ୟା ବହୁଗୁଣରେ ବଢ଼ି ଚାଲିଛି। ଏବେ ବିଶ୍ୱବିଦ୍ୟାଳୟରେ ୨୦୦୦ରୁ ଅଧିକ ଛାତ୍ର ଅଛନ୍ତି। ଦେଖି ଖୁସି ଲାଗୁଛି ଯେ ବିଶ୍ୱବିଦ୍ୟାଳୟରେ ଛାତ୍ର ଓ ଛାତ୍ରୀଙ୍କ ଅନୁପାତ ୫୦ : ୫୦ ପାଖାପାଖି ରହିଛି।

"ଯଦି ପୁରୁଷଟିଏ ଶିକ୍ଷିତ ହୁଏ, ତେବେ ଜଣେ ମଣିଷ ଶିକ୍ଷିତ ହୁଏ; ଯଦି ଜଣେ ମହିଳା ଶିକ୍ଷିତ ହୁଏ, ତେବେ ସାରା ପରିବାର ଶିକ୍ଷିତ ହୋଇଯାଏ।"

ଅବଶ୍ୟ ଆମ ଦେଶରେ ନାରୀ ଶିକ୍ଷା ଦିଗରେ ଉଲ୍ଲେଖନୀୟ ପ୍ରଗତି ଆସିଛି। ଏହି ସମାବର୍ତ୍ତନ ଉତ୍ସବ ପ୍ରମାଣ କରେ ଯେ ଏବେ ଶିକ୍ଷାର ସବୁ ବିଭାଗରେ ମହିଳାମାନେ ପୁରୁଷମାନଙ୍କଠାରୁ ଆଗରେ ଅଛନ୍ତି। ସେମାନେ ପ୍ରମାଣ କରିଦେଇଛନ୍ତି ଯେ ପାଠପଢ଼ା ମାମଲାରେ ସେମାନେ ଅଧିକ ପରିଶ୍ରମୀ ତଥା ଅଧିକ ଦୃଢ଼ନିଷ୍ଠୟ ଓ ଉଚ୍ଚାକାଂକ୍ଷୀ। ମୁଁ ସେମାନଙ୍କୁ ଅଭିନନ୍ଦନ ଜଣାଉଛି। ତେବେ ବର୍ତ୍ତମାନ ମଧ୍ୟ ଅନେକ ରାଜ୍ୟରେ ନାରୀ ଶିକ୍ଷାର

ହାର ଅତି ଚିନ୍ତାଜନକ, ଅନେକ ରାଜ୍ୟରେ ନାରୀକୁ ଏପର୍ଯ୍ୟନ୍ତ ବିଭିନ୍ନ କ୍ଷେତ୍ରରେ ପାତରଅନ୍ତର କରାଯାଉଛି। ମୋ'ର ଦୃଢ଼ମତ ଯେ ବିଶ୍ୱବିଦ୍ୟାଳୟସ୍ତର ପର୍ଯ୍ୟନ୍ତ ଝିଅମାନଙ୍କୁ ମାଗଣାରେ ଶିକ୍ଷା ଦେବାର ବ୍ୟବସ୍ଥା ରଖାଯିବା ଉଚିତ। ଏହା ସହିତ ଯଥେଷ୍ଟ ଛାତ୍ରବୃତ୍ତି ଏବଂ ଅନ୍ୟାନ୍ୟ ସୁବିଧା ସେମାନଙ୍କପାଇଁ ସଂରକ୍ଷିତ କରାଯିବା ଉଚିତ।

ବର୍ଷବର୍ଷଧରି ଉପେକ୍ଷା ଓ ଭେଦଭାବର ଶିକାର ହୋଇଆସୁଥିବା ଅନୁସୂଚିତ ଜାତି, ଜନଜାତି ତଥା ପଛୁଆବର୍ଗର ଛାତ୍ରଛାତ୍ରୀମାନଙ୍କପାଇଁ ମଧ୍ୟ ସେହି ସୁବିଧା କରାଯିବା ଉଚିତ ବୋଲି ମୋ'ର ମତ। ୟୁନିଭର୍ସିଟି ଗ୍ରାଣ୍ଟ୍ କମିସନ୍‌ଦ୍ୱାରା ଏହି ବିଶ୍ୱବିଦ୍ୟାଳୟ ପାରମ୍ପରିକ ଶାସ୍ତ୍ର ବିଷୟରେ ଏକ 'ସେଣ୍ଟର୍ ଅଫ୍ ଏକ୍ସଲେନ୍ସ' ଭାବେ ସ୍ୱୀକୃତି ପାଇବା ମଧ୍ୟ ଆମପାଇଁ ବେଶ୍ ଉତ୍ସାହପ୍ରଦ। ୟୁଜିସି ସହାୟତାରେ ଏହି ବିଶ୍ୱବିଦ୍ୟାଳୟରେ ବିଭିନ୍ନ ବିଷୟରେ ଅନେକ ଅଭିନବ ପାଠ୍ୟକ୍ରମ ତଥା 'ସ୍ପେସିଆଲ୍ ଆସିଷ୍ଟାନ୍ସ୍ ପ୍ରୋଗ୍ରାମ୍' ଆରମ୍ଭ ହୋଇଛି। ଛାତ୍ରଛାତ୍ରୀ, ଅଧ୍ୟାପକ ଓ ଅନ୍ୟ କର୍ମଚାରୀମାନଙ୍କପାଇଁ ଅନେକ ନୂଆ ସୁବିଧା କରାଯାଇଛି। 'ପ୍ରିପାରେସନ୍ ଅଫ୍ ମଲ୍‌ଟିଲିଙ୍ଗୁଆଲ୍ ଇଟିମୋଲୋଜିକାଲ୍ ଡିକ୍ସନାରି' ଶୀର୍ଷକ ଏକ ବିଶାଳ ପରିଯୋଜନା ମଧ୍ୟ ହାତକୁ ନିଆଯାଇଛି। ସେ ଦିଗରେ ହୋଇଥିବା ଅଗ୍ରଗତି ବେଶ୍ ଉତ୍ସାହପ୍ରଦ।

ଅନୁଷ୍ଠାନର ଏହି ଅଗ୍ରଗତିପାଇଁ ମୁଁ କୁଳପତି ଓ ତାଙ୍କ ସୁଦକ୍ଷ ସହକର୍ମୀମାନଙ୍କୁ ଅଭିନନ୍ଦନ ଜଣାଇବା ଅବସରରେ ଆଶା କରୁଛି ଯେ ସାମୂହିକ ଅଗ୍ରଗତିର ଏ ଧାରା ଆଗାମୀ ଦିନମାନଙ୍କରେ ମଧ୍ୟ ଜାରି ରହିଥିବ ଏବଂ ଆମ ସମସ୍ତଙ୍କୁ ଉତ୍ସାହିତ କରୁଥିବ।

ସଂସ୍କୃତ ଥିଲା ପ୍ରାଚୀନ ବିଶ୍ୱର 'ଲିଙ୍ଗୁଆ ଫ୍ରାଙ୍କା' ବା ଭିନ୍ନଭାଷୀଙ୍କ ମଧ୍ୟରେ ଭାବବିନିମୟର ଭାଷା, ଯେମିତି ବର୍ତ୍ତମାନ ଅଛି ଇଂରାଜୀ। ବିଜ୍ଞାନର ସବୁ ବିଭାଗ ସଂସ୍କୃତ ମାଧ୍ୟମରେ ପ୍ରଚାରିତ ହେଉଥିଲେ। ଆମ ଶିକ୍ଷାରେ ଗଣିତକୁ ବହୁ ଉଚ୍ଚସ୍ଥାନ ପ୍ରଦାନ କରାଯାଇଥିଲା, କୁହାଯାଉଥିଲା–

"ଯଥା ଶିଖ ମୟୂରାଣାଂ ନାଗାନାଂ ମଣୟୋ ଯଥା।
ତଦ୍ୱତ୍ ସମସ୍ତଶାସ୍ତ୍ରାଣାଂ ଗଣିତଂ ମୂର୍ଦ୍ଧନି ସ୍ଥିତମ୍ ॥"

ଅର୍ଥାତ୍ ମୟୂର ମଥାର ଚୂଳ ଏବଂ ନାଗ ମୁଣ୍ଡର ମଣି ଭଳି ଗଣିତ ସମସ୍ତ ବିଜ୍ଞାନର ଶୀର୍ଷରେ ଅବସ୍ଥିତ।

ବିଜ୍ଞାନ ଓ ଗଣିତ ଆମ ସାଂସ୍କୃତିକ ସମ୍ପତ୍ତି। ଏହା ଅନ୍ତର୍ଜାତୀୟ ସ୍ତରରେ ସ୍ୱୀକୃତ ଯେ ବିଶ୍ୱରେ ପ୍ରଚଳିତ ଗଣିତର ଅଧିକାଂଶ ସୂତ୍ର ଓ ଜ୍ଞାନ ଭାରତରେ ଜନ୍ମହୋଇ ଆରବୀୟମାନଙ୍କ ମାଧ୍ୟମରେ ପାଶ୍ଚାତ୍ୟ ଦେଶମାନଙ୍କୁ ଯାଇଛି। ଏହା ଆମ ଛାତ୍ରଛାତ୍ରୀ ଓ ଶିକ୍ଷିତ ଯୁବସମାଜ ପାଇଁ ପ୍ରେରଣାଦାୟକ ହେବା ଉଚିତ ଯେ ଆମ ଦେଶର ପ୍ରାଚୀନ ବିଦ୍ୱାନ୍‌ମାନଙ୍କ ରଚନାରେ ଗାଣିତିକ ଚିହ୍ନର ବ୍ୟବହାର ତଥା ପାଟୀଗଣିତ, ବୀଜଗଣିତ, ଜ୍ୟାମିତି ଓ ତ୍ରିକୋଣମିତି ପ୍ରସଙ୍ଗରେ ବେଶ୍ ଉଚ୍ଚସ୍ତରର ଜ୍ଞାନ ଦେଖିବାକୁ ମିଳେ। ଯେଉଁମାନେ କହନ୍ତି, ବିଜ୍ଞାନ ଓ

ଟେକ୍‌ନୋଲୋଜି ୟୁରୋପରେ ଜନ୍ମହୋଇ ଊନବିଂଶ ଓ ବିଂଶ ଶତାବ୍ଦୀରେ ଭାରତକୁ ଆସିଥିଲା, ସେମାନେ ଜାଣିରଖିବା ଉଚିତ ଯେ ବିଜ୍ଞାନ ଓ ଟେକ୍‌ନୋଲୋଜି ଗତ ହଜାର ହଜାର ବର୍ଷ ଧରି ଭାରତୀୟ ସଭ୍ୟତା ଓ ସଂସ୍କୃତିର ଏକ ଅବିଚ୍ଛିନ୍ନ ଅଙ୍ଗ ହୋଇ ରହିଆସିଛି।

ସିନ୍ଧୁ-ସରସ୍ୱତୀ ଅବବାହିକାର ସଭ୍ୟତାରେ ବିଶ୍ୱର ସର୍ବପ୍ରଥମ ସହର ନିର୍ମାଣ ହୋଇଥିଲା, ଯେଉଁଠାରେ ଥିଲା ଭୂତଳ ନଳା, ନଗର ସଫାସୁତର ବ୍ୟବସ୍ଥା, ହାଇଡ୍ରୋଲିକ୍ ଇଂଜିନିୟରିଂ ଏବଂ ଏୟାର୍-କୁଲିଂ ବାସଗୃହ। ସେଠାରେ ପୋଡ଼ାଇଟାରେ ତିଆରି ଘର ଥିବା ବଡ଼ ବଡ଼ ଜନବସତି ଥିଲା। ସେଠାରେ ଜଳସେଚନ ବ୍ୟବସ୍ଥା, ନଦୀବନ୍ଧ, ପାଣିଟାଙ୍କି, କୂପ ଆଉ ନିଜସ୍ୱ ସ୍ନାନାଗାର ଓ ପାଣି ଯିବାଲାଗି ନଳା ଓ ମଧ୍ୟବର୍ଗ ଲୋକେ ରହିବା ଭଳି ଘର ଥିଲା। ପ୍ରତ୍ନତତ୍ତ୍ୱବିତ୍‌ମାନେ ସେଠାରେ ଗୋଟିଏ ବନ୍ଦର ମଧ୍ୟ ଆବିଷ୍କାର କରିଛନ୍ତି, ଯାହା ପ୍ରମାଣ କରୁଛି ଯେ ସେ ଲୋକମାନେ ସମୁଦ୍ରପଥରେ ବାଣିଜ୍ୟ ମଧ୍ୟ କରୁଥିଲେ। ସେମାନେ ସେଠାରୁ ଜ୍ୟାମିତି କମ୍ପାସ୍, ହାତୀଦାନ୍ତରେ ତିଆରି ସ୍କେଲ୍, ଘର ତିଆରିରେ ଆବଶ୍ୟକ ଇଂଜିନିୟରିଂ ଯନ୍ତ୍ରପାତି, ଅସ୍ତ୍ରୋପଚାର ଓ ଯୁଦ୍ଧ ଉପକରଣ ଆଦି ମଧ୍ୟ ପାଇଛନ୍ତି। ସେଠାରେ ବର୍ଷାଜଳ ସଂରକ୍ଷଣ କରି ତାକୁ ଚାଷ ଓ ପିଇବାରେ ବ୍ୟବହାର କରିବାପାଇଁ ବଡ଼ବଡ଼ ଜଳାଶୟ ଖୋଳା ଯାଇଥିଲା। ଆମେ ହରପ୍ପାର ଲୋକଙ୍କଠାରୁ ଅନେକ କଥା ଶିଖିଛୁ, ତା' ଭିତରୁ ଗୋଟିଏ ହେଉଛି ଏହି ଜଳଅମଳ ବ୍ୟବସ୍ଥା।

ଭାରତୀୟମାନେ ଇସ୍ପାତ ତିଆରି ଜାଣିଥିଲେ, କଳଙ୍କି ଖାଉ ନ ଥିବା ଇସ୍ପାତରେ ତିଆରି ଦିଲ୍ଲୀର କୁତବ୍‌ମିନାର୍ ସ୍ତମ୍ଭ ଏବଂ କୋଣାର୍କ ମନ୍ଦିରରେ ବ୍ୟବହାର କରାଯାଇଥିବା ଲୌହବିମ୍‌ଗୁଡ଼ିକ ସେମାନଙ୍କ ଜ୍ଞାନର ସ୍ପଷ୍ଟ ଓ ବିଶାଳ ପ୍ରମାଣ। ଜାହାଜ ନିର୍ମାଣର କଳା ସେମାନେ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରୁ ମଧ୍ୟ ଜାଣିଥିଲେ, ସେତେବେଳେ କଳିଙ୍ଗ ଏକ ସାମୁଦ୍ରିକ ଶକ୍ତି ଭାବେ ଗଣାଯାଉଥିଲା। ଗ୍ରୀକ୍ ଓ ରୋମୀୟମାନଙ୍କ ସହିତ ଭାରତର ସାମୁଦ୍ରିକ ବ୍ୟବସାୟ ଚାଲୁଥିଲା ବୋଲି ଅନେକ ପ୍ରମାଣ ଅଛି।

ଗଣିତ, ମହାକାଶ ବିଜ୍ଞାନ, ସ୍ଥାପତ୍ୟ, ରସାୟନ ବିଜ୍ଞାନ, ଧାତୁବିଜ୍ଞାନ, ଔଷଧ, ପ୍ରାକୃତିକ ଦର୍ଶନ ଏବଂ ଅନ୍ୟ ଅନେକ କ୍ଷେତ୍ରରେ ଭାରତରେ ବହୁ ମହାନ୍ ବୈଜ୍ଞାନିକ ଆବିଷ୍କାର ଓ ଯାନ୍ତ୍ରିକ ବିକାଶ ଘଟିଥିଲା।

ଆମର ଅନେକ ବଡ଼ ବୈଜ୍ଞାନିକ ଥିଲେ, ଯେପରିକି ବରାହମିହିର ଓ ତାଙ୍କ ଝିଅ ଲୀଳାବତୀ। ବ୍ରହ୍ମଗୁପ୍ତ ଯିଏ ଗ୍ୟାଲିଲିଓଙ୍କର ଶହ ଶହ ବର୍ଷ ପୂର୍ବରୁ ଘୋଷଣା କରିଥିଲେ ଯେ ସୂର୍ଯ୍ୟ ସ୍ଥିର ଅଛି ଓ ପୃଥିବୀ ତା' ଚାରିପାଖରେ ଘୂରୁଛି। ଭାସ୍କରାଚାର୍ଯ୍ୟ (ପ୍ରଥମ) ଓ (ଦ୍ୱିତୀୟ) ମହାକାଶ ବିଜ୍ଞାନ ପ୍ରସଙ୍ଗରେ ଅନେକ ଚମତ୍କାର କାମ କରିଥିଲେ। ଆନ୍ଧ୍ରପ୍ରଦେଶରେ ଜନ୍ମ ହୋଇଥିବା ବୌଦ୍ଧ ଯୋଗୀ ନାଗାର୍ଜୁନ ଥିଲେ ଜଣେ ପ୍ରସିଦ୍ଧ ରସାୟନବିତ୍। ସେ କହିଥିଲେ, "ପାରଦ ଓ ଅନ୍ୟ ଧାତୁମାନଙ୍କ ସାହାଯ୍ୟରେ ମୁଁ ବିଶ୍ୱକୁ ଦାରିଦ୍ର୍ୟରୁ ମୁକ୍ତ କରିପାରିବି।"

"ସିଦ୍ଧରସେ କରିଷ୍ୟାମି ନିର୍ଦ୍ଦାରିଦ୍ର୍ୟମିଦଂ ଜଗମ୍।"

ସୁଶ୍ରୁତ ଥିଲେ ଜଣେ ମହାନ୍ ସର୍ଜନ୍। ସେ ଜନ୍ମ ହୋଇଥିଲେ ପ୍ରାୟ ୨୫୦୦ ବର୍ଷ ପୂର୍ବେ। କୁହାଯାଏ, ସେ ଅସ୍ତ୍ରୋପଚାରରେ ୫୦୦ ପ୍ରକାର ଉପକରଣ ବ୍ୟବହାର କରୁଥିଲେ ଏବଂ ପ୍ଲାଷ୍ଟିକ୍ ସର୍ଜରି ମଧ୍ୟ କରିପାରୁଥିଲେ।

ତେବେ ଦୀର୍ଘକାଳଧରି ଆମ ସମାଜ ସ୍ଥିର ଓ ସ୍ଥବିର ହୋଇରହିଗଲା, ଉଦ୍ଭାବନ ଏବଂ ନୂଆକରି କିଛି କରିବାର କଳାକୁ ଭାରତ ଭୁଲିଗଲା। ତା'ପରେ ପାଶ୍ଚାତ୍ୟରେ ଆସିଲା ଶିଳ୍ପବିପ୍ଳବ। ତେଣୁ ସେଠାରେ ଆଧୁନିକ ଟେକ୍‌ନୋଲଜି ଓ ଯୁଦ୍ଧବିଜ୍ଞାନର ବିକାଶ ହେଲା, ଯାହାର ଫଳସ୍ୱରୂପ ଦୀର୍ଘ ୨୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ବିଶ୍ୱ ଉପରେ ପାଶ୍ଚାତ୍ୟ ଦେଶମାନଙ୍କର ଆଧିପତ୍ୟ ରହିଲା।

ସ୍ୱାଧୀନ ହେବାପରେ ଭାରତ ଏକ ସକ୍ରିୟ ରାଷ୍ଟ୍ରରେ ପରିଣତ ହୋଇଛି ଏବଂ ଆମେ ପୁଣି ମହାନ୍ ହୋଇପାରିବାର ସୁଯୋଗ ଆସି ପହଞ୍ଚିଛି। ସ୍ୱାଧୀନତାର ପରେପରେ ଉଚ୍ଚଶିକ୍ଷା କ୍ଷେତ୍ରରେ ଭାରତ ବେଶ୍ ଅଗ୍ରଗତି କରିଛି। ଚୀନ୍ ଓ ଆମେରିକା ପରେ ଭାରତ ଉଚ୍ଚଶିକ୍ଷାର ଛାତ୍ର ସଂଖ୍ୟା ଦୃଷ୍ଟିରୁ ବିଶ୍ୱରେ ତୃତୀୟ ସ୍ଥାନରେ ଅଛି। କିନ୍ତୁ ବର୍ତ୍ତମାନ ବିଶ୍ୱରେ ଥିବା ୨୦୦ଟି ଶ୍ରେଷ୍ଠ ବିଶ୍ୱବିଦ୍ୟାଳୟଙ୍କ ଭିତରୁ ଗୋଟିଏ ହେଲେ ଭାରତରେ ନାହିଁ। ଆମ ବିଶ୍ୱବିଦ୍ୟାଳୟଗୁଡ଼ିକ ଭିତରୁ ଦୁଇ-ତୃତୀୟାଂଶ ଏବଂ କଲେଜଗୁଡ଼ିକ ଭିତରୁ ଶତକଡ଼ା ନବେ ଭାଗ ସାଧାରଣ ସ୍ତରରୁ ବି କମ୍ ମାନର। ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି, ବିଶ୍ୱବିଦ୍ୟାଳଗୁଡ଼ିକର ପାଠ୍ୟକ୍ରମ କର୍ମନିଯୁକ୍ତିକୁ ଦୃଷ୍ଟିରେ ରଖି ତିଆରି କରାଯାଇ ନାହିଁ ବୋଲି କୁହାଯାଉଛି।

ଆଜି ମୋଟ୍ ଜନସଂଖ୍ୟାରେ ଯୁବକ ଯୁବତୀମାନଙ୍କ ସଂଖ୍ୟାର ହାର ଦୃଷ୍ଟିରୁ ଭାରତ ସାରା ବିଶ୍ୱରେ ପ୍ରଥମ। ଆମ ମୋଟ୍ ଜନସଂଖ୍ୟାର ଶତକଡ଼ା ୭୨ ଭାଗ ହେଉଛନ୍ତି ୪୦ ବର୍ଷରୁ କମ୍ ବୟସର। ଏହା ଏକ ବିରାଟ ସମ୍ଭାବନା। କିନ୍ତୁ ଯୁବପିଢ଼ିର ଗୋଟିଏ ବଡ଼ ଭାଗ ସ୍ୱାସ୍ଥ୍ୟ ସମସ୍ୟା ଓ ଖାଦ୍ୟହୀନତାର ଶିକାର ହୋଇଛନ୍ତି। ପ୍ରତି ବର୍ଷ ଆମ ଦେଶରେ ମ୍ୟାଲେରିଆ, ଫାଇଲେରିଆ, ବାର୍ଡ ଫ୍ଲୁ, ଚିକନ୍‌ଗୁନିଆ, ଡେଙ୍ଗୁ ଆଦି ବିଭିନ୍ନ ରୋଗର ପ୍ରାଦୁର୍ଭାବ ଦେଖାଦେଉଛି। ଫଳରେ ପ୍ରଭୂତ ଲୋକବଳର ହାନି ଘଟୁଛି। ଯଦିଓ ଆମର ଏକ ଦୃଢ଼ ଓ କ୍ରମଶଃ ବଢୁଥିବା ମଧ୍ୟବର୍ଗ ଅଛନ୍ତି, ଦାରିଦ୍ର୍ୟରେଖା ତଳେ ଏବେ ମଧ୍ୟ ରହିଥିବା ଲୋକଙ୍କ ସଂଖ୍ୟା କିଛି କମ୍ ନୁହେଁ। ସ୍ୱାଧୀନତା ପାଇବା ସମୟରେ ଆମ ଦେଶରେ ଯେତେ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହିଥିଲେ, ସେ ସଂଖ୍ୟା ଏବେ ବି ବଦଳି ନାହିଁ। ଆମ ଗଣତାନ୍ତ୍ରିକ ବ୍ୟବସ୍ଥା ତଥା ସବୁ ସଚେତନ ଓ ଶିକ୍ଷିତ ଲୋକଙ୍କ ପ୍ରତି ଏହା ଏକ ବଡ଼ ଆହ୍ୱାନ।

ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ଭାଷଣ ଦେବାବେଳେ ୧୯୪୭ ମସିହାରେ ପଣ୍ଡିତ ଜବାହରଲାଲ୍ ନେହରୁ କହିଥିଲେ, "ବିଶ୍ୱବିଦ୍ୟାଳୟ କନ୍‌ଭେୟର୍ ବେଲ୍‌ଟ୍ ଜରିଆରେ

ବଜାରକୁ ଦଳକୁ ଦଳ ଛାତ୍ରଙ୍କୁ ପଠାଉଥିବା ଏକ ଫ୍ୟାକ୍ଟ୍ରି ନୁହେଁ... ବିଶ୍ୱବିଦ୍ୟାଳୟ ଅଲଗା ଅନୁଷ୍ଠାନ... ବିଶ୍ୱବିଦ୍ୟାଳୟର ଅର୍ଥ ହେଉଛି ମାନବିକତା, ସହନଶୀଳତା ଏବଂ ନୂଆ ଜ୍ଞାନ ଆଉ ସତ୍ୟ ସନ୍ଧାନ ମାଧ୍ୟମରେ ବିକାଶ।" ସେ ଆହୁରି କହିଥିଲେ, "ବିଶ୍ୱବିଦ୍ୟାଳୟ ହେଉଛି ସେହି ସ୍ଥାନ, ଯେଉଁଠାରେ ଆମେ ଯୁବକ ଥିବା ସମୟରେ ଆମ ଭିତରେ ଆଦର୍ଶର ବୀଜ ବପନ କରାଯାଏ...।"

ବନ୍ଧୁଗଣ, ଶିକ୍ଷାର୍ଥୀ ଭାବେ ଆପଣମାନେ ଏହି ବିଶ୍ୱବିଦ୍ୟାଳୟରେ ନିଜର କାର୍ଯ୍ୟ ସଫଳତାର ସହିତ ସମାପନ କରିଛନ୍ତି, ବର୍ତ୍ତମାନ ଆପଣମାନେ ଏହି ବିଶ୍ୱବିଦ୍ୟାଳୟରୁ ଜୀବନର ବିଶ୍ୱବିଦ୍ୟାଳୟକୁ ଯାତ୍ରା ଆରମ୍ଭ କରୁଛନ୍ତି। ଏହି ଯାତ୍ରା ସମୟରେ ଆପଣମାନେ ନିଜ ମନରେ ଜ୍ଞାନଲାଭର ଇଚ୍ଛାକୁ ଜୀବିତ ରଖନ୍ତୁ, ନିଜ ମସ୍ତିଷ୍କକୁ ସବୁବେଳେ ମୁକ୍ତ ରଖନ୍ତୁ। ସାହସୀ ହୁଅନ୍ତୁ ଓ ସବୁପ୍ରକାର ସାମାଜିକ ରୋଗ, ଅନ୍ଧବିଶ୍ୱାସ ଏବଂ ରୂଢ଼ିବାଦ ବିରୋଧରେ ଯୁଦ୍ଧ କରନ୍ତୁ। ଶୋଷଣରେ ଶିକାର ହୋଇଥିବା ଶିଶୁ ବା ସମସ୍ୟାରେ ପଡ଼ିଥିବା ନାରୀଟିଏକୁ ଦେଖିଲେ ତାକୁ ରକ୍ଷା କରନ୍ତୁ। ଅଭାବୀଲୋକଙ୍କୁ ସାହାଯ୍ୟ କରନ୍ତୁ, ଗରିବଲୋକଙ୍କୁ ସେବା ଦିଅନ୍ତୁ। ନିରକ୍ଷରଙ୍କୁ ସାକ୍ଷର କରନ୍ତୁ ଏବଂ ସବୁଠାରୁ ବଡ଼ କଥା ହେଉଛି–ନମ୍ର ହୁଅନ୍ତୁ। ଜ୍ଞାନ ହେଉଛି ଶକ୍ତି, କିନ୍ତୁ ନମ୍ରତାଯୁକ୍ତ ଶକ୍ତି ହେଉଛି ସଫଳତାର ସୂତ୍ର। ସଂସ୍କୃତରେ କୁହାଯାଇଛି–

"ନମ୍ରନ୍ତି ଫଳିନୋ ବୃକ୍ଷାଃ ନମ୍ରନ୍ତି ଗୁଣିନୋ ଜନାଃ।"

ବନ୍ଧୁଗଣ, ଜୀବନର ସୁଦୀର୍ଘ ପଥରେ ମୁଁ ଆପଣମାନଙ୍କ ସଫଳତା କାମନା କରୁଛି। ଆପଣମାନଙ୍କର ପଥ ପରମାନନ୍ଦମୟ ହେଉ।

॥ ଶିବାସ୍ତେ ସନ୍ତୁ ପନ୍ଥାନଃ ॥

॥ ଜୟହିନ୍ଦ୍ ॥



# ଜାନକୀବଲ୍ଲଭ–ପ୍ରବନ୍ଧ-ମାନସ : ଏକ ମନ୍ମୟ ଦୃଷ୍ଟିପାତ

ବୈଷ୍ଣବ ଚରଣ ସାମଲ

ଓଡ଼ିଆ ପ୍ରବନ୍ଧ-ସାହିତ୍ୟର ଆଦି-ଉନ୍ମେଷ କବିବର ରାଧାନାଥ ରାୟଙ୍କର 'ବିବେକୀ' (୧୮୭୩) ପ୍ରବନ୍ଧରୁ ହୋଇଥିଲେହେଁ ପରବର୍ତ୍ତୀ ଦୀର୍ଘ ପଞ୍ଚସ୍ତରି ବର୍ଷ ଅର୍ଥାତ୍ ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ବିବିଧ ରୂପ-ରୂପାନ୍ତର ମଧ୍ୟ ଦେଇ ଗତି କରିଆସିଥିଲା ଓ ସ୍ୱାଧୀନତା ପରେ ଏଯାବତ୍ ଏହି ବିଭାଗଟି ବେଶ୍ ପ୍ରଭାବଶାଳୀ ହୋଇଥିବା ଲକ୍ଷ୍ୟ କରାଯାଏ। ସ୍ୱାଧୀନତା ପୂର୍ବରୁ ଯଦିଓ କିଛି ରମ୍ୟରଚନା ଓ ବ୍ୟକ୍ତିନିଷ୍ଠ ପ୍ରବନ୍ଧ ରଚିତ ହୋଇଥିଲା ମୁଖ୍ୟତଃ ନୈର୍ବ୍ୟକ୍ତିକ ପ୍ରବନ୍ଧର ରଚନା ଥିଲା ସମଧିକ। ସେସମୟର ଯାବତୀୟ ପ୍ରବନ୍ଧରେ ଅନ୍ତର୍ଜାତୀୟ ବା ରାଷ୍ଟ୍ରୀୟ ସମସ୍ୟା ଯେତେ ପ୍ରକାଶ ପାଇ ନାହିଁ ସେତେ ବେଶୀ ପ୍ରକାଶ ପାଇଛି ସମାଜ, ସଂସ୍କୃତି, ଧର୍ମ, ଦର୍ଶନ, କଳା, ସୌନ୍ଦର୍ଯ୍ୟ, ଜାତୀୟ ଜୀବନ, ଜାତୀୟ ଚରିତ୍ର, ତ୍ୟାଗ, ତିତିକ୍ଷା ଇତ୍ୟାଦି ବିଷୟରେ ଅନ୍ତର୍ଦୃଷ୍ଟିସମ୍ପନ୍ନ ଚିନ୍ତା ଓ ଚେତନା। ସ୍ୱାଧୀନତା ପରେ ଯୁଗ ରୁଚି ବଦଳିଛି, ଗାଣତନ୍ତ୍ରିକ ରାଜନୀତିରେ ଦେଖାଦେଇଛି ନାନା ସଙ୍କଟ ଓ ସଂଘର୍ଷ, ଗୋଟାଏ ଉପଭୋଗୀ ମାନସିକତା ପ୍ରଭାବ ବିସ୍ତାର କରିଯାଇଛି, ନବ ଔପନିବେଶିକ ମନୋଭାବ ଆଚ୍ଛନ୍ନ କରିଯାଇଛି ଏ ସମୟର ନବ ଅଭିଜାତବର୍ଗଙ୍କୁ, ମୂଲ୍ୟବୋଧ ନୁହେଁ; ମୂଲ୍ୟ ଆକର୍ଷଣ କରିଛି ଏହି ସୁବିଧାବାଦୀମାନଙ୍କୁ, ସମଗ୍ର ନୁହେଁ; ବ୍ୟକ୍ତି ହୋଇଛି ମୁଖ୍ୟ। ଏହି ସମୟରେ ଯେଉଁ ପ୍ରାବନ୍ଧିକମାନେ ପ୍ରବନ୍ଧ ରଚନା କଲେ ସେମାନେ ଯଦିଓ ଏହି ସମସ୍ୟାଗୁଡ଼ିକୁ ଦର୍ଶାଇଦେଲେ ତାହା କିନ୍ତୁ ସମଗ୍ରଙ୍କୁ ସ୍ପର୍ଶ କଲା ନାହିଁ; ମୁଷ୍ଟିମେୟ ବ୍ୟକ୍ତି ହୁଏତ ପଢ଼ିଲେ ବା ଜାଣିଲେ, ତାହା କିନ୍ତୁ କାହାରିକୁ ଉଦ୍‌ବୁଦ୍ଧ କଲା ନାହିଁ। ପ୍ରବନ୍ଧ ସାହିତ୍ୟର ଅନ୍ୟାନ୍ୟ ବିଭାଗ ପରି ଏକ ସୌଖୀନ କଳାକର୍ମ ନୁହେଁ। ଏହା ରାଷ୍ଟ୍ର, ସମାଜ ଓ ମଣିଷମାନଙ୍କପାଇଁ ଏକ ଦାୟିତ୍ୱପୂର୍ଣ୍ଣ ବିଭାଗ। ପ୍ରକୃତରେ ପ୍ରବନ୍ଧ ହେଉଛି, ପ୍ରାବନ୍ଧିକଙ୍କର ବିବେକବାଣୀ। ଏହି ବିବେକଟି ବ୍ୟକ୍ତିର କେବଳ ନୁହେଁ; ସମଗ୍ର ସମାଜ ଓ ରାଷ୍ଟ୍ରର ବିବେକ ମଧ୍ୟ। ଏତାଦୃଶ ବିବେକସ୍ନାତ ବଳିଷ୍ଠ ପ୍ରାବନ୍ଧିକ ଜାନକୀବଲ୍ଲଭ ପଟ୍ଟନାୟକ। ତାଙ୍କର ପ୍ରବନ୍ଧର ସଂଖ୍ୟା ହୁଏତ ସୀମିତ ମାତ୍ର ତାହାରି ଭିତରେ ଅଛି ଦୀପ୍ତି। ତାହା ଅନ୍ୟଙ୍କୁ ଆଲୋକିତ କରାଏ, ଚିନ୍ତା କରିବାପାଇଁ ଖୋରାକ ଯୋଗାଏ। ତାଙ୍କର ପ୍ରତ୍ୟେକ ପ୍ରବନ୍ଧରେ ଅଛି ଗୋଟିଏ ଗୋଟିଏ ଭାବ-କେନ୍ଦ୍ର ଓ ସେହି କେନ୍ଦ୍ରକୁ ଆଧାର କରି ପ୍ରବନ୍ଧ-ବଳୟରେ ସଂଯୋଜିତ ହୋଇଯାଇଛି କେତେ କେତେ ବସ୍ତୁ ଓ ସମସ୍ତ ବସ୍ତୁ ହୋଇଯାଇଛି କେନ୍ଦ୍ରାଭିମୁଖୀ। ତାହାରି ଭିତରେ

ଲେଖକଙ୍କ ବ୍ୟକ୍ତିସତ୍ତାଟି ହୋଇଛି ଉତ୍କୀର୍ଣ୍ଣ। ସେହି ବ୍ୟକ୍ତି-ପୁରୁଷଟି ନିଃସଙ୍ଗ ନୁହେଁ, ଏକାକୀ ନୁହେଁ; ସମଗ୍ର ସହିତ ସମନ୍ୱିତ ଏକ ଉଦାର ସମ୍ବେଦନଶୀଳ ପୁରୁଷ, ଯିଏ ଆପଣେଇ ନେଇଛି ସମଗ୍ରର ଭାଷା, ଯାହା ପ୍ରତ୍ୟକ୍ଷ ଭାବରେ ରୂପ ନେଇଯାଇଛି ଓ ସେଥିପାଇଁ ପ୍ରବନ୍ଧ ହୋଇଯାଇଛି ସର୍ବଜନଗ୍ରାହ୍ୟ ଓ ଭାବଦ୍ୟୋତକ। କେବଳ ଭାବଦ୍ୟୋତକ ନୁହେଁ; ସମସ୍ୟାର ସମାଧାନପାଇଁ ପ୍ରେରଣାପ୍ରଦ।

॥ ଏକ ॥

ଜାନକୀବଲ୍ଲଭଙ୍କ ପାରିବାରିକ ସାରସ୍ୱତ ପରମ୍ପରା ହିଁ ହୋଇଛି ତାଙ୍କ ପ୍ରତି ବିଶିଷ୍ଟ ବରଦାନ। ସେହି ବରଦାନରୁ ତାଙ୍କ ଭିତରେ ପ୍ରକାଶ ପାଇଛି ମାତୃଭାଷା ଓ ସାହିତ୍ୟ ପ୍ରତି ଶ୍ରଦ୍ଧା। ସେ ଜାଣନ୍ତି 'ଶ୍ରଦ୍ଧାବାନ୍ ଲଭତେ ଜ୍ଞାନମ୍'। ଜାନକୀବଲ୍ଲଭ ଶ୍ରଦ୍ଧାଶୀଳ ମଣିଷ। ସେ ମଧ୍ୟ ପ୍ରଜ୍ଞାବାନ୍। ଅଥଚ ପ୍ରଜ୍ଞା ଓ ଶ୍ରଦ୍ଧା ପରସ୍ପରର ହୋଇଯାଇଛି ପରିପୂରକ। ସେ ଶ୍ରଦ୍ଧା ପ୍ରକାଶ କରିଛନ୍ତି ଓଡ଼ିଶା ପ୍ରତି, ଓଡ଼ିଶାର ଜନସମାଜ ପ୍ରତି, ଓଡ଼ିଶାର ସଂସ୍କୃତି ଓ ଇଷ୍ଟ ଜଗନ୍ନାଥଙ୍କ ପ୍ରତି। ସେ ମଧ୍ୟ ଶ୍ରଦ୍ଧାଶୀଳ ସମଗ୍ର ଭାରତ ପ୍ରତି। ସେ ଇଂରାଜୀ, ବଙ୍ଗଳା, ହିନ୍ଦୀ ଭାଷାରେ ଦକ୍ଷ କିନ୍ତୁ ଗଭୀର ଶ୍ରଦ୍ଧାଶୀଳ ମାତୃଭାଷା ଓଡ଼ିଆ ପ୍ରତି। ଏହି ଶ୍ରଦ୍ଧା-ଭାବନାରୁ ତାଙ୍କ ଭିତରେ ବିକଶିତ ହୋଇଛି ଜ୍ଞାନ। ଜିଜ୍ଞାସା ହୋଇଛି ଶାଣିତ। ଜିଜ୍ଞାସାରୁ ସେ ବାରମ୍ବାର ଚିନ୍ତା କରିଛନ୍ତି କ'ଣ କଲେ ଓଡ଼ିଶାର ଉନ୍ନତି ହେବ, ଓଡ଼ିଆ ଜାତିର ଉନ୍ନତି ହେବ। କେବଳ ଚିନ୍ତା କରି ନାହାନ୍ତି, ତାହାକୁ କାର୍ଯ୍ୟକାରୀ କରିବାପାଇଁ ଉଦ୍ୟମ କରିଛନ୍ତି, ସଫଳ ମଧ୍ୟ ହୋଇଛନ୍ତି ଅନେକାଂଶରେ। ଏହି ପ୍ରଜ୍ଞାଦୀପ୍ତ ଶ୍ରଦ୍ଧାଶୀଳ ପୁରୁଷ ସ୍ୱାଧୀନତା ପୂର୍ବରୁ ଭାରତର ମୁକ୍ତି-ସଂଗ୍ରାମ ସମ୍ପର୍କରେ ଗଭୀର ଅବହିତ ଥିଲେ, ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ, ଯୁବସୁଲଭ ଉନ୍ମାଦନାରେ ରେଭେନ୍‌ସା କଲେଜରୁ ୟୁନିୟନ୍ ଜ୍ୟାକ୍ ଓହ୍ଲାଇଥିଲେ। ପରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ସେ ରାଜନୀତି ବିଜ୍ଞାନରେ କୃତିତ୍ୱ ସହକାରେ ସ୍ନାତକୋତ୍ତର ଉପାଧି ଲାଭ କରି ଫେରିଆସିଲେ ଓଡ଼ିଶା ଓ ୧୯୫୦ ମସିହାରୁ ସେ ଆରମ୍ଭ କଲେ ସାମ୍ବାଦିକ ଜୀବନ। 'ପ୍ରଜାତନ୍ତ୍ର' ଓ 'Eastern Times'ର ସମ୍ପାଦକ ଦାୟିତ୍ୱ ନେଲେ। ଦୀର୍ଘ ପନ୍ଦର ବର୍ଷ ପର୍ଯ୍ୟନ୍ତ ସେ ସାମ୍ବାଦିକ ଓ ସମ୍ପାଦକ ଭାବରେ କାର୍ଯ୍ୟ କଲେ। ଏହି ସମୟ ହେଲା ତାଙ୍କର ଭବିଷ୍ୟତ ରାଜନୀତିକ ଜୀବନପାଇଁ ପ୍ରସ୍ତୁତିପର୍ବ। ଅନ୍ତର୍ଜାତୀୟ ସମସ୍ୟା ସହିତ ଭାରତବର୍ଷ ତଥା ଓଡ଼ିଶାର ନାନା ସମସ୍ୟା ସମ୍ପର୍କରେ ଅବହିତ ହେଲେ, ଅନୁଧ୍ୟାନ କଲେ ଓ ଲେଖିଲେ 'ପ୍ରଜାତନ୍ତ୍ର'ର ସମ୍ପାଦକୀୟ ତଥା ନାନା ଫିଚରଧର୍ମୀ ପ୍ରବନ୍ଧ। ଏହାହିଁ ହେଲା ତାଙ୍କ ପ୍ରବନ୍ଧ ମାନସର ଆଦ୍ୟ ପରିଚୟ। ପ୍ରବନ୍ଧ ଭିତରେ ସାମ୍ବାଦିକୀ ଶୈଳୀଟି ବେଶ୍ ମାର୍ମିକ ହୋଇଉଠିଲା। ସାମ୍ବାଦିକର ସଂଜୟ-ଦୃଷ୍ଟି ତାଙ୍କର ହେଲା ଶାଣିତ। ସତ୍ୟ ଯେତେ ନିଷ୍ଠୁର ହେଲେ ମଧ୍ୟ ଏତାଦୃଶ ପ୍ରବନ୍ଧମାନଙ୍କରେ ସେ ତାହାକୁ ପ୍ରକାଶ କଲେ। ପ୍ରଜାତନ୍ତ୍ରରୁ ବିଦାୟ ନେଲା ପରେ ସେ 'ପୌରୁଷ' (୧୯୬୭) ପତ୍ରିକା ସମ୍ପାଦନା କଲେ। ସେଥିରେ ମଧ୍ୟ ସେ ଲେଖିଲେ ସମ୍ପାଦକୀୟ ଓ ସମୟେ ସମୟେ ପ୍ରବନ୍ଧ।

ଜାନକୀବଲ୍ଲଭଙ୍କ ବିବିଧ ସାମ୍ବାଦିକୀ ପ୍ରବନ୍ଧ ମଧ୍ୟରେ 'ଛାତ୍ରସମାଜରେ ଶୃଙ୍ଖଳା ରକ୍ଷା' (୧୯୫୨), 'ତାସ ଖେଳର ରାଜା' (୧୯୫୨), 'ଶାସନ ଓ ସହଯୋଗ' (୧୯୫୨), 'ସାମ୍ବାଦିକତାର ଦାୟିତ୍ୱ' (୧୯୫୨), 'ଭାଷା ସମସ୍ୟା'(୧୯୫୨), 'ସଂସ୍କୃତ ଓ ସଂସ୍କୃତି' (୧୯୫୨), 'ବିଶ୍ୱବିଦ୍ୟାଳୟ ଓ ଭାଷା କମିସନ' (୧୯୫୫), 'ଭେଦଗ୍ରସ୍ତ ସମାଜ' (୧୯୫୨), 'ଆଦିବାସୀ କଲ୍ୟାଣ' (୧୯୫୨), 'ଦୁର୍ନୀତିର ପ୍ରତିକାର' (୧୯୫୩), 'ବିପ୍ଲବର ମୂଳଦୁଆ' (୧୯୫୩) 'ନୂତନ ସଂକଳ୍ପର ଦିବସ'(୧୯୬୩), 'ପୁରୁଣା ଗୁରୁ' (୧୯୭୮-ପୌରୁଷ), 'ମିତ୍ରଦ୍ରୋହ', 'ଶ୍ରମଶକ୍ତିର ଜାଗରଣ', 'ଅଭାଗା ଦେଶ' ଆଦି ବିଭିନ୍ନ ସାମ୍ବାଦିକୀ ପ୍ରବନ୍ଧରେ ତାଙ୍କର ଶାଣିତ ଅନ୍ତର୍ଦୃଷ୍ଟି ଓ ସକାରାତ୍ମକ ଦୃଷ୍ଟିକୋଣ ବେଶ୍ ସ୍ପଷ୍ଟ ଓ ମାର୍ଜିତ। ଏହିପରି ଆନ୍ତର୍ଜାତିକ ସମସ୍ୟାକୁ ନେଇ ସେ ରଚନା କରିଛନ୍ତି ବିବିଧ ସମ୍ପାଦକୀୟ ଓ ପ୍ରବନ୍ଧ। ବିଶ୍ୱରାଜନୀତି, କୂଟନୀତି, ବିଜ୍ଞାନ, ଇତିହାସ, ସଂସ୍କୃତି, 'ବିଶ୍ୱଭ୍ରାତୃତ୍ୱ ଓ ସହାବସ୍ଥାନ', 'ଯୁଦ୍ଧର ଧ୍ୱଂସାତ୍ମକ ପରିଣତି', 'ଯୁଦ୍ଧ ନୁହେଁ, ଶାନ୍ତି ଓ ବିଶ୍ୱମାନବିକ ଭାବଧାରା' ଏତାଦୃଶ ପ୍ରବନ୍ଧମାନଙ୍କରେ ପ୍ରତିପାଦିତ ହୋଇଅଛି। ପ୍ରଜାତନ୍ତ୍ରରେ ଆନ୍ତର୍ଜାତିକ ସମୀକ୍ଷାକୁ ସେ ଶ୍ରୀ ସଂଜୟ ଛଦ୍ମନାମରେ ପ୍ରକାଶ କରି ଆପଣାର ସତ୍ୟନିଷ୍ଠତା ଓ ବିଶ୍ୱମାନବିକ ଭାବକୁ ଗୁରୁତ୍ୱ ଦେଇଥିବା ଲକ୍ଷ୍ୟ କରାଯାଏ। ଏତାଦୃଶ ଲେଖାମାନଙ୍କ ମଧ୍ୟରେ 'ଜାତିସଂଘ-ବୃକ୍ଷ ଦେଖି ଅରଣ୍ୟର ଭ୍ରମ' ପ୍ରବନ୍ଧରେ ସେ ଜାତିସଂଘର ମହତ୍ତ୍ୱକୁ ସୂଚାଇଦେବା ସଙ୍ଗେସଙ୍ଗେ ସେକ୍ରେଟାରୀଙ୍କ ମନୋମୁଖୀ କାର୍ଯ୍ୟକୁ ସମାଲୋଚନା କରିଛନ୍ତି କଠୋର ଭାଷାରେ। ସେ ପୁଣି 'ନିରପେକ୍ଷତା ପୃଥିବୀର ଏକ ଶକ୍ତି' ପ୍ରବନ୍ଧରେ ସ୍ପଷ୍ଟ ଭାବରେ ସୂଚେଇ ଦେଇଛନ୍ତି ଯେ ପୃଥିବୀର ତୃତୀୟ ଶକ୍ତି ଭାବରେ ଜନ୍ମ ନେଇଥିବା ନିରପେକ୍ଷ ରାଷ୍ଟ୍ରଗୁଡ଼ିକ ମଧ୍ୟରେ ଏକତା ଓ ଅଙ୍ଗୀକାରବଦ୍ଧତା ନ ରହିଲେ ବିଶ୍ୱଶାନ୍ତି ପ୍ରତିଷ୍ଠା ସମ୍ଭବ ହେବ ନାହିଁ। ଜାନକୀବଲ୍ଲଭ ପୃଥିବୀର ରାଷ୍ଟ୍ରସମୂହକୁ ବିକଶିତ, ବିକାଶଶୀଳ ଓ ଅବିକଶିତ ରାଷ୍ଟ୍ର ଭାବରେ ବିଚାର କରି ସେମାନଙ୍କ ମଧ୍ୟରେ ପାରସ୍ପରିକ ସହଯୋଗ ଓ ବିକଶିତ ରାଷ୍ଟ୍ରମାନଙ୍କ ସହିତ ଐକ୍ୟ ସ୍ଥାପନପାଇଁ ଯେପରି ଆହ୍ୱାନ ଦେଇଅଛନ୍ତି ତାହା ତାଙ୍କର ସଂଜୟ-ଦୃଷ୍ଟିକୁ ଶାଣିତ କରିଦେଇଥାଏ। ନିରପେକ୍ଷତାର ଅର୍ଥ ନୁହେଁ ଯେ ଯାବତୀୟ ଅନ୍ୟାୟ ଅନୀତିକୁ ମାନିନେଇ ଦୂରତା ରକ୍ଷା କରି ରହିଯିବା ଓ ନିଜକୁ ସୁନାପୁଅ ବୋଲାଇବା। ଦୃଢ଼ବିଶ୍ୱାସ ନ ଥିଲେ ଜଣେ ନିରପେକ୍ଷ ହୋଇପାରେନା। ଅନ୍ୟାୟ ପାଖରେ ମୁଣ୍ଡ ନୁଆଁଇବା ମଧ୍ୟ ଯଥାର୍ଥ ନିରପେକ୍ଷତା ନୁହେଁ। ଯେଉଁଯେଉଁ ସମସ୍ୟା ମୁଣ୍ଡ ଟେକି ଉଠୁଛି ତାହାର ସମାଧାନ ପାଇଁ ଦୃଢ଼ ପଦକ୍ଷେପ ନେବା, ନିଜର ନୀତି-ନିର୍ଦ୍ଧାରଣ କରିବା, କୌଣସି ଦେଶର ଅନ୍ୟ ଦେଶ ଉପରେ ଅନ୍ୟାୟ ଆକ୍ରମଣ ଓ ଅନ୍ୟ ଦେଶର ଆଭ୍ୟନ୍ତରୀଣ ସମସ୍ୟା ଉପରେ ହସ୍ତକ୍ଷେପ କରିବାକୁ ଯୁକ୍ତିନିଷ୍ଠ ଭାବରେ ବିରୋଧ କରିବା, ସହାବସ୍ଥାନ ଓ ସହାବସ୍ଥାନ ଉପରେ ଗୁରୁତ୍ୱ ଦେଇ ବିଶ୍ୱଭ୍ରାତୃତ୍ୱ ଓ ବନ୍ଧୁତା ଉପରେ ପ୍ରାଧାନ୍ୟ ଦେବାହିଁ ପ୍ରକୃତ ନିରପେକ୍ଷତା। ଜାନକୀବଲ୍ଲଭ ଜଣେ ସତ୍ୟନିଷ୍ଠ ଓ ବିଚାରବନ୍ତ ସାମ୍ବାଦିକ ଭାବରେ ନିରପେକ୍ଷତାକୁ ବିଚାର କରିଛନ୍ତି ଓ ସେଥିରେ ଭାରତର ଭୂମିକା ପ୍ରତି ଶ୍ରଦ୍ଧାଶୀଳ ହୋଇଉଠିଛନ୍ତି।

ସେ କହନ୍ତି ଯେ ପୃଥିବୀରୁ ଶୀତଳଯୁଦ୍ଧର ଅବସାନ ଘଟିବା ଜରୁରୀ। ନିରପେକ୍ଷ ରାଷ୍ଟ୍ରମାନେ କୌଣସି ସାମରିକ ମେଣ୍ଟଭୁକ୍ତ ନ ହେଲେ ପ୍ରଧାନ ଶକ୍ତିମାନଙ୍କର ବିସ୍ତାର ଉଦ୍ୟମ ବ୍ୟର୍ଥ ହୋଇଯିବ। 'ଆଫ୍ରିକା ଓ ଭାରତ : ଇତିହାସର ଆହ୍ୱାନ' ପ୍ରବନ୍ଧରେ ଉଭୟ ରାଷ୍ଟ୍ରର ପାରମ୍ପରିକ ସମ୍ପର୍କକୁ ଦର୍ଶାଇ ସେ କହନ୍ତି– 'ଯୁଗଯୁଗର ଇତିହାସ ବିଚାର କରି ଭାରତକୁ ନିଜର ସ୍ୱଜନ ଓ କୁଟୁମ୍ବଙ୍କୁ ବାଛି ନେବାକୁ ପଡ଼ିବ ଏବଂ ଏମାନେ ଭାରତ ମହାସାଗରର ଉଭୟ ଦିଗରେ, ଭାରତର ପୂର୍ବ ଓ ପଶ୍ଚିମରେ ପୂର୍ବ ଆଫ୍ରିକା ଓ ଆଫ୍ରିକାର ଅନ୍ୟାନ୍ୟ ରାଷ୍ଟ୍ରଗଣ ଏବଂ ପୂର୍ବରେ ଦକ୍ଷିଣପୂର୍ବ ଏସିଆ ରାଷ୍ଟ୍ରବୃନ୍ଦ ଏହି ଆତ୍ମୀୟସ୍ୱଜନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବା ଆବଶ୍ୟକ। ଭୌଗୋଳିକ ଦୃଷ୍ଟିରୁ ମଧ୍ୟ ବିଚାର କଲେ ଭାରତ ଏଥିପାଇଁ ଏକ ଆଦର୍ଶ ସ୍ଥାନରେ ରହିଛି। ଭାରତୀୟ ନେତୃତ୍ୱ ଏହି ରାଷ୍ଟ୍ରମାନଙ୍କ ସହିତ ଦୃଢ଼ ଅର୍ଥନୈତିକ ଓ ସାଂସ୍କୃତିକ ବନ୍ଧନରେ ଆବଦ୍ଧ ହେବା ବାଞ୍ଛନୀୟ ଏବଂ ସାମରିକ ଦୃଷ୍ଟିରୁ ମଧ୍ୟ ଏମାନେ ଯେପରି ଭାରତ ଉପରେ ନିର୍ଭର କରି ରହିପାରିବେ, ନିର୍ଭୟ ହୋଇ ରହିପାରିବେ, ତାହାର ବାତାବରଣ ଏ ଦେଶ ପକ୍ଷରୁ ସୃଷ୍ଟିହେବା ଉଚିତ। ଏପରି ଉକ୍ତି ଜାନକୀବଲ୍ଲଭଙ୍କ ରାଷ୍ଟ୍ରନାୟକତ୍ୱର ନିଦର୍ଶନ। ଭାରତପ୍ରତି ତାଙ୍କର ମମତ୍ୱବୋଧ ଓ ଭାରତର ଇତିହାସ ପ୍ରତି ସଚେତନତା ତାଙ୍କୁ ଏପରି କ୍ରାନ୍ତିକାରୀ ଅଭିମତ ପ୍ରଦାନ କରିବାପାଇଁ ଅନୁପ୍ରେରିତ କରିଛି। 'ଫିଲିପାଇନ୍ସ୍ – ଗରିବ ଲୋକଙ୍କ ରାଷ୍ଟ୍ରପତି', 'ଲୁମୁମ୍ବା – ଜାତୀୟତାବାଦୀ ଆଫ୍ରିକାର ମହାନ୍ ସହିଦ, 'ଗୋଆ – ଚନ୍ଦ୍ରମା ମାର୍ଜାର ଉପାଖ୍ୟାନ', 'ଗୋଆର ପ୍ରତିକ୍ରିୟା ଓ ପ୍ରତିଧ୍ୱନି', 'ମହାଶୂନ୍ୟ ବିଜୟୀ ଇଉରୀଗାଗାରିନ୍', 'ବ୍ରିଟେନର ରାଣୀ, 'ପ୍ରାଚ୍ୟର ମନୋରମ ଦେଶ – ଥାଇଲାଣ୍ଡ', 'ସାମ୍ବାଦିକତା କ'ଣ କରିପାରେ', 'ଭାରତୀୟ ଆକାଶର ଗୌରବ : ବିମାନ ବାହିନୀ, 'ଭାରତୀୟ ନୌବାହିନୀ : ଏକ ସାଫଲ୍ୟ ଓ ସମୀକ୍ଷା', 'ବିପୁଳ ବିଜୟ : ଅଟଳ ଆତ୍ମବିଶ୍ୱାସ', 'ଭୁଟ୍ଟୋଙ୍କ ପ୍ରାଣଦଣ୍ଡ', 'ପାକିସ୍ତାନ ମୌଳିକ, ଗଣତନ୍ତ୍ରର ପତନ', 'କଳାପାଣିର ଦ୍ୱୀପ', ଆନ୍ଦାମାନ ଓ ନିକୋବର ଆଦି ନାନା ଲେଖାରେ ଜାନକୀବଲ୍ଲଭଙ୍କ ଆନ୍ତର୍ଜାତିକ ଦୃଷ୍ଟି ଓ ବିବିଧ ରାଷ୍ଟ୍ରର ଅନୁଶୀଳନ ବେଶ୍ ମାର୍ମିକ ଓ ଚିନ୍ତାଦ୍ୟୋତକ ହୋଇଥିବା ଦେଖାଯାଏ। ଏସମୟକୁ ସେ ପ୍ରତ୍ୟକ୍ଷ ରାଜନୀତିକୁ ଆସି ନାହାନ୍ତି; ଅଥଚ ରାଜନୀତିକ ସମୀକ୍ଷା ଯେ କେତେ ତାତ୍ତ୍ୱିକ ଓ ତୀକ୍ଷ୍ଣ ତାହା ଏସବୁ ପ୍ରବନ୍ଧରୁ ସୂଚିତ ହୋଇଥାଏ। ସେ ବିଶ୍ୱର ବିଭିନ୍ନ ରାଷ୍ଟ୍ରର ରାଜନୀତି ଓ ସମସ୍ୟା ସମ୍ପର୍କରେ ଆଲୋଚନା କଲାବେଳେ ସର୍ବତ୍ର ତାଙ୍କ ମାନସପଟରେ ଭାରତ ଉଦ୍‌ଭାସିତ ହୋଇଉଠିଛି।

ଜାନକୀବଲ୍ଲଭ ଭାରତର ତଥା ଓଡ଼ିଶାର ଗଣସମସ୍ୟା ସମ୍ପର୍କରେ ରଚନା କରିଛନ୍ତି ଅନେକ ସାମ୍ବାଦିକୀ ପ୍ରବନ୍ଧ। 'ଭିକ୍ଷା ନୁହେଁ ଦୀକ୍ଷା' (୧୯୫୫) ପ୍ରବନ୍ଧରେ ସେ ଭୂଦାନ ପାଇଁ ଓଡ଼ିଶା ଆସୁଥିବା ବିନୋବାଜୀଙ୍କୁ ସ୍ୱାଗତ କରିଛନ୍ତି ଓ ଭୂଦାନକୁ ଭିକ୍ଷା ଭାବରେ ନୁହେଁ; ଏକ ଦୀକ୍ଷା ଭାବରେ ଗ୍ରହଣ କରିବାକୁ କହିଛନ୍ତି। ଓଡ଼ିଶାର ବନ୍ୟା, ପ୍ରଜାଆନ୍ଦୋଳନ, ସୀମା ଆନ୍ଦୋଳନ, କଳାହାଣ୍ଡିର ଦୁର୍ଭିକ୍ଷ, ଛାତ୍ର ଆନ୍ଦୋଳନ, ଆଦି ନାନା ସମସ୍ୟା ଉପରେ ସେ

ଲେଖିଛନ୍ତି ସାମ୍ବାଦିକୀ ପ୍ରବନ୍ଧ। ଜାନକୀବଲ୍ଲଭଙ୍କ ସାମ୍ବାଦିକୀ ପ୍ରବନ୍ଧରୁ ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଦେଲେ ତାଙ୍କର ଏତାଦୃଶ ପ୍ରବନ୍ଧ-ମାନସର ଯଥାର୍ଥ ପରିଚୟ ମିଳିପାରିବ।

ଜାନକୀବଲ୍ଲଭ ଜାଣନ୍ତି ସାମ୍ବାଦିକତା ଓ ସମ୍ବାଦପତ୍ର ଗଣତନ୍ତ୍ରପାଇଁ ଏକାନ୍ତ ଅପରିହାର୍ଯ୍ୟ। ସେ କହନ୍ତି– 'ଗଣତନ୍ତ୍ର ଶାସନର ସାଫଲ୍ୟ ନିର୍ଭର କରେ ସମ୍ବାଦପତ୍ର, ଜନସାଧାରଣ ଓ ସରକାରଙ୍କର ପରସ୍ପର ବିଶ୍ୱାସ ଓ ସମର୍ଥନ ଉପରେ। ସରକାରଙ୍କର ଲୋକଙ୍କ ଦୁଃଖ ପ୍ରତି ଅବହେଳା ଓ ଲୋକଙ୍କର ସରକାରଙ୍କ ସହ ଅସହଯୋଗ ଏ ଦେଶର ଗଣଶାସନରେ ଗୋଟିଏ ଦୋଷ। ନିର୍ଭୀକ ଓ ଦାୟିତ୍ୱସମ୍ପନ୍ନ ସମ୍ବାଦପତ୍ରମାନଙ୍କ ଜରିଆରେ କେବଳ ତାହା ଦୂର ହୋଇପାରେ'।

(ପ୍ରଜାତନ୍ତ୍ର–୨୦.୯.୧୯୫୨)

'ସଂସ୍କୃତ ଓ ସଂସ୍କୃତି' ପ୍ରବନ୍ଧରେ ସେ କହନ୍ତି– 'ସଂସ୍କୃତ ଭାଷାର ଆବଶ୍ୟକତା ନାହିଁ ବୋଲି କହିବା ଯେତିକି ଅନୈତିକ, ସଂସ୍କୃତ ଭାଷା ରାଷ୍ଟ୍ର ଭାଷା ହେଉ ବୋଲି ଦାବି କରିବା ମଧ୍ୟ ସେହିପରି ଗୋଟିଏ ବିଚାରଶୂନ୍ୟ ଦାବି। ସଂସ୍କୃତ ଭାଷାର ଆଧ୍ୟାତ୍ମିକ ବିଭବ ଭାରତର ଗର୍ବ କରିବାର ବସ୍ତୁ। ଏ ଦେଶର ସଂସ୍କୃତିକୁ ଅନାଦର କରି ନୂଆ ଭାରତ ଯେ ଗଢ଼ାଯାଇପାରିବ ନାହିଁ, ଏ କଥା ଆମେ କହୁ ନାହୁଁ। କିନ୍ତୁ ଶରୀରର ଆତ୍ମାପରି ବୈଷୟିକ ଉନ୍ନତିର ଆତ୍ମା ହେଉଛି ଆଧ୍ୟାତ୍ମିକ ବିକାଶ। ତେଣୁ ନୂଆ ଭାରତ ଗଠନ କରିବାକୁ ହେଲେ ଭାରତର ଆତ୍ମାକୁ ଯୁଗେଯୁଗେ ଚିହ୍ନିବାକୁ ହେବ ଏବଂ କୌଣସି ଭାଷା ତା'ର ଅମୂଲ୍ୟ ଶାସ୍ତ୍ରୀୟ ବିଭବ ମଧ୍ୟରେ ଯଦି ସେ ଆତ୍ମାର ପରିଚୟ ଦେଉଥାଏ, ତା'ହେଲା ସଂସ୍କୃତ।

(ପ୍ରଜାତନ୍ତ୍ର–୧୯.୧୧.୧୯୫୨)

ସାମନ୍ତବାଦର ବିଲୋପ ସମ୍ପର୍କରେ ଜାନକୀବଲ୍ଲଭଙ୍କ ଦୃଷ୍ଟିକୋଣ 'ତାସ୍‌ଖେଳର ରାଜା' ପ୍ରବନ୍ଧରେ କିପରି ସ୍ପଷ୍ଟ ଓ ମାର୍ମିକ ତାହା ଦେଖନ୍ତୁ। 'ଆମେ ବାରମ୍ବାର ଦାବି କରିଆସିଛୁ ଯେ କେବଳ ରାଜପ୍ରମୁଖ ପଦ ନୁହେଁ, ପୂର୍ବତନ ରାଜାମାନଙ୍କର ପଦବୀ, ଭତ୍ତା ଆଦି ସମସ୍ତପ୍ରକାର ସୁବିଧା ଜନସାଧାରଣଙ୍କ ଅଗ୍ରଗତିର ପରିପନ୍ଥୀ। ସାମନ୍ତବାଦ ଏ ଦେଶରୁ ସମୂଳେ ନିଶ୍ଚିହ୍ନ ନ ହେଲା ପର୍ଯ୍ୟନ୍ତ ଭାରତୀୟ ଗଣରାଜ୍ୟର ଭବିଷ୍ୟତ ସ୍ୱପ୍ନରେ ହିଁ ରହିଯିବ। ସେ ରାଜା ହୁଅନ୍ତୁ, ରାଜାଧିରାଜ ହୁଅନ୍ତୁ, ଜନସାଧାରଣଙ୍କ ସ୍ୱାର୍ଥ ଓ ହିତ ଦୃଷ୍ଟିରୁ ସେମାନଙ୍କୁ ଅତୀତର ସୁଯୋଗ ଓ ଆଭିଜାତ୍ୟରୁ ବଞ୍ଚିତ ହେବାକୁ ହେବ। ××× ତେଣୁ ଆଜି ଯଦି ଦାବି ହୁଏ ଯେ, ରାଜପ୍ରମୁଖ ପଦ ଲୋପ ହେଉ, ରାଜପଦବୀ ଲୋପ ହେଉ, ଭତ୍ତା ଉଠାଇ ଦିଆଯାଉ, ରାଜାମାନଙ୍କ ଆଇନଗତ ସୁବିଧାକୁ କାଢ଼ି ନିଆଯାଉ, ତା'ହେଲେ ସେ ଦାବି ସମ୍ପୂର୍ଣ୍ଣ ଯୁକ୍ତିସଙ୍ଗତ ଓ ନ୍ୟାୟାନୁମୋଦିତ ଏବଂ ଏ ଦେଶର ମୃତ ଓ ଜୀବିତ, ଅଗଣିତ ଅତ୍ୟାଚାରିତ ଜନଶ୍ରେଣୀର ଲୋତକ-ସମର୍ଥିତ (୧୯୫୨)। ଆଉ ବେଶୀ ଦୃଷ୍ଟାନ୍ତର ଆବଶ୍ୟକତା ନାହିଁ। ଜାନକୀବଲ୍ଲଭ ଯେତେ ସମ୍ପାଦକୀୟ ଓ ଫିଚର୍ ଲେଖିଛନ୍ତି ସବୁଗୁଡ଼ିକ ତାଙ୍କ ଜ୍ଞାନ ଓ ମାନବତାବାଦୀ ଆଦର୍ଶର ପ୍ରତିଧ୍ୱନି। ସର୍ବତ୍ର ଫୁଟିଉଠିଛି ତାଙ୍କର ଭାରତୀୟ

ଜାତୀୟ ମାନସିକତା। ସର୍ବତ୍ର ଅଛି ସକାରାତ୍ମକ ଗଠନମୂଳକ ଚିନ୍ତା। ହୁଏତ ଏସବୁ ପ୍ରବନ୍ଧ ତାତ୍‌କାଳିକତାର ଭିତ୍ତି ଉପରେ ଆଧାରିତ ମାତ୍ର ଅଧିକାଂଶ ପ୍ରବନ୍ଧରେ ଅଛି ତାତ୍‌କାଳିକତା ମଧ୍ୟ ଦେଇ ଚିରନ୍ତନର ଦ୍ୟୋତନା। ଏଥିପାଇଁ ଏହି ପ୍ରବନ୍ଧଗୁଡ଼ିକ ଜାନକୀବଲ୍ଲଭଙ୍କ କ୍ଷମତା-ରାଜନୀତି ବା ପ୍ରତ୍ୟକ୍ଷ ରାଜନୀତିକୁ ଆସିବା ପୂର୍ବରୁ ରଚିତ ହୋଇଥିବାରୁ ସେସବୁଥିରେ ଅଛି ତାଙ୍କର ସ୍ୱାଧୀନ ଚିନ୍ତାର ଅଭିବ୍ୟକ୍ତି। ସର୍ବତ୍ର କିନ୍ତୁ ଭାରତୀୟ ସାଂସ୍କୃତିକ ମାନସିକତା ଓ ସମ୍ବେଦନଶୀଳ ମାନବିକ ଦୃଷ୍ଟିକୋଣ ଉଚ୍ଚକିତ। ଏଥିରୁ ଏତିକି ପ୍ରମାଣିତ ହୁଏ ଯେ ଜାନକୀବଲ୍ଲଭଙ୍କ ସାମ୍ବାଦିକ ଜୀବନ ପରବର୍ତ୍ତୀ ଯେଉଁ ରାଜନୀତିକ ଜୀବନ ଆରମ୍ଭ ହେଲା ଏବଂ ଓଡ଼ିଶାରେ ତଥା ଭାରତବର୍ଷରେ ଯେଉଁ ରାଷ୍ଟ୍ରୀୟ ବ୍ୟକ୍ତିତ୍ୱର ବିକାଶ ଘଟିଲା ତାହାର ପୃଷ୍ଠଭୂମି ଯେ ସାମ୍ବାଦିକ ଜୀବନ– ଏହି ସତ୍ୟକୁ ଅସ୍ୱୀକାର କରିହୁଏ ନାହିଁ। ସାମ୍ବାଦିକର ସାମାଜିକ ଓ ରାଷ୍ଟ୍ରୀୟ ଦାୟିତ୍ୱବୋଧ ଓ ସତ୍ୟ ପ୍ରକାଶ କରିବାର ସାହସିକତା ତାଙ୍କୁ ରାଜନୀତିକ ଜୀବନରେ ଯେ ଯଥେଷ୍ଟ ପ୍ରେରଣା ଦେଉଛି; ନିଃସନ୍ଦେହ।

॥ ଦୁଇ ॥

ଜାନକୀବଲ୍ଲଭ ସାମ୍ବାଦିକ ଜୀବନରୁ ଅବ୍ୟାହତି ନେଇ ପ୍ରବେଶ କଲେ ରାଜନୀତିକ ଜୀବନରେ। ସେ ଜାଣନ୍ତି ରାଜନୀତିକ ଜୀବନ ନିଷ୍କଣ୍ଟକ ନୁହେଁ; କଣ୍ଟକିତ। ତେବେ ତାଙ୍କ ଭିତରେ ସାମ୍ବାଦିକ ଜୀବନର ଯେଉଁ ଅନ୍ୱେଷା ଓ ଜିଜ୍ଞାସା କ୍ରମଶଃ ଘନୀଭୂତ ହୋଇଥିଲା ତାହାହିଁ ତାଙ୍କର ହେଲା ମାର୍ଗ ପ୍ରଦର୍ଶକ। ରାଜନୀତିକ ଜୀବନରେ ସେ ବରଣ କରିନେଲେ ଓଡ଼ିଶାର ସେବା, ଓଡ଼ିଶାର ସର୍ବାଙ୍ଗୀଣ ଉନ୍ନତି, ଓଡ଼ିଆ ଅସ୍ମିତାର ପ୍ରତିଷ୍ଠା। ଏହି ଜୀବନକୁ ବରଣ କରିନେବା ପୂର୍ବରୁ ସେ ଗଭୀର ଭାବରେ ଅବହିତ ହୋଇଥିଲେ ଓଡ଼ିଶାର ଇତିହାସ ଓ ଐତିହ୍ୟ ସମ୍ପର୍କରେ, ଓଡ଼ିଶାର କୃଷିଭିତ୍ତିକ ସମାଜ ଓ ସଂସ୍କୃତି ବିଷୟରେ, ଓଡ଼ିଶାର ଧର୍ମ ଧାରଣା ଓ ଓଡ଼ିଶାର ଲୋକଙ୍କ ମାତୃଭୂମିପାଇଁ ଆତ୍ମବଳିଦାନ ପ୍ରସଙ୍ଗରେ। ଓଡ଼ିଶାରେ ଜୈନ, ବୌଦ୍ଧ ଓ ଶେଷରେ ବୈଷ୍ଣବ ଧର୍ମ ଓ ଶ୍ରୀଜଗନ୍ନାଥଙ୍କ ବିଶ୍ୱତୋମୁଖୀ ଦର୍ଶନ ବିଷୟରେ ମଧ୍ୟ ସେ ଅବହିତ ହୋଇଥିଲେ। ନିଜେ ଜଣେ ସଂସ୍କୃତ ବିଦ୍ୱାନ୍ ହୋଇଥିବାରୁ ଭାରତର ଅମୂଲ୍ୟଗ୍ରନ୍ଥ ବେଦବେଦାନ୍ତ, ମୀମାଂସା, ସଂହିତା, ଗୀତା, ଭାଗବତ ଆଦି ଧର୍ମଗ୍ରନ୍ଥ ସହିତ ବିବିଧ ପୁରାଣ-ସାହିତ୍ୟର ମୁଗ୍ଧ ପାଠକ ଥିଲେ ସେ। ସାହିତ୍ୟିକ ଭାବରେ ତାଙ୍କୁ ମାଘ, ଶ୍ରୀହର୍ଷ, କାଳିଦାସ ଯେପରି ଆକର୍ଷଣ କରିଥିଲେ, ସେହିପରି ମଧ୍ୟ ଜୟଦେବ, ଶଙ୍କରାଚାର୍ଯ୍ୟ ଓ ଭର୍ତ୍ତୃହରି ପ୍ରମୁଖ ଆକର୍ଷଣ କରିଥିଲେ। କେବଳ ଧର୍ମଗ୍ରନ୍ଥ ନୁହେଁ ବା ଧର୍ମପୁରୁଷ ନୁହନ୍ତି ଓଡ଼ିଶାର ଆଦିକବି ସାରଳା ଦାସ, ପରବର୍ତ୍ତୀ ଜଗନ୍ନାଥ ଦାସ ମଧ୍ୟ ତାଙ୍କୁ ବିଶେଷ ଭାବରେ ମୁଗ୍ଧ କରିଥିଲେ। ସେ ପୁଣି ସଦାସର୍ବଦା ନୈତିକ ଋଣକୁ ସ୍ୱୀକାର କରିଛନ୍ତି। ଯେଉଁ ସମସ୍ତ ଜାତୀୟବୀର ତଥା ଧର୍ମୀୟ ଓ ସାଂସ୍କୃତିକ ବୀରମାନଙ୍କୁ ମାନିଛନ୍ତି ସେମାନଙ୍କଠାରୁ ଗ୍ରହଣ କରିଥିବା ନୈତିକ ଋଣପ୍ରତି ମାନ୍ୟତା ପ୍ରଦାନ କରିଛନ୍ତି। ଏହି ସୂତ୍ରରେ ସେ ଯେପରି ଶ୍ରୀରାମକୃଷ୍ଣ ପରମହଂସଦେବ, ସ୍ୱାମୀ ବିବେକାନନ୍ଦ ଓ ଶ୍ରୀଅରବିନ୍ଦଙ୍କ ଆଦର୍ଶ ବ୍ୟକ୍ତିତ୍ୱକୁ ସମ୍ମାନ ଦେଇଛନ୍ତି ସେହିପରି ମଧ୍ୟ ମହାତ୍ମାଗାନ୍ଧୀଙ୍କ ଦିବ୍ୟ ମାନବିକ ବ୍ୟକ୍ତିତ୍ୱ ପ୍ରତି ଶ୍ରଦ୍ଧାଶୀଳ

ହୋଇଉଠିଛନ୍ତି । ନେତାଜୀ ସୁଭାଷ ବୋଷ, ପଣ୍ଡିତ ଜବାହରଲାଲ ନେହରୁ, ଲାଲବାହାଦୁର ଶାସ୍ତ୍ରୀ, ଇନ୍ଦିରା ଗାନ୍ଧୀ ପ୍ରମୁଖଙ୍କପ୍ରତି ମଧ୍ୟ ସେ ଆପଣାରଶ୍ରଦ୍ଧା ନିବେଦନ କରିଅଛନ୍ତି ।

ଜାନକୀବଲ୍ଲଭ ରାଜନୀତିରେ ପ୍ରବେଶ କଲେ । ୧୯୭୧ ମସିହାରେ ସେ କଟକ ଲୋକସଭା ଆସନରୁ ସାଂସଦ ନିର୍ବାଚିତ ହେଲେ । ୧୯୭୩ରେ ସେ କେନ୍ଦ୍ରରେ ମନ୍ତ୍ରୀ ହେଲେ । ପରବର୍ତ୍ତୀ ସମୟରେ ସେ ଓଡ଼ିଶାକୁ ମୁଖ୍ୟମନ୍ତ୍ରୀହୋଇ ଆସିଛନ୍ତି ଏବଂ ପରେ ମୁଖ୍ୟମନ୍ତ୍ରୀ, ବିରୋଧୀଦଳ ନେତା ଆଦି ବହୁ ଗୁରୁତ୍ୱପୂର୍ଣ୍ଣ କ୍ଷମତାରେ ଅଧିଷ୍ଠିତ ହୋଇଛନ୍ତି । ଅଥଚ ତାଙ୍କୁ ରାଜନୀତି ଓ କ୍ଷମତା ଗ୍ରାସ କରିପାରିଲା ନାହିଁ । ତାଙ୍କ ଭିତରେ ଥିବା ସମ୍ବେଦନଶୀଳ ମଣିଷପଣିଆଟି ତାଙ୍କୁ ରାଜନୀତିରୁ ଉର୍ଦ୍ଧ୍ୱରେ ରଖିଲା । ସେ ନିରାଡ଼ମ୍ବର, ସରଳ ଓ ନିଷ୍କପଟ । ତାଙ୍କୁ ଅନେକ ସମୟରେ ଶତ୍ରୁମାନେ ଘେରି ରହିଲେ ମାତ୍ର ତାଙ୍କର ଈଶ୍ୱରବିଶ୍ୱାସ ଏବଂ ଶ୍ରଦ୍ଧାମୟ ବ୍ୟକ୍ତିତ୍ୱ ନିକଟରେ ସମସ୍ତେ ପରାଜିତ ହେଲେ । ଅନ୍ତିମ ପର୍ଯ୍ୟାୟରେ ସେ ଆସାମର ରାଜ୍ୟପାଳ ହେଲେ, ଆସାମ ଓ ଓଡ଼ିଶାର ସାଂସ୍କୃତିକ ସେତୁ ବନ୍ଧନରେ ପ୍ରମୁଖ ସୂତ୍ରଧର ହେଲେ, ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳାଧିପତି ହେଲେ, ସର୍ବତ୍ର ସେ ବିଚ୍ଛୁରିତ କରିଦେଲେ ତାଙ୍କର ଶୁଦ୍ଧପୂତ ଜ୍ଞାନ ଓ ଅନାବିଳ ଶ୍ରଦ୍ଧା । ରାଜନୀତିର ଜଟିଳ ଜୀବନ ବିତାଇଥିଲେ ମଧ୍ୟ ସେ ତାଙ୍କର ସାରସ୍ୱତ ସାଧନାରୁ ବିରତ ହୋଇ ନାହାନ୍ତି । ସେ ଅନୁବାଦ କରିଛନ୍ତି ଭର୍ତ୍ତୃହରିଙ୍କ ପ୍ରସିଦ୍ଧ କାବ୍ୟ– ଶୃଙ୍ଗାରଶତକ, ବୈରାଗ୍ୟଶତକ ଓ ନୀତିଶତକ । ଅନୁବାଦ ମଧ୍ୟ କରିଛନ୍ତି ବଙ୍କିମଚନ୍ଦ୍ରଙ୍କର ସମସ୍ତ ଉପନ୍ୟାସ । ସଂସ୍କୃତ ଭାଗବତର ଗଦ୍ୟାନୁବାଦ ତାଙ୍କ ପ୍ରତିଭାର ଅନ୍ୟତମ ବଳିଷ୍ଠ ନିଦର୍ଶନ । ସେ ମଧ୍ୟ ରଚନା କରିଛନ୍ତି ଗୌତମବୁଦ୍ଧଙ୍କ ଜୀବନୀ । ତାଙ୍କ ପ୍ରଜ୍ଞା ଓ ଗଦ୍ୟଶୈଳୀର ସାର୍ଥକ ନିଦର୍ଶନ ହୋଇଛି 'ରାମାୟଣ' ଓ 'ମହାଭାରତ' । ଏତଦ୍‌ଭିନ୍ନ ତାଙ୍କ ମନୀଷା ଓ ମନନଶୀଳତାର ଦଲିଲ ହୋଇଯାଇଛି 'ସ୍ୱପ୍ନ ଓ ସଂକଳ୍ପ' ଏବଂ 'ନିର୍ବାଚିତ ପ୍ରବନ୍ଧ' ସଙ୍କଳନ ଦୁଇଟି । ହୁଏତ ରାଜନୀତିକ ଜାନକୀବଲ୍ଲଭଙ୍କର ମୃତ୍ୟୁ ହୋଇଯାଇପାରେ ମାତ୍ର ତାଙ୍କର ସାରସ୍ୱତ କୃତି ଓ କୀର୍ତ୍ତି ତାଙ୍କୁ ଅମର କରି ରଖିବ, ବିଶେଷତଃ ତାଙ୍କର ଚିନ୍ତାପୂର୍ଣ୍ଣ ସଂକଳ୍ପବଦ୍ଧ ପ୍ରବନ୍ଧଗୁଡ଼ିକ ତାଙ୍କ ସାରସ୍ୱତ ମନୀଷାର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରି ଚିର ଭାସ୍ୱର ହୋଇରହିବ ।

॥ ତିନି ॥

ଜାନକୀବଲ୍ଲଭଙ୍କ ପ୍ରବନ୍ଧ-ମାନସର ପ୍ରଥମ କ୍ରାନ୍ତିକାରୀ ନୈବେଦ୍ୟ 'ସ୍ୱପ୍ନ ଓ ସଂକଳ୍ପ' (୧୯୮୯) । ଏହାର ଭୂମିକାରେ କୁହାଯାଇଛି– 'ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଏକାଧାରରେ ପ୍ରଖ୍ୟାତ ଜନନେତା, ଉତ୍ତମ ପ୍ରଶାସକ, ବିଚକ୍ଷଣ ରାଜନୀତିଜ୍ଞ, ସୁକବି ଓ ସାହିତ୍ୟିକ, ଅନୁସନ୍ଧିତ୍ସୁ ଐତିହାସିକ ତଥା ପ୍ରବୀଣ ସାମ୍ବାଦିକ ରୂପେ ସୁପରିଚିତ । ବିଗତ ଦଶ ବର୍ଷ ମଧ୍ୟରେ ସେ ବିଭିନ୍ନ ସମୟରେ ଓ ସ୍ଥାନରେ ଯେଉଁ ବକ୍ତୃତା ଦେଇଥିଲେ, ସେ ଭିତରୁ କେତେକ ଓଡ଼ିଶା ସରକାରଙ୍କର ମୁଖପତ୍ର 'ଉତ୍କଳ ପ୍ରସଙ୍ଗ'ରେ ନିରବଚ୍ଛିନ୍ନ ଭାବରେ ଅଗ୍ରଲେଖା ହିସାବରେ ପ୍ରକାଶ ପାଇଆସିଛି । ସେ ଲେଖାମାନଙ୍କରୁ ନିର୍ବାଚିତ ଏକଷଠିଟି ପ୍ରବନ୍ଧ ଏବେ ଗ୍ରନ୍ଥାକାରରେ ପ୍ରକାଶିତ ହେଉଛି । ପ୍ରତ୍ୟକ୍ଷ ରାଜନୀତିର ଘୂର୍ଣ୍ଣି ଭିତରେ ରହିଯିବା ଫଳରେ

ଜାନକୀବଲ୍ଲଭ ହୁଏତ ଲେଖିବାର ସୁଯୋଗ ପାଇ ନାହାନ୍ତି, ମାତ୍ର ତାଙ୍କର ଅଧ୍ୟୟନ ଓ ଅନୁଭବ-ସ୍ନିଗ୍ଧ ବକ୍ତୃତା ଓ ଅଭିଭାଷଣ ହୋଇଯାଇଛି ଗୋଟିଏ ଗୋଟିଏ ଭିନ୍ନ ସ୍ୱାଦର ପ୍ରବନ୍ଧ। ଯେହେତୁ ସେସବୁ ବକ୍ତୃତା; ତେଣୁ ସେସବୁ ହୋଇଯାଇଛି ବକ୍ତବ୍ୟଧର୍ମୀ। ବେଶ୍ ସ୍ୱଚ୍ଛ ଓ ଶ୍ରୋତା ବା ପାଠକର ହୃଦୟକୁ ଏକକ ବିନ୍ଦୁରେ ଆଘାତ ଦେଇ ବିମୋହିତ କରିଦେଲା ଭଳି ଶୈଳୀ। ସର୍ବତ୍ର ଅଛି ଐତିହାସିକର ଅନୁସନ୍ଧିତ୍ସା ଓ ସାମ୍ବାଦିକର ପ୍ରକାଶଭଙ୍ଗୀ। ଏହି ପ୍ରବନ୍ଧ ପୁସ୍ତକରେ ଅଛି ଯୁଗେଯୁଗେ ଓଡ଼ିଶା ଶୀର୍ଷକରେ ସାତୋଟି ପ୍ରବନ୍ଧ। ଏହି ପ୍ରସଙ୍ଗର ପ୍ରଥମ ପ୍ରବନ୍ଧ 'ଶ୍ରୀଜଗନ୍ନାଥ ଓ ଓଡ଼ିଶା'। ଏଥିରେ ସେ ସ୍ପଷ୍ଟ କହିଛନ୍ତି– 'ଜଗନ୍ନାଥଙ୍କୁ ଛାଡ଼ି ଓଡ଼ିଶା ହୋଇପାରିବ ନାହିଁ। ଜଗନ୍ନାଥଙ୍କ ବିନା ଓଡ଼ିଶାର ଅସ୍ତିତ୍ୱ ନାହିଁ।' ଦେହର ଆତ୍ମା ପରି ଜଗନ୍ନାଥ ହେଉଛନ୍ତି ଓଡ଼ିଶାର ସର୍ବସ୍ୱ।" (ପୃ.୩) ପୁନଶ୍ଚ ସେ କହନ୍ତି– 'ହଜାର ହଜାର ବର୍ଷ ଧରି ଜଗନ୍ନାଥଙ୍କୁ କେନ୍ଦ୍ର କରି ଯେଉଁ ଧର୍ମ ଗଢ଼ିଉଠିଚି, ପୃଥିବୀରେ ତା'ର ପଟ୍ଟାନ୍ତର ନାହିଁ। ଉଦାରତାରେ ତାହା ସମସ୍ତ ଧର୍ମକୁ ଆପଣାର କରି 'ବସୁଧୈବ କୁଟୁମ୍ବକମ୍' ନୀତିର ଯଥାର୍ଥତା ପ୍ରତିପାଦନ କରିଛି। ଆଦିମ କାଳରୁ ଏ ଭାରତବର୍ଷରେ ଯେତେ ଧର୍ମ, ଯେତେ ସଭ୍ୟତା ଶିରଃ ଉତ୍ତୋଳନ କରିଛି, ସବୁ ଜଗନ୍ନାଥଙ୍କ ଦେହରେ ଲୀନ ହୋଇଯାଇଛି।' (ପୃ.୩) କିମ୍ବଦନ୍ତୀ ଓ ଇତିହାସରେ ଜଗନ୍ନାଥ କିପରି ଅଖଣ୍ଡ ପ୍ରଭାବ ପକାଇଛନ୍ତି, ଜଗନ୍ନାଥ କିପରି ବୌଦ୍ଧ ଅବତାର ହୋଇଛନ୍ତି ଓ ଯବନ ଭକ୍ତଙ୍କର ପ୍ରିୟ ହୋଇ ଜାତି ବର୍ଣ୍ଣ ଧର୍ମର ଊର୍ଦ୍ଧ୍ୱକୁ ଚାଲିଯାଇ ମାନବ-ମୈତ୍ରୀର ଉଦାର ବାହୁ ବିସ୍ତାର କରିଛନ୍ତି ସେ ସମ୍ପର୍କରେ ପ୍ରାବନ୍ଧିକ ଆବେଗଦୀପ୍ତ ଭାବରେ ପ୍ରକାଶ କରିଛନ୍ତି। ଜାନକୀବଲ୍ଲଭ ଓଡ଼ିଶା ମାଟିର ଯୋଗ୍ୟ ସନ୍ତାନ। ସେ ଭଲ ପାଇଛନ୍ତି ଓଡ଼ିଶାକୁ, ଓଡ଼ିଶାର ଇଷ୍ଟ ଜଗନ୍ନାଥଙ୍କୁ, ଅନୁଧ୍ୟାନ କରିଛନ୍ତି ଓଡ଼ିଶାର ଇତିହାସକୁ। ତେଣୁ 'ଇତିହାସ ଓ ଓଡ଼ିଶା' ପ୍ରବନ୍ଧରେ ସେ ଭୌଗୋଳିକ ଓଡ଼ିଶା ନୁହେଁ; ସାଂସ୍କୃତିକ ଓଡ଼ିଶାର ବ୍ୟାପ୍ତି ଖୋଜିଛନ୍ତି। ତାଙ୍କ ମତରେ, 'ଭାରତ ବାହାରେ ବିଶେଷତଃ ଦକ୍ଷିଣ-ପୂର୍ବ ଏସିଆରେ ଭାରତୀୟ ସଂସ୍କୃତିର ବାହକ ଭାବରେ ଓଡ଼ିଶାର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି। (ପୃ.୮) ଶ୍ରୀଲଙ୍କା, ବ୍ରହ୍ମଦେଶ, ଫିଲିପାଇନ୍‌ସ, ଇଣ୍ଡୋନେସିଆ, ଚୀନ ପ୍ରଭୃତି ନାନା ଦେଶରେ ଓଡ଼ିଶାର ସଂସ୍କୃତି କିପରି ପ୍ରଭାବ ପକାଇଥିଲା, କଳିଙ୍ଗର ଶିଳ୍ପ, କଳା, ଭାସ୍କର୍ଯ୍ୟର କିପରି ପ୍ରଭାବ ପଡ଼ିଥିଲା, ସେ ସମ୍ପର୍କରେ ଉଲ୍ଲେଖ କରି ଓଡ଼ିଶାର ରାଜନୀତିକ ଇତିହାସର ଧାରାବାହିକ ପରମ୍ପରାକୁ ଅନୁସରଣ କରି କୌଣସି ଗବେଷଣା ହୋଇ ନାହିଁ ବୋଲି ସେ କ୍ଷୋଭ ପ୍ରକାଶ କରିଅଛନ୍ତି। ଏହିପରି ସେ 'ଓଡ଼ିଶାର ଗର୍ବ ଓ ଗୌରବ : କୋଣାର୍କ' ପ୍ରବନ୍ଧରେ କହନ୍ତି– 'କୋଣାର୍କ ହେଉଛି ଓଡ଼ିଶାର ଗର୍ବ ଓ ଗୌରବର କ୍ଷେତ୍ର।' (ପୃ.୧୩) କୋଣାର୍କ କ୍ଷେତ୍ରର ସୁରକ୍ଷା ଓ ବିକାଶ ଉପରେ ସେ ଗୁରୁତ୍ୱ ଦେଇଛନ୍ତି। 'ଓଡ଼ିଆ ଜାତୀୟତାର ବୈଶିଷ୍ଟ୍ୟ ପ୍ରବନ୍ଧରେ ସେ ଐତିହାସିକ ଆର୍ନଲଡ ଟୟନବୀଙ୍କ ଉକ୍ତି ସହିତ ସହମତି ପ୍ରକାଶ କରି କହନ୍ତି– 'କୌଣସି ଜାତିର ଭୌଗୋଳିକ ଅବସ୍ଥିତିକୁ ନେଇ ନୁହେଁ, ତା'ର ସାମାଜିକ ଓ ସାଂସ୍କୃତିକ ଦୃଷ୍ଟିରୁ ଆଲୋଚନା ହେବା ଏକାନ୍ତ ଆବଶ୍ୟକ'। ଏହି ପ୍ରବନ୍ଧରେ ସେ ମତବ୍ୟକ୍ତ କରନ୍ତି ଯେ ଓଡ଼ିଶାର ପ୍ରାକୃତିକ ସମ୍ପଦର ଉପଯୁକ୍ତ ବିନିଯୋଗ ଓ ବିକାଶ,

ସମନ୍ୱୟ, ପ୍ରତିଯୋଗିତା ଓ ସୃଷ୍ଟିଶକ୍ତିର ସ୍ମରଣଦ୍ୱାରା ଜାତିର ପ୍ରଗତି ସମ୍ଭବ ହେବ। ପ୍ରାଚୀନ କବି ଓ ଓଡ଼ିଶାର ବରେଣ୍ୟ କବିମାନେ ଓଡ଼ିଶାକୁ ଭାରତ ପଦ୍ମଫୁଲର ପାଖୁଡ଼ା ବୋଲି କହିଅଛନ୍ତି। ଏହି ପ୍ରବନ୍ଧରେ ସେ ଜୋର୍ ଦେଇଛନ୍ତି ମାତୃଭାଷା ଉପରେ। ସେ କହନ୍ତି– 'ଓଡ଼ିଶାର ଭାଷା, ସାହିତ୍ୟ, ସ୍ୱାଭିମାନକୁ ଆମେ ସବୁବେଳେ ବଳିଷ୍ଠ କରିବାପାଇଁ ସଂକଳ୍ପବଦ୍ଧ ହେବା ଉଚିତ। ଭାଷା ଓ ସାହିତ୍ୟ ସେବା ହେଉଛି ପ୍ରତ୍ୟେକ ମଣିଷର କର୍ତ୍ତବ୍ୟ। ନିଜ ଜନନୀର ସେବା ଆମର ଯେପରି କର୍ତ୍ତବ୍ୟ, ସେହିପରି ଭାବରେ ମାତୃଭାଷାର ସେବା କରିବା ଆମ୍ଭମାନଙ୍କର ଧର୍ମ।' (ପୃ.୨୦)

ଜାନକୀବଲ୍ଲଭ ମାତୃଭାଷା ଓଡ଼ିଆ ଉପରେ ଦେଇଛନ୍ତି ପ୍ରାଧାନ୍ୟ। ମୁଖ୍ୟମନ୍ତ୍ରୀ ବେଳେ ସେ ମଧ୍ୟ ସରକାରୀ କାର୍ଯ୍ୟ ଓଡ଼ିଆ ଭାଷାରେ କରାଯିବାପାଇଁ ଆଦେଶ ଦେଇଛନ୍ତି। ମାତ୍ର ଆମର ମାନସିକତା ହୋଇଯାଇଛି ମାତୃଭାଷା ବିରୋଧୀ। କିପରି ଏହି ମନୋଭାବକୁ ଦୂର କରି ମାତୃଭାଷାର ଉନ୍ନତିପାଇଁ ସମସ୍ତେ ସଂକଳ୍ପ ନେବେ ସେଥିପାଇଁ ସେ ଅନେକ ସୁଚିନ୍ତିତ ପରାମର୍ଶ ଦେଇଅଛନ୍ତି। ସେ ମଧ୍ୟ ଓଡ଼ିଆ ଜାତିର ବୈଶିଷ୍ଟ୍ୟରୂପେ ଓଡ଼ିଆ ଜାତିର ସଂସ୍କୃତିକୁ ମାନ୍ୟତା ଦେଇଛନ୍ତି। ଓଡ଼ିଶାରେ, ଓଡ଼ିଶା ବାହାରେ, ପ୍ରବାସୀ ଓଡ଼ିଆଙ୍କ ଭିତରେ ଓଡ଼ିଆ ଭାଷା ଓ ଓଡ଼ିଆ ସଂସ୍କୃତିର ସୁରକ୍ଷା ଏବଂ ପ୍ରସାରପାଇଁ ପରାମର୍ଶ ଦେଇଛନ୍ତି। ଯେମିତି ମଧୁସୂଦନ ଦାସ ଓ ଉତ୍କଳମଣି ଗୋପବନ୍ଧୁ କହିଥିଲେ ସେହିପରି ଜାନକୀବଲ୍ଲଭ କହିଛନ୍ତି ଯେ ଆମେ ସମସ୍ତେ ପ୍ରଥମେ ଭାରତୀୟ ଓ ପରେ ଓଡ଼ିଆ। ଆମେ ଭାରତୀୟ ହେବାକୁ ଯାଇ ଆମର ଅସ୍ମିତା ହରାଇଦେବା ଠିକ୍ ନୁହେଁ। ଆମେ ଆମ ରାଜ୍ୟକୁ ଭଲ ପାଇଲେ, ଭାଷାକୁ ଓ ସଂସ୍କୃତିକୁ ଭଲ ପାଇଲେ ପ୍ରକୃତ ଭାରତୀୟ ହୋଇପାରିବା।

ଓଡ଼ିଆ ଭାଷା, ଓଡ଼ିଆ ଜାତୀୟତା ଓ ସଂସ୍କୃତି, ଓଡ଼ିଶାର ସର୍ବାଙ୍ଗୀଣ ବିକାଶ କଥା କହିସାରିଲାପରେ 'ଭାରତୀୟ ଯୁଗପୁରୁଷ'ଙ୍କ ସମ୍ପର୍କରେ ଦୃଷ୍ଟି ଆକର୍ଷଣ କରିଛନ୍ତି। ତାଙ୍କ ମତରେ ଯେଉଁ ଯୁଗପୁରୁଷମାନେ ଏ ଦେଶକୁ ଗଢ଼ିଛନ୍ତି, ନୂତନ ଆଲୋକ ଦେଇଛନ୍ତି, ସେମାନଙ୍କୁ ଭୁଲିଯିବା ଉଚିତ ନୁହେଁ। ସେମାନେ ଏହି ମହାଜାତିର ପ୍ରେରଣା, ଘନ ଅନ୍ଧକାର ଭିତରେ ଆଲୋକବର୍ତ୍ତିକା। ଜାନକୀବଲ୍ଲଭ ଏହି ମହାନ୍ ଯୁଗପୁରୁଷଙ୍କ ଭିତରେ ପ୍ରଥମ ମାନ୍ୟତା ଦେଇଛନ୍ତି ଗୌତମ ବୁଦ୍ଧଙ୍କୁ। ବୁଦ୍ଧ ଭାରତର ଶ୍ରେଷ୍ଠ ସନ୍ତାନ। ସେ କହନ୍ତି– 'ଯେକୌଣସି ବ୍ୟକ୍ତି ସଂକଳ୍ପ ଓ ସାଧନା ମାଧ୍ୟମରେ ବୁଦ୍ଧ ହୋଇପାରିବ।' ବୁଦ୍ଧ ଗଣତନ୍ତ୍ର ଓ ବିଶ୍ୱଶାନ୍ତିର ପ୍ରଥମ ବାର୍ତ୍ତାବହ। ଉନବିଂଶ ଶତାବ୍ଦୀର ରାମକୃଷ୍ଣ ପରମହଂସଦେବ ଓ ସ୍ୱାମୀ ବିବେକାନନ୍ଦଙ୍କ ପ୍ରତି ସେ ଜଣାଇଛନ୍ତି ଅନ୍ତରର ମୁଗ୍ଧ ଅଭିନନ୍ଦନ। ସେ ମଧ୍ୟ 'ଓଡ଼ିଶାରେ ଶ୍ରୀଚୈତନ୍ୟ' ପ୍ରସଙ୍ଗରେ ଶ୍ରୀଚୈତନ୍ୟଙ୍କର ପ୍ରେମଧର୍ମ ଓ ମାନବମୈତ୍ରୀ ଧର୍ମର ପ୍ରଶଂସା କରିଅଛନ୍ତି। 'ମହାମାନବର ଧରାବତରଣ' ପ୍ରବନ୍ଧରେ ମହାତ୍ମାଗାନ୍ଧୀଙ୍କ ବ୍ୟକ୍ତିତ୍ୱ, ଭାରତର ମୁକ୍ତିପାଇଁ ସଂଗ୍ରାମ, ସମାଜବାଦପାଇଁ ଆହ୍ୱାନ, ଧର୍ମନିରପେକ୍ଷତା ଉପରେ ଗୁରୁତ୍ୱ ଆଦି ବିଷୟକୁ ଚମତ୍କାର ଭାବରେ ବିଶ୍ଳେଷଣ କରିଅଛନ୍ତି। ନବଭାରତର ବିନ୍ଧାଣି ରୂପେ ସେ

ପଣ୍ଡିତ ଜବାହରଲାଲ ନେହରୁଙ୍କ ବ୍ୟକ୍ତିତ୍ୱର ଆକଳନ କରିଅଛନ୍ତି। ଏହିପରି ମଧ୍ୟ ସେ ଇନ୍ଦିରା ଗାନ୍ଧୀଙ୍କ ବିଷୟରେ ଉଲ୍ଲେଖ କରିଛନ୍ତି।

'ଏ ମାଟିର କୃତୀ ସନ୍ତାନ' ଶୀର୍ଷକରେ ସେ ଓଡ଼ିଶାର 'ଆଦିକବି ସାରଳା ଦାସ' ପ୍ରବନ୍ଧରେ ସାରଳା ଦାସଙ୍କ ଭାଷାପ୍ରୀତି, ଲୋକଚରିତ୍ର ଅନୁଶୀଳନରେ ଦକ୍ଷତା, କାଳଜୟୀ ସାହିତ୍ୟ ସୃଷ୍ଟି, ଓଡ଼ିଆ ଭାଷାରେ ମହାକାବ୍ୟ ରଚନା କରିବାର ପ୍ରବଣତା ଇତ୍ୟାଦି ବିଷୟରେ ଉଲ୍ଲେଖ କରି ଊନବିଂଶ ଶତାବ୍ଦୀରେ ସମ୍ବଲପୁରର ବିଦ୍ରୋହୀ ସୁରେନ୍ଦ୍ର ସାଏଙ୍କ ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱ ସମ୍ପର୍କରେ ଆଲୋଚନା କରିଅଛନ୍ତି। 'ଓଡ଼ିଶାର ପ୍ରଥମ ବୈଜ୍ଞାନିକ ପଠାଣି ସାମନ୍ତ' ପ୍ରବନ୍ଧରେ ଯେପରି ପଠାଣି ସାମନ୍ତଙ୍କ ଜ୍ୟୋତିର୍ବିଜ୍ଞାନର ପ୍ରଶଂସା କରିଛନ୍ତି ଓ ତାଙ୍କର ସ୍ମୃତିରକ୍ଷାପାଇଁ ଉଦ୍ୟମ କରିଛନ୍ତି ତାହା ନିଶ୍ଚୟ ପ୍ରଶଂସନୀୟ। ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ କରିବାରେ ଓ ଓଡ଼ିଶାକୁ ଶିଳ୍ପ ସମୃଦ୍ଧ କରିବାକୁ କୁଳବୃଦ୍ଧ ମଧୁସୂଦନ ଦାସ ଯେଉଁ ସ୍ୱପ୍ନ ଦେଖିଥିଲେ, ତାଙ୍କର ଓଡ଼ିଆ ଅସ୍ମିତା ଉତ୍କଳସମ୍ମିଳନୀ ମାଧ୍ୟମରେ ଯେପରି ଫୁଟି ଉଠିଥିଲା ତାହାକୁ ଜାନକୀବଲ୍ଲଭ ଯେପରି ବର୍ଣ୍ଣନା କରିଛନ୍ତି, ବାସ୍ତବିକ ତାହା ମଧୁସୂଦନଙ୍କପ୍ରତି ଗଭୀର ଶ୍ରଦ୍ଧାର ନିଦର୍ଶନ। ଏହିପରି ମଧ୍ୟ ସେ ଇଞ୍ଜିନିୟର ଭୁବନାନନ୍ଦ ଦାସ ଓ ସ୍ୱାମୀ ବିଚିତ୍ରାନନ୍ଦଙ୍କ ବ୍ୟକ୍ତିତ୍ୱର ଭୂୟସୀ ପ୍ରଶଂସା କରିଛନ୍ତି। ଉତ୍କଳକେଶରୀ ହରେକୃଷ୍ଣ ମହତାବଙ୍କ ସ୍ମୃତିଚାରଣ କରି ତାଙ୍କର ବହୁଦିଗପ୍ରସାରୀ ବ୍ୟକ୍ତିତ୍ୱ ଓ ନବଉତ୍କଳ ନିର୍ମାଣରେ ଭୂମିକା ବିଷୟରେ ଉଲ୍ଲେଖ କରିଅଛନ୍ତି; ତାହା ଜାନକୀବଲ୍ଲଭଙ୍କ ଉଦାର ହୃଦୟବତ୍ତାର ପରିଚୟ ଦେଇଥାଏ। ତାଙ୍କ ଦୃଷ୍ଟିରୁ ମଧ୍ୟ ଜଳୌକା ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀ ବାଦ ଯାଇ ନାହାନ୍ତି। ତାଙ୍କପ୍ରତି ସେ ନିବେଦନ କରିଛନ୍ତି ଶ୍ରଦ୍ଧା। ବ୍ୟକ୍ତି ଓ ବ୍ୟକ୍ତିତ୍ୱ ଆକଳନଧର୍ମୀ ପ୍ରବନ୍ଧଗୁଡ଼ିକରୁ ଜାନକୀବଲ୍ଲଭଙ୍କ ଉଦାର ଦୃଷ୍ଟିକୋଣର ପରିଚୟ ମିଳିଥାଏ। ଏହିପରି ମଧ୍ୟ ତାଙ୍କର 'କାଳିଦାସ', 'ଅମର କବି ଭର୍ତ୍ତୃହରି', 'ଶ୍ରୀଅରବିନ୍ଦ : ରକ୍ତପଦ୍ମ ଓ ଶ୍ୱେତଶତଦଳ', 'ନବଭାରତର ବିଦ୍ଧାଣି– ଜବାହରଲାଲ', 'ଜାତୀୟ ବିଦ୍ରୋହର ଆଗ୍ନେୟ ଆତ୍ମା ନେତାଜୀ ସୁଭାଷ ଚନ୍ଦ୍ର' ଆଦି ପ୍ରବନ୍ଧ ମଧ୍ୟ ଜାନକୀବଲ୍ଲଭଙ୍କ ଦୃଷ୍ଟି ଓ ଦର୍ଶନ, ସମ୍ବେଦନା ଓ ମାନବିକତାର ସଙ୍କେତ ବହନ କରେ।

॥ ଛରି ॥

ଜାନକୀବଲ୍ଲଭ ପ୍ରକୃତ ରାଷ୍ଟ୍ରନେତା। ତେଣୁ ରାଷ୍ଟ୍ରର କଲ୍ୟାଣ ତାଙ୍କର ଲକ୍ଷ୍ୟ ହୋଇଥିବାରୁ ପରିବେଶ ସମ୍ପର୍କରେ ସେ ସଚେତନ ହୋଇଥିଲେ। ତେଣୁ ପରିବେଶକୁ ନିର୍ମଳ ଓ ସୁସ୍ଥ ନ ରଖିଲେ ବିଶ୍ୱ ଧ୍ୱଂସ ଅନିବାର୍ଯ୍ୟ ହୋଇପଡ଼ିବ ବୋଲି ସେ ମନେ କରିଥିଲେ। ତେଣୁ, ସେ ରଚନା କରିଥିଲେ 'ପରିବେଶ ଓ ଆମେ', 'ପରିବେଶ ଓ ଜୀବଜନ୍ତୁ' ପରି କେତୋଟି ପ୍ରବନ୍ଧ। ଏପରି ପ୍ରବନ୍ଧ ଜଣେ ଦାୟିତ୍ୱସମ୍ପନ୍ନ ରାଜନେତାଙ୍କର ଚିନ୍ତା ଓ ଚେତନାର ପରିପ୍ରକାଶ। ତାଙ୍କର ବିଶେଷ ଦକ୍ଷତା ଓ ପ୍ରଜ୍ଞାର ପରିଚୟ ମିଳେ 'ସାହିତ୍ୟ, ରାଜନୀତି ଓ ସଂସ୍କୃତି' ସମ୍ପର୍କିତ ନାନା ପ୍ରବନ୍ଧରୁ। 'ବେଦରେ ଜୀବନର ପ୍ରାଚୁର୍ଯ୍ୟ',

'ସୌନ୍ଦର୍ଯ୍ୟ ଓ ଭାରତୀୟ ଅଳଙ୍କାର ଶାସ୍ତ୍ର', 'ଭାରତୀୟ ଆଦର୍ଶ ଓ ତା'ର ନେତା, 'ସାହିତ୍ୟ ଓ ରାଜନୀତି', 'ବିଦ୍ୟାର ଆଦର୍ଶ : ବିନୟ', 'ହିଜ୍‌ଲୀର ମହତ୍ତ୍ୱ', 'ଶତାବ୍ଦୀର ସାଧନା', 'ସାହିତ୍ୟର ଆହ୍ୱାନ', 'ଆମ ଭାଷା ଓ ସାହିତ୍ୟର ଭବିଷ୍ୟତ', 'ଇତିହାସର ପଦଚିହ୍ନ', 'ପରିବର୍ତ୍ତିତ ସମାଜରେ ସାହିତ୍ୟିକର ଭୂମିକା', 'ଜୟଦେବ ଓ ସଂସ୍କୃତ ସାହିତ୍ୟ', 'ଜନ୍ମଭୂମି ଓ ଜାତୀୟତା', 'ଜାତୀୟ ଏକତା ଓ ସଂହତି', 'ସ୍ମୃତି ଓ ସଂକଳ୍ପର ଦିନ', 'ଐତିହାସିକ ଦାୟିତ୍ୱ', 'ଶ୍ରୀଜଗନ୍ନାଥ ଓ ଭାଗବତ', 'ଜନ୍ମଭୂମି ଓ ଜାତୀୟତା', 'ଓଡ଼ିଆ ଭାଷାର ଶ୍ରେଷ୍ଠ ଶିଳ୍ପୀ ଅଭିମନ୍ୟୁ', 'ଓଡ଼ିଶାର ଆହ୍ୱାନ', 'ଭାରତର ଗର୍ବ ଓ ଗୌରବ', 'ସାହିତ୍ୟ ଓ ସମାଜ' ଇତ୍ୟାଦି ନାନା ପ୍ରବନ୍ଧ ତାଙ୍କ ପ୍ରଜ୍ଞାବୋଧର ନିଦର୍ଶନ। 'ସାହିତ୍ୟର ଆହ୍ୱାନ' ପ୍ରବନ୍ଧରେ ସେ କହନ୍ତି– 'ସାହିତ୍ୟିକମାନେ ସବୁଯୁଗରେ ପଥପ୍ରଦର୍ଶକ ହୁଅନ୍ତି। ସେମାନେ ସମାଜ ତଥା ଶାସନକୁ ସବୁ ସମୟରେ ବାଟ ଦେଖାଇଥାନ୍ତି। ତେଣୁ ସେମାନଙ୍କ ସ୍ଥାନ ସବୁଠାରୁ ଉଚ୍ଚରେ।' (ସ୍ୱପ୍ନ ଓ ସଂକଳ୍ପ ପୃ.୧୫୭) ଏହି ପ୍ରବନ୍ଧରେ ସେ ପୁଣି କହନ୍ତି– 'ପ୍ରଚଣ୍ଡ ଆତ୍ମବିଶ୍ୱାସ ଓ ଗଭୀର ଦେଶାତ୍ମବୋଧ ନ ଥିଲେ କେବେହେଲେ ସାହିତ୍ୟ ସୃଷ୍ଟି ହୋଇପାରିବ ନାହିଁ। (ପୃ.୧୬୦) ସଂପ୍ରତି ଓଡ଼ିଆ ସାହିତ୍ୟରେ ଆତ୍ମବିଶ୍ୱାସ ନାହିଁ, ଦେଶପ୍ରୀତି ମଧ୍ୟ ନାହିଁ। ଗୋଟାଏ ଆତ୍ମମ୍ଭରୀ ଦୁର୍ଗ ଭିତରେ ଆଜିର ସାହିତ୍ୟିକ ଆବଦ୍ଧ ହୋଇଯାଉଛି। ସେମାନଙ୍କ ସାହିତ୍ୟ ସମାଜ ସହିତ ନାହିଁ, ମଣିଷମାନଙ୍କ ସହିତ ନାହିଁ, ସଂସ୍କୃତି ସହିତ ନାହିଁ, ମାଟି ସହିତ ନାହିଁ। ଗୁଡ଼ାଏ ଅବାନ୍ତର ପରୀକ୍ଷା ନାଁରେ ଯାହା ଲେଖାଯାଉଛି ତାହା ସାହିତ୍ୟ ପଦବାଚ୍ୟ ନୁହେଁ। ତେଣୁ ଜାନକୀବଲ୍ଲଭ କହନ୍ତି– 'ଯାହା କାହାରି ପକ୍ଷରେ ସତ୍ୟ ନୁହେଁ, ଯାହା ଏକାନ୍ତ ଅବୋଧ୍ୟ, ଏପରିକି ନିଜେ ଲେଖକକୁ ପଚାରିଲେ ମଧ୍ୟ କ'ଣ ଲେଖିଛନ୍ତି ବୋଲି କହିପାରିବେ ନାହିଁ, ସେପରି ସାହିତ୍ୟ ସୃଷ୍ଟି କରିବା ସମୀଚୀନ ନୁହେଁ। ଯେଉଁ ପରୀକ୍ଷାର କୌଣସି ଲକ୍ଷ୍ୟ ନାହିଁ, ଆଦର୍ଶ ନାହିଁ ବା ସତ୍ୟ ନାହିଁ, ସେପରି ପରୀକ୍ଷାରେ ମନୋନିବେଶ କରିବା ଉଚିତ ହେବ ନାହିଁ। (ପୃ.୧୬୧) ଜାନକୀବଲ୍ଲଭ ଓଡ଼ିଆ ଭାଷା ଓ ସାହିତ୍ୟକୁ ଭଲ ପାଆନ୍ତି। ମାତ୍ର ସେ ପରୀକ୍ଷା ନାମରେ ଯଥେଚ୍ଛାଚାରକୁ ପସନ୍ଦ କରନ୍ତି ନାହିଁ। ସେ କହନ୍ତି– 'ମୁଁ ନୂତନ ପରୀକ୍ଷାର ଅତ୍ୟନ୍ତ ପକ୍ଷପାତୀ। କିନ୍ତୁ ଏ ପରିବର୍ତ୍ତନ ଅର୍ଥହୀନ ନ ହେଉ। ଏହା ସମାଜକୁ ଆଶା, ବିଶ୍ୱାସ, ଗର୍ବ ଓ ଗୌରବର ନୂତନ ଚେତନା ଦାନ କରୁ।' (ପୃ.୧୬୧)

ଜାନକୀବଲ୍ଲଭ ମନେ କରନ୍ତି ସାହିତ୍ୟ ଓ ରାଜନୀତି ସମଧର୍ମୀ। ରାଜନୀତି ଅର୍ଥ ଦଳୀୟ ରାଜନୀତି ନୁହେଁ, ଦେଶର ଶାସନ ପରିଚାଳନାର ଏକ ସକାରାତ୍ମକ ବଳିଷ୍ଠ ନୀତି। ଉଭୟ ରାଜନୀତି ଓ ସାହିତ୍ୟର ଲକ୍ଷ୍ୟ ସମାଜ ମଙ୍ଗଳ, ରାଷ୍ଟ୍ରର କଲ୍ୟାଣ। ପ୍ରାଚୀନ ଭାରତରେ ରାଜନୀତିକୁ କୁହାଯାଉଥିଲା ନୀତିଶାସ୍ତ୍ର। ସମାଜରେ ମୂଲ୍ୟବୋଧକୁ ଜାଗ୍ରତ କରିରଖିବା ରାଜନୀତିର ଯେପରି ଧର୍ମ ସେହିପରି ସାହିତ୍ୟର ମଧ୍ୟ ଧର୍ମ। ଭାରତୀୟ ସାହିତ୍ୟରେ ରହିଛି ଚିରନ୍ତନ ମୂଲ୍ୟବୋଧ। ଜାନକୀବଲ୍ଲଭ କହନ୍ତି– 'ସାହିତ୍ୟ ଶ୍ରେଷ୍ଠତ୍ୱ ଦାବି କରିବାକୁ ହେଲେ ସେହି ଚିରନ୍ତନ ମୂଲ୍ୟବୋଧର ସଫଳ ପ୍ରତିଫଳନ ଆବଶ୍ୟକ। ଏହି ଚିରନ୍ତନ ମୂଲ୍ୟବୋଧରେ

ନାହିଁ ଭୀରୁତା ବା ପଳାୟନବାଦ।' (ପୃ୧୨୯/୧୩୦) ଚିରନ୍ତନ ମୂଲ୍ୟବୋଧର ଅର୍ଥ ପ୍ରଗାଢ଼ ଆଶାବାଦ ଓ ବୀରତ୍ୱର ଜାଗରଣ। ସତ୍ ସାହିତ୍ୟହିଁ ଏପରି ମୂଲ୍ୟବୋଧର ପ୍ରେରଣା ଦିଏ। ଅସତ୍ ସାହିତ୍ୟ କ୍ଷଣିକ ଉତ୍ତେଜନା ସୃଷ୍ଟି କରେ। ତାହା ମଣିଷଙ୍କୁ ଉତ୍ତୋଳନ କରେ ନାହିଁ, ନିମ୍ନଗାମୀ କରିଦିଏ। ଫଳରେ ରାଷ୍ଟ୍ରର ବିକାଶ ହୁଏ ନାହିଁ। ପ୍ରାବନ୍ଧିକଙ୍କ ମତରେ ଏପରି ଏକ ବାତାବରଣ ସୃଷ୍ଟି ହେବା ଉଚିତ ଯେଉଁଥିରେ ବୁଦ୍ଧିଜୀବୀମାନେ ଶାସନଠାରୁ ଅଲଗା ନ ହୋଇ ଶାସନ ସହିତ ସହଯୋଗ କରିବା ଉଚିତ। ସହଯୋଗ ଓ ସମନ୍ୱୟ ଦ୍ୱାରାହିଁ ସମସ୍ୟାର ସମାଧାନ ହୁଏ। ସାହିତ୍ୟିକମାନେ ଏଦିଗରେ ଉଦ୍ୟମ କରିବା ଉଚିତ ବୋଲି ପ୍ରାବନ୍ଧିକ ଯେପରି ମତ ପ୍ରଦାନ କରିଛନ୍ତି ତାହା ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ। ଚିନ୍ତାରାଜ୍ୟରେ ସାହିତ୍ୟିକଙ୍କର ସ୍ୱାଧୀନତା ଖୁବ୍ ବେଶୀ। ସତ୍ ସାହିତ୍ୟହିଁ ଚିନ୍ତାରାଜ୍ୟରେ ସୃଷ୍ଟି କରେ ବିପ୍ଳବ। ଆଜିର ସାହିତ୍ୟ ସମାଜ-ଜୀବନରେ ରେଖାପାତ କରିପାରୁ ନାହିଁ; ତେଣୁ ପରିବର୍ତ୍ତନ ଆଣିପାରୁ ନାହିଁ। ତେଣୁ ଜାନକୀବଲ୍ଲଭ କହନ୍ତି– 'ଯେଉଁ ସାହିତ୍ୟିକ ଖାଲି ନିଜ ପାଇଁ ବା ବର୍ତ୍ତମାନପାଇଁ ଲେଖେ, ସେ ଜୀବନର କଥା ଲେଖେ ନାହିଁ, କାମନାର ଜୟଗାନ କରେ, ହୃଦୟର ଶାନ୍ତି ପାଇଁ ସେ ଲେଖେ ନାହିଁ, ଇନ୍ଦ୍ରିୟର ତୃପ୍ତି ପାଇଁ ଲେଖେ। ମନୁଷ୍ୟର ସାହସ, ସମ୍ମାନ, ଗୌରବ, ଗର୍ବ ଓ ପୌରୁଷର ଚେତନା ଜାଗ୍ରତ କରାଇବା ସାହିତ୍ୟିକର ଧର୍ମ, ଯେପରିକି ତାହା ମନୁଷ୍ୟର ଖାଲି ରେକର୍ଡ଼ ନ ହୋଇ ତା'ର ପ୍ରକୃତ ଆଶାବାଡ଼ି ହୋଇପାରିବ।' (ନିର୍ବାଚିତ ପ୍ରବନ୍ଧ, ପୃ.୧୮୫) ଏଥିରୁ ଜାନକୀବଲ୍ଲଭଙ୍କ ସାହିତ୍ୟ ପ୍ରତି ଥିବା ଦୃଷ୍ଟିକୋଣଙ୍କୁ ସ୍ପଷ୍ଟ ଉପଲବ୍ଧି କରିହୁଏ। ସାହିତ୍ୟ ଓ ରାଜନୀତିକୁ ସେ ଆଦୌ ଅଲଗା କରିବାକୁ ଚାହିଁ ନାହାନ୍ତି। ସେ ଉଭୟଙ୍କୁ ପରସ୍ପରର ପରିପୂରକ ଭାବରେ ଦେଖନ୍ତି। ରାଜନୀତି ଯେତେବେଳେ ସ୍ୱେଚ୍ଛାଚାରୀ ହୋଇଯାଏ ସେତେବେଳେ ସାହିତ୍ୟହିଁ ତାହାକୁ ରୋକି ଦେଇପାରେ। ସାହିତ୍ୟ ଜନଗଣଙ୍କ ଭିତରେ ଏପରି ସଚେତନତା ସୃଷ୍ଟି କରେ ଯାହା ଫଳରେ ରାଜନୀତି ଠିକଣା ମାର୍ଗକୁ ଆସେ। ସେହିପରି ସାହିତ୍ୟ ଯେତେବେଳେ ସ୍ୱେଚ୍ଛାଚାରୀ ହୁଏ ସେତେବେଳେ ସୁସ୍ଥ ରାଜନୀତି ତାହାକୁ ରୋକିବାପାଇଁ ଉଦ୍ୟମ କରେ। ଜାନକୀବଲ୍ଲଭ ଏକାଧାରରେ ରାଜନେତା ଓ ସାହିତ୍ୟିକ। ଏହି ଉଭୟ ଗୁଣର ସେ ଅଧିକାରୀ ହୋଇଥିବାରୁ ରାଜନୀତି ଓ ସାହିତ୍ୟ ଭିତରେ ସମନ୍ୱୟ ଚାହିଁଛନ୍ତି।

## ॥ ପାଞ୍ଚ ॥

ଜାନକୀବଲ୍ଲଭ ଜୀବନରେ ଦେଖିଛନ୍ତି ଅନେକ ସ୍ୱପ୍ନ। ସବୁ ସ୍ୱପ୍ନ ନ ହେଲେହେଁ କିଛି ସ୍ୱପ୍ନକୁ ସାକାର କରିବାପାଇଁ ନେଇଛନ୍ତି ସଂକଳ୍ପ। ସେ ସଂକଳ୍ପ ନେଇଛନ୍ତି ଓଡ଼ିଆ ଜାତିର ଦାରିଦ୍ର୍ୟ ଦୂରୀକରଣପାଇଁ। ଲେଖିଛନ୍ତି ମଧ୍ୟ 'ହୃତ ଗୌରବରେ ପୁନରୁଦ୍ଧାର' ପ୍ରବନ୍ଧ। ଏହି ପ୍ରବନ୍ଧରେ ସେ କହନ୍ତି– 'ଦାରିଦ୍ର୍ୟ ଏକ ଅଭିଶାପ। ଏ ଅଭିଶାପରୁ ଲୋକଙ୍କୁ ମୁକ୍ତ କରି ନ ପାରିଲେ ଓଡ଼ିଶା ଉଠିପାରିବ ନାହିଁ।' (ପୃ.୨୧୭) ଏଥିପାଇଁ ଓଡ଼ିଶାକୁ ଶିଳ୍ପ ସମୃଦ୍ଧ କରିବାକୁ ସେ ଚାହିଁଛନ୍ତି। ଶିଳ୍ପର ଉନ୍ନତି ସହିତ କୃଷିର ଉନ୍ନତି ମଧ୍ୟ ସେ ଚାହିଁଛନ୍ତି। ଏକ

ନୂତନ ଯୁଗ ପାଇଁ ସେ ଆହ୍ବାନ ଜଣାଇଛନ୍ତି। 'ଜୀବନ ପ୍ରତି ନ ରହୁ ମୋର ଭୟ', 'ସମୃଦ୍ଧ ଓଡ଼ିଶା ଗଠନ', 'ଶିକ୍ଷ ଅଭ୍ୟୁଦୟରେ ନୂତନ ଦିଗନ୍ତ', 'ହଜାରେ ଦିନ ପରେ', 'ଓଡ଼ିଶାର ଉନ୍ନୟନରେ ବୈଜ୍ଞାନିକଙ୍କ ଭୂମିକା', 'ଦାରିଦ୍ର୍ୟ ଦୂରୀକରଣ ପାଇଁ', 'ଜଳ ଓ ଜମିର ସୁପରିଚାଳନା', 'ମରୁଡ଼ିର ମୁକାବିଲା', 'ଓଡ଼ିଶାର ଆୟ', 'ଓଡ଼ିଆ ଚଳଚ୍ଚିତ୍ର', 'ପ୍ରାଚ୍ୟର ରୂପସୀ ଓଡ଼ିଶା', 'ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ', ଇତ୍ୟାଦି ନାନା ପ୍ରବନ୍ଧ ଜାନକୀବଲ୍ଲଭଙ୍କ ସଂକଳ୍ପର ସଙ୍କେତ ବହନ କରେ। ଏସବୁ ପ୍ରବନ୍ଧକୁ ଛାଡ଼ିଦେଲେ ତାଙ୍କର ଅନ୍ୟାନ୍ୟ କେତେ କୃତି ଅଛି ଯେଉଁଥିରୁ ତାଙ୍କର ବଳିଷ୍ଠ ପ୍ରାବନ୍ଧିକ-ମାନସିକତାର ପରିଚୟ ମିଳିଥାଏ। ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସକୁ ଓଡ଼ିଆରେ ଅନୁବାଦ କରି ତାହାର ଯେଉଁ ପ୍ରାଜ୍ଞିକ ମୁଖବନ୍ଧ ଲେଖିଛନ୍ତି ତାହା ତାଙ୍କର ବିଜ୍ଞତାର ପରିଚୟ ଦିଏ। ସେହି ମୁଖବନ୍ଧ ମଧ୍ୟ ଏକ ଦୀର୍ଘ ପ୍ରବନ୍ଧ। ସଂସ୍କୃତ ଭାଗବତର ଗଦ୍ୟାନୁବାଦ କରି ସେଥିରେ ସେ ଯେଉଁ ମୁଖବନ୍ଧ ଲେଖିଛନ୍ତି, ଯେପରି ସେ 'ରାମାୟଣ' ଓ 'ମହାଭାରତ' ଶୀର୍ଷକ ଦୁଇଟି ଗଦ୍ୟଗ୍ରନ୍ଥ ରଚନା କରିଛନ୍ତି, ସେସବୁ ଭିତରୁ ଜାନକୀବଲ୍ଲଭଙ୍କ ପ୍ରବନ୍ଧ-ମାନସିକତାର ଯଥାର୍ଥ ପରିଚୟ ମିଳେ। ଜାନକୀବଲ୍ଲଭ ପ୍ରବନ୍ଧ ଲେଖିବାପାଇଁ ପ୍ରବନ୍ଧ ଲେଖି ନାହାନ୍ତି; ଲେଖିଛନ୍ତି ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନେଇ। ସେହି ଆଭିମୁଖ୍ୟ ହେଉଛି ସମାଜର କଲ୍ୟାଣ, ରାଜ୍ୟ ଓ ରାଷ୍ଟ୍ରର ମଙ୍ଗଳ, ମଣିଷମାନଙ୍କର ଉତ୍ତରଣ; ବିଶେଷତଃ ଯୁବକମାନଙ୍କର ଜାତୀୟ ମୁଖ୍ୟ ସ୍ରୋତରେ ଯୋଗଦାନ। ସେ ଚାହାନ୍ତି ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା। ସେହି ମୂଲ୍ୟବୋଧ ରାଜନୀତିରେ ରହିବା ସହିତ ସାହିତ୍ୟରେ ମଧ୍ୟ ରହିବା ଉଚିତ। ମୂଲ୍ୟବୋଧହୀନ ରାଜନୀତି, ପ୍ରଶାସନ ଓ ସାହିତ୍ୟର କୌଣସି ମୂଲ୍ୟ ରହେ ନାହିଁ। ତାଙ୍କର ସମସ୍ତ ପ୍ରବନ୍ଧକୁ ଆକଳନ କଲାବେଳେ ସେଥିମଧ୍ୟରୁ କେତେକ ପ୍ରବନ୍ଧ ତଥ୍ୟାତ୍ମକ ଓ ବିବରଣୀମୂଳକ ଜଣାଯାଏ। ତାହା ତାଙ୍କ ଶାସନ କାଳର ଚିତ୍ର ବହନ କରିଥାଏ ମାତ୍ର! କିନ୍ତୁ ଅନ୍ୟାନ୍ୟ ବହୁ ପ୍ରବନ୍ଧରେ ନାନ୍ଦନିକ ଦୃଷ୍ଟିକୋଣ ସହିତ ମାନବିକ, ଆଧ୍ୟାତ୍ମିକ, ରାଷ୍ଟ୍ରିକ ଓ ରାଜନୀତିକ ମୂଲ୍ୟବୋଧର ପରିଚୟ ମିଳେ। ଜ୍ଞାନଯୋଗ ଓ କର୍ମଯୋଗର ସମନ୍ୱୟ ହିଁ ତାଙ୍କ ପ୍ରବନ୍ଧମାନଙ୍କର ବୈଶିଷ୍ଟ୍ୟ। ମୂଳତଃ ସେ ଜଣେ ସାମ୍ବାଦିକ ଥିବାରୁ ସାରସ୍ୱତ ସାଧନାର ଆଦିପର୍ବରେ ସେ ରଚନା କରୁଥିଲେ ସାମ୍ବାଦିକୀ ପବନ୍ଧ ଓ ପରବର୍ତ୍ତୀକାଳରେ ସେ ଯେଉଁ ସମସ୍ତ ପ୍ରବନ୍ଧ ରଚନା କଲେ ସେଥିରେ ଯଦିଓ ସାମ୍ବାଦିକୀ ଶୈଳୀଟି ରହିଲା ତଥାପି ତାହା ଭିତରେ ଫୁଟିଉଠିଲା ତାଙ୍କର ରାଜନୀତିକ ଓ ରାଷ୍ଟ୍ରୀୟ ବ୍ୟକ୍ତିତ୍ୱ, ଯାହା ତାଙ୍କର ପ୍ରବନ୍ଧକୁ ଦେଲା ଏକ ଦୃଢ଼ ସଂକଳ୍ପ ଓ ଦିଗଦର୍ଶନ। ତେଣୁ ତାଙ୍କର ପ୍ରବନ୍ଧଗୁଡ଼ିକ ହୋଇଯାଇଛି ତାଙ୍କ ବ୍ୟକ୍ତିତ୍ୱର ମନ୍ମୟ ଲିପିଚିତ୍ର ଓ ତାଙ୍କ ବିବେକର ଧ୍ୱନିମନ୍ତ୍ର।



# ଜାତୀୟ-ସାହିତ୍ୟ ଓ ଜାନକୀବଲ୍ଲଭ

ଦାଶ ବେନହୁର

ସାହିତ୍ୟ ତ ସାହିତ୍ୟ, ପୁଣି ଜାତୀୟ-ସାହିତ୍ୟ କ'ଣ? ଏ କଥା ବୁଝାଇବାର ଆବଶ୍ୟକତା ଅଛି। ଯେଉଁ ସାହିତ୍ୟ ଗୋଟାଏ ଭୂଗୋଳ ବା ସାଂସ୍କୃତିକ ପରିସୀମା ଭିତରେ ସ୍ୱୟଂପରିଚିତ, ତାହାହିଁ ଜାତୀୟ-ସାହିତ୍ୟ। ସେ ସାହିତ୍ୟ ହୁଏତ ପରବର୍ତ୍ତୀ କାଳରେ ଏ ଜାତିରୁ ସେ ଜାତିକୁ ଡେଇଁ ଯାଇପାରେ ମାତ୍ର ତା'ର ମୂଳ ପରିଚୟ ଲାଗିରହେ ସେଇ ଭୂଖଣ୍ଡ ସହିତ ଯେଉଁଠାରେ ତା'ର ମୌଳିକ ସୃଷ୍ଟି ସାକାର ହୋଇଥିଲା। ଭାରତ ଗୋଟାଏ ଭୂଖଣ୍ଡ, ଗୋଟାଏ ସାଂସ୍କୃତିକ ପରିସୀମା, ପ୍ରାଶାସନିକ ତଉଲରେ ଭାରତୀୟ ଜାତିକୁ ବୁଝିବା ଯେତିକି ଜଟିଳ, ସାଂସ୍କୃତିକ ଆଧାରରେ ତାକୁ ହୃଦୟଙ୍ଗମ କରିବା ସେତିକି ସହଜ। ଭିନ୍ନ ଭିନ୍ନ ବିଶ୍ୱାସ ଓ ଧର୍ମ ମଧ ସମାହିତ ହୋଇଯାଆନ୍ତି ସେ ଜାତି ପରିଚୟରେ। ହିନ୍ଦୁ ଜଣେ ଯେତେବେଳେ କୋରାନ୍‌ର ଅମୃତମୟ ଭାଷ୍ୟ ପରିବେଷଣ କରେ, ମୁସଲମାନ ପିଲାଟିଏ ଯେତେବେଳେ ଗୀତା ମୁଖସ୍ଥ କରି ଅନର୍ଗଳ ଗାଇଯାଏ, କିରସ୍ତାନୀ ଜଣେ ନାମ ସଂକୀର୍ତ୍ତନ କରେ ସେତେବେଳେ ବୁଝିହୁଏ, ଭାରତ ଧର୍ମରେ ନାହିଁ କି ଅଞ୍ଚଳରେ ନାହିଁ, ଅଛି ତା'ର ସାହିତ୍ୟରେ। ସେଇ ସାହିତ୍ୟ ଯାହା ସମସ୍ତଙ୍କର ହୃଦୟଗ୍ରାହୀ ହୁଏ।

ସାହିତ୍ୟ ଧର୍ମକୁ ଆଶ୍ରୟ କରେନା, ଧର୍ମ ସାହିତ୍ୟକୁ ଆଶ୍ରୟ କରେ। ସାହିତ୍ୟ ସମାଜରୁ ଜନ୍ମ ମାତ୍ର ସମାଜ ସାହିତ୍ୟର ନିୟନ୍ତକ ନୁହେଁ। ସାହିତ୍ୟ ଜାତିର ଚରିତ, ଲୋକସମୂହର ପ୍ରାଣସ୍ପନ୍ଦନ। ତାହା ଜଣକଠାରୁ ଉଦ୍ଭୂତ ହୁଏ, ଗୋଟାଏ ଅଞ୍ଚଳରୁ ଉଠେ ମାତ୍ର ଅବଲୀଳାକ୍ରମେ ଆପେ ସାର୍ବଜନୀନ ହୁଏ, ସାରସ୍ୱତ ପାଲଟେ। ସେଇଥିପାଇଁ ପ୍ରସିଦ୍ଧ କନ୍ନଡ଼ ଲେଖକ ୟୁ.ଆର୍, ଅନନ୍ତମୂର୍ତ୍ତି ଥରେ କହୁଥିଲେ, "ଜାତୀୟ ସାହିତ୍ୟ ହେଉଛି ସବୁ ଆଞ୍ଚଳିକ ସାହିତ୍ୟର ସମ୍ମିଶ୍ରିତ ମହାଝର, ଯାହାର ପ୍ଳାବନ ଅସୀମ।"

ସେ ଦିଗରୁ ଭାରତୀୟ ଜାତୀୟ-ସାହିତ୍ୟର ଶୀର୍ଷସ୍ଥାନରେ ଯେଉଁ ଗ୍ରନ୍ଥ-ପୁରୁଷଗୁଡ଼ିକ ବିଦ୍ୟମାନ ସେମାନେ ହେଲେ, ରାମାୟଣ, ମହାଭାରତ ଓ ଭାଗବତ। ନିଠେଇ ଦେଖିଲେ ଏ ସମସ୍ତ ଗ୍ରନ୍ଥ ସନାତନ ବିଚାରର କଥା କହନ୍ତି, କୌଣସି ନିର୍ଦ୍ଦିଷ୍ଟ ଧର୍ମର ପ୍ରଚାର କରନ୍ତି ନାହିଁ। 'ସତ୍ୟ', 'ଧର୍ମ' ଓ 'ଭକ୍ତି'। ଭାଗବତର ବିଚାର ହେଲା, "ଯେହୁ ପାଞ୍ଚଇ ପରମନ୍ଦ, ତା' ମନ୍ଦ ପାଞ୍ଚନ୍ତି ଗୋବିନ୍ଦ।" ଗୋଟିଏ ଏଠାରେ ସର୍ବନିୟନ୍ତା, ସୃଷ୍ଟିକର୍ତ୍ତା। ଯିଏ ଅନ୍ୟର ମନ୍ଦ କାମନା କରେ ଈଶ୍ୱର ତା'ର ମନ୍ଦ କାମନା କରନ୍ତି। ଏ ଭାବନା ତ ସବୁ ଧର୍ମରେ

ଅଛି। ଅତଏବ ରାମାୟଣ, ମହାଭାରତ ଓ ଭାଗବତ, ଜାତୀୟ-ସାହିତ୍ୟର ଆଗଧାଡ଼ିର ଗ୍ରନ୍ଥ ଭାବରେ ସ୍ୱୀକୃତ ହେବାକୁ ବାଧ୍ୟ।

ସେସବୁରେ ଧର୍ମ ନୁହେଁ, ଭାରତୀୟତା ହିଁ ନିହିତ। ଭାରତୀୟ ଭାବନା, ଭାରତୀୟ ଅତୀତ, ଆଚାର, ଭୂଗୋଳ, ରସାଳ-ଅନୁଭବ ସବୁକଥା ସେଇଠି। ଗୋଟାଏ ଦିଗରୁ ଦେଖିଲେ ଅସଲ ଭାରତୀୟତା ଅଛି ତା'ର ଜାତୀୟ ସାହିତ୍ୟରେ ଯାହା ରାମାୟଣ, ଜାତକଗଳ୍ପଠାରୁ ଆରମ୍ଭ କରି ଗୀତାଞ୍ଜଳି ଓ 'ସାରେ ଜହାଁ ସେ ଅଚ୍ଛେ ହିନ୍ଦୁସ୍ଥାନ ହମାରା' ଯାଏ ପରିବ୍ୟାପ୍ତ।

ଜାନକୀବଲ୍ଲଭ ପଟ୍ଟନାୟକ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ। ସଂସ୍କୃତ ସାହିତ୍ୟରେ ସ୍ନାତକ ଓ ରାଜନୀତିବିଜ୍ଞାନରେ ସ୍ନାତକୋତ୍ତର। ଈଶ୍ୱର ସତେଯେମିତି ପୂର୍ବରୁ ତାଲିମ୍ ଆଧାରରେ ତାଙ୍କୁ ବିଦଗ୍ଧ ସାହିତ୍ୟ ତଥା ରାଜନୀତି ଲାଗି ବିଧିନିର୍ଦ୍ଦିଷ୍ଟ କରିଦେଇଥିଲେ। ଭାରତୀୟ ରାଜନୀତିରେ ଯେମିତି ସେ ଦୀର୍ଘକାଳ ରହି ଓଡ଼ିଶା ରାଜ୍ୟର ସରକାରୀ-ଶ୍ରେଷ୍ଠ ଭାବେ ଚଉଦବର୍ଷ କାଳ ରାଜନୀତି କଲେ, ସେମିତି ଆପଣା ଢଙ୍ଗରେ ଭାରତୀୟ-ସାହିତ୍ୟର ଅନୁପମ କୀର୍ତ୍ତିମାଳାକୁ ନିଜସ୍ୱ ସର୍ଜନଶୀଳ ଢଙ୍ଗରେ ରସାଣିତ କରି ପରିବେଷଣ କଲେ ଅଗଣିତ ପାଠକଙ୍କ ପାଖରେ। ସେସବୁ ଭିତରୁ ଭର୍ତ୍ତୃହରିଙ୍କ ତ୍ରିଶତକ ଓ ବାଲ୍ମୀକି, ବ୍ୟାସଙ୍କର ତ୍ରିକୀର୍ତ୍ତି ବିଶେଷ ପ୍ରଣିଧାନଯୋଗ୍ୟ। ବାଲ୍ମୀକିକୃତ ରାମାୟଣର ସଂକ୍ଷିପ୍ତସାର (୧୯୯୧), ବ୍ୟାସକୃତ ମହାଭାରତର ସଂକ୍ଷିପ୍ତସାର (୧୯୯୦) ଓ ପୁଣି ବ୍ୟାସକୃତ ଶ୍ରୀମଦ୍‌ଭାଗବତର ଗଦ୍ୟାନୁବାଦ (୨୦୦୩) ପ୍ରକାଶ କରି ସେ ଓଡ଼ିଆଭାଷାରେ ତିନିଗୋଟି ଅମୂଲ୍ୟ ସମ୍ପଦ ଛାଡ଼ିଯାଇଛନ୍ତି।

ରାଜନୀତି ଓ ସାହିତ୍ୟ ଏକାଠି ଚାଲିବା ସହଜ କଥା ନୁହେଁ। କବିସୂର୍ଯ୍ୟ ବଳଦେବ ରଥ ସେତେବେଳକା ରାଜ୍ୟ କେତେଗୋଟିରେ ଦେୱାନ୍ (ପ୍ରଧାନମନ୍ତ୍ରୀ) ପଦ ସମ୍ଭାଳିଥିଲେ। ମାତ୍ର ସାହିତ୍ୟ ଫଲ୍‌ଗୁ ସେ ଭିତରେ ତାଙ୍କୁ ଛାଡ଼ି ନ ଥିଲା କେବେ। ବ୍ୟାସକବି ଫକୀରମୋହନ ସେନାପତି ଦୀର୍ଘକାଳ ଗଡ଼ଜାତଗୁଡ଼ିକରେ ଦେୱାନ୍ କାର୍ଯ୍ୟ ତୁଲାଇଛନ୍ତି, ହେଲେ ବୃତ୍ତିରେ ଥାଇ ଓ ବୃତ୍ତିନିବୃତ୍ତ ହୋଇ ସେ ଯେଉଁ ସାହିତ୍ୟ-କୀର୍ତ୍ତି ସ୍ଥାପନ କରିଛନ୍ତି, ତାହା ଓଡ଼ିଆ ଭାଷା ସାହିତ୍ୟର ଅମୂଲ୍ୟ ସମ୍ପଦ ହୋଇ କାଳକାଳକୁ ରହିବ।

ଅନୁରୂପ ଭାବେ ଜାନକୀବଲ୍ଲଭ ଶାସନ କ୍ଷେତ୍ରରେ କେନ୍ଦ୍ରମନ୍ତ୍ରୀ, ଓଡ଼ିଶା ରାଜ୍ୟର ମୁଖ୍ୟମନ୍ତ୍ରୀ, ବିଧାୟକ, ସାଂସଦ, ବିରୋଧୀଦଳ ନେତା ଓ ଆସାମର ରାଜ୍ୟପାଳ ପଦ ଭଳି ରାଜନୀତିକ ପଦପଦବୀରେ ରହି ସୁଦ୍ଧା ସାହିତ୍ୟ ଧାରାରୁ କେବେ ବି ନିଜକୁ ବିଚ୍ଛିନ୍ନ କରି ନାହାନ୍ତି। ବୃତ୍ତିରେ ରାଜନେତା ହେଲେ ସୁଦ୍ଧା ପ୍ରବୃତ୍ତିରେ ସେ ଥିଲେ ଜଣେ ନିଷ୍ଠାପର ସାହିତ୍ୟ-ସାଧକ। ପ୍ରକୃତ ସାହିତ୍ୟିକ ଚିରନ୍ତନ ମୂଲ୍ୟବୋଧ ଓ ସେଭଳି ଗୁଣସ୍ୱରୂପରେ ଗୁମ୍ଫା ଗ୍ରନ୍ଥର ଅଧ୍ୟୟନ, ମୂଲ୍ୟାୟନ ଓ ସାର-ସୃଷ୍ଟିରେ ନିଜକୁ ବାନ୍ଧି ରଖିଥାଏ। ରାମାୟଣ ଗ୍ରନ୍ଥର ଚିରନ୍ତନତା ସମ୍ପର୍କରେ ସେ ନିଜ ସଂକ୍ଷିପ୍ତ-ସାର ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି– 'ଯାବଦ୍ ସ୍ଥାସ୍ୟନ୍ତିଗିରୟଃ ସରିତଶ୍ଚ ମହୀତଳେ/ତାବଦ୍ ରାମାୟଣ କଥା ଲୋକେଷୁ ପ୍ରଚରିଷ୍ୟତି।" ଯେପର୍ଯ୍ୟନ୍ତ ପୃଥିବୀରେ ପର୍ବତ ଓ ନଦୀମାନେ ଅଛନ୍ତି, ସେ ଯାଏ ରାମାୟଣର କଥାବସ୍ତୁ ଲୋକମାନଙ୍କ ଭିତରେ ପ୍ରଚାରିତ ହୋଇ ଚାଲିଥିବ।

ସେ ଅନୁଭବ କରିଥିଲେ ଯେ ରାମାୟଣ ହେଉଛି ଭାରତୀୟ ଜନଜୀବନର ଆତ୍ମିକ ଆଖ୍ୟାନ। ରାମାୟଣ ଗ୍ରନ୍ଥରେ ଲକ୍ଷ୍ମଣ ସ୍ଥଳବିଶେଷରେ କହିଛନ୍ତି– "ଏକସ୍ୟ ମରଣମସ୍ତୁ ମା ଭୂତ୍ ସର୍ବବିନାଶନମ୍।" ମୋର ଜଣକର ପକ୍ଷେ ମୃତ୍ୟୁହେଉ, ସମସ୍ତଙ୍କର ବିନାଶ ନ ହେଉ। ଏହିଭଳି ଅସଂଖ୍ୟ ଅମର ମହନୀୟ ବାଣୀରେ ଭାରତବର୍ଷର ଏ ଆଦି-ସାହିତ୍ୟ ସମୃଦ୍ଧ। ତାହାହିଁ ଭାରତୀୟ ଜାତୀୟ-ସାହିତ୍ୟକୁ ଚିରଦିନ ଉଜ୍ଜୀବିତ କରି ରଖିଛି। ଏ ଗ୍ରନ୍ଥର କେତେ ଯୁଗ ପରେ ଭୀମଭୋଇଙ୍କ ଭଳି ଅନ୍ଧକବିଟିଏ ଓଡ଼ିଶାରେ ଜନ୍ମ ହୋଇ ଗାଇଉଠିଛି– "ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ।" ଜାନକୀବଲ୍ଲଭ ରାମାୟଣର ସଂକ୍ଷିପ୍ତସାର ଓଡ଼ିଆ ଭାଷାରେ ପ୍ରକାଶ କରି କେବଳ ରାମାୟଣର କଥା ବଖାଣି ନାହାନ୍ତି, ସେଥିରେ ଥିବା ମହତ୍ତର ଦିଗଗୁଡ଼ିକୁ ବାରମ୍ବାର ଉନ୍ମୋଚିତ କରିଛନ୍ତି।

ସେହିଭଳି ମହାଭାରତ। ମହାଭାରତ ସମ୍ପର୍କରେ ସେ ଉଦ୍ଧାର କରି ଲେଖିଛନ୍ତି– "ଧର୍ମେ ଚାର୍ଥେଚ କାମେଚ ମୋକ୍ଷେଚ ଭରତର୍ଷଭ/ମଦିହାସ୍ତି ତଦନୀତ୍ର ଯନ୍ନେହାସ୍ତି ନ କୁତ୍ରଚିତ୍।" ଧର୍ମ, ଅର୍ଥ, କାମ, ମୋକ୍ଷ ହେଉଛି ଚତୁର୍ବର୍ଗ ବା ଭାରତୀୟ ଜୀବନର ଚାରି ପ୍ରଧାନ ପୁରୁଷାର୍ଥ। ସେ ସମସ୍ତ ବିଷୟରେ ଏଥିରେ ଯାହା ଅଛି, ତାହା ଅନ୍ୟଠି ଥାଇପାରେ; କିନ୍ତୁ ଏଥିରେ ଯାହା ନାହିଁ, ତାହା ଅନ୍ୟ କେଉଁଠି ନାହିଁ। ସେଇଥିପାଇଁ ଜବାହରଲାଲ ନେହରୁଙ୍କୁ ଉଦ୍ଧାର କରି ମହାଭାରତର ସଂକ୍ଷିପ୍ତସାରରେ ସେ ଉଲ୍ଲେଖ କରିଛନ୍ତି– "ପ୍ରାଚୀନ ଭାରତର କିମ୍ବଦନ୍ତୀ ଓ ପରମ୍ପରା ଏବଂ ରାଜନୈତିକ ଓ ସାମାଜିକ ଅନୁଷ୍ଠାନମାନଙ୍କର ଏହା ଏକ ବିଶ୍ୱକୋଷ ସଦୃଶ।... ଭାରତବର୍ଷର ମୌଳିକ ଏକତା ପାଇଁ ମହାଭାରତରେ ଏକ ନିର୍ଦ୍ଦିଷ୍ଟ ଉଦ୍ୟମ ଦେଖିବାକୁ ମିଳେ।... ମହାଭାରତ ଏକ ରତ୍ନଭଣ୍ଡାର, ଯେଉଁଠି ସମସ୍ତ ପ୍ରକାର ମୂଲ୍ୟ ଖୋଜିଲେ ମିଳିପାରିବ। ନିଜେ ଜାନକୀବଲ୍ଲଭ, ମହାଭାରତର ଉପାଦେୟତା ସମ୍ପର୍କରେ ପୁସ୍ତକଟିର ଭୂମିକାରେ ଲେଖିଛନ୍ତି, "ଯୁଗଯୁଗ ଧରି ଜନସାଧାରଣଙ୍କ ଉପରେ ଏହାର ପ୍ରଭାବ ଓ ଲୋକପ୍ରିୟତା ଦୃଷ୍ଟିରୁ ଏହା ଏକ ଅତୁଳନୀୟ ଗ୍ରନ୍ଥ। ପ୍ରାଚୀନ ଗ୍ରୀକ୍ ମହାକାବ୍ୟ 'ଇଲିୟାଡ୍' ଏବଂ 'ଓଡେସି' ଆକାର ଦୃଷ୍ଟିରୁ ଏହାର ଅଷ୍ଟମାଂଶ ସହିତ ସମାନ। ସେଥିପାଇଁ ମହତ୍ତ୍ୱ ଓ ଭାରତ୍ୱ ବା ଓଜନ ପାଇଁ ଏହାକୁ ମହାଭାରତ (ମହତ୍ତ୍ୱାତ୍ ଭାରତ୍ୱାତ୍‌ଚ) ବୋଲି କେହି କେହି କହନ୍ତି। ଭାରତବର୍ଷର ବିଭିନ୍ନ ନଦନଦୀ, ସାଗର, ଅରଣ୍ୟ, ପର୍ବତ, ନଗର ଓ ଜନପଦ, ରାଜା ଓ ଋଷି, ଜାତି ଉପଜାତି ଏବଂ ସର୍ବୋପରି ଜନଗଣଙ୍କର ଆଚାର ଓ ବ୍ୟବହାର ଧର୍ମଧାରଣାଦି ଏଥିରେ ବର୍ଣ୍ଣନା କରାଯାଇଛି। ଏହି ଗ୍ରନ୍ଥକୁ ଭାରତୀୟ ମହାଜାତିର ଏକ ଗୌରବମୟ ଅଭିଯାନ ବୋଲି କୁହାଯାଇପାରେ।

ରାମାୟଣ, ମହାଭାରତ ପରେ ଅତି ପରିଣତ ବୟସରେ ଆମ ଜାତୀୟ-ସାହିତ୍ୟର ତୃତୀୟ ଗୁରୁତ୍ୱପୂର୍ଣ୍ଣ ଓ ସର୍ବଶ୍ରେଷ୍ଠ ଗ୍ରନ୍ଥଟିର ଗଦ୍ୟାନୁବାଦ କରିଛନ୍ତି। ଭାଗବତର ଗୀତରୂପ ଅସଂଖ୍ୟ, ମାତ୍ର ଗଦ୍ୟରୂପ ଖୁବ୍ ସୀମିତ। ଗଦ୍ୟରୂପରେ ଏହାର ନବସର୍ଜନ କରି ସେ ଓଡ଼ିଆ ଭାଷା ସାହିତ୍ୟକୁ ଋଦ୍ଧିମନ୍ତ କରିବା ସହିତ ଅସଂଖ୍ୟ ଓଡ଼ିଆପ୍ରାଣରେ ଜାତୀୟ ଭାବଚେତନା

ସଙ୍ଗକୁ ଚିରନ୍ତନ ଭକ୍ତିଭାବର ସ୍ରୋତ ବୁହାଇ ଦେଇଛନ୍ତି। ପରମାତ୍ମା ସତ୍ୟସ୍ୱରୂପଙ୍କର ଲୀଳା ବର୍ଣ୍ଣନ କରାଯାଇଛି ଭାଗବତରେ। ଏ ଗ୍ରନ୍ଥ ମନୁଷ୍ୟର ଶାରୀରିକ, ମାନସିକ ତଥା ଆଧ୍ୟାତ୍ମିକ କ୍ଲେଶ ନିବାରଣ ସକାଶେ ଉଦ୍ଦିଷ୍ଟ। ପ୍ରକୃତ ଧର୍ମ କ'ଣ, ସରଳ ଭାବରେ ସେସବୁ ସେଥିରେ ଅକପଟ ଭାବରେ ବର୍ଣ୍ଣିତ। ଅଠର ହଜାର ଶ୍ଳୋକ ସମନ୍ୱିତ ଏ ଗ୍ରନ୍ଥଟି ବାରଟି ସ୍କନ୍ଧରେ ବିଭକ୍ତ। ଯେମିତି ରାମାୟଣ ସାତ କାଣ୍ଡରେ ଓ ମହାଭାରତ ଅଠର ପର୍ବରେ ବର୍ଣ୍ଣିତ ହୋଇଛି।

ଜାନକୀବଲ୍ଲଭ କିନ୍ତୁ ଭାଗବତର ସଂକ୍ଷିପ୍ତସାର ପ୍ରକାଶ କରି ନାହାନ୍ତି। ରାମାୟଣ ଓ ମହାଭାରତ ରଚନା ପରେ ଏହାର ଜନପ୍ରିୟତା ଦେଖି ବନ୍ଧୁମାନେ ଯେତେବେଳେ ଭାଗବତ ପାଇଁ ଅନୁରୋଧ କଲେ ସଂସ୍କୃତ ଗ୍ରନ୍ଥର କ୍ଲିଷ୍ଟତା ତଥା ଉପାଦେୟତା ଦୃଷ୍ଟିରୁ ତା'ର ଗଦ୍ୟାନୁବାଦ କରି ଖଣ୍ଡିଏ ପୁସ୍ତକରେ ସେ ପ୍ରକାଶ କଲେ। ଯଥାସମ୍ଭବ ଆକ୍ଷରିକ କରିବା ସଙ୍ଗେସଙ୍ଗେ ଅନେକ ଜଟିଳ ଶ୍ଳୋକ କ୍ଷେତ୍ରରେ ସେ ଭାବାନୁବାଦର ଆଶ୍ରୟ ନେଇଥିବା ସ୍ୱୀକାର କରିଛନ୍ତି। ଐତିହାସିକ ମାକ୍‌ଡୋନେଲ୍‌ଙ୍କ ମତକୁ ଉଦ୍ଧାର କରି ସେ ଗ୍ରନ୍ଥ ଆରମ୍ଭରେ ସୂଚାଇଛନ୍ତି ଯେ ସଂସ୍କୃତ ସାହିତ୍ୟର ଅନ୍ୟ ଯେକୌଣସି ପୁରାଣ ଅପେକ୍ଷା ଭାରତୀୟ ଜନମାନସ ଉପରେ ଭାଗବତର ପ୍ରଭାବ ଅଧିକ।

ସତେ ଅବା ଗୋଟାଏ ଜାତୀୟ ଦାୟରେ ପଡ଼ି ସେ ସାହିତ୍ୟର ବିଶାଳ ଶିଡ଼ି ଚଢ଼ି ଖୋଜିଛନ୍ତି ସାରସ୍ୱତ ଅମୃତର ଧାରା ଏବଂ ତାଙ୍କ ଆଖିରେ ପଡ଼ିଛନ୍ତି ରାମାୟଣ, ମହାଭାରତ ଓ ଭାଗବତ ଭଳି ଅମୃତ କୁଣ୍ଡଳିଗୁଡ଼ିକ। ସେସବୁକୁ ନେଇଆସି ନିଜସ୍ୱ ପରଷୁଣି ପାତ୍ରରେ ସେ ବିତରିଛନ୍ତି ଓଡ଼ିଆ ପାଠକମାନଙ୍କ ପାଖରେ। ଦିନେ ଅନନ୍ୟ ରାଜନେତା ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଅନୁରୂପ କାମ କରିଥିଲେ ଇଂରେଜୀ ଭାଷାରେ ସାରା ପୃଥିବୀପାଇଁ। ରାମାୟଣ, ମହାଭାରତ ଓ ଭଗବଦ୍‌ଗୀତାର ସଂକ୍ଷିପ୍ତସାର ଲାଗି ରାଜଗୋପାଳାଚାରୀ ବେଶ୍ ସୁପ୍ରସିଦ୍ଧ। ସେହିଭଳି ଜାନକୀବଲ୍ଲଭ ଭାରତୀୟ ଜାତୀୟ-ସାହିତ୍ୟର ଚମତ୍କାର ଓଡ଼ିଆ ପରିବେଷଣ ଯେମିତି ଶ୍ଳାଘ୍ୟ ସେମିତି ସମ୍ମାନାର୍ହ ମଧ୍ୟ।

ଆଜି ଶ୍ରୀ ପଟ୍ଟନାୟକ ଦିବଂଗତ। ହେଲେ ତାଙ୍କର ଅମ୍ଳାନ ସାହିତ୍ୟକୃତି ସେଇଭଳି ଅମଳିନ। ତାଙ୍କ ଲିଖିତ ଏ ପୁସ୍ତକଗୁଡ଼ିକ ଥିବାଯାଏ ସେ ପ୍ରତିଟି ବିଦଗ୍ଧ ଓଡ଼ିଆ ପାଠକଙ୍କ ନିକଟରେ ଅମର ହୋଇ ରହିବେ ନିଶ୍ଚୟ ! ଜାତୀୟ ସାହିତ୍ୟର ଅନୁପମ ଓଡ଼ିଆ ପରିବେଷକ ଭାବରେ ତାଙ୍କର ସ୍ଥିତି ଅନତିକ୍ରମଣୀୟ।



# କବି ଜାନକୀବଲ୍ଲଭ ପଟ୍ଟନାୟକ

ବାବାଜୀ ଚରଣ ପଟ୍ଟନାୟକ

ବ୍ୟକ୍ତି, ସମାଜ ଓ ସାମାଜିକ ପରିବେଶ ପ୍ରତି ଦୃଷ୍ଟିରଖି ଭୂମି ପରିକ୍ରମା କରୁଥିବା ପରିବ୍ରାଜକଙ୍କ ଅନୁଭବ ସ୍ୱତନ୍ତ୍ର। କୁହାଯାଇଛି, 'ପରିବ୍ରାଜକର କଠାଉର ପ୍ରତ୍ୟେକଟି ଶବ୍ଦରୁ ଉତ୍ସରିତ ହୁଏ ବିଶ୍ୱଦର୍ଶନର ଶବ୍ଦଲିପି, ଏକ ନୂଆ ଦିଗନ୍ତର ଆଶ୍ଚର୍ଯ୍ୟ ନକ୍ସା।' ଋଗବେଦର 'ଐତରେୟ ବ୍ରାହ୍ମଣ'ରେ ବ୍ରାହ୍ମଣବେଶୀ ଇନ୍ଦ୍ର ରୋହିତଙ୍କୁ ଏଇ କଥା ବୁଝାଇ କହିଛନ୍ତି; "ନାନା ଶାସ୍ତ୍ରାୟ ଶ୍ରୀରସ୍ତି ଇତି ରୋହିତ ଶୁ ଶ୍ରମ /ପାପୋ ନୃଷଦ୍‌ବରୋ ଜନ ଇନ୍ଦ୍ର ଉଚ୍ଚରତଃ ସଖା/ ଚରୈବେତି ଚରୈବେତି ॥" ଅର୍ଥାତ୍, ହେ ରୋହିତ ! ନାନା ଶାସ୍ତ୍ରରେ ଏଇ କଥା ଲେଖାଅଛି। ଯେ ଚାଲି ଚାଲି କ୍ଲାନ୍ତ ସେ ଶ୍ରୀ ଲାଭ କରେ। ରାଜା ଭଳିଆ ବଡ଼ଲୋକ ବସିଗଲେ ନୀଚ ହୋଇଯାଏ – ଯେ ଚାଲେ ଇନ୍ଦ୍ର ତା' ସାଙ୍ଗରେ ଚାଲନ୍ତି। ଆଗକୁ ଚାଲ। ଆଗକୁ ଚାଲ।

ଓଡ଼ିଶାର ସମାଜ-ରାଜନୀତିକ ଜୀବନଭୂମିର ପରିବ୍ରାଜକ, ସଂସ୍କୃତିସ୍ନାତ ଜାନକୀବଲ୍ଲଭଙ୍କ ଜଗତ ଓ ଜୀବନ ଦର୍ଶନର ଶବ୍ଦଲିପି ଏଇଥିପାଇଁ ଅନନୁଭୂତ ପାଠକୀୟ ସ୍ୱାଦାନୁଭବର ନିଆରା ସାରସ୍ୱତ କୀର୍ତ୍ତି। ରାଜନୀତି କ୍ଷେତ୍ରରେ ବିଚକ୍ଷଣ ଜାନକୀବଲ୍ଲଭ ପଟ୍ଟନାୟକ ତାଙ୍କ ସାହିତ୍ୟରେ ନୂଆ ଦିଗନ୍ତର ଆଶ୍ଚର୍ଯ୍ୟ ନକ୍ସା ଅଙ୍କନ କରିଯାଇଛନ୍ତି। ସେ ବସି ନ ରହି ଜୀବନସାରା ଚାଲିଛନ୍ତି ଆଉ ଚାଲିଛନ୍ତି। ଶ୍ରୀଲାଭ କରିଛନ୍ତି। ତାଙ୍କ ସାଥୀରେ ଇନ୍ଦ୍ର ମଧ୍ୟ ଚାଲିଛନ୍ତି। ତାଙ୍କ ଚଲାପଥର କୃତି-କୀର୍ତ୍ତି ଅନେକ। ଶବ୍ଦଲିପିରେ ତାଙ୍କ ବିଶ୍ୱଦର୍ଶନ-ସାକ୍ଷୀ; ବଛାବଛା ଗ୍ରନ୍ଥରାଜି, ମହତତ୍ରୟୀ- ମହାଭାରତ, ରାମାୟଣ ଓ ଭାଗବତ। ସାମ୍ବାଦିକତା ଓ ସମ୍ବାଦପତ୍ର ସଂପାଦନାରେ ସେ ନୂଆ ବାଟ ଦେଖାଳି। ଅନୁବାଦକ, ଗାଳ୍ପିକ, କବି, ପ୍ରାବନ୍ଧିକ, ଜୀବନୀଲେଖକ ଭାବେ ସେ ଓଡ଼ିଆ ସାହିତ୍ୟର ଇତିହାସରେ ଚର୍ଚ୍ଚିତ। ଓଡ଼ିଆ କାବ୍ୟ-କବିତାର ପୈତୃକ ବୁନିଆଦିର ଉତ୍ତର ସାଧକ ରୂପେ ତାଙ୍କ ସ୍ୱାକ୍ଷର କିଭଳି 'ସିନ୍ଧୁ ଉପତ୍ୟକା' (୧୯୮୭)ରେ ପ୍ରକାଶ ପାଇଛି ତାହା ଆଲୋଚନା ମାଧ୍ୟମରେ ଦର୍ଶାଇଦେବା ଏ ଲେଖାର ଉଦ୍ଦେଶ୍ୟ।

ଜାନକୀବଲ୍ଲଭ ପଟ୍ଟନାୟକଙ୍କ କବିତା ବହି 'ସିନ୍ଧୁ ଉପତ୍ୟକା' (ଭିନ୍ନ ଭିନ୍ନ ସମୟରେ କବିଙ୍କ ଲିଖିତ ଛବିଶଟି କବିତାର ସଂକଳନ)ର କବିତାଗୁଡ଼ିକୁ ପଢ଼ି ଯାହା ଯାହା ଅନୁଭବ ହୋଇଛି ତାହା ପ୍ରକାଶ କରିବା ପୂର୍ବରୁ ଡକ୍ଟର ଗୋବିନ୍ଦ ଭୂୟାଁଙ୍କ ଲିଖିତ 'ସାର୍ଥକ ସାରଥି ଜାନକୀବଲ୍ଲଭ' (୨୦୧୪)ର 'ଷଷ୍ଠ ତରଙ୍ଗ'ରୁ କେତୋଟି ଧାଡ଼ି ଉଦ୍ଧାର କରିବା ପ୍ରାସଙ୍ଗିକବୋଧ ହେଉଛି। ତାହା ଏହିପରି– "କବିତା କବି ବ୍ୟକ୍ତିତ୍ୱର ନିବିଡ଼ତମ ବିନ୍ଦୁରୁ ଗତି କରିଯାଏ ସମାଜ ବ୍ୟବସ୍ଥାର ସୁଦୂରତମ ପରିଧି ପର୍ଯ୍ୟନ୍ତ। ସେଇଠି ମଣିଷଙ୍କ ହୃଦୟକୁ ଛୁଇଁ ଛୁଇଁ ଯାଏ। କେବଳ

ଛୁଏଁ ନାହିଁ, ହୃଦୟ ଭିତରେ ପ୍ରବେଶ କରି ଅନୁରଣିତ କରେ ସମଗ୍ର ଅନ୍ତଃସ୍ଥଳକୁ। ଏହି କାରଣରୁ କବିତାର ଗତି କାଳରୁ କାଳକୁ, ମଣିଷରୁ ମଣିଷର ହୃଦୟକୁ। ଏହା ଅବାରିତ–ଅପ୍ରତିହତ। ଦୃଶ୍ୟରୁ ଦୃଶ୍ୟାତୀତ କବିତାର ଗତି। ତା'ର ଗତିପଥରେ କେତେ କେତେ ଅନୁଭୂତି–କେତେ ଅଶ୍ରୁ ଓ ବିଷାଦର ଗାଥା–କେତେ ଆନନ୍ଦ ଓ ଉଲ୍ଲାସର କାହାଣୀ। ସବୁ ରୂପ ନେଇଯାଏ ଗୋଟିଏ ଗୋଟିଏ ଶବ୍ଦରେ। କେତେବେଳେ ତାହା ହୋଇଯାଏ ପ୍ରତୀକ–ଦୃଶ୍ୟ ଓ ଅଦୃଶ୍ୟ, ସ୍ୱର୍ଗ ଓ ନରକର ସଂଯୋଗ ସେତୁ। କେତେବେଳେ ଚିତ୍ରକଳ୍ପ, ଆଉ କେତେବେଳେ ମିଥ୍ ବା ଆର୍କିଟାଇପ୍, ଯାହାହେଲେ ବି ପରିଚୟ କେବଳ କବିତା। ସେ ଚିରସ୍ରୋତା–ସ୍ରୋତସ୍ୱିନୀ।" ଡକ୍ଟର ଭୂୟାଁ 'କବିତାର ପରିଚୟ କବିତା' – ଏହି କଥା ଉଲ୍ଲେଖ କରି, କବିତା ସଂପର୍କିତ ଅନେକ ତତ୍ତ୍ୱ ଓ ଦର୍ଶନ ସ୍ମରଣ କରାଇ ଦେଇଛନ୍ତି। କବିତାର 'ଗୋଟିଏ ଗୋଟିଏ ଶବ୍ଦରେ' ତା' ଯାତ୍ରାପଥର କେତେ ଅନୁଭୂତି–କେତେ ଅଶ୍ରୁ ଓ ବିଷାଦର ଗାଥା, ଆନନ୍ଦ ଓ ଉଲ୍ଲାସର କଥା ରୂପ ପାଏ। ଏଠାରେ 'ତା' ଯାତ୍ରାପଥ' କୁହାଯାଇଛି ଡକ୍ଟର ଭୂୟାଁ ବ୍ୟବହାର କରିଥିବା କବିତା-ସ୍ରୋତସ୍ୱିନୀର 'ଗତିପଥ' ଅର୍ଥରେ। ଓଡ଼ିଆରେ ଗୋଟେ ଢଗ ଚଳେ– 'ଗାତରୁ ବାହାରି ଗାତରେ ପଶେ'। ଢଗର ତାତ୍ପର୍ଯ୍ୟ କବିତା ପକ୍ଷେ ପ୍ରାସଙ୍ଗିକ। ଇଂରାଜୀ ଭାଷାରେ କବିତାର ତତ୍ତ୍ୱ ଉଲ୍ଲେଖ କରିଥିବା ସମାଲୋଚକ କବିତାକୁ 'mankind's deepest concern' କହିଛନ୍ତି। ଡକ୍ଟର ଭୂୟାଁଙ୍କ ଭାଷାରେ 'କବିତା କବି ବ୍ୟକ୍ତିତ୍ୱର ନିବିଡ଼ତମ ବିନ୍ଦୁରୁ ଗତି କରିଯାଏ'। ଏହାର ଗତି କେଉଁଠି କି ? ପାଠକର ନିବିଡ଼ତମ ବିନ୍ଦୁକୁ। ଅନ୍ୟ ଅର୍ଥରେ କବିତା ଆରମ୍ଭ ହୁଏ; କବି-ବ୍ୟକ୍ତିର ଗୂଢ଼ ବା ଗୋପନ ମାନସରୁ  ସମାଜରେ ଚଳେ – ପଶେ କିନ୍ତୁ ପାଠକମାନଙ୍କର ଗୋପନ ମାନସରେ। ଏଇଥିପାଇଁ କବି ରାଧାମୋହନ ଗଡ଼ନାୟକ ଗୋଟେ କବିତାରେ ପ୍ରଶ୍ନ କରିଛନ୍ତି– 'କବିତା କାହିଁ ?', ସାଥେ ସାଥେ ଉତ୍ତର ଦେଇଛନ୍ତି 'ମନେ'। ଇଂରାଜୀ ସାହିତ୍ୟ ତତ୍ତ୍ୱରେ କବିତାର ସ୍ଥିତି ସଂପର୍କରେ ପ୍ରାୟ ଏହିଭଳି କୁହାଯାଇଛି– "If we destroy the writing or even all copies of a printed book we still may not destroy the poem, as if might be preserved in oral tradition or in the memory of a man." ବସ୍ତୁତଃ କବିତା-ସ୍ରୋତର ଉତ୍ସ କବି-ବ୍ୟକ୍ତିର ଗୋପନ ମନ, ପ୍ରବହମାନା କବିତା-ସ୍ରୋତସ୍ୱିନୀ ଅନିୟନ୍ତ୍ରିତା ଓ ସ୍ୱାଧୀନା, ତାହାର ଗତି ପାଠକର ସ୍ମୃତି ଇଲାକାପର୍ଯ୍ୟନ୍ତ। ପାଠକର ସ୍ମୃତିରେ ତା'ର ସ୍ଥିତି। ପାଠକର ପ୍ରତ୍ୟେକ ଥରର ଉଚ୍ଚାରଣରେ ତା'ର ନବନବ ପ୍ରକାଶମାନତା। କୁହାଯାଏ, କବିତା ଅଧ୍ୟୟନରେ ପାଠକର ଗ୍ରହଣଶୀଳତାର ଆମୋଦ ତହିଁର ବିଶ୍ଳେଷଣ ଓ ସମାଲୋଚନାରେ ରକ୍ଷା କରି ହୁଏ ନାହିଁ। ହୃଦୟ ଦେଇ ଯାହାକୁ ଭଲପାଇ ହୁଏ, ମନ ଦେଇ ତହିଁର ବିଚାର କଲେ ପୂର୍ବ ମାଦକତା ମିଳିବ କାହୁଁ ? ତଥାପି କାଳ କାଳ ଧରି କବି ଓ କବିତା ସଂପର୍କିତ ବିଚାର-ବିମର୍ଶ ହୋଇଛି, ହେଉଛି ଓ ହେବ। ଜାନକୀବଲ୍ଲଭ ପଟ୍ଟନାୟକଙ୍କ କବିତାଗୁଡ଼ିକ ସଂପର୍କରେ ଚର୍ଚ୍ଚା କରୁ କରୁ ସମାଲୋଚକ ଚିନ୍ତାମଣି ବେହେରା ଲେଖିଛନ୍ତି; "ରାଜନୀତିକ ଜାନକୀବଲ୍ଲଭଙ୍କୁ ଓଡ଼ିଆ ଜାତି କେବେ ହୁଏତ ସ୍ମରଣ କରି ନ ପାରେ–କିନ୍ତୁ 'ସିନ୍ଧୁ ଉପତ୍ୟକା'ର କବି ଜାନକୀବଲ୍ଲଭଙ୍କୁ ଓଡ଼ିଆ ଭାଷା ଓ ସାହିତ୍ୟ ଥିବାଯାଏ ଓଡ଼ିଆ ଜାତି ସ୍ମରଣ କରିବାକୁ ନିଶ୍ଚୟ ବାଧ୍ୟ ହେବ।" (ଝଙ୍କାର, ଏପ୍ରିଲ, ୧୯୮୮ ପୃ.୨୯)

'ସିନ୍ଧୁ ଉପତ୍ୟକା'ରେ ସଂକଳିତ କବିତାଗୁଡ଼ିକରେ କି କି ବିଶେଷତା ଚାକ୍ଷୁଷ ହୁଏ ତାହା ସଂପର୍କରେ ଆଲୋକପାତ କରାଯାଉ ।

ଇନ୍ଦିରାଗାନ୍ଧୀଙ୍କ ମୃତ୍ୟୁ (୩୧.୧୦.୧୯୮୪) ପରେ ଜାନକୀବଲ୍ଲଭ ଲେଖିଛନ୍ତି 'ଇନ୍ଦିରା ଲୋକମାତା ମା' କବିତା । ଗୁରୁପ୍ରସାଦ ମହାନ୍ତି 'ଗୋଟିଏ ମୃତ୍ୟୁର ପରେ ପରେ' ଶୀର୍ଷକରେ ଦୁଇଟି କବିତା ଲେଖିଛନ୍ତି; ଯାହା ତାଙ୍କ କବିତା ବହି 'ଆଶ୍ଚର୍ଯ୍ୟ ଅଭିସାର' (୧୯୮୮)ରେ ସଂକଳିତ । ଆଉ କେହି କେହି ଏ ଧରଣର କବିତା ଲେଖି ଇନ୍ଦିରାଙ୍କ ବ୍ୟକ୍ତିତ୍ୱ ସମ୍ବନ୍ଧରେ ନିଜ ନିଜ ଦୃଷ୍ଟିକୋଣ ବାଢ଼ିଥାଇପାରନ୍ତି । ଏଠାରେ 'ସିନ୍ଧୁ ଉପତ୍ୟକା' (୧୯୮୭) ପ୍ରକାଶନର ମାତ୍ର ଗୋଟିଏ ବର୍ଷ ବ୍ୟବଧାନରେ ଗୁରୁବାବୁଙ୍କ ବହି ପ୍ରକାଶ ପାଇଥିବାରୁ, ଏକା କଥାବସ୍ତୁର କାବ୍ୟିକ ବିନିଯୋଗ ଓ ଦୃଷ୍ଟିକୋଣ ନିମିତ୍ତ ଦୁଇ କବିଙ୍କ କବିତା ଚର୍ଚ୍ଚା ପରିସରକୁ ଅଣାଯାଇଛି । ଇଂରାଜୀ ଭାଷା-ସାହିତ୍ୟର ଅଧ୍ୟାପକ ଓ ଓଡ଼ିଆ କବି ଭାବରେ ଗୁରୁପ୍ରସାଦଙ୍କ ଖ୍ୟାତି-କୀର୍ତ୍ତି ଅବିସମ୍ବାଦିତ । ଲୋକଜୀବନ ଓ ସମାଜର ଚିହ୍ନରା ପରିବ୍ରାଜକ, ବହୁ ଶାସ୍ତ୍ରୀୟ ଗ୍ରନ୍ଥର ଅଧେତା ଜାନକୀବଲ୍ଲଭ କିନ୍ତୁ ସେ କାଳରେ ପ୍ରାଦେଶିକ ରାଜନୀତି-ନେତୃତ୍ୱ-ଖ୍ୟାତିର ଶୀର୍ଷରେ । ଗୁରୁପ୍ରସାଦଙ୍କ ମତରେ ଇନ୍ଦିରାଙ୍କ ଅକସ୍ମାତ୍ ମୃତ୍ୟୁ ସମୟକୁ ଭୟଭୀତ କରାଇଛି । କାହା କାହା ଭିତରେ ଏ ଭୟାବହତା ଆଣିଛି ନିଃସଙ୍ଗତା, ନିର୍ଜନତା । ଆଖି ଆଗରେ ଜଳିଯାଇଛି ସିଲ୍‌କ ପରି ଅଧା କଳା ଅଧା ଧଳା ବାଳ । ତଥାପି ତାଙ୍କୁ ଶୁଭୁଛି ଇନ୍ଦିରାଙ୍କ ହିନ୍ଦୀ ଅବା ଇଂରାଜୀ ଭାଷାର ଭାଷଣ ସ୍ୱର । କବିତାର ପରିଣତିରୁ କବି ଦୃଷ୍ଟିର ଜୀବନ ବାସ୍ତବତା ସମ୍ବନ୍ଧୀୟ ଉପଲବ୍ଧିକୁ ଏହିଭଳି କହିହେବ—ସମାଜରେ ହିଂସ୍ରତା ଓ ହିଂସ୍ରତାର ସଂହାର ଏମିତି ଚାଲୁଥିବ । ଏହାର ପରିଣତି ଦେଖି ହେଉଥିବ ଇନ୍ଦିରାଙ୍କ ଭଳି ରକ୍ତାକ୍ତ ମୃତ୍ୟୁରେ । ଏଭଳି ଘଟଣାର ନିରାକରଣ ହେବ କିପରି ? କବି ଗୁରୁପ୍ରସାଦଙ୍କ ଭାଷାରେ "'ମୃତ୍ୟୁହୀନ' ସେ ସତ୍ତାର ସ୍ମୃତିଛଡ଼ା ସାହଚର୍ଯ୍ୟ ସାନ୍ତ୍ୱନା ବା କାହିଁ ?" ଇନ୍ଦିରା ଜନସ୍ମୃତିରେ ବଞ୍ଚି ରହିବା ବ୍ୟତୀତ ଆଉ ବା କ'ଣ କରିହେବ ?

ଜାନକୀବଲ୍ଲଭଙ୍କ ମତରେ ଇନ୍ଦିରାଗାନ୍ଧୀ ଲାଞ୍ଛିତ, ମୂର୍ଚ୍ଛିତ, ନିପୀଡ଼ିତ ଜନଗଣଙ୍କପାଇଁ ନୂତନ ଯୁଗର ଭାଷା ଦେଇଛନ୍ତି । ପୁଣି 'କେତେବେଳେ ଝଡ଼ର ମେଘ ଉପରେ ବସି / କେତେବେଳେ ଅବା / ଶାନ୍ତିର ଶତଦଳ ଉପରେ / କେତେବେଳେ ବଜ୍ରର ନିର୍ଘୋଷରେ / ଅବା କଳହଂସର ଗୀତିରେ' ଇନ୍ଦିରା ଲୋକମାନଙ୍କୁ ଆହ୍ୱାନ କରିଛନ୍ତି– "ହେ ଅମୃତର ସନ୍ତାନ / ଭୟ ନାହିଁ / ଉଠ ଠିଆ ହୁଅ / ପ୍ରାପ୍ୟକର ଲାଭ ପାଇଁ ।" ଜାନକୀବଲ୍ଲଭଙ୍କ ଦୃଷ୍ଟିରେ ଇନ୍ଦିରା ଭାରତର ଆତ୍ମାର ପ୍ରକାଶମାନ ରୂପ । ତାହା ବିଲୀନ ହୋଇଯାଇଛି ଭାରତର ଆତ୍ମାରେ । ଇନ୍ଦିରାଙ୍କ ମୃତ୍ୟୁ ସମୟର ପରିବେଶ ଅପୂର୍ବ ଅଭିବ୍ୟକ୍ତି ଦେଇ ପରିସ୍ଫୁଟ । ପ୍ରତ୍ୟେକ ଚିତ୍ର-ଦୃଶ୍ୟ ପାଠକର ପୂର୍ବାନୁଭୂତ । ଅଥଚ ବିଷୟ ଘଟିତ ପରିବେଶକୁ ପ୍ରତୀକିତ କରିବା ଅଭିପ୍ରେତ । ସେହି ଚିତ୍ରାତ୍ମକ ଅଭିବ୍ୟକ୍ତି ପାଠକପକ୍ଷେ ଚମତ୍କୃତିର ହେତୁ ହୋଇଥାଏ । କାବ୍ୟାନୁଷଙ୍ଗ ଦୃଷ୍ଟିରୁ ଅଭିବ୍ୟକ୍ତି ରୀତିରେ ଉପମା, ରୂପକ, ଚିତ୍ରକଳ୍ପ, ପ୍ରତୀକ ଆଦିର ଉପଯୋଗ ହୋଇଥାଇପାରେ । ଫଳ କିନ୍ତୁ ପାଠକକୁ ଚମତ୍କୃତ କରିବା । ଯେପରି—

"ସେ ଦିନ ଥିଲା ଅସ୍ତରାଗର ଦିନ
ତେଣୁ ହେମନ୍ତର ସୂର୍ଯ୍ୟ ମଳିନ ପଡ଼ିଗଲା
ଆକାଶ ପୃଥିବୀ ସମୁଦ୍ର
ହଠାତ ଏକ ଅପୂର୍ବ ଅରୁଣିମାରେ
ରଂଜିତ ହୋଇଗଲା ।
ଏବଂ ଧୀରେ ଧୀରେ ଅନ୍ଧକାର ଆସି
ତା'ର ବିଶାଳ ଚଦରରେ
ସବୁ ଘୋଡ଼େଇ ନେଲା
କୁଟୀର ପ୍ରାସାଦ
ସହର ଗ୍ରାମ ପର୍ବତ
ଅରଣ୍ୟ ।" (ଇନ୍ଦିରା ଲୋକମାତା ମା–ପୃ.୫)

ଗୁରୁପ୍ରସାଦ ମହାନ୍ତିଙ୍କ 'ଗୋଟିଏ ମୃତ୍ୟୁର ପରେ ପରେ' ନାମରେ ନାମିତ ଦୁଇଟି କବିତା ସହିତ ଜାନକୀବଲ୍ଲଭଙ୍କ 'ଇନ୍ଦିରା ଲୋକମାତା ମା' କବିତାକୁ ତୁଳନାତ୍ମକ ଭାବରେ ଉପସ୍ଥାନ କରାଯାଇଛିର ଅର୍ଥ ନୁହେଁ କିଏ କାହାଠାରୁ ଅଧିକ କଳାତ୍ମକ ତାହା ଦର୍ଶାଇବା । ମୁଖ୍ୟମନ୍ତ୍ରୀ, କେନ୍ଦ୍ରରେ ମନ୍ତ୍ରୀ, ଆସାମରେ ରାଜ୍ୟପାଳ ଆଦି ପଦପଦବୀରେ ରହିଥିବା ଜାନକୀବଲ୍ଲଭ ପଟ୍ଟନାୟକ ଲୋକମାନଙ୍କ ମଧ୍ୟରୁ ଅଳ୍ପ କେତେଜଣଙ୍କ ନିକଟରେ ସାହିତ୍ୟିକ ଭାବରେ ଶୁଣାଦୃଷ୍ଟିରୁ ଜ୍ଞାତ, କେତେଜଣ ସାହିତ୍ୟ ପାଠକ ତାଙ୍କ ମହାଭାରତ, ରାମାୟଣ, ଭାଗବତ, ଅନୂଦିତ ବଙ୍କିମ ଉପନ୍ୟାସମାଳା, 'ପୌରୁଷ' ପତ୍ରିକା ସଂପାଦନା ଭଳି ସଂସ୍କୃତି ରସାଣିତ ଗମ୍ଭୀର ସାହିତ୍ୟିକକୃତିଗୁଡ଼ିକ ବିଷୟରେ ଅବଗତ । ସେ କବିତା ଲେଖିଛନ୍ତି ଓଡ଼ିଆ ଭାଷାରେ– ଏ କଥା ଜାଣିଥିବା ପାଠକଙ୍କ ସଂଖ୍ୟା ନଗଣ୍ୟ । ଆଧୁନିକ ଓଡ଼ିଆ କବିତା ବିଶେଷକରି ସ୍ୱାଧୀନତା ପରବର୍ତ୍ତୀକାଳରେ ଯେଉଁ ଯେଉଁ ବାଦରଧିଶାଧରି ଅଥବା କାବ୍ୟଟେକ୍‌ନିକ୍ ବ୍ୟବହାର ଓ ପ୍ରୟୋଗ ଆଦିର ବିଶେଷ ଚର୍ଚ୍ଚା କରାଯାଇ କବିତାଗୁଡ଼ିକର ମାନ ପରଖା ଯାଇଛି, ଏବେ ବି ଯାଉଛି ଏବଂ ଏହି ମାପରେ କବିମାନଙ୍କର ଯୁଗୋଚିତ କଳାତ୍ମକ ସଫଳତା ନିର୍ଦ୍ଧାରଣ କରାଯାଇଛି; ସେମାନଙ୍କ ମଧ୍ୟରେ ଗୁରୁପ୍ରସାଦ ମହାନ୍ତି ଜଣେ ବହୁଚର୍ଚ୍ଚିତ କବି । ଏଇଥିପାଇଁ ଏକା ବିଷୟବସ୍ତୁକୁ ଗୁରୁବାବୁ ପ୍ରୟୋଗବାଦୀ କାବ୍ୟ ଟେକ୍‌ନିକ୍ ଦେଇ କିଭଳି କବିତା ଲେଖିଛନ୍ତି ଏବଂ ପରମ୍ପରାରେ ନୂତନତା ଆଣି ଭିନ୍ନ ସ୍ୱାଦ ଦ୍ୱାରା ପାଠକମାନଙ୍କୁ ଚମତ୍କୃତ କରିପାରୁଥିବା ଜାନକୀବଲ୍ଲଭ ଏକା ପ୍ରସଙ୍ଗ ଉପଜୀବ୍ୟରେ କିଭଳି କବିତା ଫୁଟାଇଛନ୍ତି ତାହା ଦେଖାଇଦେବା ଏ ଲେଖାର ଉଦ୍ଦେଶ୍ୟ ମାତ୍ର । ଏଠି କିନ୍ତୁ ମନେରଖିବାକୁ ହେବ କବିତାରେ ପ୍ରୟୋଗବାଦ, ପରମ୍ପରାରେ ନୂତନତା ଆନୟନର କବିତା–ଦୁଇଟିଯାକ କଥା ଆଧୁନିକ କବିତା ତତ୍ତ୍ୱଭୁକ୍ତ ।

ଜାନକୀବଲ୍ଲଭଙ୍କ 'ସରୀସୃପ' କବିତା ପାଠକାଳରେ ବିନୋଦ ଚନ୍ଦ୍ର ନାୟକଙ୍କ 'ସରୀସୃପ' କବିତା ପାଠକର ସ୍ମରଣକୁ ଆସିବା ସ୍ୱାଭାବିକ । ବିନୋଦଚନ୍ଦ୍ରଙ୍କ କବିତାଟିର ନାଁରେ ତାଙ୍କ କବିତା ସଂକଳନର ନାମକରଣ କରାଯାଇଛି 'ସରୀସୃପ' (୧୯୬୯) ଓ ସଂକଳନଟି

ସାହିତ୍ୟ ଅକାଦେମୀ ତରଫରୁ ପୁରସ୍କୃତ । ବିନୋଦବାବୁଙ୍କ 'ସରୀସୃପ' ଅତିବାସ୍ତବବାଦୀ ଛାପର କବିତା । ମଣିଷ ଭିତରେ ଯୌନାକାଙ୍କ୍ଷା ଏକାନ୍ତ ଆଦିମ ଓ ସରୀସୃପର ଏହି ଆକାଙ୍କ୍ଷା ଭଳି ପ୍ରାଗୈତିହାସିକ–ଏହି ଭାବ କବିତାର କଥାବସ୍ତୁ । ଉପଜୀବ୍ୟ ଏହି ଭାବର ପୃଷ୍ଠଭୂମିରେ କବି ଉଦ୍ଦୀପନ ସତ୍ତାରୂପା ପ୍ରକୃତିର ଚିତ୍ର ଏହି ଭାବରେ ଉପସ୍ଥାପନ କରିଛନ୍ତି– "ସନ୍ଧ୍ୟାର ଆକାଶ / ଗୁଜୁରାଟୀ ରମଣୀର ପାଲଟା ଶାଢ଼ି ପରି ସଫେଦ ଛାୟାପଥ / ଅତି ପରିଚ୍ଛନ୍ନ / ଦିଗ ତଳେ ବାଇଗଣୀ ସ୍ୟାହି ପରି ସ୍ୱଚ୍ଛ ମେଘଛାୟା" । ଏହି ପୃଷ୍ଠଭୂମିରେ କାବ୍ୟନାୟକ ଯେଉଁ ନାରୀକୁ ଭେଟିଛନ୍ତି ତା'ର ପିଠିପଟେ ତୈଲଙ୍ଗୀ ଖୋଷା ଓ ଗ୍ରୀବାସ୍ପର୍ଶୀ ବିରଳ କୁଞ୍ଚିତ କେଶ ରହିଛି । ଗୁରୁ-ନିତମ୍ବିନୀର ଦୁଇ ବାହୁ ଫାଙ୍କରେ ଦେଖାଯାଇଛି ପରିପୁଷ୍ଟ ସ୍ତନ । ଆଦିମ ସରୀସୃପର ଦେହଭୋଗ ବାସନା କାବ୍ୟନାୟକଙ୍କୁ ଅସ୍ଥିର କରିଛି । ଏହି ବାସନା ଚରିତାର୍ଥ କରିଛନ୍ତି ସେ ନାରୀର ତନୁତଟରେ । ବିନୋଦଚନ୍ଦ୍ରଙ୍କ 'ସରୀସୃପ' କବିତାର ନିର୍ଯ୍ୟାସ ତାଙ୍କରି ଭାଷାରୁ ପଢ଼ିହୁଏ– "ସେଇ ନଗ୍ନ ସ୍ୱାସ୍ଥ୍ୟବତୀ ଅଙ୍ଗ/ତାହାରେ ମୁଁ କରେ ନମସ୍କାର/ସେଇ ସ୍ପଷ୍ଟ ସେଇ ଚିରନ୍ତନ/ ଉପରେ ସଫେଦ ଜହ୍ନ ପରି ଅତି ପରିଚ୍ଛନ୍ନ ।" ପାଶ୍ଚାତ୍ୟ ସାହିତ୍ୟର ବାଦ (ism) ପ୍ରୟୋଗରେ ସ୍ୱାଧୀନତା ପରବର୍ତ୍ତୀକାଳର ଓଡ଼ିଆ କବିତାକୁ ଆଧୁନିକ କୁହାଇବାର କବିଚାତୁରୀ ବିନୋଦବାବୁଙ୍କ 'ସରୀସୃପ'ରେ ଦୁର୍ଲକ୍ଷ୍ୟ ରହେ ନାହିଁ । ଅତିବାସ୍ତବବାଦ (surrealism)ର ଅନୁପ୍ରବେଶ ପାଇଁ କବି ନାୟକ ଯେଉଁ ନୂତନ ଟେକ୍‌ନିକ୍‌ର ପ୍ରୟୋଗ ଓ ପରୀକ୍ଷା କରିଛନ୍ତି ତାହା 'ସରୀସୃପ' କବିତାକୁ ଭାବପକ୍ଷ ଦୃଷ୍ଟିରୁ ପରମ୍ପରା ବିଚ୍ଛିନ୍ନ ଏବଂ ଶିଳ୍ପରୂପ ଦୃଷ୍ଟିରୁ ଦୁର୍ବୋଧ କରାଇ ନାହିଁ– ଏତକ ଯାହା ପାଠକପାଇଁ ଆଶ୍ୱାସନାର କଥା । ପୂର୍ବରୁ କୁହାଯାଇଛି ଜାନକୀବଲ୍ଲଭ ସଂସ୍କୃତି-ସ୍ନାତ ବ୍ୟକ୍ତିତ୍ୱ । ପରମ୍ପରା ଛୁଡ଼ିବା ତାଙ୍କପକ୍ଷେ ସମ୍ଭବପର ନୁହେଁ । କେବଳ ଯୌନତା (Sex) କାହିଁକି କ୍ଷୁଧା, ପ୍ରେମ, ଜନ୍ମ, ମୃତ୍ୟୁ ମଧ୍ୟ ସରୀସୃପ ପରି ପ୍ରାଚୀନ, ନିତ୍ୟ ଓ ନୂତନ । କବି ପଟ୍ଟନାୟକଙ୍କ ଭାଷାରୁ 'ସରୀସୃପ' କବିତାର କବିଦୃଷ୍ଟିକୁ ପଢ଼ାଯାଉ–

ସେହି ଏକ ସରଣୀରେ
ସେହି ଏକ କରଣୀରେ
ଅଭିନୟ ପୁରୁଣାର ହୁଏ ନୂଆକରି
କ୍ଷୁଧା, ପ୍ରେମ, ଜନ୍ମ ମୃତ୍ୟୁ
ଘୂରିବୁଲେ ଘୁଷୁରି ଘୁଷୁରି
ସରୀସୃପ ସରି । (ସିନ୍ଧୁ ଉପତ୍ୟକା - ପୃ.୧୪)

'ଓଡ଼ିଆ କାବ୍ୟ-କୌଶଳ' (୧୯୮୩)ରେ ଗବେଷକ ସୁଦର୍ଶନ ଆଚାର୍ଯ୍ୟ 'ଚମତ୍‌କୃତି ହିଁ ଓଡ଼ିଆ କାବ୍ୟର ସର୍ବସ୍ୱ' ଉପଶୀର୍ଷକରେ ଓଡ଼ିଆ କାବ୍ୟାବଳୀରେ ତାହା କିପରି କବିର କଳା-କୌଶଳ-ସ୍ୱାତନ୍ତ୍ର୍ୟ, ତାହା ଆଲୋଚନା କରିଛନ୍ତି । ସଂସ୍କୃତ କାବ୍ୟାଦର୍ଶଗୁଡ଼ିକୁ ଏକାଧାରରେ ଗ୍ରହଣ କରି ଓଡ଼ିଆର କବି କାବ୍ୟ-ନାରୀ ସୃଷ୍ଟି କରିଛନ୍ତି; ଉଦ୍ଦେଶ୍ୟ ପାଠକ ପ୍ରାଣରେ ଲୋକୋତ୍ତର ଚମତ୍କାର-ପ୍ରାଣ ରସ ଆସ୍ୱାଦନ କରାଇବା । 'ରସେ ସାରଶ୍ଚମତକାରଃ' ଅର୍ଥାତ୍ ରସମାନଙ୍କରେ ଚମତ୍କାର ହିଁ ସାର–ଏଭଳି କାବ୍ୟତତ୍ତ୍ୱର ଆବିଷ୍କର୍ତ୍ତା 'ସାହିତ୍ୟ ଦର୍ପଣ' ପ୍ରଣେତା ବିଶ୍ୱନାଥ

କବିରାଜଙ୍କ ପ୍ରପିତାମହ ପଣ୍ଡିତ ନାରାୟଣ। ('ସାହିତ୍ୟ ଦର୍ପଣ'ର ତୃତୀୟ ପରିଚ୍ଛେଦ ଦ୍ରଷ୍ଟବ୍ୟ) ବୋଧହୁଏ ଏହି ତତ୍ତ୍ୱର ପ୍ରସାର ଘଟିଛି ଓଡ଼ିଆ କାବ୍ୟକାରମାନଙ୍କ କାବ୍ୟକୃତିଗୁଡ଼ିକରେ। ଜାନକୀବଲ୍ଲଭ ପଟ୍ଟନାୟକ 'ଜାନକୀବଲ୍ଲଭ ବିଳାସ' କାବ୍ୟ ରଚୟିତା ଗୋକୁଳାନନ୍ଦ ପଟ୍ଟନାୟକ (୧୮୮୩-୧୯୪୬)ଙ୍କ ଔରସଜ। ନିର୍ଦ୍ଦିଷ୍ଟ ଓଡ଼ିଆ କାବ୍ୟ ବୁନିଆଦିର ପରିବେଶରେ ସେ ବର୍ଦ୍ଧିତ ଓ ସମୟୋଚିତ ରୀତିରେ ସେହି ବୁନିଆଦିର ସେ ଉତ୍ତର ସାଧକ। 'ସରୀସୃପ' କବିତାର ପ୍ରଥମ ପଙ୍‌କ୍ତିରେ କବି ସରୀସୃପ ଉତ୍ପନ୍ନରସ୍ଥଳ ଧରଣୀର ଆଦିମ ଅରଣ୍ୟ କେତେ ପ୍ରାଚୀନ ତାହା 'ବରାହର ଦନ୍ତେ ଲଗ୍ନ ଧରଣୀ' ଦ୍ୱାରା ସୂଚାଇଛନ୍ତି। ଏହି ଖଣ୍ଡବାକ୍ୟ ପଠନ ମାତ୍ରକେ ପରମ୍ପରାକ୍ରମେ ଚଳିଆସିଥିବା ଏବଂ ଜୟଦେବଙ୍କ 'ଗୀତଗୋବିନ୍ଦ'ରେ ବର୍ଣ୍ଣିତ ଶୂକରରୂପଧାରୀ କେଶବଙ୍କର ଦଶନ ଶିଖରେ ଧରଣୀ ଲଗ୍ନଥିବା ପ୍ରସଙ୍ଗ ପାଠକର ସ୍ମୃତିକୁ ଆନ୍ଦୋଳିତ କରେ। ଏହି ଧରଣୀରେ ପ୍ରଥମେ ଉଦ୍ଭିଦ ପ୍ରକୃତିର ଆବିର୍ଭାବ। ନାନାଦି ଗଛ ପତ୍ରାବଳୀର ରଙ୍ଗ ଅନେକ, କବିଙ୍କ ଭାଷାରେ 'ସବୁଜ ଶ୍ୟାମଳ / ନୀଳ ଈଷତ୍ ଲୋହିତ / ରକ୍ତବର୍ଣ୍ଣ। (ପ୍ରକୃତିକୁ ସଂସ୍କୃତିରେ' ରୂପାନ୍ତରୀକରଣ ମାନବ ସମାଜର ଏକ ଚିରନ୍ତନ ପ୍ରବହମାନ ଧାରା, ଏହି ପର୍ଯ୍ୟାୟରେ ପ୍ରାକୃତିକ ରଙ୍ଗ ଓ ଭାଷାଭିତ୍ତିକ ରଙ୍ଗର ଚର୍ଚ୍ଚାକରି ଡକ୍ଟର ବିଜୟ ପ୍ରସାଦ ମହାପାତ୍ର ଓଡ଼ିଆ ଭାଷାରେ କୋଡ଼ିଏଟି ରଙ୍ଗ ଥିବା ଲେଖିଛନ୍ତି– ଝଙ୍କାର, ଏପ୍ରିଲ ୧୯୮୯) ପୁଣି କବି ପଟ୍ଟନାୟକଙ୍କ ଭାବନାରେ ସମୁଦ୍ର, ସୂର୍ଯ୍ୟ, ଅରଣ୍ୟ, ବାତ୍ୟା, ବସନ୍ତ ଆଦି ଆଦିମ ସୃଷ୍ଟି। ଅୟୁତଯୁଗର କର୍ମଶାଳାରୁ ସେଗୁଡ଼ିକର ଆବିର୍ଭାବ। ସୃଷ୍ଟି ଲଭନ୍ତି ତିମିମାଛ, ଛୋଟ ମାଛ, ଡାଇନୋସିଅ, କିମ୍ଭୀର, ନାଗ, ତମ୍ପ, ଚିତି, ଶଙ୍ଖଚୂଡ଼, ଅଜଗର ଇତ୍ୟାଦି। ସୃଷ୍ଟି ସହିତ ଶେଷର ସମ୍ପର୍କ ଓତପ୍ରୋତ। ଯେପରି–

ବିଶାଳ ସମୁଦ୍ର ଏଥି
ଅକ୍ଟୋପସ ପରି
ଫେନିଳ ତରଙ୍ଗ ଦନ୍ତେ
ଚୋବାଏ ଭୂମିର ପାଦ
ଟିକିଟିକି କରି
ତଥାପି ନ ମେଣ୍ଟେ କ୍ଷୁଧା
ଶୋଇରହେ
ଗ୍ରାସିବାକୁ ଯେତେ ନଦନଦୀ
ଅଜଗର ପରି। (ସରୀସୃପ–ସିନ୍ଧୁ ଉପତ୍ୟକା–ପୃ.୧୧)

ଆଧୁନିକ ଓଡ଼ିଆ କବିତାକୁ ବିଚାରିବାର ସାଂପ୍ରତିକ ଦୃଷ୍ଟିରୁ 'ବିଶାଳ ସମୁଦ୍ର'କୁ ମୃତ୍ୟୁର ପ୍ରତୀକ, 'ବରାହର ଦନ୍ତେ ଲଗ୍ନ ଧରଣୀ'କୁ ମିଥ୍, 'ଫେନିଳ ତରଙ୍ଗ ଦନ୍ତେ'କୁ ଚିତ୍ରକଳ୍ପ, 'ଅଜଗର ପରି'କୁ ଚିତ୍ରକଳ୍ପ କୁହାଯାଇଛି। ପୂର୍ବୀ କାବ୍ୟ ବିଚାର ଦୃଷ୍ଟିରୁ ସେଗୁଡ଼ିକ ଯଥାକ୍ରମେ ସୂଚନା, ଉଲ୍ଲେଖ (ପୁରାଣ ଦୃଷ୍ଟାନ୍ତ), ରୂପକ, ଉପମାଭାବେ ଚିହ୍ନାଯାଉଥିଲା, ଏବେ କେହିକେହି ଏହି ଧାରାରେ କାବ୍ୟପ୍ରସଙ୍ଗ ବୁଝି, ବୁଝାଇଥାନ୍ତି। ଉଦ୍ଭିଦର ଅରଣ୍ୟ ଭିତରେ ସୃଷ୍ଟି ଲଭେ ନଦୀ। ବେଗବତୀ ନଦୀ ଘୁଷୁରି ଘୁଷୁରି ମୁହାଁଏ ସମୁଦ୍ର ଆଡ଼କୁ। ସିଆଡ଼େ ନ ଯିବା ପାଇଁ ଅରଣ୍ୟ

ଚେତାଏ। ନଦୀ ପ୍ରତି ଅରଣ୍ୟର ଉକ୍ତି–"ତୁମ ଭୀମକାନ୍ତ ରୂପେ ମୋହିଲ ସକଳେ / କି ହୀନ ବୁଦ୍ଧିରେ / ଏବେ ହଜାଇବ ନିଜ ସତ୍ତା / ନିଜ ସ୍ୱାତନ୍ତ୍ର୍ୟରେ ? / ଫେରିଯାଅ / ଏ ସମୁଦ୍ର ମହାକଳରୋଳେ / ଗ୍ରାସିବାକୁ ଚାହିଁଅଛି / ବିଶାଳ ଉଦରେ / ପଶିଗଲେ ଥରେ କେବେ ନ ପାରିବ ଫେରି।" ଅରଣ୍ୟକୁ ଶୁଭିବା ଭଳି ସ୍ୱରରେ ସମୁଦ୍ର ଫେଣରୂପୀ ଦାନ୍ତ ଦେଖେଇ କହେ;

"ଶୁଣ ନଦୀ ଶୁଣ ବେଗବତୀ
ଏ ଅରଣ୍ୟ ପଙ୍ଗୁ ହୀନଗତି
ନ ଯାଅ ନ ଯାଅ ବୋଲି ଏ ସ୍ଥାବର କହେ
ହେ ଚଞ୍ଚଳା ସ୍ରୋତସ୍ୱିନୀ କଳ କଲ୍ଲୋଳିନୀ
ଗତିରୋଧି ହେବ କି ବନ୍ଦିନୀ
ଅରଣ୍ୟର ଅନ୍ଧକାର ଗୃହେ ?" (ତତ୍ରୈବ–ପୃ. ୧ ୨)

ଆଦିମ ପ୍ରକୃତି ରଙ୍ଗମଞ୍ଚ। ସ୍ଥଳରେ, ଜଳରେ, ସ୍ଥାବରଜଙ୍ଗମାଦି ଜୀବ ଏହି ମଞ୍ଚରେ ଅଭିନେତା-ଅଭିନେତ୍ରୀ। ହେନ୍ତାଳ, ସୁନ୍ଦରୀ, ଶିଶୁମାର, କଳାବଣି, ଧଳାବଣି, କେରୁଆଁ, ଗୁଆଁର, କରଞ୍ଜାଦି ବୃକ୍ଷର ଛାଇରେ ଅରଣ୍ୟ ଗଛମାନଙ୍କ ସହ ମନ୍ତ୍ରଣା କରେ। ନଦୀ ଗତିରୋଧ କରି ସମୁଦ୍ରକୁ ଉଚିତ ଶିକ୍ଷାଦେବା ନିମିତ୍ତ ପ୍ରଯତ୍ନ କିପରି କରିହେବ ତାହା ଶୁଣାଏ ଅରଣ୍ୟ। ରାଇଗଛ ଅରଣ୍ୟକୁ ଏ ବାବଦରେ ଚିନ୍ତା ନ କରିବାକୁ ଶୁଣାଏ। ନିଜ ଚେରରେ ଦୃଢ଼ ବନ୍ଧ ବାନ୍ଧେ ରାଇ। ସମୁଦ୍ର ପ୍ରତି ଆକୃଷ୍ଟା ଅରଣ୍ୟର ନଦୀ ଅବରୁଦ୍ଧା ହୁଏ। ପ୍ରେମପ୍ରବଣା, ଆବେଗ ଗତି ପ୍ରଖରା ଅରଣ୍ୟ ନଦୀ କ'ଣ ପ୍ରିୟ ସମୁଦ୍ରର ମିଳନରୁ ବଞ୍ଚିତ ରହିବ? ରାଧାନାଥ ରାୟ କହିବେ ପ୍ରେମର ଗତି ସୂକ୍ଷ୍ମ। ସ୍ଥୂଳରେ ପ୍ରତିବନ୍ଧକ ଠିଆ କରିହେବ ନାହିଁ ତା' ଗତି ବିରୋଧରେ। ସେହି ମଞ୍ଚରେ ଦେଖାଯାଏ କାଙ୍କିଣୀ ନାମକ ମହାକୀଟ। ସେ କାଟିନିଏ ରାଇଗଛର ଚେର। ବସ୍ତୁତଃ 'ବନ୍ଧ କରେ ରାଇ / କାଙ୍କିଣୀ କରେ ଘାଇ।' ପରିଣତିରେ ପର୍ବତ କନ୍ୟା ସମୁଦ୍ରରେ ମିଶେ। ନାଟକର ଯବନିକା ପଡ଼େ। ପ୍ରସଙ୍ଗୋଚିତଭାବେ ସଚ୍ଚିଦାନନ୍ଦ ରାଉତରାୟଙ୍କ କବିତାରୁ ପଙ୍କ୍ତି କେତୋଟି ସ୍ମରଣ କରିହୁଏ;

"ବନ୍ଦୀ
ଏକ ପାର୍ବତୀୟ ନଦୀ।
ମଥୁରା ପାଚେରି ଘେରା
ରାଣୀହଂସପୁରେ
ଅଥବା ଯମୁନା କୂଳେ
ଉନ୍ମୁକ୍ତ ପ୍ରାନ୍ତରେ।
ଏକ ମହା ଯୌନତାର ସ୍ୱର
ନିବିଡ଼ ସମୁଦ୍ର କଣ୍ଠେ
ଡାକେ ମୋତେ।
ଡାକେ ପ୍ରତିଥର। (ସାଗରିକା–କବିତା–୧୯୬୯, ପୃ.୫)

ସମୁଦ୍ର କଣ୍ଠରେ ମହାଯୌନତାର ସ୍ୱରୀୟ ଆହ୍ୱାନ । ମୃତ୍ୟୁର କୀଟ ପ୍ରେମର ପ୍ରତିବନ୍ଧକକୁ ଭାଙ୍ଗିଦିଏ । ଯୌନତାର ପୂର୍ଣ୍ଣତା ମୃତ୍ୟୁରେ । ବ୍ୟାସଦେବ ମହାଭାରତରେ ପୁରୁଙ୍କ ପ୍ରତି ଯଯାତିଙ୍କ ଉପଦେଶଛଳରେ ଏହି ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି–

ନ ଜାତୁ କାମଃ କାମାନାମୁପଭୋଗେନ ଶାମ୍ୟତି
ହବିଷ୍ୟ କୃଷ୍ଣବର୍ତ୍ମେବ ଭୂୟ ଏବାଭିବର୍ଧତେ ॥

(ପଞ୍ଚାଅଶୀ ଅଧ୍ୟାୟ)

ଅର୍ଥାତ୍ ବିଷୟ କାମନା ବିଷୟ ଉପଭୋଗରେ ଶାନ୍ତ ହୁଏ ନାହିଁ । ଘିଅ ଅଗ୍ନିକୁ ଅଧିକ ତେଜୋଦୀପ୍ତ କରାଏ । ତେଣୁ ଯୌନତାରେ ସୁଖ ଓ ପୂର୍ଣ୍ଣତା 'ଏକ ସମୁଦ୍ରର ଅସଂଖ୍ୟ ନାୟିକା' (ସରୀସୃପ–ପୃ.୧୪)ରେ ସମ୍ଭବପର ହେବ କାହୁଁ ? ମୃତ୍ୟୁ ଓ ମୈଥୁନ ଜୀବନମୁଦ୍ରାର ଦୁଇଟି ପାଖ । ଯୌନତାର ସାଥେ ସାଥେ ମୃତ୍ୟୁ । ସଚ୍ଚିଦାନନ୍ଦ ରାଉତରାୟଙ୍କ ଭାଷାରେ–

"ମୃତ୍ୟୁ ଛଡ଼ା ଯୌନତାରେ ପୂର୍ଣ୍ଣତା ଯେ ନାଇ ।
ମୃତ୍ୟୁ ଓ ମୈଥୁନ ଯେପରି ହାତ ଧରାଧରି ହୋଇ
ଚାଲିଛନ୍ତି ଅନାଦି କାଳରୁ
ରତି-ହ୍ରସ୍ୱ ରାତିର ଗହ୍ୱରୁ
ମାଦ୍ରି ଡାକେ ବାରେ ବାରେ
ମୃତ୍ୟୁ ଆଉ ସଂଭୋଗ ଶେଯରୁ ।"

(ଦ୍ରୌପଦୀର ଶାଢ଼ି–କବିତା-୧୯୬୯)

ବିନୋଦଚନ୍ଦ୍ର ନାୟକଙ୍କ 'ସରୀସୃପ'ରେ ଯୌନତା ଅଭିପ୍ରେତ ଜୀବନ (ଅତିବାସ୍ତବବାଦ), ସଚ୍ଚିଦାନନ୍ଦ ରାଉତରାୟଙ୍କ 'ସାଗରିକା' ଓ 'ଦ୍ରୌପଦୀର ଶାଢ଼ି' କବିତାରେ ଯୌନତା ଓ ମୃତ୍ୟୁ ଦୋଳାରେ ଦୋଳାୟିତ ଜୀବନ (ଅସ୍ତିତ୍ୱବାଦ - Existence preceeds essence) କଥା ବର୍ଣ୍ଣିତ । କିନ୍ତୁ ଜାନକୀବଲ୍ଲଭଙ୍କ 'ସରୀସୃପ'ରେ ଜୀବନ ସତ୍ୟର ବିବର୍ତ୍ତନ ସ୍ୱାଭାବିକ ରୀତିରେ ବର୍ଣ୍ଣିତ । ପାଶ୍ଚାତ୍ୟର କୌଣସି ବାଦ (ism) ପ୍ରୟୋଗଠାରୁ ଦୂରତା ରକ୍ଷାକରି ଜାନକୀବଲ୍ଲଭଙ୍କ 'ସରୀସୃପ' ଆଧୁନିକ ବୋଲାଇବାର ଗୁଣ ରକ୍ଷା କରିପାରିଛି, କେବଳ ପରମ୍ପରାରେ ନୂତନ ଦୃଷ୍ଟି ସମ୍ପାତ କରିପାରିବାର ପ୍ରତିଭା ହେତୁ ।

ଇତିହାସ ଓ ପରମ୍ପରାଲବ୍ଧ ସ୍ମୃତି-ପୁଞ୍ଜିର ବ୍ୟବହାରରେ ଗଠିତ 'ସିନ୍ଧୁ ଉପତ୍ୟକା' କବିତା । ପ୍ରଥମେ କବିତାଟି 'ଇଂରେଜ ଯାଏ' ନାଁ'ରେ ୧୯୪୮ ମସିହାରେ 'ପ୍ରଜାତନ୍ତ୍ର'ରେ ପ୍ରକାଶ ପାଇଥିଲା । ସମାଲୋଚକ ଚିନ୍ତାମଣି ବେହେରା ଏହି କବିତାକୁ କବିଙ୍କ ସାର୍ଥକ ଓ ରସୋତ୍ତୀର୍ଣ୍ଣ କୃତି ବୋଲି ଦର୍ଶାଇଛନ୍ତି । ଅଧିକନ୍ତୁ 'ଏଥିରେ ବୈଚିତ୍ର୍ୟମୟ କବି ବ୍ୟକ୍ତିତ୍ୱର ବିଭିନ୍ନ ବିଭାବ ଯେପରି ଅଭିବ୍ୟକ୍ତି ଲାଭ କରିଛି, ତା'ର ପଟାନ୍ତର ଅନ୍ୟତ୍ର ମିଳିବା ଦୁର୍ଲଭ' ବୋଲି ସେ ଲେଖିଛନ୍ତି । ଏହାର ଏକମାତ୍ର କାରଣ, କବିତାଟିରେ କବି-ଆତ୍ମା ସହଜ-ସ୍ଫୂର୍ତ୍ତିରେ ବିଳସିତ । ପରାଧୀନତାର ନିଗଡ଼ରୁ ମୁକ୍ତ ହୋଇଛି ଦେଶ । ନିଜେ କବି ଜାତୀୟତାବାଦୀ ଆନ୍ଦୋଳନ ସହ ସଂପୃକ୍ତ ଥିବାରୁ ଈପ୍ସିତ ଫଳ ମିଳିଯିବା ପରେ ଖୋଲାମେଲାରେ ନିଜ ଦେଶର ଗୌରବ

ଗରିମା ଗାନ କରିବାର ପ୍ରତିଭୂ 'ସିନ୍ଧୁ ଉପତ୍ୟକା' କବିତା। ସିନ୍ଧୁ ଉପତ୍ୟକା ହର୍‌ପପା ସଂସ୍କୃତିର ଅଂଶବିଶେଷ। ଭାରତବର୍ଷ ତହିଁର ଅନ୍ତର୍ଭୁକ୍ତ। ସିନ୍ଧୁ ସଭ୍ୟତା ଗଢ଼ିବାରେ ଆର୍ଯ୍ୟ, ଅନାର୍ଯ୍ୟ, ଦ୍ରାବିଡ଼, ଶ୍ୱେତ ନା ଲୋହିତାଙ୍ଗ ମଣିଷମାନଙ୍କର ଭୂମିକା ରହିଛି। ଯାହାହେଉ ପରକାଳରେ ଦ୍ରାବିଡ଼ୀୟ ସଭ୍ୟତା ପରିବର୍ତ୍ତେ ଆର୍ଯ୍ୟ ସଭ୍ୟତାର ଅଭ୍ୟୁଦୟ ଘଟିଛି ଭାରତବର୍ଷରେ। ସଭ୍ୟତାର ବିକାଶ ପ୍ରସାରିତ ହୋଇଛି ପରିବ୍ୟାପ୍ତ ଭୂମି ଆର୍ଯ୍ୟାବର୍ତ୍ତରେ। ପ୍ରକୃତିର ଅନ୍ଧପୂଜା ପରିବର୍ତ୍ତେ ବ୍ୟକ୍ତିର ଜ୍ଞାନାଭିଳାଷ ଧର୍ମ ଭାବରେ ଖ୍ୟାତି ଲଭିଛି। ପ୍ରକାଶ ପାଇଛି ବେଦ, ଉପନିଷଦ, ବ୍ରାହ୍ମଣାଦି ମହାନ୍ ଗ୍ରନ୍ଥ। 'ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି' ଅର୍ଥାତ୍ ଗୋଟିଏ ପରମାତ୍ମାଙ୍କୁ ଭିନ୍ନ ଭିନ୍ନ ନାମରେ କହିବାର ପରମ୍ପରାରୁ ଧର୍ମରେ ଅନେକ ବାଟ ଫିଟିଛି। ଲକ୍ଷ୍ୟ କିନ୍ତୁ ଏକ। ପରବର୍ତ୍ତୀକାଳରେ ଉପନିଷଦୀୟ ସାରତତ୍ତ୍ୱର ବାଣୀ ପ୍ରକାଶ ପାଇଛି ଗୌତମବୁଦ୍ଧଙ୍କ ତୁଣ୍ଡରେ। 'ବୁଦ୍ଧଂ ଶରଣଂ ଗଚ୍ଛାମି'ର ଉଚ୍ଚକିତ ଧ୍ୱନିରେ ଭାରତବର୍ଷର ଭୂମି କମ୍ପିଛି। ଜାନକୀବଲ୍ଲଭଙ୍କ ଆତ୍ମାଭିବ୍ୟକ୍ତି ମୂର୍ଚ୍ଛିତ ହୋଇଛି–

ରାଜା ଏଥି ସନ୍ନ୍ୟାସୀର ବେଶେ
ଘେନିଲା ନୂତନ ଦୀକ୍ଷା
ପ୍ରଚାରିଲା ଧର୍ମ ଦେଶେ ଦେଶେ
ରାଜ୍ୟର ସେବକ ରାଜା
ପ୍ରଜାର ସେ ଟ୍ରଷ୍ଟି
ରାଜ୍ୟ ତା'ର
ପ୍ରେମ ସତ୍ୟ ସେବାର ସମଷ୍ଟି। (ସିନ୍ଧୁ ଉପତ୍ୟକା–ପୃ.୩୪)

କୃଷି ଭାରତୀୟ ଆର୍ଯ୍ୟସଭ୍ୟତାର ଆଦ୍ୟବ୍ୟକ୍ତି-ବୃତ୍ତି। କୃଷକର ଲବ୍ଧ ଶସ୍ୟକୁ ଅପହରଣ କରିବାପାଇଁ ଲୁଣ୍ଠକ ଶକ, ହୂନ, କୁଶାଣମାନେ ଆସିଛନ୍ତି। ଆସିଛନ୍ତି ଆଲେକଜାନ୍ଦର। ଭାରତବର୍ଷ କେବେ ବିଜୟୀର ହୋଇପାରିନି– ଏହାହିଁ ଏହାର ଇତିହାସ। ବହୁ ଦେଶରୁ ବଣିକ ଆସିଛନ୍ତି, କଳାବିତ୍ ଓ ପରିବ୍ରାଜକ ଆସିଛନ୍ତି; ଭାରତବର୍ଷର ସଂସ୍କୃତି-ଧାରା ସ୍ୱଚ୍ଛ, ସାବଲୀଳ ଓ ଚିରସ୍ରୋତା ହୋଇ ରହିଛି। ଆଫଗାନ, ମୋଗଲ, ମୁସଲମାନ, ମରାଠାଦିଙ୍କ ଦୌରାତ୍ମ୍ୟ ଓ କ୍ରୂର ଶାସନରେ ବି ଭାରତର ମୌଳିକ ଢାଞ୍ଚା ଅପରିବର୍ତ୍ତିତ ରହିଛି। ଦୁଇ ଶହ ବର୍ଷର ଇଂରେଜ ଶାସନ ଭାରତ ଇତିହାସରେ ଉଲ୍ଲେଖଯୋଗ୍ୟ ସଂଘର୍ଷ-କାହାଣୀର ଅଭାବିତ ପରିଚ୍ଛେଦ। କବିଙ୍କ ଭାଷାରେ;

ଦୁଇଶ ବର୍ଷର ଶାସନ
ଶିକାରୀ ଆଉ କୃଷକର ଲଢ଼େଇ
ଇତିହାସ ତା'ର ଲେଖା ହୋଇନାଇ...
ଦୁଇଟା ଜୀବନର ଧାରା
ଦ୍ୱୈତ ସଭ୍ୟତାର ସଂଘର୍ଷ
ପ୍ରାଚ୍ୟ ଆଉ ପାଶ୍ଚାତ୍ୟର ସଂଘର୍ଷ
ଦେଖିଚି ଏ ଭାରତବର୍ଷ। (ତତ୍ରୈବ–ପୃ.୩୭)

'ଶିକାରୀ ଆଉ କୃଷକର ଲଢ଼େଇ'–ଏହି ଧାଡ଼ିଟି କେବଳ ଭାରତବର୍ଷର ଇତିହାସ କାହିଁକି ସଂସ୍କୃତି ଓ ଓଡ଼ିଶାର ସାହିତ୍ୟ ପରମ୍ପରା ପ୍ରତି ଇଙ୍ଗିତ କରୁଛି। 'ସାର୍ଥକସାରଥି ଜାନକୀବଲ୍ଲଭ'ର ରଚୟିତା ଡକ୍ଟର ଗୋବିନ୍ଦ ଭୂୟାଁ ଉଲ୍ଲେଖ କରିଥିବା 'ସବୁ ରୂପ ନେଇଯାଏ ଗୋଟିଏ ଗୋଟିଏ ଶବ୍ଦରେ'ର ପ୍ରାସଙ୍ଗିକତା ବୁଝିହୁଏ ଉଦ୍ଧୃତ ଧାଡ଼ିଟିରୁ। 'ଶିକାରୀ' ଶବ୍ଦଟି ପ୍ରସଙ୍ଗୋଚିତଭାବେ ମନେପକେଇଦିଏ ଜାତୀୟକବି ବୀରକିଶୋର ଦାସଙ୍କ 'ରଣଦୁନ୍ଦୁଭି' ପୁସ୍ତକର ଏହି ପଙ୍‌କ୍ତିକୁ–

ରାଜା ବାହାନାରେ ଥିଲ ତ ବେପାରୀ
ବେପାରୀରୁ ଏବେ ହେଲଣି ଶିକାରୀ
ଶିକାରୀ ଧର୍ମ ଶିକାରୀର କର୍ମ
ଆମକୁ ଏଠାରେ ଶିଖାଅ।

(କେତେ ଠେଙ୍ଗା ଅଛି କେତେ ବାଡ଼ି ଅଛି)

'କୃଷକ' ଶବ୍ଦ ମନେପକେଇଦିଏ ସାରଳା ମହାଭାରତରେ ବର୍ଣ୍ଣିତ କୃଷକ-ଯୋଦ୍ଧୃ ବାହିନୀର ଗରିମାକୁ। ମନେପଡ଼ିଯାଏ ନୀଳକଣ୍ଠ ଦାସଙ୍କ ଐତିହାସିକ କାବ୍ୟ 'ଖାରବେଳ'ର ବଜିର ରାଜ୍ୟର କୃଷକ-ସେନାଧ୍ୟକ୍ଷ ଧୂସିଙ୍କ କଥା। ଏହି କୃଷି, କୃଷକ ଶବ୍ଦରୁ 'କୃଷ୍ଟି' ଶବ୍ଦ ଗଠିତ ଯାହାର ଅର୍ଥ ସଂସ୍କୃତି। ପାଶ୍ଚାତ୍ୟ ଜଗତର Will Durant ଏଇ କଥାକୁ ଆଉ ବାଗେ ଲେଖିଛନ୍ତି– Culture suggests agriculture but civilization suggests the city. ବସ୍ତୁତଃ ଜାନକୀବଲ୍ଲଭଙ୍କ କବିତାରେ ବ୍ୟବହୃତ, ସହଜରେ ବୁଝିହେଉଥିବା ଗୋଟିଏ ଗୋଟିଏ ଶବ୍ଦର ଭାବ ଉଦ୍‌ବୋଧକତା ପାଠକପାଇଁ ଏତେ ପ୍ରଶସ୍ତ ଯେ ଗୋଟିଏ ଶବ୍ଦକୁ ଗୋଟିଏ କବିତା କହିବା ଅବାନ୍ତର ନୁହେଁ। ବାହ୍ୟତଃ 'ଶିକାରୀ' ଆଉ 'କୃଷକ' ଶବ୍ଦ ଯଥାକ୍ରମେ 'ଇଂରେଜ' ଏବଂ 'ଭାରତୀୟ' ଅର୍ଥ ଜ୍ଞାପକ ଭଳି ଜଣାପଡୁଥିଲେ ହେଁ ତାହା ଦୁଇଟି ସଂସ୍କୃତିସୂଚକ ପ୍ରତୀକ ଶବ୍ଦ।

ବେପାରୀ ଇଂରେଜ ଜାତି ପ୍ରବୃତ୍ତିରେ ଦସ୍ୟୁ। ଇଂରେଜ ଭାରତରେ ରାଜଛତି ଧରିଛି। ଦୁଇ ଶହ ବର୍ଷ ପରେ ଇଂରେଜ ଭାରତରୁ ବିଦାୟ ଘେନିଛି। ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଜନଜାଗରଣ, ଇଂରେଜ ଶାସନକୁ ବିରୋଧ ଏହାର କାରଣ। ଗାନ୍ଧିଜୀଙ୍କୁ କବି 'ପ୍ରାଚ୍ୟର ଦଧୀଚି' କହିଛନ୍ତି। ପୁରାଣରେ ବୃତ୍ରାସୁର ନିଧନପାଇଁ ଆତ୍ମବିସର୍ଜନ ପୂର୍ବକ ଦଧୀଚି ନିଜ ଅସ୍ଥି ଦାନ କରିଥିଲେ ଇନ୍ଦ୍ରଙ୍କୁ। ଇଂରେଜ ଯାଇଛନ୍ତି। ଛାଡ଼ିଯାଇଛନ୍ତି ହିନ୍ଦୁ-ମୁସଲମାନମାନଙ୍କ ମଧ୍ୟରେ କଳହର ମନ୍ତ୍ର। ପରିଣତିରେ ହିନ୍ଦୁସ୍ଥାନ ଓ ପାକିସ୍ଥାନର ଦୁଇଟି ମାନଚିତ୍ର ଗଢ଼ିଉଠିଛି। ଅନୈକ୍ୟର ଜୟ ହୋଇଚି। କବିଙ୍କ ଭାଷାରେ–

ଆଜି ତୁମେ ଭାରତର ଏଇ ମାନଚିତ୍ର
ଦେଖି ହୁଅ ନିରାଶ ବିସ୍ମିତ
ତମେ ଯା' ଦେଖୁଚ ନୁହେଁ ପ୍ରକୃତ ଭାରତ।

ଏହା ଏକ ଆବିଳତା ଆଉ ଆବର୍ଜନା
ଯେପରି କି ବନ୍ୟାପୁଷ୍ଟ ବନର ଝରଣା
ସେ ନୁହଇ ହୈମବତୀ ଜାହ୍ନବୀର ଯୋଗ୍ୟ ନୀରାଜନା।

(ତତ୍ରୈବ–ପୃ.୩୯-୪୦)

ସଂପ୍ରତି ମାନଚିତ୍ରରୁ ଉପଲବ୍ଧ ଭାରତକୁ କବି 'ବନ୍ୟାପୁଷ୍ଟ ବନର ଝରଣା' କହିଛନ୍ତି। ସ୍ୱାଭାବିକତାରେ ଆବିଳତା ମିଶିଲେ ସ୍ୱାଭାବିକତାର ସ୍ଥିତି ରହିଥାଏ। ହେଲେ ସ୍ୱାଭାବିକତାର ଗୁଣ ? କବି ମାନଚିତ୍ରର ଭାରତକୁ ଗୁରୁତ୍ୱ ଦେଇ ନାହାନ୍ତି। ତାଙ୍କ ମତରେ ଭାରତ ସେଇଠି ବଞ୍ଚିଛି ଯେଉଁଠି କର୍ମ ଭୂମିରେ ନିୟୋଜିତ ଲୋକର ପରିଚୟ ଲୋକ– ହିନ୍ଦୁ କିମ୍ବା ମୁସଲମାନ ନୁହଁ। ଜାନକୀବଲ୍ଲଭ ଜଣେ ବହୁପାଠୀ ବିଦ୍ୱାନ୍। ସେ ଶବ୍ଦ କଳ୍ପଦ୍ରୁମରୁ 'ହିନ୍ଦୁ' ଶବ୍ଦର ବିଶ୍ଳେଷଣାର୍ଥ ଅବଗତ ଥିବା ସ୍ୱାଭାବିକ। ହୀନମ୍ ନିନ୍ଦତି ଇତି ହିନ୍ଦୁଃ। ଯେଉଁ ମଣିଷ ସଂକୀର୍ଣ୍ଣତାକୁ ତୁଚ୍ଛା ଭାବେ ସେ ଉଦାରଚେତା, ସେ ହିନ୍ଦୁ। କବିଙ୍କ ଭାଷାରେ ଭାରତର ବିଶେଷଣ ହେଉଛି 'ଉଦାର ସାର୍ବଭୌମ / ବିଶ୍ୱର ମିଳନ ଭୂମି ଶାନ୍ତ ଅନୁପମ।" ଭାରତବର୍ଷର ବିବର୍ତ୍ତନ ଐତିହ୍ୟ ଓ ଭାରତ ଏକ ମାନଚିତ୍ର ନୁହେଁ, ଏକ ଶୁଦ୍ଧ ମାନବିକ ଅବବୋଧ–ଏହାହିଁ 'ସିନ୍ଧୁ ଉପତ୍ୟକା' କବିତାର ଭାବ-ନିର୍ଯ୍ୟାସ। ଏହି କବିତାର ପ୍ରତ୍ୟେକ ବର୍ଣ୍ଣିତ ପ୍ରସଙ୍ଗ ସତେଯେପରି ଆପଣାଛାଏଁ ନାଟ୍ୟାୟିତ ହୋଇଛି ପୟାର ଜାତୀୟ ମୁକ୍ତ ଛନ୍ଦରେ। ଏହି ଛନ୍ଦର ବୈଶିଷ୍ଟ୍ୟ ଏକ ଦାଣ୍ଡିବୃତ୍ତ ଭଳି ପାଦର ଅକ୍ଷର ସଂଖ୍ୟା ସଙ୍କୋଚନ ଓ ପ୍ରସାରଣଶୀଳତାରେ। ଉପାନ୍ତ ବର୍ଣ୍ଣର ମେଳ ଅଥବା ଉପଧା ମିଳନ ଏହି ଛନ୍ଦର ଗୌରବ। ଉଦାହରଣସ୍ୱରୂପ–

ଫେରେ
ଐତିହାସିକର ଗଣନାର ପାରେ
ପାର୍ବତୀୟ ସୀମାନ୍ତର ଗିରିପଥ ଧାରେ।

(ସିନ୍ଧୁ ଉପତ୍ୟକା–ପୃ.୩୩)

ଉଦ୍ଧୃତ ତିନୋଟି ଧାଡ଼ିର ମେଳ ଉପଧା ରୀତିର। ପ୍ରଥମ ଧାଡ଼ିର ଅକ୍ଷର ସଂଖ୍ୟା ଦୁଇ, ଦ୍ୱିତୀୟ ବାର ଓ ତୃତୀୟ ଚଉଦ ଅକ୍ଷର ବିଶିଷ୍ଟ। ଉପାନ୍ତ ବର୍ଣ୍ଣ ମେଳଥିବା ଗୋଟିଏ ପଙ୍‌କ୍ତିକୁ ଲକ୍ଷ୍ୟ କରାଯାଉ–

ତା'ର ପରେ ଏଇ ଉପନିଷଦର ସାରତତ୍ତ୍ୱ ଘେନି
ବୁଦ୍ଧ ଶାକ୍ୟ ମୁନି।

ମେଳ ଉପଧାଧର୍ମୀ ନୁହେଁ। କାରଣ ପ୍ରଥମ ଧାଡ଼ିର ଶେଷ ବର୍ଣ୍ଣ 'ନି' ସହିତ ଦ୍ୱିତୀୟ ଧାଡ଼ିର ଶେଷରେ 'ନି' ମେଳ ଖାଉଛି। କିନ୍ତୁ ପ୍ରଥମ ଧାଡ଼ିର ଶେଷବର୍ଣ୍ଣର ପୂର୍ବସ୍ୱର 'ଏ' ଓ ଦ୍ୱିତୀୟ ଧାଡ଼ିର 'ଉ' ମଧ୍ୟରେ ଅମେଳ ରହୁଥିବାରୁ ଏଠାରେ ଉପଧା ମେଳ ହେଉ ନାହିଁ। ଜାନକୀବଲ୍ଲଭଙ୍କ 'ସିନ୍ଧୁ ଉପତ୍ୟକା' କବିତା ନିଜ ସହିତ ନିଜେ ତୁଳନାଯୋଗ୍ୟ ଅନୁପମ କୃତି। ରାଧାନାଥ ରାୟଙ୍କ 'ଭାରତଗୀତିକା'ର 'ଭାରତମେକା ଗତିରସ୍ମାକଂ' ବାଣୀରେ କବିଚେତନା ଅଭିମନ୍ତ୍ରିତ।

'ଜ୍ୟୋତିଶିଖା' ଓ 'ଗୋଟିଏ ଦୀପଶିଖାର ମୃତ୍ୟୁ' କବିତା ଦୁଇଟି କବି ବ୍ୟକ୍ତିତ୍ୱ ପ୍ରଖ୍ୟାପନ ହେତୁ ସାର୍ଥକ ବ୍ୟକ୍ତିନିଷ୍ଠ କବିତା। ଜୀବନକୁ ସଳିତା କରି ଦୀପରେ ଜାଳିବେ କାବ୍ୟନାୟକ। ନିରାଶାର ଅନ୍ଧକାର ଭିତରେ ସେ ଆଲୋକିତ ଶିଖା ଓ ଆଶାର ଜାଗ୍ରତ ପ୍ରହରୀ ହୋଇ ବଞ୍ଚିବା ନିମିତ୍ତ ସତତ ପ୍ରୟାସୀ। ଅନ୍ଧକାରକୁ କବି ମୂଷା-ଶାବକ ଖୋଜୁଥିବା ମହାମାର୍ଜାର ରୂପେ ପରିକଳ୍ପନା କରିଛନ୍ତି। ଏହି ଚିତ୍ର ମନେପକେଇଦିଏ ବ୍ୟାସ ମହାଭାରତ, ଉଦ୍‌ଯୋଗ ପର୍ବର 'ବିଡ଼ାଳ ବ୍ରତ' କଥାକୁ। ପାଣ୍ଡବମାନଙ୍କ ପାଖକୁ ଉଲୁକକୁ ଦୂତ କରି ପଠାଇବାବେଳେ ତାକୁ କହିଲେ ଯୁଧିଷ୍ଠିରଙ୍କ ନିକଟରେ ବିଡ଼ାଳବ୍ରତ କାହାଣୀ ନିବେଦନ କରିବାକୁ। କାହାଣୀଟି ସଂକ୍ଷେପରେ ଏହିପରି– ଗୋଟିଏ ଦୁଷ୍ଟାତ୍ମା ବିରାଡ଼ି ଥିଲା। ସେ ଅହିଂସାପରାୟଣ ହେଇ ଧର୍ମାଚରଣ କରୁଛି ବୋଲି କହିବୁଲିଲା। ମୂଷାମାନେ ତାଙ୍କୁ ମାମୁ ଡାକିଲେ। ସେମାନେ କାମରେ ବାହାରିଗଲାପରେ ମୂଷାଛୁଆମାନଙ୍କୁ ଜଗାରଖା କରିବାକୁ ମାମୁ ବିରାଡ଼ି ଉପରେ ଦାୟିତ୍ୱ ଦେଲେ। ଫଳତଃ ମୂଷାଶାବକ ସଂଖ୍ୟା ପତଳା ହେଲା, ମାମୁ ହୃଷ୍ଟପୁଷ୍ଟ ହେଲେ। ବସ୍ତୁତଃ ଅନ୍ଧାରି ଶାସନରେ ଇଂରେଜ ଶାସକ ମହାମାର୍ଜାର ଓ ଶାସିତମାନେ ମୂଷାଶାବକ। ଜନତାଙ୍କୁ ପୀଡ଼ା ଦେଉଥିବା ଶାସ୍ତା ଓ ଶୋଷକଙ୍କ ସ୍ତୋତାମାନଙ୍କୁ ଶ୍ରଦ୍ଧା କରିପାରନ୍ତି ନାହିଁ କାବ୍ୟନାୟକ। ସେ ସ୍ୱାଧୀନଚେତା, ଲୋକସ୍ୱାର୍ଥ ଓ ମାନବିକତାର ସୁରକ୍ଷାପାଇଁ ବିରୋଧୀ ଶକ୍ତି ବିପକ୍ଷରେ ସେ ଯୁଦ୍ଧଂଦେହିର ଆହ୍ୱାନ ଶିଙ୍ଗାନାଦ ଜରିଆରେ ଶୁଣାଇବାକୁ ତତ୍ପର। 'ବ୍ରିଟିଶ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତଯାଏ ନାହିଁ' ଉକ୍ତିକୁ ସେ ତାଚ୍ଛଲ୍ୟ କରନ୍ତି 'ସନ୍ଧ୍ୟାସୂର୍ଯ୍ୟ ମୃତ' ଉକ୍ତିରେ। ମୃତ ସୂର୍ଯ୍ୟର ପୁନରାଗମନ କାହିଁ? ଅଶାନ୍ତ ଶର୍ବରୀରେ କାରାର ଜୀବନ ଜିଅନ୍ତି କାବ୍ୟନାୟକ। ବିଦେଶୀଙ୍କ ଅନ୍ଧାରି ଶାସନର କ୍ରୂର ଦୁର୍ବିସହତା କାବ୍ୟନାୟକଙ୍କୁ ନୁଆଁଇ ପାରେ ନାହିଁ କିମ୍ବା ଭିନ୍ନ ଏକ କାବ୍ୟଦୀକ୍ଷା ଗ୍ରହଣ କରି ଉଚ୍ଚକଣ୍ଠର ଗୀତ ଲେଖାପାଇଁ ଅନୁପ୍ରେରିତ କରିପାରେ ନାହିଁ; ବରଂ ଭାରତବର୍ଷର ପାରମ୍ପରିକ ଆତ୍ମଦର୍ଶନ ଦେଇ ସ୍ୱତେଜ ପ୍ରକାଶ ନିମିତ୍ତ ଆଶାନ୍ୱିତ କରାଏ। (ସ୍ୱତେଜେ ନିତ୍ୟ ପ୍ରକାଶଇ– ଭାଗବତ–ପ୍ରଥମ ସ୍କନ୍ଧ–ପ୍ରଥମ ଅଧ୍ୟାୟ) କାବ୍ୟନାୟକ ସ୍ୱୟଂ କବି ଜାନକୀବଲ୍ଲଭ ପଟ୍ଟନାୟକ। ତାଙ୍କ ଆତ୍ମା-ଅନ୍ୱିଷ୍ଟ ଉପଲବ୍ଧି ସଂକଳ୍ପର ଇସ୍ତାହାର ରୂପେ ଅଭିବ୍ୟକ୍ତ ହୋଇଛି–

ଜୀବନେ ସଳିତା କରି
ଉଠିବି ମୁଁ ଜଳି
ଘୁମନ୍ତ ରଜନୀ ବୁକୁ ଚିରି
ଜ୍ୟୋତିଶିଖା
ଆଶାର ମୁଁ ଜାଗ୍ରତ ପ୍ରହରୀ। (ଜ୍ୟୋତିଶିଖା -ପୃ. ୨)

ପ୍ରସଙ୍ଗତଃ ଗଙ୍ଗାଧର ମେହେରଙ୍କ ଉପଦେଶାତ୍ମକ ପଦଟିଏ ସ୍ମରଣକୁ ଆସେ। ତାହା ଏହିପରି– 'ନ କର ମାନବେ କ୍ଷୁଦ୍ର ଜୀବେ ଉପହାସ / ନିଜର ଜୀବନ ଜ୍ୟୋତି କର ପରକାଶ। (ଖଦ୍ୟୋତର ଖେଦ)। ଜ୍ୟୋତିଶିଖା ଅଥବା ଜ୍ୟୋତି– ମଣିଷ ଭିତରର ତେଜ। କବି ପଟ୍ଟନାୟକଙ୍କ ଆଶାବାଦୀ ବ୍ୟକ୍ତିତ୍ୱର ଭାରତୀୟ ଦର୍ଶନ ରସାଣିତ ସ୍ୱର ଏହିପରି; 'ମୁଁ ଜ୍ୟୋତିଶିଖା'। 'ମୁଁ ଆଶାର ଜାଗ୍ରତ ପ୍ରହରୀ'। 'ଜୀବନକୁ ସଳିତା କରି ମୁଁ ଜଳିଉଠିବି'।

ବାକ୍ୟଗୁଡ଼ିକର ଅର୍ଥ ବ୍ୟାପକ– ଅନ୍ତତଃ ଆଧ୍ୟାତ୍ମିକ ଦର୍ଶନ ଦୃଷ୍ଟିରୁ। ଇଂରାଜୀ ସାହିତ୍ୟରେ 'ଲିରିକ'କୁ ସର୍ବଦା ଓ ଶ୍ରେଷ୍ଠ ସାହିତ୍ୟ କୃତି କୁହାଯାଏ, କେବଳ ବ୍ୟକ୍ତିନିଷ୍ଠ ଉଚ୍ଚାରଣ ସମୂହର ହୋଇଥିବାରୁ। ଅଧିକ ବୁଝାଇ କହିବା ନିଷ୍ପ୍ରୟୋଜନ– 'ଜ୍ୟୋତିଶିଖା' ଏକ ଅପୂର୍ବ ଲିରିକ୍ କବିତା। (ସଂପ୍ରତି ଓଡ଼ିଆ ସାହିତ୍ୟରେ ଯେଉଁ ଧରଣର କବିତାସବୁକୁ ଗୀତିକବିତା କହିବାର ଚଳଣି ଆରମ୍ଭ ହୋଇଛି ସେତେବେଳେ 'ଲିରିକ୍' ବ୍ୟବହାର ଯଥାର୍ଥ ମନେକରାଯାଇଛି।) ଏ ଧରଣର ଆଉଗୋଟେ ଲିରିକ୍ କବିତା 'ଗୋଟିଏ ଦୀପଶିଖାର ମୃତ୍ୟୁ'। ଭାବ ଦୃଷ୍ଟିରୁ କବିତାଟି ସତେଯେପରି ଜ୍ୟୋତିଶିଖାର ଉତ୍ତରାର୍ଦ୍ଧ। ବିମଳ ଭାଗବତବୋଧର ଶକ୍ତିମତ୍ତା କ୍ରୂର ରାକ୍ଷସଶକ୍ତିଦ୍ୱାରା ଆଘାତପ୍ରାପ୍ତ ହେବାବେଳକୁ ଯୁକ୍ତିନିଷ୍ଠ ଭଗବଦ୍‌ଗୀତା ଶ୍ରେୟ ବିବେଚିତ ହେବା ସ୍ୱାଭାବିକ। ଭଗବଦ୍‌ଗୀତାରେ ଯୋଗୀର ଚିତ୍ତବୃତ୍ତି 'ଯଥା ଦୀପୋ ନିବାତସ୍ଥୋ' (ପବନ ନ ଥିବା ଜାଗାରେ ଦୀପ ଭଳି)। ଦୀପଶିଖାର ଶତ୍ରୁ ପବନ। ଦୀପଶିଖା ପବନ ସହିତ ଲଢ଼େ। ବଶ୍ୟତା ସ୍ୱୀକାର କରେ ନାହିଁ। ଶେଷରେ ଶକ୍ତି ହଟେ। ନିଭିଯାଏ ଦୀପଶିଖା। 'ଅନ୍ଧକାରର ଅତଳ ମୃତ୍ୟୁର ଗର୍ଭରେ' ନିଭିଥିବା ଦୀପଶିଖା ଆଶ୍ରୟ ନିଏ। ସେହି ସ୍ଥାନରେ ମୃତସୂର୍ଯ୍ୟ ପୂର୍ବରୁ ଆଶ୍ରୟ ନେଇଥିଲା। ସୂର୍ଯ୍ୟ ପାଖରେ ଦୀପ ସମାନ ଆସନ ପାଇଛି। ଶ୍ମଶାନ ସମାନର ଜାଗା। ଏହି ପ୍ରସଙ୍ଗରେ ଭଗବଦ୍‌ଗୀତାର 'ହତୋବା ପ୍ରାପ୍ସ୍ୟସି ସ୍ୱର୍ଗଂ, ଜିତ୍ୱା ବା ଭୋକ୍ଷ୍ୟସେ ମହୀ' ଉଦ୍ଧୃତ। ମଲେ ସ୍ୱର୍ଗବାସ ଜିତିଲେ ପୃଥ୍ୱୀ ଭୋଗ– ଦୁଇଟିଯାକ କଥା ଲାଭଜନକ। ଅର୍ଜ୍ଜୁନଙ୍କୁ ଯୁଦ୍ଧ ପ୍ରତି ପ୍ରବୃତ୍ତ କରାଇବା କାଳରେ କୃଷ୍ଣ ଏହା ଶୁଣାଇଛନ୍ତି। ମହାତ୍ମାଗାନ୍ଧୀଙ୍କ 'କର ଅବା ମର' ନୀତି ପ୍ରତି ସଶକ୍ତ ଓ ଆସକ୍ତ ସମର୍ଥନ ଯୋଗାଇପାରିଥିବା ବ୍ୟକ୍ତିତ୍ୱମାତ୍ରକେ ହିଁ ମୃତ୍ୟୁ ଓ ଜୀବନ୍ତ ସ୍ଥିତିକୁ ତରାଜୁର ଦୁଇପଟ ପଲାରେ ପକାଇ ସମାନ୍ତରାଳ ରଖାଇପାରନ୍ତି। ଜୀବନ ଥାଇ ଅସୂର୍ଯ୍ୟ ମହୀକୁ ସହ୍ୟ କରିବା ଓ ମୃତ୍ୟୁ ପରେ ସୂର୍ଯ୍ୟର ସାନ୍ନିଧ୍ୟ ପାଇବା ପ୍ରାୟ ଏକା ଅବସ୍ଥା। 'କର ଅବା ମର' ନୀତିକୁ ଦାର୍ଶନିକତା ଭଙ୍ଗୀରେ ସମର୍ଥନ ଦେବାରେ 'ଗୋଟିଏ ଦୀପଶିଖାର ମୃତ୍ୟୁ' ଏକ ଅପୂର୍ବ ଲିରିକ୍ କବିତା।

ପ୍ରକୃତି, ନାରୀ, ଚରିତ୍ର, ମଣିଷର ସ୍ୱଭାବ, କାଳ ଓ ସମକାଳୀନ ପଞ୍ଚଶୀଳ ନୀତି ଆଦି ବିଷୟରେ ହାତଗଣତି କବିତା କେତୋଟି ଲେଖିଛନ୍ତି ଜାନକୀବଲ୍ଲଭ। ସେଗୁଡ଼ିକ ପାଠକକୁ ଚମତ୍କୃତ କରାଏ। 'ଫ୍ଲେମିଙ୍ଗୋ' କବିତାର ନାମକରଣ ଚିଲିକାକୁ ଆସୁଥିବା ଗୋଟିଏ ପ୍ରକାରର ପକ୍ଷୀଙ୍କ ନାମାନୁସାରେ କରାଯାଇଛି। ଏହି କବିତାରୁ ଚିଲିକାରେ ପକ୍ଷୀମାନଙ୍କ ଶୋଭା ଚିତ୍ରରୀତିର ବର୍ଣ୍ଣନାରୁ ହୃଦ୍ୟ ହୁଏ। ଯେପରି;

ନଳବନ ପାରେ
ଦେଖିଲି ଧବଳ ବର୍ଣ୍ଣମାଳା
ଯେପରି ଅସଂଖ୍ୟ ପୋତ
ଏକ ସଙ୍ଗେ ଟାଣିଛନ୍ତି ପାଲ
ଚିଲିକାର କଟିଦେଶେ
ରଚି ଏକ ରଜତ ମେଖଳା। (ଫ୍ଲେମିଙ୍ଗୋ)

ପାରମ୍ପରିକ ବିଚାରରୁ ଉଦ୍ଧୃତ ପଙ୍‌କ୍ତିରେ ରୂପକ, ଉପମା ଓ ଉତ୍‌ପ୍ରେକ୍ଷା ଅଳଙ୍କାରର ସଂକେତ ବିଦ୍ୟମାନ। ଆଧୁନିକରୀତିରୁ ଏହା ଯୁଗ୍ମ ଚିତ୍ରକଳ୍ପ ପ୍ରୟୋଗର କବି-କାରିଗରି। ଅନୁରୂପ ବର୍ଣ୍ଣନାରୀତି ଦେଖିହୁଏ 'ଭଗ୍ନ ଦେବାଳୟ' କବିତାର ସହର ପରିବେଶ ବର୍ଣ୍ଣନାରେ। ଯେପରି–

ମୁଁ ରହିଚି ଯେ ସହରେ
ନଳା ଆଉ ନର୍ଦ୍ଦମାର ମାଳ
ଟିଙ୍କ ପରି ମୋଟା
ପୁଣି ଟଙ୍କା ପରି ଗୋଲ ମଶାଦଳ
ରାସ୍ତା ଦେହେ ଶତଛିଦ୍ର
ପଡ଼ିଅଛି ତାଳି
ତାଳି ପକା ଅଖା ପିନ୍ଧା
ଭିକ୍ଷୁକର ଭଳି।

ଏକଦା ଜଙ୍ଗଲ ମଧ୍ୟରେ ଦୃଶ୍ୟ ହୋଇଛି ଏକ ଅକର୍ମଶିଳା। କବି ଦୃଷ୍ଟିରେ ତାହା 'ଶୋଇଚି / ପ୍ରାଣହୀନ / ବନହସ୍ତୀ ସମ / ବ୍ୟାକରଣ ବ୍ୟତିକ୍ରମ / ଏକ ନିପାତନ'। ପରବର୍ତ୍ତୀ ସମୟରେ ସେଇଠି ଦୃଶ୍ୟ ହୋଇଚି ଏକ ଅଶ୍ୱତ୍‌ଥ ଗଛ; ଯାହାର ଧୂସର ଚେରସବୁ 'ଈଗଲର ପାଦ ଆଉ ନଖ ପରି / ସେ ଶିଳାକୁ ଧରିଚି ଜାବୋଡ଼ି'। ପ୍ରକୃତିର ଅପରୂପା ଆଲେଖ୍ୟଶାଳିକା 'ଶିମିଳିପାଳ' ସଂପ୍ରତି ପେଚାର ଡେଣାରେ / ଏକ ଘୂମନ୍ତ ରଜନୀର ରହସ୍ୟ।' ଅର୍ଥାତ୍ ତାହା ମୃତ୍ୟୁମୁଖୀ। ଶିମିଳିପାଳର କ୍ଷୟମୁଖୀ ଅବସ୍ଥାକୁ କବି ପ୍ରପାତ ଝରିବାର ଚିତ୍ର ଓ ତାହା ଅରଣ୍ୟର ଲୁହ ଚିତ୍ରରେ ମାର୍ମିକ ଏବଂ ପାଠକୀୟ ସମ୍ବେଦନା ଆକର୍ଷକ କରିପାରିଛନ୍ତି। କବିଦୃଷ୍ଟିରେ ନାରୀ ସବୁ କାଳରେ 'ପଥର ପାଞ୍ଚାଳି'; ଜୀବନ ତା' ପାଇଁ ଜଉଘର। ତାହା ବନ୍ଦିଶାଳା। ସେଇଠି ଜଳିଯିବା ତା'ର ନିୟତି। ତାହାର ଏଭଳି ଅବସ୍ଥାପାଇଁ ଯେଉଁମାନେ ଦାୟୀ ସେମାନଙ୍କର ଧ୍ୱଂସ ବାଞ୍ଛା କରିଛନ୍ତି ସେ।

ବେଦର ପୁରୁଷ ସୂକ୍ତରେ ବୃକ୍ଷ, ମହାଭାରତର ଶମୀବୃକ୍ଷ, ପୁରାଣର କାଳନେମି, ଶ୍ରବଣକୁମାର, ଲୋକ ପରମ୍ପରାର ଈଗଲ-କାହାଣୀ ଆଦି ଉଲ୍ଲେଖ କରାଯିବାଦ୍ୱାରା 'ସିନ୍ଧୁ ଉପତ୍ୟକା' ପୁସ୍ତକରେ ସ୍ଥାନିତ କବିତାଗୁଡ଼ିକ ସହଜେ ପାଠକମାନଙ୍କୁ ଆକୃଷ୍ଟ କରିପାରିବାର ଯୋଗ୍ୟତା ଲଭିଛି। 'ଆତତାୟୀ', 'ଶେଷବର୍ଷ' ଭଳି ଆତ୍ମକାହାଣୀମୂଳକ ବର୍ଣ୍ଣନା ରୀତିର କବିତା ପାଠକୀୟ ସ୍ୱାଦ ଦୃଷ୍ଟିରୁ କେବଳ ନିଆରା ସୃଷ୍ଟି ନୁହେଁ କାଳୋପଲବ୍ଧିର ଯଥାର୍ଥ ବାଙ୍‌ମୟ କୃତି ହୋଇପାରିଛି। ଭାରତ ଇତିହାସରେ ଠଗ ଦମନ ଇଂରେଜ ଶାସନ ସମୟରେ ଏକ ଉଲ୍ଲେଖଯୋଗ୍ୟ ଘଟଣା। ଏକଦା ୱିଲିୟମ୍ ବେଣ୍ଟିକ୍ ଜଣେ ଠଗକୁ ପଚାରିଥିଲେ ଜଣେ ବ୍ୟକ୍ତି ପାଖରେ ବିତ୍ତ ନ ଥିଲେ ତାହାପ୍ରତି ସେ କିପରି ବ୍ୟବହାର କରିବ ? ଉତ୍ତରରେ ସେ କହିଥିଲା ତା'ର ବେଉସା ଦୃଷ୍ଟିରୁ ସେ ଲୋକଟିକୁ ହତ୍ୟା କରିବ ନିଶ୍ଚୟ! ଆତତାୟୀର ସ୍ୱୀକାରୋକ୍ତି ତଦନୁରୂପ–

ମୃତ୍ୟୁର ମୁଁ ଅଗ୍ରଦୂତ
ଜୀବନ ମୋ ଏଇ ମୁହୂର୍ତ୍ତର
ବଜ୍ରର ଝଲକ ମୁହିଁ
ସାଇଁ ସାଇଁ ନିସ୍ୱନ ଝଡ଼ର
ହିଂସା ବା ଅହିଂସା ମୁହିଁ ଜାଣେ ନାହିଁ
ଜ୍ଞାନ ବା ଅଜ୍ଞାନ
ପାପ ଅବା ପୁଣ୍ୟ
ଧର୍ମ ବା ଅଧର୍ମ ।                                    (ଆତତାୟୀ)

ଉଦ୍ଧୃତ ପଙ୍କ୍ତି ସ୍ମରଣ କରାଇଦିଏ ଦେବୀ ଭାଗବତର 'ଜାନାମି ଧର୍ମଂ ନ ଚ ମେ ପ୍ରବୃତ୍ତି / ଜାନାମ୍ୟ ଧର୍ମଂ ନ ଚ ମେ ନିବୃତ୍ତି'କୁ । ଆତତାୟୀ କିନ୍ତୁ ସ୍ୱୟଂ 'ଶାଣିତ ତରବାରି / ତୀକ୍ଷ୍ଣମୁନ ଉଦଗତ ଛୁରାର /ଗଳିର ନିର୍ମମ ଲକ୍ଷ୍ୟ / ଗ୍ରେନେଡର ଦୁରନ୍ତ ବିସ୍ଫୋରଣ ।' ପୁଣି 'କାଳର କରାଳ ଦନ୍ତ / ମୁଁ ପ୍ରହରୀ ଦେହରକ୍ଷୀ / ମୁହିଁ ଆତତାୟୀ ।' ସେ ହିଁ ଇନ୍ଦିରା ଲୋକମାତା ମା'ଙ୍କ ଶେଷ ଯବନିକାର କାରଣ ଓ ସ୍ମୃତି । କାଳର ଅନନ୍ତ ଯାତ୍ରାପଥରେ ପୁରୁଣାବର୍ଷର ବିଦାୟ ଓ ନୂତନର ଆଗମନ ଏକ ଅଳୀକ ବିଚାର । ବ୍ୟକ୍ତି-ବୋଧରେ ତା'ର ଅଭିନୟ କିନ୍ତୁ ଅନନୁପେକ୍ଷିତ । ତେଣୁ 'ଜରାଜୀର୍ଣ୍ଣ କାଳ ପରେ ସ୍ମୃତିର ଗଣ୍ଠିଲା ଧରି ପୁରାତନ କହେ ହେ ବନ୍ଧୁ ବିଦାୟ ।' ବିଦାୟର ଗାନ ନବୀନର ଆବାହନ ଅଭିପ୍ରେତ – ଏହା ବିଶ୍ୱର ଶାଶ୍ୱତ ଜୀବନ ପ୍ରକ୍ରିୟା । କାଳ ସମ୍ବନ୍ଧରେ ପରିବ୍ରାଜକ, ଜୀବନଚିନ୍ତକ ଓ ଜଗତ ଅଧ୍ୟେତା ଜାନକୀବଲ୍ଲଭଙ୍କ ଏ ଅନୁଭବ ତାଙ୍କ ନିଜ ଜୀବନ ଉପଲବ୍ଧିର ଅଂଶବିଶେଷ । ଇଂରାଜୀ ସାହିତ୍ୟ ତତ୍ତ୍ୱରେ କୁହାଯାଇଛି– "The poet's work may be a mask, a dramatized conventionalization, but it is frequently a conventionalization of his own experiences, his own life. If used with a sense of these distinctions, there is use in biographical study." ଜାନକୀବଲ୍ଲଭଙ୍କ ଜୀବନ କାଳଗ୍ରସ୍ତ । ସେହି ଜୀବନକୁ ପଢ଼ିବାପାଇଁ ତାଙ୍କ ଆତ୍ମଜୀବନୀ ରଚନା ଅସଂପୂର୍ଣ୍ଣ । ପରିବ୍ରାଜକ ପଟ୍ଟନାୟକ କେତେ ଲୁହ ଢାଳିଥିଲେ ଅଥବା ଅନୁଶୋଚନାରେ ମୁହ୍ୟମାନ ଥିଲେ ତାହା ତଥ୍ୟନିଷ୍ଠ ଭାବରେ ଜାଣିବାର ଅବକାଶ ନାହିଁ । ବଞ୍ଚିରହିଛି ଅକ୍ଷର କୀର୍ତ୍ତି-କବିତା । ତାଙ୍କ ଜୀବନୀ କେଉଁ କେଉଁ ମୁହୂର୍ତ୍ତାନୁଭବର ସାକ୍ଷ୍ୟ ତାହା ତହିଁରୁ ସଂଗ୍ରହ କରାଯିବା ଅବାନ୍ତର ହେବ ନାହିଁ । ଏହି ପରିପ୍ରେକ୍ଷୀରେ ତାଙ୍କ 'ଅସୂୟା' କବିତା ଉଦ୍ଧାରଯୋଗ୍ୟ ।

ଜୀବନର ଯାତ୍ରାପଥେ
ବାରମ୍ବାର ଦେଖିଚି ମୁଁ ଅସୂୟାର ମୁହଁ
କି କୁତ୍ସିତ କି କଦାକାର
କ୍ରୋଧରେ ଅସ୍ଥିର ଅହରହ ।
ଅଲିଭା ନିଆଁର ଝୁଲ ସେ ଆଖିରୁ ଝରୁଥାଏ

ସେ ନାସାରୁ ନିଃଶ୍ୱାସ ମରୁର
ଜିଭ ଆଗେ ମହୁକଣା
ହୃଦୟରେ କାଳକୂଟ ବିଷର ଭଣ୍ଡାର
କଥାରେ ପକାଏ ସର
ହଠାତ୍ କେଉଁଠୁ ତୋଳିଆଣି
ମିଛର ସେ ଜାଲ ବୁଣେ
ଅୟୁତ ଯୁଗର ବୁଢ଼ିଆଣୀ
ଜୀବନର ଯାତ୍ରାପଥେ
ବାରମ୍ବାର ଦେଖିଚି ମୁଁ ଅସୂୟାର ମୁହଁ
କି କୁତ୍ସିତ କଦାକାର
କ୍ରୋଧରେ ଅସ୍ଥିର ଅହରହ।

ସେ ମୁହଁର ଅଭିଯୋଗ
ମୁଁ କାହିଁକି ହେଲି କିଛି ଅଛି କିଛି
ସେ ଥିଲା ବା ହେଲା ନାହିଁ
ମୁଁ କୁଆଡ଼େ ଦାୟୀ।
କାହିଁକି ତା' ପଦପାତେ
କଅଁଳିଆ ସବୁ ଘାସ ମରିଗଲା
କାହିଁକି ତା' ଦୃଷ୍ଟିପଥେ
ଗଛେ ଯେତେ ସଜଫୁଲ ଝରିଗଲା
କାହିଁକି ଉଜୁଡ଼ିଗଲା ସ୍ୱପ୍ନର ଫସଲ ତା'ର
ଫଳିଥାନ୍ତା ସୁନା
ମୁଁ କୁଆଡ଼େ କରିଦେଲି ମନା।

ମୋର ଯାତ୍ରାପଥ
ଦୀର୍ଘ କଂକରିତ
କେତେ ଢିପ କେତେ ଖାଲ କ୍ୱଚିତ ମିଳଇ ସମତଳ
ଖାଲି କଣ୍ଟା ମାଇଲ ମାଇଲ
ମୁଁ ନିଶ୍ଚୟ କରିଅଛି ଯିବି ଏଇ ବାଟେ
ଥାଉ କଣ୍ଟା ଖାଲ ଢିପ
ମୁଁ ଚାଲିବି
ମୋଟେ ନ ଓହରି
ମୋର ଲକ୍ଷ୍ୟପଥେ।

ଆସୁ ଝଞ୍ଜା ଝଡ଼
ଆସୁ ଯେତେ ବାଧାର ପାହାଡ଼
କନକ ମୁକୁଟ ମୁହିଁ ଚାହେଁ ନାହିଁ
କଣ୍ଟା ଲାଗେ ଭଲ
ଏ କଣ୍ଟାରେ ଫୁଟୁ ଫୁଲ
ଆଗାମୀ କାଲିର
ସେଇ ଫୁଲ ପାଇଁ ମୋର
ସବୁ ଶ୍ରମ ସ୍ୱେଦ ଅଶ୍ରୁ ଶୋଣିତର ଧାର।
ସେ ଶ୍ରମରେ ଦେଖେ ମଧ ଅସୂୟାର ମୁହଁ
ଈର୍ଷାରେ ଅସ୍ଥିର ଅହରହ
ମୁଁ ନାଚାର ଦୀର୍ଘପଥ ଯାତ୍ରୀ
ଦେଖିବାକୁ ଶୁଣିବାକୁ
ନାହିଁ ମୋ ସମୟ। (ଅସୂୟା–ପୃ. ୬୯-୭୧)

'ଅସୂୟା' କବିତାରେ ପରିବ୍ରାଜକ ଜାନକୀବଲ୍ଲଭଙ୍କ ଜୀବନଚିନ୍ତା ରୂପାୟିତ। କିନ୍ତୁ ମଧୁସୂଦନ ରାଓଙ୍କ 'ଜୀବନଚିନ୍ତା' ଅଥବା ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ଯାତ୍ରାସଙ୍ଗୀତ' ଭଳି ଏଥିରୁ ଜୀବନର ଦର୍ଶନ କିମ୍ବା ଆଦର୍ଶ ଖୋଜିଲେ ମିଳେ ନାହିଁ; କିନ୍ତୁ ଯାହା ମିଳେ ତାହା କବିଙ୍କ ଆତ୍ମଜୀବନୀର ଅଂଶ କହିବା ଯୁକ୍ତିଯୁକ୍ତ ହେବ। ଇଂରାଜୀ ସାହିତ୍ୟ ତତ୍ତ୍ୱବିତ୍‌ଙ୍କ ଭାଷାରେ କହିହେବ– There is a person behind the work. ସତରେ 'ଅସୂୟା' କବିତା କର୍ମ ପଛରେ ଜାନକୀବଲ୍ଲଭ ଥିବା ଉପଲବ୍ଧ ହେଉଅଛି।

ଜାନକୀବଲ୍ଲଭଙ୍କ ଆଗକୁ ଆଗକୁ ଗତି, ଦୃଷ୍ଟି ଓ ଅନୁଭବ ଯଥାକ୍ରମେ କବିତାରେ ଜ୍ଞାନ, ଭାବ ଏବଂ ରୂପ ହୋଇ ଫୁଟିଛି। କବିତାଗୁଡ଼ିକ ସତେଯେପରି ସ୍ୱାଭାବିକ ଜୀବନ ବଞ୍ଚୁଥିବା ଗୋଟେ ଗୋଟେ କଳା ସୃଷ୍ଟି। ପାଠକ ଓ ଶ୍ରୋତା ଚମତ୍କୃତ ହୁଅନ୍ତି ସେଗୁଡ଼ିକର ସାନ୍ନିଧ୍ୟ ଲାଭରେ। ବସ୍ତୁତଃ ପାଠକକୁ ନୂଆ ରୁଚି ଓ ସ୍ୱାଦ ପରଷିବାରେ 'ସିନ୍ଧୁ ଉପତ୍ୟକା'ର କବିତାଗୁଡ଼ିକ ସଫଳ। ଖାସ ଏଇଥିପାଇଁ ଓଡ଼ିଆ ସାହିତ୍ୟର ଇତିହାସରେ 'ସିନ୍ଧୁ ଉପତ୍ୟକା' ଲିପିବଦ୍ଧ ସ୍ଥିତି ଗ୍ରହଣ କରିବ, ପାଠକରୁ ପାଠକ ଦେଇ କାଳାନ୍ତରର ସୃଷ୍ଟି ରୂପେ ସ୍ମରଣୀୟ ରହିବ। ଜାନକୀବଲ୍ଲଭଙ୍କ କବି ପ୍ରତିଭାର ମାପସୂଚକ କଷଟି ହିଁ 'ସିନ୍ଧୁ ଉପତ୍ୟକା'– ଏହା ଯେକେହି ଭାବଗ୍ରାହୀ କାବ୍ୟପାଠକ ସ୍ୱୀକାର କରିବେ।



# ଜାନକୀବଲ୍ଲଭଙ୍କ ଅନୁବାଦର ପୃଥିବୀ

ସଂଗ୍ରାମ ଜେନା

ରାଜନୀତି ପରି ସାହିତ୍ୟ ଥିଲା ଜାନକୀବଲ୍ଲଭଙ୍କପାଇଁ ଏକ ମଧୁର ଆକର୍ଷଣ। ସାମ୍ବାଦିକତା, ସଂପାଦନା, ସାହିତ୍ୟ ସୃଷ୍ଟି ସବୁ ଥିଲା ଏଇ ଆକର୍ଷଣର କ୍ରମ ପରିଣାମ। ପୁଣି ତାଙ୍କ ସାହିତ୍ୟିକ ସୃଷ୍ଟିବଳୟ ଭିତରେ ରହିଛି କବିତା, ପ୍ରବନ୍ଧ, ଆଲୋଚନା ଓ ଅନୁବାଦ। ମାତ୍ର ଅନୁବାଦରେ ବାରି ହୋଇପଡ଼େ ତାଙ୍କ ସୃଜନଶୀଳତାର ପ୍ରକାଶ। ଏହାର କାରଣ ଥିଲା ମୂଳଭାଷା (ବିଶେଷକରି ସଂସ୍କୃତ) ଓ ଓଡ଼ିଆ ଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ। ତାଙ୍କର ଅନୂଦିତ ସାହିତ୍ୟକୃତିଗୁଡ଼ିକର ମୂଲ୍ୟାୟନ କରିବା ସମୟରେ ମୁଁ ଏହାକୁ ଦୁଇଟି ଭାଗରେ ବିଭକ୍ତ କରିଛି। ପ୍ରଥମଟି ହେଉଛି ତାଙ୍କର ଅନୂଦିତ କୃତିଗୁଡ଼ିକର ଏକ ଆଲୋଚନା ଓ ଦ୍ୱିତୀୟଟି ତାଙ୍କର ଅନୁବାଦକୀୟ ସୃଜନଶୀଳତା ଓ ଓଡ଼ିଆ ଅନୁବାଦ ପରମ୍ପରାରେ ତାଙ୍କ ଉପସ୍ଥିତିର ମୂଲ୍ୟାୟନ।

ଜାନକୀବଲ୍ଲଭ ପଟ୍ଟନାୟକଙ୍କର ଅନୂଦିତ କୃତିଗୁଡ଼ିକୁ ପ୍ରଥମ ପ୍ରକାଶ କାଳ ଭିତ୍ତିରେ ଏଭଳି ରଖାଯାଇପାରେ– ଭର୍ତ୍ତୃହରିଙ୍କ ତିନି ଶତକ-ଶୃଙ୍ଗାରଶତକ (୧୯୮୩), ନୀତିଶତକ (୧୯୮୪), ବୈରାଗ୍ୟଶତକ (୧୯୮୪), ବ୍ୟାସକୃତ ମହାଭାରତ : ସଂକ୍ଷିପ୍ତସାର (୧୯୯୦), ବାଲ୍ମୀକିକୃତ ରାମାୟଣ : ସଂକ୍ଷିପ୍ତସାର (୧୯୯୧), ବଙ୍କିମ ଉପନ୍ୟାସମାଳା (ଦୁଇ ଖଣ୍ଡ) (୧୯୯୯), ଶ୍ରୀମଦ୍ଭାଗବତ (ଗଦ୍ୟାନୁବାଦ) (୨୦୦୩) ଓ ଶ୍ରୀରାମକୃଷ୍ଣ ପରମହଂସ ଉପଦେଶାବଳୀ ଆଧାରିତ–ମାଲୁଣୀର ଫୁଲ ଓ ଅନ୍ୟାନ୍ୟ ଗଳ୍ପ (୨୦୧୦)। ପ୍ରକାଶଥାଉକି ତାଙ୍କର ସମସ୍ତ ଅନୂଦିତ କୃତି ମଧ୍ୟରୁ ଏକମାତ୍ର ବ୍ୟାସକୃତ ମହାଭାରତ ପୁସ୍ତକର ସହ-ଅନୁବାଦକ ଥିଲେ ତାଙ୍କର ପତ୍ନୀ ଜୟନ୍ତୀ ପଟ୍ଟନାୟକ।

## ।। ଏକ ।।

ବ୍ୟାସକୃତ ସଂସ୍କୃତ ମହାଭାରତର କଥାବସ୍ତୁ ବିଭିନ୍ନ ଭାଷାର କବିମାନଙ୍କଦ୍ୱାରା ଅନୂଦିତ ହୋଇ ପ୍ରସାରିତ ହୋଇଅଛି। ମାତ୍ର ଏହାର କେବଳ ସଂସ୍କୃତ ମହାଭାରତର ଅବିକଳ ଅନୁବାଦ ନ ହୋଇ ଏହା ସେମାନଙ୍କ ନିଜସ୍ୱ ବର୍ଣ୍ଣନାଶୈଳୀ ଓ କଳ୍ପିତ କାହାଣୀମାନଙ୍କଦ୍ୱାରା ସମୃଦ୍ଧ। ଓଡ଼ିଆ ଭାଷାରେ ସାରଳା ଦାସଙ୍କ ମହାଭାରତ ସେହିଭଳି ଏକ ଅନବଦ୍ୟ କୃତି ଓ ଏହା ଓଡ଼ିଆ ସାହିତ୍ୟରେ ଆଦିକାବ୍ୟ ଭାବେ ଗୃହୀତ। ପରବର୍ତ୍ତୀକାଳରେ ଧରାକୋଟ ମହାରାଜା କୃଷ୍ଣ ସିଂହ ସଂସ୍କୃତ ମହାଭାରତର ଏକ ପଦ୍ୟାନୁବାଦ କରାଇଥିଲେ। ସେହିଭଳି ମହାଭାରତର ଗଦ୍ୟାନୁବାଦ ମୟୂରଭଞ୍ଜ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେବଙ୍କ ପୃଷ୍ଠପୋଷକତାରେ ଆରମ୍ଭ ହୋଇଥିଲା ଓ ଏହାକୁ ଗୋବିନ୍ଦ ଚନ୍ଦ୍ର ମହାପାତ୍ର ଅନୁବାଦ କରିଥିଲେ। ଅଠରଖଣ୍ଡ ବିଶିଷ୍ଟ ଏହି ବିଶାଳ ମହାଭାରତ

ଗ୍ରନ୍ଥ ପାଠ କରିବା ସାଧାରଣ ପାଠକମାନଙ୍କପାଇଁ ସମୟସାପେକ୍ଷ ଓ କଷ୍ଟକର। ଏଣୁ ମହାଭାରତର ପ୍ରଧାନ ପ୍ରଧାନ କଥାବସ୍ତୁ, ଘଟଣାକ୍ରମକୁ ଅକ୍ଷୁଣ୍ଣ ରଖି ଯଥାସମ୍ଭବ ମୂଳ ସଂସ୍କୃତ ମହାଭାରତର ଅବିକଳ ସାରାନୁବାଦ ଏଠାରେ କରାଯାଇଛି। ମୂଳ ସଂସ୍କୃତରୁ ଅନୂଦିତ ଏଇ ସଂକ୍ଷିପ୍ତସାରରେ ୧୮ ଖଣ୍ଡର ମହାଭାରତର ସବୁ ଘଟଣା, ଆଖ୍ୟାୟିକା ଓ ମୂଳ ବିଷୟକୁ ସଂକ୍ଷିପ୍ତ କରାଯାଇ ୧୪୪ଟି ଅଧ୍ୟାୟରେ ଗଦ୍ୟରେ ବର୍ଣ୍ଣନା କରାଯାଇଛି। ଏଥିରେ ବ୍ୟାସ ଓ ଗଣେଶଙ୍କ ଉପାଖ୍ୟାନଠାରୁ ମହାଯାତ୍ରା ଯାଏ ରହିଛି ସବୁ ଘଟଣାକ୍ରମର ବର୍ଣ୍ଣନା। ମହାଭାରତ ହେଉଛି ଏକାଧାରରେ କାବ୍ୟ, ସାହିତ୍ୟ, ଇତିହାସ, ସ୍ମୃତି, ଦର୍ଶନ, ନୀତିବାକ୍ୟ ଓ ଶ୍ରୁତି। ଏହି ବିଶାଳ ଗ୍ରନ୍ଥକୁ ପାଠକରି ତାକୁ ସଂକ୍ଷିପ୍ତ କରି ଅନୁବାଦ କରିବା ଏକ ଆହ୍ୱାନ।

ଏକ ଅର୍ଥରେ ମହାଭାରତ ହେଉଛି ଭରତବଂଶୀୟମାନଙ୍କର ଉପାଖ୍ୟାନ। ଭରତ ବଂଶ ଶାସିତ ରାଜ୍ୟମାନଙ୍କୁ ଭାରତ ବୋଲି କୁହାଯାଏ। ମହାଭାରତ ହେଉଛି ସେମାନଙ୍କ ଜୀବନ ଓ ଯୁଦ୍ଧର ମହାକାବ୍ୟ। ଭାରତବର୍ଷର ବିଭିନ୍ନ ରାଜ୍ୟ, ନଦୀ, ଅରଣ୍ୟ, ପର୍ବତ, ସାଗର, ରାଜା, ଜାତି, ଉପଜାତି, ଯଥା – ଆର୍ଯ୍ୟ, ଦ୍ରାବିଡ଼, ନିଷାଦ ଓ କିରାତ ଯେଉଁମାନେ ସେହି ସମୟର ଏହି ମହାଜାତିକୁ ନିର୍ମାଣ କରିଥିଲେ, ଏଥିରେ ସେମାନଙ୍କ ସମୟ ଓ ସଂଘର୍ଷର କାହାଣୀ ଲିପିବଦ୍ଧ। ପୁନାର ଭଣ୍ଡାରକର ଗବେଷଣା ପରିଷଦ ପକ୍ଷରୁ ମହାଭାରତର ଯେଉଁ ପ୍ରାମାଣିକ ସଂସ୍କରଣ ପ୍ରକାଶ ପାଇଛି ତଦନୁଯାୟୀ ସେତେବେଳେ ୩୬୨ଟି ଉପଜାତି ଥିବାର ମହାଭାରତରେ ଉଲ୍ଲେଖ ଅଛି। ପୁଣି ବ୍ୟାସଙ୍କର ମୂଳ ମହାଭାରତ ଯାହା ଚବିଶ ହଜାର ଶ୍ଳୋକ ବିଶିଷ୍ଟ ଥିଲା ତାହା ପରବର୍ତ୍ତୀକାଳରେ ୭୩,୯୦୦ ଶ୍ଳୋକରେ ପରିଣତ ହୋଇଥିବାର ଉଲ୍ଲେଖ ଅଛି।

ପୃଥିବୀର ଶ୍ରେଷ୍ଠ ଗ୍ରନ୍ଥମାନଙ୍କ ମଧ୍ୟରେ ମହାଭାରତ ଅନ୍ୟତମ। ଏହା ଏକ ବିଶାଳ ଗ୍ରନ୍ଥ, ଏକ ମହାକାବ୍ୟ। ପ୍ରାଚୀନ ଭାରତର କିମ୍ବଦନ୍ତୀ, ପରମ୍ପରା ଏବଂ ରାଜନୈତିକ, ସାମାଜିକ ଅନୁଷ୍ଠାନ, ଆର୍ଥନୀତିକ ଓ ନ୍ୟାୟିକ ବିଧିବ୍ୟବସ୍ଥା, ରାଜତନ୍ତ୍ରର ବିକାଶ– ମହାଭାରତ ଏସବୁର ଏକ ବିଶ୍ୱକୋଷସଦୃଶ। ମହାଭାରତର ଅନ୍ୟନାମ ହେଉଛି ମହାଭାରତ ସଂହିତା। ସଂହିତାର ଅର୍ଥ ଯାହା ସଂପୂର୍ଣ୍ଣଭାବେ ସଂଗ୍ରହ ବା ସଂକଳନ କରାଯାଇଛି। ଏଣୁ ମହାଭାରତରେ କରାଯାଇଛି ବହୁ ଲୋକକଥା ଓ କିମ୍ବଦନ୍ତୀ, ସ୍ମୃତିରେ ଧୂସରିତ ବହୁ ସତ୍ୟକଥା, ଐତିହାସିକ ଘଟଣା, ବିବିଧ ଧର୍ମଧାରା, ଦାର୍ଶନିକ ତତ୍ତ୍ୱ ଓ ଅନେକ କାଳ୍ପନିକ କାହାଣୀ। ବ୍ୟାସଦେବ ମୂଳ ରଚୟିତା ହେଲେ ମଧ୍ୟ ପରବର୍ତ୍ତୀକାଳରେ ଅନେକ କବି ଏଥିରେ ନିଜ ନିଜର ରଚନା ସଂଯୋଗ କରିଛନ୍ତି।

ମହାଭାରତରେ କୁହାଯାଇଛି ଯେ ଧର୍ମ ସତ୍ୟ ଉପରେ ପ୍ରତିଷ୍ଠିତ। କିନ୍ତୁ ଏହି ସତ୍ୟ କ'ଣ? ତାହାର ଉତ୍ତର ଦେଇ ମହାଭାରତକାର କହିଛନ୍ତି, ଯାହା ପ୍ରାଣୀମାନଙ୍କ ମଙ୍ଗଳପାଇଁ ଉଦ୍ଦିଷ୍ଟ ତାହାହିଁ ସତ୍ୟ। ସତ୍ୟର ତେରଟି ଗୁଣ ମଧ୍ୟରୁ ଅହିଂସାକୁ ଶ୍ରେଷ୍ଠ ସ୍ଥାନ ଦିଆଯାଇଛି। ସତ୍ୟ ଉପରେ ପ୍ରତିଷ୍ଠିତ ଧର୍ମର ଜୟ ସୁନିଶ୍ଚିତ। ପୁଣି ଧର୍ମ ଯେଉଁଠି ସେଇଠି ଭଗବାନ୍ ଓ ଯେଉଁଠି ଭଗବାନ୍ ସେଇଠି ଜୟ। ଏହାହିଁ ଅନୁବାଦକ ଜାନକୀବଲ୍ଲଭଙ୍କ ମହାଭାରତର ବ୍ୟାଖ୍ୟା। ଏଣୁ ମହାଭାରତ ଏକାଧାରରେ କାବ୍ୟ, ସାହିତ୍ୟ, ଇତିହାସ, ଦର୍ଶନ, ନୀତିଶାସ୍ତ୍ର ଓ ଏକ ଗଣସ୍ମୃତି। ବ୍ୟାସକୃତ ମହାଭାରତର ଓଡ଼ିଆରେ ଅନୂଦିତ ସଂକ୍ଷିପ୍ତସାରରେ ଏହାହିଁ ଦେଖିବାକୁ ମିଳେ।

ଏହାପରେ ପ୍ରକାଶିତ ହୋଇଥିଲା ବାଲ୍ମୀକିଙ୍କ ରଚିତ ସଂସ୍କୃତ ରାମାୟଣର ସଂକ୍ଷିପ୍ତସାର, ଓଡ଼ିଆ ଅନୁବାଦରେ। ବାଲ୍ମୀକି ଥିଲେ ଆମର ଆଦିକବି ଓ ତାଙ୍କ ରଚିତ ରାମାୟଣ ଆଦିକାବ୍ୟ। ଛନ୍ଦୋବଦ୍ଧ ପଦ୍ୟ କହିଲେ ଯାହା ବୁଝାଯାଏ, ବାଲ୍ମୀକି ତାହା ପ୍ରଥମେ ରଚନା କରିଥିଲେ। ଏହାକୁ ସଂସ୍କୃତରେ ଶ୍ଳୋକ କୁହାଯାଏ ଓ ବାଲ୍ମୀକି ଥିଲେ ଏହାର ସ୍ରଷ୍ଟା। ରାମାୟଣ ସଂସ୍କୃତ ସାହିତ୍ୟର ପ୍ରଥମ ମହାକାବ୍ୟ। ଏଥିରେ ୨୪ ହଜାର ଶ୍ଳୋକ ରହିଛି ଓ ଏହା ସାତ କାଣ୍ଡ ବା ଖଣ୍ଡରେ ବିଭକ୍ତ। ମହାଭାରତ ବିଶେଷଭାବେ ଇତିହାସ ଓ ଭରତବଂଶର ଗାଥା ହୋଇଥିବାବେଳେ, ରାମାୟଣ ରାମଙ୍କ ଜୀବନ ଉପରେ ଆଧାରିତ ଏକ ମହାକାବ୍ୟ। ଅନୁବାଦକଙ୍କ ମତରେ– 'ତାଙ୍କ ଜୀବନର ଘଟଣାବଳୀ କେବଳ ଅଯୋଧ୍ୟାରେ ସୀମିତ ନ ହୋଇ ସସାଗରା ଭାରତବର୍ଷକୁ ବ୍ୟାପ୍ତ ହୋଇଅଛି। ଏହି କାବ୍ୟରେ କେକୟ, କୁରୁ, ପାଞ୍ଚାଳ, କୋଶଳ, କାଶୀ, ମଗଧ, ଅଙ୍ଗ, ବିଦେହ ଆଦି ଉତ୍ତର-ଭାରତ ରାଜ୍ୟସମୂହ, ଦକ୍ଷିଣ ଭାରତର କିଷ୍କିନ୍ଧ୍ୟା ରାଜ୍ୟ ଓ ଦକ୍ଷିଣ ସମୁଦ୍ର ମଧ୍ୟସ୍ଥ ଲଙ୍କା ଦ୍ୱୀପର ବର୍ଣ୍ଣନା ରହିଛି। ବିନ୍ଧ୍ୟାଚଳରୁ ଗୋଦାବରୀ ପର୍ଯ୍ୟନ୍ତ ବ୍ୟାପ୍ତ ଓ ଦଣ୍ଡକାରଣ୍ୟ ନାମରେ ଖ୍ୟାତ ମହାରଣ୍ୟ, ଚିତ୍ରକୂଟ, ବିନ୍ଧ୍ୟ, ମହେନ୍ଦ୍ର, ମାଲ୍ୟବନ୍ତ ଆଦି ଗିରିଶୃଙ୍ଗ, ଗଙ୍ଗା, ଯମୁନା, ସରଯୂ, କୁଶୀ, ଗୋଦାବରୀ ଆଦି ନଦୀଗଣ ବିଭିନ୍ନ ଶୈଳ ଓ ପ୍ରସ୍ରବଣ, ବ୍ୟାଘ୍ର, ସିଂହ, ଭଲ୍ଲୁକ, ବରାହ, ମୃଗ ଆଦି ପଶୁ, ହଂସ, ସାରସ, କ୍ରୌଞ୍ଚ, ଡାହୁକ, ଚକ୍ରବାକ, କାକ, ଗୃଧ୍ର, ଶୁକ, ମୟୂର ଆଦି ପକ୍ଷୀ, ଶାଳ, ଅସନ, ଅର୍ଜୁନ, କଦମ୍ବ, ଚମ୍ପକ, ଅଶୋକ, ଆମ୍ବ, ପଣସ, ଅଁଳା, ଜାମୁ ଆଦି ବିଭିନ୍ନ ଫଳପୁଷ୍ପ ବୃକ୍ଷ। ବସନ୍ତ, ବର୍ଷା, ଶରତ, ହେମନ୍ତ ଆଦି ଋତୁମାନଙ୍କର ବର୍ଣ୍ଣନା ରାମାୟଣର ଛତ୍ରେ ଛତ୍ରେ ସୌନ୍ଦର୍ଯ୍ୟମୟୀ, ବୈଚିତ୍ର୍ୟମୟୀ ଭାରତଭୂମିକୁ ନିତ୍ୟନୂତନ ରୂପରେ ପ୍ରକଟିତ କରିଛି। ରାଜା, ଋଷି, ଯୋଦ୍ଧା, ଯାଜକ, ଶିଳ୍ପୀ, ସଙ୍ଗୀତଜ୍ଞ, ଗାୟକ, ନର୍ତ୍ତକ, ନଗର ଓ ଜନପଦବାସୀ, ଅନ୍ତଃପୁରରେ ନାରୀ, ବନବାସିନୀ ଶବରୀ ସମସ୍ତେ ଏଇ ବିଶାଳ ମହାକାବ୍ୟରେ ଆବିର୍ଭୂତ ହୋଇ ସେମାନଙ୍କ ଧର୍ମଧାରଣା, ଆଚାର, ସଂସ୍କାର, ରୀତିନୀତିଦ୍ୱାରା ଭାରତର ବୈଶିଷ୍ଟ୍ୟ ଓ ସଂସ୍କୃତିର ବିଭବର ଘୋଷଣା କରୁଛନ୍ତି।'

ରାମାୟଣ ରାମଙ୍କ ଜୀବନୀ ଉପରେ ଆଧାରିତ ଏକ ମହାକାବ୍ୟ ହେଲେହେଁ ଏଥିରେ ରହିଛି ଇତିହାସର ବହୁ ତଥ୍ୟ। ଉତ୍ତର, ମଧ୍ୟ ଓ ଦକ୍ଷିଣ ଭାରତର ବିଭିନ୍ନ ରାଜ୍ୟ ମଧ୍ୟରେ ସଂପର୍କ ଓ ସେମାନଙ୍କର ସାମାଜିକ, ରାଜନୈତିକ ବ୍ୟବସ୍ଥା, ଆର୍ଯ୍ୟ ଓ ଆର୍ଯ୍ୟେତର ବିଭିନ୍ନ ସଭ୍ୟତା, ସଂସ୍କୃତି ମଧ୍ୟରେ ସଂଘର୍ଷ, ପ୍ରାଚୀନ ଯୁଦ୍ଧକୌଶଳ, ରାଜନୀତି, ଶାସନବ୍ୟବସ୍ଥା ଏଥିରେ ବର୍ଣ୍ଣିତ। ବିଶେଷକରି ଏହା ଆର୍ଯ୍ୟ ଓ ଆର୍ଯ୍ୟେତର ସଭ୍ୟତାର ସଂଘର୍ଷ ଓ ସମନ୍ୱୟର କାହାଣୀ। ପୁଣି ବ୍ୟକ୍ତିଗତ ଜୀବନରେ ନୀତି, ଆଦର୍ଶ, ସଂସ୍କାର, ସମାଜରେ ବ୍ୟକ୍ତିର ବ୍ୟବହାର, ମାନବିକ ସ୍ନେହ, ତ୍ୟାଗ, ଘୃଣା ଓ ସାହସର କାହାଣୀ ହେଉଛି ରାମାୟଣ। ବିଭିନ୍ନ ଭାରତୀୟ ଭାଷାରେ ରାମାୟଣ ରଚିତ। ବଳରାମ ଦାସଙ୍କ ରଚିତ ଜଗମୋହନ ରାମାୟଣ ଓଡ଼ିଶାରେ ପ୍ରସିଦ୍ଧ।

ରାମାୟଣ ପୁଣି ଏକ ଧର୍ମଗ୍ରନ୍ଥ। ଏହା ଏକ ନୀତିଶାସ୍ତ୍ର, କାରଣ ରାଜଧର୍ମ ଓ ଶାସନ ନୀତି ସଂପର୍କରେ ଏଥିରେ ବିସ୍ତାରିତ ଭାବେ ବ୍ୟାଖ୍ୟା କରାଯାଇଛି। ରୂପକଥାର ବୈଚିତ୍ର୍ୟ ପରି ରାମାୟଣରେ କେବଳ ମଣିଷ ନୁହେଁ, ଏଥିରେ ଦେବାସୁର, ନାଗ, ବାନର, ଗର୍ନ୍ଧବ ସମସ୍ତଙ୍କ

କାହାଣୀ ମନକୁ ଛୁଇଁଯାଏ– ଯେମିତିକି ଏମାନେ ସମସ୍ତେ ଗୋଟିଏ ପୃଥିବୀର ଅଂଶବିଶେଷ। ରାମଚନ୍ଦ୍ରଙ୍କର ଯାତ୍ରା ଏକ ଅର୍ଥରେ ଆର୍ଯ୍ୟ ସମାଜର ଯାତ୍ରା– ଏ ସମାଜର ବ୍ୟବସ୍ଥା, ଶାସନ, ନୀତିନିୟମର ପ୍ରଚାର। ଆର୍ଯ୍ୟ ସମାଜର ଶ୍ରେଷ୍ଠତ୍ୱ ରାମାୟଣରେ ପ୍ରତିପାଦନ କରାଯାଇଛି। ସତ୍ୟ ଧର୍ମରେ ପରିଚାଳିତ ସମାଜ, ରାଷ୍ଟ୍ର ଏପରିକି ପରିବାର ମଧ୍ୟରେ ଶ୍ରଦ୍ଧାପୂର୍ଣ୍ଣ ଆଦର୍ଶ ସଂପର୍କ ରାମାୟଣର ବାର୍ତ୍ତା। ଏଇଥିପାଇଁ ଗାନ୍ଧିଜୀ 'ରାମରାଜ୍ୟ'କୁ ଏକ ବ୍ୟବସ୍ଥାଗତ, ଶାସନଗତ, ସାମାଜିକ ଆଦର୍ଶ ଭାବେ ଗ୍ରହଣ କରିଥିଲେ।

ବ୍ୟାସକୃତ ଶ୍ରୀମଦ୍ ଭାଗବତର ଗଦ୍ୟାନୁବାଦ ତାଙ୍କର ଏକ ଭିନ୍ନ ରଚନା। ଭାଗବତରେ ଅଠର ହଜାର ଶ୍ଳୋକ ଅଛି। ଭାଗବତ ବାରଟି ସ୍କନ୍ଦରେ ବିଭକ୍ତ, ତାହା ମଧ୍ୟରୁ ଦଶମ ସ୍କନ୍ଦ ସବୁଠୁ ବଡ଼, ଏହା ନବେ ଅଧ୍ୟାୟ ବିଶିଷ୍ଟ ଓ ଏଥିରେ ତିନି ହଜାର ନ ଶହ ଛୟାଳିଶ ଶ୍ଳୋକ ଅଛି। ସେହିଭଳି ଦ୍ୱିତୀୟ ସ୍କନ୍ଦ ସବୁଠାରୁ ଛୋଟ, ଏହା ଦଶ ଅଧ୍ୟାୟ ଓ ତିନି ଶହ ଏକାନବେ ଶ୍ଳୋକ ବିଶିଷ୍ଟ। ପୁଣି ଗୋଟିଏ ସ୍କନ୍ଦ ସଂପୂର୍ଣ୍ଣ ଗଦ୍ୟମୟ। ଭାଗବତଦ୍ୱାରା ପ୍ରଭାବିତ ଭକ୍ତି ଆନ୍ଦୋଳନର ସମୟ ଦୃଷ୍ଟିରୁ ଏହା ନବମ ବା ଦଶମ ଶତାବ୍ଦୀରେ ରଚିତ ବୋଲି ଐତିହାସିକମାନେ କହନ୍ତି। କେହି ତ୍ରୟୋଦଶ ଶତାବ୍ଦୀର ସଂସ୍କୃତ କବି ବୋପଦେବଙ୍କୁ ଏହାର ରଚୟିତା ବୋଲି ଧରିନିଅନ୍ତି। କାରଣ ତାଙ୍କର 'ଭାଗବତାନୁକ୍ରମଣିକା'ରେ ସେ ସଂପୂର୍ଣ୍ଣ ଭାଗବତର ସାରାଂଶ ଦେଇଛନ୍ତି। ଭାଗବତର ଯେତେ ଆଧୁନିକ ପ୍ରବକ୍ତା ଅଛନ୍ତି ସମସ୍ତେ ଶ୍ରୀଧରସ୍ୱାମୀଙ୍କର ଟୀକାକୁ ପ୍ରାମାଣିକ ବୋଲି ଗ୍ରହଣ କରନ୍ତି। ଏପରିକି ଶ୍ରୀଚୈତନ୍ୟଦେବ ଏକଥା ନିଜେ ସ୍ୱୀକାର କରିଛନ୍ତି। ଶ୍ରୀଧରସ୍ୱାମୀଙ୍କର ଜନ୍ମ ଓଡ଼ିଶାର ନୀଳଗିରି ନିକଟସ୍ଥ ମରେଇ ଗ୍ରାମରେ ହୋଇଥିଲା।

ଭାରତୀୟ ଧାର୍ମିକ ପରମ୍ପରାରେ ଭାଗବତର ସ୍ଥାନ ଅଦ୍ୱିତୀୟ। ବେଦ, ଉପନିଷଦ, ରାମାୟଣ, ମହାଭାରତ ଓ ପୁରାଣମାନଙ୍କୁ ପ୍ରାଚୀନ ଭାରତୀୟ ସଂସ୍କୃତିର ଆଧାର ବୋଲି ଗଣାଯାଏ। ବେଦ ବା ଉପନିଷଦ୍ ସାଧାରଣଙ୍କପାଇଁ ବୋଧଗମ୍ୟ ନୁହେଁ। ସମସ୍ତ ବେଦ ଓ ଉପନିଷଦ୍‌ର ସାରକଥାକୁ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଉପଦେଶ ଦେବା ଛଳରେ ଭଗବଦ୍‌ଗୀତାରେ ପ୍ରକାଶ କରିଛନ୍ତି। ଗୀତା କୃଷ୍ଣ ଅର୍ଜୁନଙ୍କ କଥାପରି, ଭାଗବତ ଶୁକ ଓ ପରୀକ୍ଷିତଙ୍କ ସମ୍ବାଦ। ଦିନେ ଭଗବାନ୍ ବ୍ରହ୍ମାଙ୍କୁ ଦେଖାଦେଇ ତାଙ୍କୁ ଯେଉଁ ତତ୍ତ୍ୱ ଉପଦେଶ ଦେଲେ ସେଥିରୁ ଚତୁଃଶ୍ଳୋକୀ ଭାଗବତ ଜନ୍ମ ନେଲା। ଏହି ଜ୍ଞାନଲାଭ କରି ବ୍ରହ୍ମା ବିଶ୍ୱ ସର୍ଜନାପାଇଁ ବାହାରିଲେ। ଏହି ଜ୍ଞାନକୁ ପ୍ରସାର କରିବାପାଇଁ ବ୍ରହ୍ମା ନିଜ ପୁତ୍ର ନାରଦଙ୍କୁ ଶୁଣାଇଲେ। ନାରଦ ବ୍ରହ୍ମାଙ୍କଠାରୁ ଶୁଣିଥିବା ଭାଗବତ ଜ୍ଞାନକୁ ଶିଷ୍ୟ ବ୍ୟାସଦେବଙ୍କଦ୍ୱାରା ବିସ୍ତାରିତ କରାଇଲେ। ଯେଉଁ ଭାଗବତ ଗ୍ରନ୍ଥ ବର୍ତ୍ତମାନ ଲୋକରେ ପ୍ରଚାରିତ, ତାହା ବ୍ୟାସଙ୍କ ପୁତ୍ର ଓ ଶିଷ୍ୟ ଶ୍ରୀ ଶୁକଦେବଙ୍କ ମୁଖନିଃସୃତ ବାଣୀ, ଯାହାକି ଅଠର ହଜାର ଶ୍ଳୋକରେ ଲିପିବଦ୍ଧ। ଏହାହିଁ ଅନୁବାଦକଙ୍କର ଭାଗବତ ପ୍ରସଙ୍ଗରେ ମନ୍ତବ୍ୟ।

ଭାଗବତ ହେଉଛି ନିର୍ଗୁଣ-ନିରାକାର, ସଗୁଣ-ସାକାର, ଜ୍ଞାନମାର୍ଗ, ଭକ୍ତିମାର୍ଗ, କର୍ମମାର୍ଗ, ଯୋଗମାର୍ଗ, ପ୍ରେମତତ୍ତ୍ୱ, ସାଂଖ୍ୟ, ବେଦାନ୍ତ ଓ ଭାରତୀୟ ଅଧ୍ୟାତ୍ମ ସାଧନାର ସମନ୍ୱୟ।

ଏହି ବିଶାଳ ଓ ପ୍ରଭାବଶାଳୀ ଗ୍ରନ୍ଥର ପଦ୍ୟାନୁବାଦ କରିଥିଲେ ଜଗନ୍ନାଥ ଦାସ। ଭାଗବତକୁ ବୈଷ୍ଣବମାନେ ଶ୍ରେଷ୍ଠ ଗ୍ରନ୍ଥ ଭାବେ ବିବେଚନା କରନ୍ତି। ଜଗନ୍ନାଥ ଦାସଙ୍କ ଅନୂଦିତ ଭାଗବତ ଓଡ଼ିଶାର ପ୍ରତି ଘରେ ଘରେ ଏକ ମହାର୍ଘ ସଂପଦ। ଓଡ଼ିଶାର ଏକ ସନ୍ଧିକ୍ଷଣରେ ପଞ୍ଚଦଶ ଶତାବ୍ଦୀରେ ଜଗନ୍ନାଥ ଦାସ ନବାକ୍ଷରୀ ବୃତ୍ତରେ ଭାଗବତ ରଚନା କରିଥିଲେ। 'ପରାଧୀନତା ଅନ୍ଧକାର ଭିତରେ ସମଗ୍ର ଓଡ଼ିଶାର ଜନଜୀବନ ଯେତେବେଳେ ଲୁକ୍‌କାୟିତ, ସାମାଜିକ ଶାନ୍ତି ନିଃଶେଷପ୍ରାୟ, ସେତେବେଳେ ଓଡ଼ିଶାର ଅଗଣିତ ପୁରପଲ୍ଲୀରେ ଭାଗବତ ଟୁଙ୍ଗୀରେ ରାତିରେ ମିଞ୍ଜି ମିଞ୍ଜି ହୋଇ ଜଳୁଥିବା ଦୀପଶିଖାର ଆଲୁଅ ହିଁ ଓଡ଼ିଆ ଜାତି ଓ ଓଡ଼ିଆ ଭାଷାକୁ ଆଲୋକିତ କରି ରଖିଥିଲା।' ଏହାହିଁ ହେଉଛି ଜଣେ ଅନୁବାଦକର ଦୃଷ୍ଟିଭଙ୍ଗୀ, ଯେଉଁଥିରେ କେବଳ କୃତିଟି ନୁହେଁ ବରଂ ସମଗ୍ର କାଳଟି ରୂପ ନେଇଥାଏ।

ପରବର୍ତ୍ତୀକାଳରେ ଦୀନବନ୍ଧୁ ଖାଡ଼ଙ୍ଗାଙ୍କ ପରି କିଛି ଲୋକ ଭାଗବତ ଅନୁବାଦ କରିଛନ୍ତି । ମାତ୍ର ଭାବ, ଭାଷା, ଭକ୍ତି ସବୁଥିରେ ଜଗନ୍ନାଥ ଦାସଙ୍କ ଭାଗବତ ଏବେବି ଅନନ୍ୟ, ଅତୁଳନୀୟ। ଇଂରାଜୀ ଭାଷାରେ ମଧ୍ୟ ଏହାର କେତେକ ଅନୁବାଦ ହୋଇଛି। ମାତ୍ର ପ୍ରଥମ ଇଂରାଜୀ ଅନୁବାଦରେ ଶ୍ରେୟ ଯାଏ ଇଷ୍ଟଇଣ୍ଡିଆ କମ୍ପାନୀର ଡିରେକ୍ଟର ଓ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ୍ ଓ୍ୱାରେନ୍ ହେଷ୍ଟିଙ୍ଗ୍‌ସଙ୍କୁ। ଭାଗବତ ଅନୁବାଦ କରି ସେ କହିଥିଲେ– ଏହାର କଳ୍ପନାର ଚମତ୍କାରିତା ଓ ଉଚ୍ଚବିଚାରଧାରା ଯେଉଁ ଶିଖର ଦେଶରେ ପହଞ୍ଚିଯାଇଛି ତାହା ଆମର (ପାଶ୍ଚାତ୍ୟ ଦେଶମାନଙ୍କର) ଚିନ୍ତାଧାରାର ବହୁ ଉର୍ଦ୍ଧ୍ୱରେ ଓ ଏହା ଅବଧାରଣା କରିବା ଆମ ପକ୍ଷରେ କଷ୍ଟକର।

ମୂଳ ସଂସ୍କୃତ ଶ୍ରୀମଦ୍‌ଭାଗବତର ଗଦ୍ୟାନୁବାଦ କରିଛନ୍ତି ଜାନକୀବଲ୍ଲଭ। ହିନ୍ଦୀରେ ଏହାର ଗଦ୍ୟାନୁବାଦ କରିଛନ୍ତି ସ୍ୱାମୀ ଅଖଣ୍ଡାନନ୍ଦ ସରସ୍ୱତୀ ଓ ଏହା ଏକ ଭାବାନୁବାଦ। ଜାନକୀବଲ୍ଲଭଙ୍କ ଗଦ୍ୟାନୁବାଦ ତାଙ୍କ ପ୍ରଜ୍ଞା ଓ ପ୍ରସିଦ୍ଧିକୁ ସ୍ୱୀକୃତି ଦେଇଛି। ୯୬୦ ପୃଷ୍ଠା ସମ୍ବଳିତ ଏହି ଗ୍ରନ୍ଥ ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ସଂପଦ।

ଏହାବ୍ୟତୀତ ସେ ମହାନ୍ ସଂସ୍କୃତ କବି ଭର୍ତ୍ତୃହରିଙ୍କ ପ୍ରଣୀତ ତିନୋଟି ଶତକ– ଶୃଙ୍ଗାରଶତକ, ନୀତିଶତକ ଓ ବୈରାଗ୍ୟଶତକର ଅନୁବାଦକ। ଜାନକୀବଲ୍ଲଭ ସେଗୁଡ଼ିକୁ ସଂସ୍କୃତରୁ ଓଡ଼ିଆକୁ ପଦ୍ୟାନୁବାଦ କରିଛନ୍ତି। ସଂସ୍କୃତ କବି ଭର୍ତ୍ତୃହରି ଥିଲେ ଏକାଧାରରେ ଜଣେ କବି, ଦାର୍ଶନିକ ଓ ବୟାକରଣ। ମାତ୍ର ତିନି ଶହଟି ପଦ୍ୟ ରଚନା କରି ସେ ଭାରତୀୟ କାବ୍ୟଜଗତରେ ଅମର ହୋଇଯାଇଛନ୍ତି। ତାଙ୍କ ଶତକଗୁଡ଼ିକର ଅନୁବାଦ ବିଭିନ୍ନ ଭାରତୀୟ ଭାଷାରେ ହୋଇସାରିଛି। ଚୀନ୍ ପରିବ୍ରାଜକ ଇତ୍-ସିଂ ତାଙ୍କୁ ସପ୍ତମ ଶତାବ୍ଦୀର କବି ବୋଲି କହନ୍ତି ଓ ତାକୁ ଜଣେ ବୌଦ୍ଧଧର୍ମାବଲମ୍ବୀ ବୋଲି କହନ୍ତି। କାରଣ ସେ ପ୍ରାସାଦ ତ୍ୟାଗକରି ବୌଦ୍ଧମଠରେ ରହୁଥିଲେ। ମାତ୍ର ସେ ସମୟରେ ଅନେକ ହିନ୍ଦୁ ମଧ୍ୟ ସଂସାର ତ୍ୟାଗ କରିବାର ଉପଦେଶ ଦେଉଥିଲେ। ସଂସାର ତ୍ୟାଗକରି ମୁକ୍ତି ପାଇବାର ପ୍ରବଳ ଇଚ୍ଛା ଏହି ଶତକଗୁଡ଼ିକରୁ ଜଣାପଡ଼ିଯାଏ। ଭାବର ଗଭୀରତା, ଛନ୍ଦର ଲାଳିତ୍ୟ, ସୁନ୍ଦର ଶବ୍ଦଯୋଜନା, ଚମତ୍କାର ଉପମା, ଅନନ୍ୟ ପ୍ରକାଶଭଙ୍ଗୀ ହେଉଛି ଭର୍ତ୍ତୃହରିଙ୍କ ବିଶେଷତ୍ୱ।

ଭର୍ତ୍ତୃହରିଙ୍କ ତିନୋଟି ଶତକ ମଧ୍ୟରୁ ନୀତିଶତକ ଅନ୍ୟତମ। ନୀତିର ଅର୍ଥ ଆଚରଣ। ଜୀବନରେ ମଣିଷର ଆଚରଣ କିଭଳି ହେବା ଉଚିତ ତାହା ଏଥିରେ ଅନେକ ଉଦାହରଣ ମାଧ୍ୟମରେ ବର୍ଣ୍ଣନା କରାଯାଇଛି। ବ୍ୟକ୍ତି ସବୁବେଳେ ସମାଜର ଶୃଙ୍ଖଳା ଭିତରେ ଆବଦ୍ଧ। ପ୍ରତ୍ୟେକ କ୍ଷେତ୍ରର ନିଜସ୍ୱ ନୀତି ରହିଛି, ଯେପରି ରାଜନୀତି, ସମାଜନୀତି, ଅର୍ଥନୀତି, ଧର୍ମନୀତି ଇତ୍ୟାଦି। ସଂସ୍କୃତରେ ନୀତିଶାସ୍ତ୍ରର ସଂଖ୍ୟା କିଛି କମ୍ ନୁହେଁ, ଯେପରି ମନୁସ୍ମୃତି ଓ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର। ନୀତିର ଅନ୍ୟନାମ ଆଦର୍ଶ ଆଚରଣ। ଗୀତାକୁ ଯେପରି ସବୁ ଉପନିଷଦର ସାର ଭାବେ ଗ୍ରହଣ କରାଯାଏ, ଭର୍ତ୍ତୃହରିଙ୍କ ନୀତି ଶତକକୁ ସବୁ ନୀତିଶାସ୍ତ୍ରର ସାର କୁହାଯାଏ। ଜୀବନରେ ସେ ଆଦର୍ଶକୁ ଉଚ୍ଚସ୍ଥାନ ଦେଇଛନ୍ତି। ନୀତି ଶତକରେ ଅଛି ଅବିଦ୍ୟା ବିରୋଧରେ ବିଦ୍ୟାର ପ୍ରଶଂସା। ସେହିଭଳି ଅଜ୍ଞତା ବା ମୂର୍ଖତାର ସେ ସବୁବେଳେ ଘୋର ନିନ୍ଦା କରନ୍ତି, ଦୁର୍ଜନ ଓ ଖଳ ଲୋକଠାରୁ ଦୂରରେ ରହିବାକୁ ପରାମର୍ଶ ଦିଅନ୍ତି। ଏଥିରେ କୁହାଯାଇଛି ଯେ, ଐଶ୍ୱର୍ଯ୍ୟର ଗୁଣ ସୌଜନ୍ୟ, ପାଣ୍ଡିତ୍ୟର ଗୁଣ ବିନୟ, ଧାର୍ମିକର ଗୁଣ ସରଳତା, ଧନୀର ଗୁଣ ସୁପାତ୍ରରେ ଦାନ, ପ୍ରଭୁର ଗୁଣ କ୍ଷମା– ଏହାହିଁ ପ୍ରକୃତ ଆଚରଣ। ସବୁଠାରୁ ବଡ଼କଥା ହେଲା ସେ ଦୈବ ଓ କର୍ମ ମଧ୍ୟରେ ସେ କର୍ମକୁ ଉଚ୍ଚସ୍ଥାନ ଦିଅନ୍ତି। ସମସ୍ତ ସଂସାର କର୍ମର ଅଧୀନ; ଏଣୁ ମଣିଷ ଭାଗ୍ୟ ଓ ଦୈବ ଉପରେ ନିର୍ଭର କରିବା ଉଚିତ ନୁହେଁ – ଏହାହିଁ ସଂକ୍ଷେପରେ ନୀତିଶତକ।

ଏହାପରେ ଶୃଙ୍ଗାର ଶତକ ପ୍ରକାଶିତ ହୋଇଥିଲା ୧୯୮୩ ମସିହାରେ। ଅନୁବାଦକଙ୍କ ମତରେ– 'ଏହା କେବଳ କାମାସକ୍ତ ନାରୀ ପୁରୁଷଙ୍କର କେଳି ବର୍ଣ୍ଣନା ନୁହେଁ। ଏହାର କ୍ଷଣିକତା ଓ ବୈରାଗ୍ୟ ପ୍ରତି ଅନୁରକ୍ତି ଏଥିରେ ପରିସ୍ଫୁଟ ହୋଇଛି।' ସଂସ୍କୃତ ସାହିତ୍ୟରେ ଶୃଙ୍ଗାର ରସକୁ ଏକ ପ୍ରଧାନ ସ୍ଥାନ ଦିଆଯାଇଛି ଏବଂ ସେଥିରେ ହିଁ କବିତ୍ୱର ଶ୍ରେଷ୍ଠତା ପ୍ରତିପାଦନ କରାଯାଇଛି। ଶୃଙ୍ଗାର ଶତକରେ ସେ ନାରୀର ରୂପ ବର୍ଣ୍ଣନା ଓ ସମ୍ଭୋଗ ବର୍ଣ୍ଣନାରେ ଅନ୍ୟ ବହୁ କବିଙ୍କୁ ଟପି ଯାଇଛନ୍ତି। ଅର୍ଥାତ୍ ସମସ୍ତ ରସର ପରିବେଷଣ ସେ ଅତି ସୁନ୍ଦର, ନିଖୁଣ ଓ ଉପଭୋଗ୍ୟ ଭାବରେ କରିପାରିଛନ୍ତି। ମାତ୍ର ତାଙ୍କ ଶୃଙ୍ଗାରଶତକର ସ୍ୱାତନ୍ତ୍ର୍ୟ ଏହି ଯେ ରୂପର ଆକର୍ଷଣକୁ ସୁଖ ମନେ ନ କରି ବନ୍ଧନ ବୋଲି ଗ୍ରହଣ କରିବାକୁ ସେ ପରାମର୍ଶ ଦେଇଛନ୍ତି। ଶୃଙ୍ଗାରଶତକର ଶେଷରେ ସେ କାମାସକ୍ତିକୁ ଅଜ୍ଞାନ ସହ ତୁଳନା କରିଛନ୍ତି। ମୋଟ ଉପରେ ରୂପ କ୍ଷଣସ୍ଥାୟୀ ଓ ସମ୍ଭୋଗ ସୁଖ ଅଳୀକ ବୋଲି ଏଥିରେ କୁହାଯାଇଛି। ଏହାହିଁ ମହାନ୍ କବି ଭର୍ତ୍ତୃହରିଙ୍କ ମୌଳିକତା।

ଭାରତୀୟ ଜୀବନ ଓ ଦର୍ଶନରେ ବୈରାଗ୍ୟର ସ୍ଥାନ ସ୍ୱତନ୍ତ୍ର। ବାଲ୍ୟକାଳରୁ ସନ୍ନ୍ୟାସ ବ୍ରତ ଗ୍ରହଣ କରିବା ବା ବାର୍ଦ୍ଧକ୍ୟରେ ବୈରାଗ୍ୟର ଦୀକ୍ଷା ନେଇ ଗୃହତ୍ୟାଗ କରିବାପାଇଁ ଅନେକ ଶାସ୍ତ୍ର ଉପଦେଶ ଦେଇଛନ୍ତି। ପ୍ରାଚୀନକାଳରେ ମଣିଷ ଜୀବନର ଶେଷ ଦୁଇ ପର୍ଯ୍ୟାୟ ବାନପ୍ରସ୍ଥ ଓ ଯତିବ୍ରତ ନାମରେ ପ୍ରସିଦ୍ଧ ଥିଲା। ବୈରାଗ୍ୟର ମହାନ୍ ପ୍ରତୀକ ଯୋଗୀଶ୍ୱର ଶିବ ବନ୍ଦନାରୁ ବୈରାଗ୍ୟ ଶତକର ଆରମ୍ଭ। ଉଭୟ ଧନୀ ଦରିଦ୍ର, ଭାଗ୍ୟବାନ୍, ଦୁର୍ଭାଗା କାହାରିପାଇଁ ଏ ସଂସାରରେ ସ୍ଥାୟୀ ସୁଖଶାନ୍ତି ନାହିଁ। କେବଳ ସଂସାର ତ୍ୟାଗରେ ହିଁ ଏହି ଶାନ୍ତି ନିହିତ। ଏ ସଂସାର

ଭୟପୂର୍ଣ୍ଣ। ଧନହାନି, କ୍ଷମତାହାନି, ସମ୍ମାନହାନି, ପୁଣି ଶତ୍ରୁ, ଜରା ଓ ମରଣର ଭୟ ମଣିଷକୁ ସାରାଜୀବନ ଘାରି ରଖିଥାଏ। କିନ୍ତୁ ଏକମାତ୍ର ବୈରାଗ୍ୟ ଦ୍ୱାରା ଏ ଭୟକୁ ଦୂର କରାଯାଇପାରେ। ଭର୍ତ୍ତୃହରି ରାଜା ଓ ଯୋଗୀଙ୍କ ମଧ୍ୟରେ ତୁଳନା କରି ଯୋଗୀ ଓ ବୈରାଗୀକୁ ଶ୍ରେଷ୍ଠ ବୋଲି ପ୍ରତିପାଦନ କରିଛନ୍ତି। ଯୋଗୀର ଭକ୍ତି ଓ ସମର୍ପିତ ଜୀବନକୁ ପ୍ରଶଂସା କରି ଜୀବ ପରିଶେଷରେ କିପରି ସମାଧିସ୍ଥ ହୋଇଯାଉଛି ଏହି ଦର୍ଶନରେ ବୈରାଗ୍ୟଶତକ ଶେଷ ହୋଇଛି।

ନୀତି, ଆଦର୍ଶର କବି ଭର୍ତ୍ତୃହରିଙ୍କର ନୀତି, ଶୃଙ୍ଗାର ଓ ବୈରାଗ୍ୟଶତକ ତିନୋଟି ଭିନ୍ନ ଭିନ୍ନ ବିଶେଷକୁ ନେଇ ରଚିତ ହୋଇଥିଲେ ହେଁ ଏସବୁ ଗୋଟିଏ ଲକ୍ଷ୍ୟ ଓ ଆଦର୍ଶ ପ୍ରତି ଉଦ୍ଦିଷ୍ଟ। ଏହାହିଁ ତିନି ଶତକ ଉପରେ ଅନୁବାଦକଙ୍କ ସୂକ୍ଷ୍ମ ମନ୍ତବ୍ୟ। ଏସବୁଥିରେ ମଣିଷର ଦୋଷ-ଦୁର୍ବଳତାର ନିନ୍ଦା ଓ ଆଦର୍ଶକୁ ଉଚ୍ଚସ୍ଥାନ ଦିଆଯାଇଛି। ଆଦର୍ଶରୁ ବିଚ୍ୟୁତ ନ ହେବା ଯେ ପ୍ରକୃତ ମାନବିକତା ଏହାହିଁ ଏହି ତିନିଶତକର ମୂଳମର୍ମ।

ଅନୁବାଦକ ଜାନକୀବଲ୍ଲଭଙ୍କ ଏହି ପର୍ଯ୍ୟାୟର ଲେଖାଗୁଡ଼ିକରେ ସାହିତ୍ୟ ଅପେକ୍ଷା ଆଧ୍ୟାତ୍ମିକତାର ଉତ୍ତରଣ ଅଧିକ। ନୀତି, ଆଦର୍ଶ, ଯୋଗ, ଭଗବାନ୍, ସଂସାର, ଏସବୁ ବାରିହୋଇପଡ଼େ ତାଙ୍କର ଲେଖା ଓ ବ୍ୟାଖ୍ୟାରେ।

ଦ୍ୱିତୀୟ ପର୍ଯ୍ୟାୟର ଅନୂଦିତ କୃତିଗୁଡ଼ିକ ହେଲା, ସଂପୂର୍ଣ୍ଣ ସାହିତ୍ୟ ସଂପର୍କୀୟ ଏବଂ ପୂର୍ବଭଳି ପ୍ରାଚୀନ ନ ହୋଇ ବରଂ ଆଧୁନିକ। ଏହାହିଁ ତାଙ୍କର ପ୍ରସିଦ୍ଧ ବଙ୍କିମ ଉପନ୍ୟାସମାଳା। ୧୯୬୭ ମସିହାରେ 'ପୌରୁଷ' ପତ୍ରିକାର ପ୍ରକାଶନ କାଳରୁ ତାଙ୍କ ଉପନ୍ୟାସ ମଧ୍ୟକୁ ଅଧିକାଂଶ ଅନୂଦିତ ଗୋଟିଏ ଧାରାବାହିକ ଭାବେ ପ୍ରକାଶ ପାଇଥିଲା। ପ୍ରଥମେ ଏହା ପୁସ୍ତକଭାବେ ଦୁଇ ଖଣ୍ଡରେ ପ୍ରକାଶିତ ହୋଇଥିଲା। ପରବର୍ତ୍ତୀ ସମୟରେ 'ଆମ ଓଡ଼ିଶା' ଦ୍ୱାରା ଏହା ଛ'ଖଣ୍ଡରେ ପ୍ରକାଶିତ ହୋଇଛି।

ବଙ୍ଗଳାରେ ଆରମ୍ଭ ହୋଇଥିବା ନବଜାଗରଣରେ ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଯେଉଁ କେତେଜଣ ଅଗ୍ରଣୀ ମହାନାୟକ ଥିଲେ ସେମାନଙ୍କ ମଧ୍ୟରେ ଥିଲେ ରବୀନ୍ଦ୍ରନାଥ, ଶ୍ରୀଅରବିନ୍ଦ, ବିବେକାନନ୍ଦ ଓ ବଙ୍କିମଚନ୍ଦ୍ର। ସେ ହିଁ ଥିଲେ ଭାରତବର୍ଷର ପ୍ରଥମ ଗ୍ରାଜୁଏଟ୍, ବଙ୍ଗଳାର ପ୍ରଥମ ସଫଳ ଔପନ୍ୟାସିକ ଓ ଭାରତର ଅନ୍ୟତମ ଶ୍ରେଷ୍ଠ ସ୍ରଷ୍ଟା। ଏଥିରେ ତାଙ୍କର ସମସ୍ତ ଉପନ୍ୟାସର ଅନୁବାଦ ରହିଛି। ୧୪ଟି ସଂପୂର୍ଣ୍ଣ ଉପନ୍ୟାସ– ଦୁର୍ଗେଶ ନନ୍ଦିନୀ, କପାଳକୁଣ୍ଡଳା, ମୃଣାଳିନୀ, ବିଷବୃକ୍ଷ, ଇନ୍ଦିରା, ଯୁଗଳାଙ୍ଗୁରୀୟ, ଚନ୍ଦ୍ରଶେଖର, ରଜନୀ, କୃଷ୍ଣକାନ୍ତଙ୍କ ଉଇଲ୍, ରାଜସିଂହ, ରାଧାରାଣୀ, ଆନନ୍ଦମଠ, ଦେବୀ ଚୌଧୁରାଣୀ, ସୀତାରାମ ଓ ଗୋଟିଏ ଅସଂପୂର୍ଣ୍ଣ ଉପନ୍ୟାସ ବାରିବାହିନୀ। ତାଙ୍କର ପ୍ରଥମ ଉପନ୍ୟାସ ଦୁର୍ଗେଶନନ୍ଦିନୀ ପାଠକଙ୍କ ହୃଦୟ ଜୟ କରିପାରିଥିଲା। ତାଙ୍କ ଜୀବନକାଳ ମଧ୍ୟରେ ଏହି ପୁସ୍ତକର ୧୨,୫୦୦ ଖଣ୍ଡ ବିକ୍ରି ହୋଇଯାଇଥିଲା। ଏହା ଥିଲା ଇତିହାସ ଆଶ୍ରିତ ଏକ ରୋମାଣ୍ଟିକ ଉପନ୍ୟାସ। ସେହିଭଳି କପାଳକୁଣ୍ଡଳା, ମୃଣାଳିନୀ, ଯୁଗଳାଂଗୁରୀୟ, ରାଧାରାଣୀ, ରାଜସିଂହ ସବୁ ରୋମାଣ୍ଟିକ ଉପନ୍ୟାସ। ପୁଣି ବିଷବୃକ୍ଷ, କୃଷ୍ଣକାନ୍ତଙ୍କ ଉଇଲ୍, ଚନ୍ଦ୍ରଶେଖର, ରଜନୀ ରୋମାଣ୍ଟିକ୍ ହେଲେ ବି ନୀତିଭିତ୍ତିକ।

ଆନନ୍ଦମଠ, ଦେବୀ ଚୌଧୁରାଣୀ, ସୀତାରାମ ରୋମାଣ୍ଟିକ ହେଲେ ମଧ୍ୟ ଆଧ୍ୟାତ୍ମିକ ଭିତ୍ତିଭୂମି ଉପରେ ରଚିତ। ୧୮୮୩ ମସିହାରେ ବଙ୍କିମଚନ୍ଦ୍ର ଯାଜପୁରରେ ଡେପୁଟି ମାଜିଷ୍ଟ୍ରେଟ୍ ଥିଲାବେଳେ ସେ ଦେବୀ ଚୌଧୁରାଣୀ ଉପନ୍ୟାସ ଲେଖା ଆରମ୍ଭ କରିଥିଲେ ଓ କଲିକତାରେ ତାହା ଶେଷ କରିଥିଲେ। ବଙ୍କିମଚନ୍ଦ୍ର କେବଳ 'ରାଜସିଂହ' ଉପନ୍ୟାସକୁ ଐତିହାସିକ ଉପନ୍ୟାସ ବୋଲି କହିଛନ୍ତି । ଆଉ ସବୁର ବିଷୟବସ୍ତୁ କପୋଳକଳ୍ପିତ । ତାଙ୍କ ଜୀବଦ୍ଦଶାରେ ଏହାର ଛଅଟି ସଂସ୍କରଣ ହୋଇଥିଲା । ଆନନ୍ଦମଠ ଉପନ୍ୟାସ ଭାବେ ମାମୁଲି; ମାତ୍ର ଏହାର ସଙ୍ଗୀତ 'ବନ୍ଦେ ମାତରଂ' ହୋଇଯାଇଥିଲା ଇଂରେଜ ଶାସନ ବିରୋଧରେ ଭାରତୀୟ ବିପ୍ଳବର ଧ୍ୱନି । ଅନୁବାଦକଙ୍କ ମତରେ, 'ବଙ୍ଗଳା ଭାଷାର ଏହି ନିପୁଣ ଶିଳ୍ପୀଙ୍କର ଉଦ୍‌ଭାବନା ଶକ୍ତି ପ୍ରକୃତି ପ୍ରେମ, ଅପୂର୍ବ ବର୍ଣ୍ଣନା ଚାତୁରୀ, ବିଭିନ୍ନ ଚରିତ୍ର ସୃଷ୍ଟି ବଳରେ ମନୁଷ୍ୟର ସ୍ନେହ, ମମତା, ପ୍ରେମ, ଈର୍ଷା, ଅସୂୟା, ହିଂସା, ବିଦ୍ୱେଷ, ଉଚ୍ଚାଭିଳାଷ, ସେବା, ଆଦର୍ଶବାଦ, ଆତ୍ମତ୍ୟାଗ ଆଦି ଜୀବନର ସମସ୍ତ ବିଭାବ ପ୍ରତି ଗଭୀର ସମ୍ବେଦନଶୀଳତା ତାଙ୍କୁ ବଙ୍ଗଳାର ପ୍ରଥମ ଔପନ୍ୟାସିକ ଓ ଭାରତର ଶ୍ରେଷ୍ଠ ଔପନ୍ୟାସିକ ପଦବୀରେ ଭୂଷିତ କରିଛି । ଏହି ଅନୂଦିତ କୃତି ଓଡ଼ିଆ ସାହିତ୍ୟର ଅମୂଲ୍ୟ ସଂପଦ।

୨୦୧୦ ରେ ପ୍ରକାଶିତ 'ମାଲୁଣୀର ଫୁଲ ଓ ଅନ୍ୟାନ୍ୟ ଗଳ୍ପ' ଜାନକୀବଲ୍ଲଭଙ୍କ ପୂର୍ବ ଆଲୋଚିତ ଅନୁବାଦ ଧାରାର ଅନୁଭୂତିଟି ନ ହେଲେ ମଧ୍ୟ ଅନୁବାଦ ମାଧ୍ୟମରେ ପୁନଃକଥନ ପରମ୍ପରାଭୁକ୍ତ। ଶ୍ରୀରାମକୃଷ୍ଣ ପରମହଂସଙ୍କ ଉପଦେଶାବଳୀ 'ରାମକୃଷ୍ଣ କଥାମୃତ' ପ୍ରଥମେ ପୁନର୍କଥନ ଭଙ୍ଗୀରେ ଅନୁବାଦ କରି ପୌରୁଷରେ ପ୍ରକାଶ କରୁଥିଲେ। ସେସବୁ ସେତେବେଳେ ଖୁବ୍ ଆଦୃତ ହୋଇଥିଲା। ସର୍ବଭାରତୀୟ ସ୍ତରରେ ଏହା ଏତେ ପ୍ରଭାବଶାଳୀ ଯେ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଏହାକୁ ରାମକୃଷ୍ଣ ଉପନିଷଦ୍ ନାମ ଦେଇଥିଲେ। ଏହା ଇଂରାଜୀ ତାମିଲ ଭଳି ବହୁ ଭାରତୀୟ ଭାଷାରେ ଅନୂଦିତ ହୋଇ ପ୍ରକାଶ ପାଇଛି । ନୀତି, ଆଦର୍ଶ, ସ୍ନେହ, ପ୍ରେମ, ତ୍ୟାଗ ଭଳି ସନାତନ ମୂଲ୍ୟବୋଧଗୁଡ଼ିକୁ ସରଳ ଭାଷାରେ କାହାଣୀ ଭଙ୍ଗୀରେ ପ୍ରକାଶ କରାଯାଇଛି। ଏଇଥିପାଇଁ ତ ଏହାର ପାଠକୀୟ ଆଦୃତି ଏତେ ବେଶୀ। ଏହି ପୁନର୍କଥନଗୁଡ଼ିକୁ ମୂଳଭାଷାରୁ ଅନ୍ୟ ଭାଷାକୁ ଆଣିବାବେଳେ ଏହାର ସଂକ୍ଷିପ୍ତ, ସରଳ ଓ ସାଧାରଣ ପାଠକପାଇଁ ବୋଧଗମ୍ୟ ହୋଇଥାଏ। ଦର୍ଶନ ଓ ଜ୍ଞାନର ଜଟିଳତା ରହିଚି ଏଇ କାହାଣୀଗୁଡ଼ିକ ସାଧାରଣ ପାଠକର ମନ ଓ ହୃଦୟକୁ ଛୁଇଁଯାଏ।

॥ ଦୁଇ ॥

ଏହି ଆଲୋଚନାର ଦ୍ୱିତୀୟ ପ୍ରସଙ୍ଗଟି ହେଉଛି ଜାନକୀବଲ୍ଲଭଙ୍କ ଅନୁବାଦର ସୃଜନଶୀଳତା ବା ମୌଳିକ ଦିଗ।

ଏକ ଅର୍ଥରେ ବିଚାର କଲେ ସାହିତ୍ୟର ସବୁ ବିଭାଗ ପରି ଅନୁବାଦ ଏକ ସୃଜନଶୀଳ କର୍ମ। ଜଣେ ଅନୁବାଦକର ସୃଜନଶୀଳତା କହିଲେ ଆମେ ତାଙ୍କ ଅନୁବାଦର ବିଭିନ୍ନ ଦିଗ ଉପରେ ଗୁରୁତ୍ୱ ଦେଉ ଓ ଅନୂଦିତ ଭାଷାର ପରମ୍ପରାରେ ଏହି କୃତିଗୁଡ଼ିକର ଆପାତଃ ସ୍ଥାନ ନିରୂପଣ କରିଥାଉ।

ପ୍ରତ୍ୟେକ କୃତିର ଅନୁବାଦ ସହ ଅନୁବାଦକ ଜାନକୀବଲ୍ଲଭ ଏକ ଦୀର୍ଘ ଭୂମିକା ଲେଖିଛନ୍ତି। ଅନ୍ୟ ଭାଷାରୁ ଆସୁଥିବା ଯେକୌଣସି ସାହିତ୍ୟ କୃତିର ମୂଲ୍ୟାୟନପାଇଁ ଏହା ଏକାନ୍ତ ଆବଶ୍ୟକ। ଏହି ଭୂମିକାରେ ସେ କେବଳ ସେହି ନିର୍ଦ୍ଦିଷ୍ଟ କୃତି ନୁହେଁ ବରଂ ତା' ଉପରେ ନିଜର ଦୃଷ୍ଟିଭଙ୍ଗୀଟିକୁ ଖୁବ୍ ସରଳ ଓ ଭାବଗର୍ଭକ ଭାଷାରେ ବର୍ଣ୍ଣନା କରିଛନ୍ତି। ଏହା ସହିତ ରହିଛି କୃତିଟିର ସମୟ, ସମାଜ ଓ ଏକ ବୃହତ୍ତର ସାହିତ୍ୟିକ ପୃଷ୍ଠଭୂମିରେ ତା'ର ସ୍ଥାନ। ଏଭଳି ଭୂମିକା ଲେଖିଲେ ଅନୁବାଦକର ଦୁଇଟି ଦୃଷ୍ଟିକୋଣ ଜଣାପଡ଼େ। ପ୍ରଥମେ ସେ କାହିଁକି ଏଭଳି ବିଷୟବସ୍ତୁ (କୃତି)କୁ ବାଛିଲେ ଯାହାକୁ ଇଂରାଜୀରେ choice of text କହନ୍ତି ଓ ଦ୍ୱିତୀୟଟି ସେହି କୃତି ସଂପର୍କରେ ତାଙ୍କର ମତାମତ ବା ଇଂରାଜୀରେ କହିଲେ Interpretation of text. ଏହାହିଁ ଯେକୌଣସି ଅନୁବାଦକଙ୍କର ଏକ ମୌଳିକ କର୍ତ୍ତବ୍ୟ।

ଏହି ଦୃଷ୍ଟିରୁ ଦେଖିଲେ ମହାଭାରତ ଓ ରାମାୟଣ ସଂପୂର୍ଣ୍ଣଭାବେ ପାଠ କରିବା ଜଣେ ସାଧାରଣ ପାଠକପାଇଁ ସମୟସାପେକ୍ଷ ଓ କଷ୍ଟସାଧ୍ୟ। ଏଣୁ ଏହାକୁ ସେ ସଂକ୍ଷିପ୍ତ କରି ଅନୁବାଦ ମାଧ୍ୟମରେ ପଠନ ଉପଯୋଗୀ କରିପାରିଛନ୍ତି। ଅନୁବାଦକ ଏହାକୁ 'ସାରାନୁବାଦ' ବୋଲି ନାମିତ କରିଛନ୍ତି। ବ୍ୟାସକୃତ ମହାଭାରତର ସଂକ୍ଷିପ୍ତସାର ଭୂମିକାରେ ସେ ସ୍ପଷ୍ଟ କରିଛନ୍ତି ଯେ– ବ୍ୟାସକୃତ ମହାଭାରତର ପ୍ରଧାନ କଥାବସ୍ତୁକୁ ଅକ୍ଷୁଣ୍ଣ ରଖି ଏହି ପୁସ୍ତକଟି ଲେଖାଯାଇଛି। କୌଣସି ପ୍ରଧାନ ଆଖ୍ୟାୟିକାକୁ ବାଦ ଦିଆଯାଇ ନାହିଁ। ଉପାଖ୍ୟାନର ପାତ୍ରମାନଙ୍କ କଥୋପକଥନରେ ଯଥାସମ୍ଭବ ମୂଳ ସଂସ୍କୃତ ମହାଭାରତର ଅବିକଳ ସାରାନୁବାଦ ଦିଆଯାଇଛି। ସବୁ ଶ୍ରେଣୀର ପାଠକଙ୍କପାଇଁ ଏହା ଯେପରି ସୁଖପାଠ୍ୟ ହୋଇପାରିବ, ସେଥିପାଇଁ ଉଦ୍ୟମ କରାଯାଇଛି।

ସେହିଭଳି ବାଲ୍ମୀକିକୃତ ରାମାୟଣର ସଂକ୍ଷିପ୍ତସାରର ଭୂମିକାରେ ସେ ଲେଖିଛନ୍ତି– ଶଂସିତ ପୁସ୍ତକରେ ୨୪ ହଜାର ଶ୍ଳୋକବିଶିଷ୍ଟ ରାମାୟଣର ସାରକଥା ଦିଆଯାଇଛି । ଏଥିରେ କୌଣସି ମୁଖ୍ୟ ଆଖ୍ୟାୟିକା ବା ଉଲ୍ଲେଖଯୋଗ୍ୟ ବିଷୟବସ୍ତୁକୁ ଛଡ଼ାଯାଇ ନାହିଁ। ଯେତେଦୂର ସମ୍ଭବ ଓଡ଼ିଆରେ ସଂସ୍କୃତ ରାମାୟଣର ମୌଳିକ ଭାଷାକୁ ରକ୍ଷା କରିବାକୁ ଉଦ୍ୟମ ହୋଇଛି।

ଏହି ଦୁଇ ବକ୍ତବ୍ୟରୁ ସ୍ପଷ୍ଟ ଯେ ମହାଭାରତ ଓ ରାମାୟଣର ସଂକ୍ଷିପ୍ତସାରରେ ଦୁଇ ଗ୍ରନ୍ଥର ବିଷୟବସ୍ତୁର (narrative) ମୌଳିକତାକୁ ଅକ୍ଷୁଣ୍ଣ ରଖାଯାଇ ଓଡ଼ିଆରେ ଏହାର ସାରାନୁବାଦ କରାଯାଇଛି। ଉଭୟ ସଂସ୍କୃତ ଓ ଓଡ଼ିଆ ଭାଷାରେ ଅଗାଧ ପାଣ୍ଡିତ୍ୟ ଥିବା ଜାନକୀବଲ୍ଲଭ ହିଁ ଏଭଳି ସୃଜନଶୀଳ କୃତି ସୃଷ୍ଟି କରିବାକୁ ସମର୍ଥ।

ଇଉରୋପୀୟ ସାହିତ୍ୟରେ ଏଭଳି ସାରାନୁବାଦର ପରମ୍ପରା ମଧ୍ୟ ରହିଛି। ତା' ନ ହୋଇଥିଲେ ୧୦ ଖଣ୍ଡରେ ଲିଖିତ ରୋମା ରୋଲାଁଙ୍କ 'ଜାଁ ଖ୍ରୀଷ୍ଟୋଫର', ୧୦ ଖଣ୍ଡରେ ଲିଖିତ ରବର୍ଟ ମାର୍ଟିନ୍ ଡୁଗାର୍ଡଙ୍କର 'ଥିବଟ୍', ୧୨ ଖଣ୍ଡରେ ଲିଖିତ ଟଏନ୍‌ବୀଙ୍କ 'ଏ ଷ୍ଟଡି ଅଫ୍ ହିଷ୍ଟ୍ରି', ହାବ୍‌ଲକ୍ ଏଲିସ୍‌ଙ୍କ ୭ ଖଣ୍ଡରେ ଲିଖିତ 'ସାଇକୋଲୋଜି ଅଫ୍ ସେକ୍‌ସ', ଲିଓ ଟଲଷ୍ଟୟଙ୍କ ୪ ଖଣ୍ଡରେ ଲିଖିତ 'ୱାର୍ ଆଣ୍ଡ୍ ପିସ୍' ସୋଲୋକୋଭଙ୍କ ୪ ଖଣ୍ଡରେ ପ୍ରକାଶିତ 'ଆଣ୍ଡ୍ କ୍ୱାଏଟ୍ ଫ୍ଲୋଜ୍ ଦି ଡନ୍' ପରି ବିଶ୍ୱପ୍ରସିଦ୍ଧ କୃତିଗୁଡ଼ିକୁ ସାଧାରଣ ଲୋକ ପଢ଼ିପାରି ନ ଥାନ୍ତେ। ଏହି ପରମ୍ପରାରେ ଜାନକୀବଲ୍ଲଭଙ୍କ ଉଭୟ କୃତି ଖୁବ୍ ଗୁରୁତ୍ୱପୂର୍ଣ୍ଣ।

ଅନୁବାଦ କ୍ଷେତ୍ରରେ ଶ୍ରୀମଦ୍‌ଭାଗବତର ଓଡ଼ିଆ ଗଦ୍ୟାନୁବାଦ ଏକ ଉଲ୍ଲେଖନୀୟ କୃତି। ଏହି ଅନୁବାଦର ଉଦ୍ଦେଶ୍ୟ ପୁସ୍ତକର ଭୂମିକାରେ ଖୁବ୍ ସ୍ପଷ୍ଟ– 'ବର୍ତ୍ତମାନ ଯୁଗରେ ଗଦ୍ୟ ପ୍ରତି ଆଗ୍ରହ ବଢ଼ିବା ସଙ୍ଗେ ସଙ୍ଗେ ଭାଗବତର ଗଦ୍ୟ ଅନୁବାଦର ଆବଶ୍ୟକତା ଅନୁଭୂତ ହୋଇଛି। ହିନ୍ଦୀ ଭାଷାରେ ଏହାର ଗଦ୍ୟାନୁବାଦ ଗୀତା ପ୍ରେସ୍, ଗୋରଖପୁର ପ୍ରକାଶ କରିଛନ୍ତି। x x ଅଠର ହଜାର ଶ୍ଳୋକ ସହ ଏହା ଏକ ବିଶାଳ ଗ୍ରନ୍ଥ। ମୁଁ ଏହାର ଅଧ୍ୟୟନ କରିବାବେଳେ ଅନୁଭବ କଲି, ସଂକ୍ଷିପ୍ତସାର ପରିବର୍ତ୍ତେ ଏହାର ଗଦ୍ୟାନୁବାଦ କରି ଖଣ୍ଡେ ବହି ଆକାରରେ ପ୍ରକାଶ କରିବା ଠିକ୍ ହେବ।'

ମହାଭାରତ, ରାମାୟଣ ଓ ଶ୍ରୀମଦ୍‌ଭାଗବତ – ତିନୋଟି ପ୍ରମୁଖ ମହାଭାରତୀୟ ମହାଗ୍ରନ୍ଥ। ପ୍ରଥମ ଦୁଇଟିର ସଂକ୍ଷିପ୍ତସାର ଓ ତୃତୀୟଟିର ଗଦ୍ୟାନୁବାଦ ତାଙ୍କର ତାର୍କିକତା, ଜ୍ଞାନ, ଭାଷା ଉପରେ ଅଖଣ୍ଡ କର୍ତ୍ତୃତ୍ୱ ଥିବାର ଅକାଟ୍ୟ ପ୍ରମାଣ ଦିଏ। ପୁଣି ସେ ଲକ୍ଷ୍ୟ କରିଛନ୍ତି ଯେ ପଦ୍ୟର କ୍ଲିଷ୍ଟତା ଭାଙ୍ଗି ଗଦ୍ୟାନୁବାଦରେ ଯେକୌଣସି କୃତି ଅଧିକ ସାଧାରଣ ପାଠକ ସୃଷ୍ଟି କରେ। ତା' ନ ହୋଇଥିଲେ ହୋମରଙ୍କ ଇଲିଆଡ୍, ଓଡେସି ବା ଭର୍ଜିଲଙ୍କର ଏନିଡ୍ ଗଦ୍ୟରେ ଅନୂଦିତ ହୋଇ ଏତେ ପାଠକୀୟ ସ୍ୱୀକୃତି ଲାଭ କରି ନ ଥାନ୍ତା।

ଜଣେ ଅନୁବାଦକ ଭାବେ ସେ ଭାବାନୁବାଦରେ ଅଧିକ ଆଗ୍ରହୀ ଓ ତାହାହିଁ ସେ ସ୍ୱୀକାର କରିଛନ୍ତି।

'ମୁଁ ପୂର୍ବରୁ କହିଛି ଯେ, ଅନୁବାଦ କେବଳ ଆକ୍ଷରିକ ହେବା ଠିକ୍ ନୁହେଁ । ଯଥାସମ୍ଭବ ଆକ୍ଷରିକ ହେବା ସଙ୍ଗେ ସଙ୍ଗେ ଅନେକ କ୍ଲିଷ୍ଟ ଶ୍ଳୋକ କ୍ଷେତ୍ରରେ ଏହାର ଭାବାନୁବାଦ କରାଯାଇଛି।' ବୋଧହୁଏ ଏହାହିଁ ଜଣେ ଅନୁବାଦକର ସୃଜନଶୀଳତା। ପ୍ରତ୍ୟେକ କୃତି ପାଇଁ ଆବଶ୍ୟକ ହେଉଥିବା ଭାବ, ଭାଷା, ଛନ୍ଦ, ନିର୍ବାଚନ କରିବାର ସ୍ୱକୀୟ ସ୍ୱାଧୀନତା।

ଏହି ଦୃଷ୍ଟିରୁ ଦେଖିଲେ ଭର୍ତ୍ତୃହରିଙ୍କର ତିନି ଶତକ– ନୀତି, ଶୃଙ୍ଗାର ଓ ବୈରାଗ୍ୟର ବିଷୟବସ୍ତୁ ବିଭିନ୍ନ ହୋଇଥିବାରୁ ପ୍ରତ୍ୟେକର ଭାଷା, ଛନ୍ଦ, ଲାଳିତ୍ୟ ଅଲଗା ଅଲଗା। ସବୁବେଳେ ସମ୍ଭୋଗର ଭାଷା ଅଧିକ ଲଳିତ ଯାହାର ଭାଷା ଅନ୍ୟଠାରୁ ଅଲଗା ହେବାକୁ ବାଧ୍ୟ। ଏଥିପାଇଁ ଶୃଙ୍ଗାରଶତକରେ ଦେହ ବର୍ଣ୍ଣନା କଲାବେଳେ ସଚେତନ ଭାବେ ସେ ମଧ୍ୟଯୁଗୀୟ ଭାଷା ବ୍ୟବହାର କରିଛନ୍ତି। ଏଥିରେ ଏକ ସୁମଧୁର ସଙ୍ଗୀତର ଗୁଞ୍ଜରଣ ଶୁଭିଯାଏ–ଖୁବ୍ ନିବିଡ଼ ଓ ଉଦ୍ଦୀପକ।

"ଅବା ସେ କାମିନୀ ନବ-ଯଉବନୀ
ପୀନ-ସ୍ତନ ଘନ ଜଘନ ଭାରୀ
କାମକେଳୀ ଲୋଳ ତା' ଘନ ବର୍ତ୍ତୁଳ
ମଦନ-ସହନେ କର ସଞ୍ଚାରି।" (ଶତକ-୩୭)

ଏବେ ନୀତିଶତକର କିଛି ଧାଡ଼ି ଲକ୍ଷ୍ୟ କରନ୍ତୁ–ଏଥିରେ ପଦର କ୍ଲିଷ୍ଟତା ନାହିଁ, ଅଛି ସାଧାରଣ ଲୋକ ବୁଝିପାରିବା ଭଳି ସରଳ ଭାଷାରେ ନୀତିବାକ୍ୟଟିଏ।

"ହେଲେ ଖଳ ଶତ ବିଦ୍ୟା ବିମଣ୍ଡିତ
ନ ହୁଏ କି ଭୟଙ୍କର
ମଣିରେ ଭୂଷିତ ସର୍ପ ସମ ସେ ତ
ଜାଣି ଦୂରୁ ପରିହାର।" (ଶତକ-୫୩)

ପୁଣି ବୈରାଗ୍ୟଶତକର ପଦକୁ ଲକ୍ଷ୍ୟ କରନ୍ତୁ–

"ଅଛି ମୋ କଥାରେ ଯଦି ବିଶ୍ୱାସ
କାଟିନିଅ ଆଶାର ନାଗପାଶ
ନିର୍ମଳ ଚିତ୍ତରେ ବ୍ରହ୍ମକୁ ଧ୍ୟାୟି
ହୁଅ ସମାଧିସ୍ଥ ତାହାହିଁ ସ୍ଥାୟୀ।" (ଶତକ-୩୯)

ମଣିଷ ଜୀବନରେ ନୀତି, ଆଦର୍ଶ, କାମନା ଅପେକ୍ଷା ବୈରାଗ୍ୟ ଅଧିକ ଅନ୍ତର୍ମୁଖୀ। ଏଣୁ ଏହାର ଭାଷା, ଭାବ ଅଧିକ ଅଧ୍ୟାତ୍ମ। ଏଣୁ ଜଣେ ଅନୁବାଦକ ପାଇଁ ବିଷୟବସ୍ତୁ (text) ଅନୁଯାୟୀ ଭାଷାର ବିଭିନ୍ନତା, ଗଭୀରତା ଭିନ୍ନ ଭିନ୍ନ ହେବା ଆବଶ୍ୟକ। ମହାଭାରତ, ରାମାୟଣ ଓ ଶ୍ରୀମଦ୍‌ଭାଗବତରେ ବ୍ୟବହୃତ ଗଦ୍ୟଭାଷା ସରଳ ଓ ଆଧ୍ୟାତ୍ମିକ; ଯାହା ସେହି ବିଷୟବସ୍ତୁ ବର୍ଣ୍ଣନାପାଇଁ ଅଧିକ ପ୍ରଯୁଜ୍ୟ। ମାତ୍ର ବଙ୍କିମ ଉପନ୍ୟାସମାଳାର ଭାଷା ସେସମୟର ସାମାଜିକ ଓ ଐତିହାସିକ ପଟ୍ଟଭୂମିରେ ଚିତ୍ରିତ ଚରିତ୍ରମାନଙ୍କପାଇଁ ମନେହେଉଥିବା ଭାଷା। ଏଥିପାଇଁ ଜାନକୀବଲ୍ଲଭଙ୍କ ଅନୂଦିତ କୃତିଗୁଡ଼ିକରେ ଉଭୟ ଗଦ୍ୟ ଓ ପଦ୍ୟରେ ଭାଷା ପ୍ରୟୋଗର ଅସମ୍ଭବ ଦକ୍ଷତା ପରିଦୃଷ୍ଟ ହୁଏ। ଏହାହିଁ ଜଣେ ଅନୁବାଦକଙ୍କର ସୃଜନଶୀଳ ସାମର୍ଥ୍ୟ।

ଅନୁବାଦକ ଭାବେ ଜାନକୀବଲ୍ଲଭ ଥିଲେ ଏକ ଅର୍ଥରେ ଏହି ତିନୋଟିଯାକ ମହାଭାରତୀୟ ମହାଗ୍ରନ୍ଥର (ରାମାୟଣ, ମହାଭାରତ, ଶ୍ରୀମଦ୍ ଭଗବଦ୍‌ଗୀତା) ବ୍ୟାଖ୍ୟାକାର। ଏଇଥିପାଇଁ ଜଣେ ଅନୁବାଦକ କେବଳ ଭାଷାନ୍ତର କରେନା, ସେ ଅର୍ଥାନ୍ତର ମଧ୍ୟ କରିଥାଏ। କୃତିର ଏହି ବ୍ୟାଖ୍ୟା (Interpretation of text) ହିଁ ଅନୁବାଦକଙ୍କର ମୌଳିକତା, ତାଙ୍କର ସୃଜନଶୀଳ ଦିଗ। ଧର୍ମଗ୍ରନ୍ଥଗୁଡ଼ିକର ଅନୁବାଦ ପାଇଁ ଇଉରୋପରେ ଅନୁବାଦକଙ୍କୁ ଅନେକ କଷ୍ଟ, ଯନ୍ତ୍ରଣାର ସମ୍ମୁଖୀନ ହେବାକୁ ପଡ଼ିଛି। ୧୬୧୧ ମସିହାରେ ପ୍ରଥମେ ବାଇବେଲ୍‌ର ଇଂରାଜୀ ଅନୁବାଦ କିଙ୍ଗ୍ ଜେମ୍‌ସଙ୍କ ପ୍ରଚେଷ୍ଟାରେ ସମ୍ଭବ ହୋଇପାରିଥିଲା। ରେନେସାଁ ସମୟରେ ଗ୍ରୀକ୍, ଲାଟିନ୍ ଓ ହିବ୍ରୁ ଭାଷାର ବହୁଗ୍ରନ୍ଥ ଅନେକ ୟୁରୋପୀୟ ଆଞ୍ଚଳିକ ଭାଷାରେ ଅନୂଦିତ ହୋଇଥିଲା। ମାତ୍ର ଏଥିପାଇଁ ଅନେକ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଥିଲା ଅନୁବାଦକମାନଙ୍କୁ। ବାଇବେଲକୁ ନିଜ ଭାଷାରେ ଅନୁବାଦ କରିବାକୁ ଚେଷ୍ଟା କରୁଥିବାରୁ ଟିଣ୍ଡାଲଙ୍କୁ ମୃତ୍ୟୁଦଣ୍ଡ ଭୋଗିବାକୁ ପଡ଼ିଥିଲା। କାରଣ ୟୁରୋପରେ ଧର୍ମଗ୍ରନ୍ଥ ଥିଲା ଚର୍ଚ୍ଚ ଅଧୀନ ଓ ଏହା ଲାଟିନ୍ ଭାଷାରେ ପଢ଼ାଯାଉଥିଲା। ଏଣୁ ସାଧାରଣ ଲୋକେ ଏହାର ଅର୍ଥ ନ ବୁଝି କେବଳ ଶୁଣୁଥିଲେ। ପୁଣି ପଢ଼ିବାର ଅଧିକାର ଥିଲା କେବଳ ଧର୍ମଯାଜକମାନଙ୍କର। ସେମାନଙ୍କର ଭୟ ଥିଲା ଯେ ଥରେ ଏହା ଆଞ୍ଚଳିକ ଭାଷାରେ ଅନୂଦିତ ହୋଇଗଲେ ଯେକୌଣସି ଲୋକ ଏହାକୁ ବୁଝିପାରିବ

ଓ ଏହାର ଅର୍ଥକୁ ବ୍ୟାଖ୍ୟା କରିପାରିବ। ଧର୍ମଯାଜକମାନଙ୍କର ପ୍ରତିପତ୍ତି, ପ୍ରତିଷ୍ଠା ସବୁକିଛି ନଷ୍ଟ ହୋଇଯିବ। ଏଣୁ ଅନୁବାଦ ଜ୍ଞାନର ଗଣତାନ୍ତ୍ରିକରଣ (Democratisation of knowledge) କରିଦେବ। ପ୍ରତ୍ୟେକ ଲୋକ ଗୋଟିଏ ବିଷୟକୁ ପଢ଼ି ତାକୁ ନିଜ ବାଟରେ ବ୍ୟାଖ୍ୟା କରିବେ, ନିଜ ବାଟରେ ନିଜ ଜ୍ଞାନ ବଳରେ ବୁଝିବେ।

ଓଡ଼ିଶାରେ ଜ୍ଞାନର ଏହି ଗତିରୋଧ ହିଂସ୍ରରୂପ ଧାରଣ ନ କଲେ ମଧ୍ୟ ଏକ ସାମାଜିକ ବିଦ୍ରୂପର ରୂପ ନେଇଥିଲା। ଓଡ଼ିଆରେ ଭାଗବତ ଲେଖି ଜଗନ୍ନାଥ ଦାସଙ୍କୁ କମ୍ ଅପମାନ ସହିବାକୁ ପଡ଼ି ନ ଥିଲା। ଶାସନୀ ବ୍ରାହ୍ମଣମାନେ ଜଗନ୍ନାଥ ଦାସଙ୍କ ଭାଗବତର ନିନ୍ଦା କରି ଏହାକୁ ବୈଶ୍ୟ (ତେଲି) ଭାଗବତ ବୋଲି ଆଖ୍ୟା ଦେଇଥିଲେ ଓ ଏହାକୁ ବର୍ଜନ କରିବାକୁ ଲୋକମାନଙ୍କୁ ଉପଦେଶ ଦେଉଥିଲେ। ଏପରିକି ଜଗନ୍ନାଥ ଦାସଙ୍କୁ ଆପାଙ୍‌କ୍ତେୟ (ଅଜାତିଆ) ଘୋଷଣା କଲେ। ସବୁ ପ୍ରତିରୋଧ ସତ୍ତ୍ୱେ ହିଁ ଜଗନ୍ନାଥ ଦାସଙ୍କ ଭାଗବତ ଥିଲା ଜ୍ଞାନ ବିତରକ ଏକ ପବିତ୍ର ଗ୍ରନ୍ଥ। ଜାନକୀବଲ୍ଲଭଙ୍କ ଲିଖିତ ଶ୍ରୀମଦ୍‌ଭାଗବତର ଗଦ୍ୟାନୁବାଦ ଏହାକୁ ଅଧିକ ପଠନୋପଯୋଗୀ କରିଛି ଓ ବିଭିନ୍ନ ବ୍ୟାଖ୍ୟା ମାଧ୍ୟମରେ ସଂସ୍କୃତ ଭାଗବତର ଜ୍ଞାନ ଓ ଉପଲବ୍ଧିକୁ ପଦ୍ୟ ଓ ଛନ୍ଦର ବୌଦ୍ଧିକ କ୍ଲିଷ୍ଟତା ଭଙ୍ଗକରି ସର୍ବଜନଗ୍ରାହୀ କରିପାରିଛି। ସଂସ୍କୃତରେ ବ୍ରାହ୍ମଣ୍ୟ ପରିଭାଷା ଓ ବ୍ୟାଖ୍ୟା ଭିତରୁ ମୁକ୍ତକରି ସେ ଓଡ଼ିଆ ଗଦ୍ୟାନୁବାଦରେ ମହାଭାରତ, ରାମାୟଣ ଓ ଶ୍ରୀମଦ୍ ଭଗବଦ୍‌ଗୀତାକୁ ଦେଇଛନ୍ତି ଏକ ନୂତନ ସ୍ୱୀକୃତି ଓ ସାଧାରଣ ଓଡ଼ିଆ ପାଠକଙ୍କୁ ଜ୍ଞାନଲାଭ ପାଇଁ ଏକ ନୂତନ ସୁଯୋଗ।

ସୁଖର ବିଷୟ ଯେ ଜାନକୀବଲ୍ଲଭ 'ବଙ୍କିମ ଉପନ୍ୟାସମାଳା' ପାଇଁ କେନ୍ଦ୍ରସାହିତ୍ୟ ଅକାଦେମୀ ପୁରସ୍କାର ଓ ଭର୍ତ୍ତୃହରିଙ୍କ ବୈରାଗ୍ୟଶତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି।

ସବୁ ରାଜନୀତିକ ନିନ୍ଦା ପ୍ରଶଂସାର ଊର୍ଦ୍ଧ୍ୱରେ, ସାହିତ୍ୟସ୍ରଷ୍ଟା ଜାନକୀବଲ୍ଲଭ ରହିବେ ସାରାକାଳ, ସାଧାରଣ ଓଡ଼ିଆ ପାଠକର ପ୍ରିୟ ହୋଇ। ସେ ମହାନ୍ ସ୍ରଷ୍ଟାଙ୍କୁ ମୋର ପ୍ରଣାମ।



# ପୌରୁଷର ପ୍ରତିଷ୍ଠାତା

ଅସିତ ମହାନ୍ତି

'ପୌରୁଷ' ପତ୍ରିକା ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଶଙ୍କୁ। କାରଣ ଏହି ପତ୍ରିକାର ଆତ୍ମପ୍ରକାଶ ତାଙ୍କ ଜୀବନର ଏପରି ଏକ ସନ୍ଧିକ୍ଷଣରେ–ଯାହାର ପୃଷ୍ଠଭୂମିରେ ରହିଛି ଦୀର୍ଘ ପ୍ରାୟ ପନ୍ଦର ବର୍ଷର ସାମ୍ବାଦିକତା ଏବଂ ପୁରୋଭାଗରେ ରହିଛି ରାଜନୀତିର ପ୍ରଲମ୍ବିତ ପଥ। ବସ୍ତୁତଃ ଏଇଠୁ ଆରମ୍ଭ ହୋଇଛି ତାଙ୍କର ଦ୍ୱୈତ ଯାତ୍ରା। ଦ୍ୱିଭୁଜ ଜଗନ୍ନାଥଙ୍କ ପରି ଗୋଟିଏ ହାତରେ ସାହିତ୍ୟର ଶଙ୍ଖ ଓ ଅନ୍ୟ ହାତରେ ରାଜନୀତିର ଚକ୍ର ଧରି ସେ ବାଟ ଚାଲିଛନ୍ତି–ଶେଷ ଯାଏ।

କଟକ ରେଭେନ୍‌ସା କଲେଜରୁ ସଂସ୍କୃତରେ ସ୍ନାତକ ଏବଂ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଶିକ୍ଷାଲାଭ ପରେ ସେ ଯୋଗ ଦେଇଥିଲେ ସାମ୍ବାଦିକତା ବୃତ୍ତିରେ। କ୍ଷେତ୍ର ଥିଲା 'ପ୍ରଜାତନ୍ତ୍ର'। ସେଥିପାଇଁ ହାଇସ୍କୁଲରେ ପଢ଼ିବାବେଳୁ ତାଙ୍କର ଆଗ୍ରହ ବି ଥିଲା। ହାଇସ୍କୁଲର ଶେଷ ଶ୍ରେଣୀରେ ପଢ଼ିବାବେଳେ, ସେଦିନର ସ୍ୱନାମଧନ୍ୟ ପ୍ରଧାନଶିକ୍ଷକ ବାଙ୍କନିଧି ପଟ୍ଟନାୟକ ଯେତେବେଳେ ଛାତ୍ରମାନଙ୍କୁ ଗୋଟି ଗୋଟି କରି ପଚାରିଥିଲେ, "ତୁମେ ଜୀବନରେ କ'ଣ ହେବାକୁ ଚାହଁ?", ସେତେବେଳେ ଜାନକୀବଲ୍ଲଭ ଉତ୍ତର ଦେଇଥିଲେ, "ଖବରକାଗଜର ସଂପାଦକ"। ୨୦୧୦ ମସିହାରେ ପ୍ରକାଶିତ 'ଓଡ଼ିଶା ଶାସନର ଏକ ସ୍ୱର୍ଣ୍ଣଯୁଗ' ପୁସ୍ତକର 'କିଛି ବକ୍ତବ୍ୟ, କିଛି ସ୍ୱପ୍ନ' ଲେଖାରେ ଏ ସଂପର୍କରେ ସେ ଉଲ୍ଲେଖ କରିଛନ୍ତି। କେବଳ ଯେ ସ୍କୁଲବେଳରୁ ଜାନକୀବଲ୍ଲଭଙ୍କର ସାମ୍ବାଦିକତା ପ୍ରତି ଅନୁରକ୍ତି ଥିଲା, ତାହା ନୁହେଁ ରାଜନୀତି ସହିତ ବି ଗଭୀର ସଂପୃକ୍ତି ରହିଥିଲା।

'ପରିଚୟ' ନାମକ ଏକ ପତ୍ରିକା ସହ ସାକ୍ଷାତକାରରେ ଏ ସଂପର୍କରେ ସୂଚନା ଦେଇ ସେ କହିଛନ୍ତି, "ମୁଁ ଯେତେବେଳେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ପଢ଼ିବାକୁ ଗଲି, ସେତେବେଳକୁ ଛାତ୍ର ଆନ୍ଦୋଳନ ସହିତ ପୂରାପୂରି ସଂପୃକ୍ତ ଥିଲି। ଛାତ୍ର କଂଗ୍ରେସରେ ଥାଇ ଅଷ୍ଟମ ଶ୍ରେଣୀରୁ ଖଦଡ଼ ପିନ୍ଧିବା ଆରମ୍ଭ କରିଥିଲି। ୧୯୪୨ ଛାତ୍ର ଆନ୍ଦୋଳନରେ ସଂପୂର୍ଣ୍ଣ ଭାବରେ ଖୋର୍ଦ୍ଧା ହାଇସ୍କୁଲକୁ ସାତଦିନ ଧରି ବନ୍ଦ କରିଦେଇଥିଲୁ। ତା'ପରେ ରେଭେନ୍‌ସା କଲେଜ 'ୟୁନିଅନ୍ ଜ୍ୟାକ୍' ଷ୍ଟ୍ରାଇକ୍। ସେଠୁ ଗଲାପରେ ମନରେ ସ୍ଥିର କରିଥିଲି, କୌଣସି ସରକାରୀ ଚାକିରିରେ ଯୋଗ ଦେବିନି। ଚାକିରିରେ ଯୋଗ ନ ଦେଇ, ଖାଲି ସେମିତି ଗୋଟିଏ କର୍ମୀ ହୋଇ ଦଳରେ ନାଚିବାକୁ ମୋର ଉଦ୍ଦେଶ୍ୟ ନ ଥିଲା। ସେଥିପାଇଁ

ସାମ୍ବାଦିକ ହେଲି। ସେତେବେଳେ 'ପ୍ରଜାତନ୍ତ୍ର' ଏକମାତ୍ର ଅନୁଷ୍ଠାନ ଥିଲା ସେଥିରେ ନୂଆ ଯୁବକମାନେ ଯୋଗ ଦେଉଥିଲେ। ତେଣୁ ମୁଁ ଯୋଗ ଦେଲି।"

ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଜୀବନର ଏହି ପର୍ଯ୍ୟାୟ ସଂପର୍କରେ ସମ୍ୟକ୍ ଆଲୋଚନା କରିଛନ୍ତି ତାଙ୍କର ଜୀବନୀକାର ଡକ୍ଟର ଗୋବିନ୍ଦ ଭୂୟାଁ– 'ସାର୍ଥକସାରଥି ଜାନକୀବଲ୍ଲଭ' ପୁସ୍ତକରେ। ସେଥିରେ ସେ କହିଛନ୍ତି, "ଜାନକୀବଲ୍ଲଭଙ୍କ ହୃଦୟରେ ଦେଶାତ୍ମବୋଧର ଯେଉଁ ବୀଜ ଛାତ୍ରାବସ୍ଥାର ଆଦ୍ୟପାଦରୁ ଅଙ୍କୁରିତ ହୋଇଥିଲା, ତାହା ଏବେ ବିକଶିତ ହେବାକୁ ଲାଗିଲା। ୧୯୪୯ ମସିହାରେ ଜଣେ ଏମ୍.ଏ. ପଢୁଆ କୃତୀଛାତ୍ର ପକ୍ଷରେ ଯେ କୌଣସି ବଡ଼ ସରକାରୀ ଚାକିରି ପାଇବା ଆଦୌ ଅସମ୍ଭବ ବ୍ୟାପାର ନ ଥିଲା। ମାତ୍ର ସରକାରୀ ଚାକିରିର ମୋହ ତାଙ୍କର ଆରମ୍ଭରୁ ନ ଥିଲା। ଦେଶର ନୂତନ ସ୍ୱାଧୀନତା ତାଙ୍କ ପ୍ରାଣରେ ନବୀନ ଉନ୍ମାଦନା ଭରିଦେଲା। ଦେଶମାତୃକାର ସେବା କରିବାର ସଂକଳ୍ପ ନେଇ ସେ ପ୍ରତ୍ୟକ୍ଷ ରାଜନୀତିରେ ଅଂଶ ଗ୍ରହଣ କଲେ। ସେ ଛାତ୍ର କଂଗ୍ରେସରେ ସାମିଲ ହେଲେ ଏବଂ ଏହାର ରାଜ୍ୟ ସଭାପତି ଦାୟିତ୍ୱ ଗ୍ରହଣ କଲେ। ଜଣେ ପ୍ରତିଭାଧର ଓ ଉଚ୍ଚଶିକ୍ଷିତ ଯୁବକ ଛାତ୍ର କଂଗ୍ରେସର ନେତୃତ୍ୱ ନେବା ଫଳରେ ବହୁ ଶିକ୍ଷିତ ଯୁବକ ଓ ଛାତ୍ର କଂଗ୍ରେସ ଦଳର କାର୍ଯ୍ୟକ୍ରମରେ ସାମିଲ ହେଲେ। ୧୯୫୦ ମସିହାରେ ସେ ରାଜ୍ୟ ଯୁବକଂଗ୍ରେସର ସଭାପତି ଦାୟିତ୍ୱ ଗ୍ରହଣ କଲେ।"

ସେତେବେଳେ ଜାନକୀବଲ୍ଲଭଙ୍କର ଏହି 'ସ୍ୱାଭାବିକ ନେତୃତ୍ୱ' ଦୃଷ୍ଟି ଆକର୍ଷଣ କରିଥିଲା ଡକ୍ଟର ହରେକୃଷ୍ଣ ମହତାବଙ୍କର। ସ୍ୱାଭାବିକ ନେତୃତ୍ୱ ସହିତ ଉଚ୍ଚଶିକ୍ଷାର ମଣିକାଞ୍ଚନ ସଂଯୋଗ ଘଟିଥିଲା ତାଙ୍କଠାରେ। ଜାନକୀବଲ୍ଲଭଙ୍କର ସେହି ପ୍ରତିଭାକୁ ନିଜ ସମ୍ବାଦପତ୍ରର ସଫଳତା ପାଇଁ ଉପଯୋଗ କରିବାକୁ ଚାହିଁଲେ ଡକ୍ଟର ମହତାବ। ଫଳରେ ୧୯୪୯ ମସିହାରେ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ପକ୍ଷରୁ ପ୍ରକାଶ ପାଉଥିବା 'ଇଷ୍ଟର୍ଣ୍ଣ ଟାଇମ୍ସ'ର ସହକାରୀ ସଂପାଦକ ଭାବରେ ଯୋଗ ଦେଲେ ଜାନକୀବଲ୍ଲଭ। ପରେ ପରେ ଭୈରବ ଚନ୍ଦ୍ର ମହାନ୍ତିଙ୍କଠାରୁ ସଂପାଦକ ଦାୟିତ୍ୱ ମଧ୍ୟ ଗ୍ରହଣ କଲେ। ତା' ସହିତ ୧୯୫୨ ମସିହା ଅଗଷ୍ଟ ମାସ ୨୧ ତାରିଖ ଦିନ 'ପ୍ରଜାତନ୍ତ୍ର'ର ସଂପାଦକ ଦାୟିତ୍ୱ ମଧ୍ୟ ତାଙ୍କୁ ଅର୍ପଣ କଲେ ଡକ୍ଟର ମହତାବ। ମାତ୍ର ୨୫ ବର୍ଷ ବୟସରେ ଇଂରାଜୀ ଓ ଓଡ଼ିଆ ଦୁଇଟି ସମ୍ବାଦପତ୍ରର ସଂପାଦକ ହେବାର ବିରଳ ସୌଭାଗ୍ୟ ତାଙ୍କୁ ମିଳିଲା।

ସେହି ଦିନରୁ ଯଦି ଧରାଯାଏ, ତେବେ 'ପ୍ରଜାତନ୍ତ୍ର ପ୍ରଚାର ସମିତି'ରେ ଜାନକୀବଲ୍ଲଭଙ୍କର ସଂପାଦକ ଦାୟିତ୍ୱ ଥିଲା ପ୍ରାୟ ପନ୍ଦର ବର୍ଷ। ତାଙ୍କର ଜୀବନୀକାର ଡକ୍ଟର ଭୂୟାଁ ସେହି ସମୟ ଓ ପର୍ଯ୍ୟାୟ ସଂପର୍କରେ କହିଛନ୍ତି, "ପ୍ରଜାତନ୍ତ୍ର ପ୍ରଚାର ସମିତି ଓଡ଼ିଶାର ପ୍ରମୁଖ ସଂଗ୍ରାମୀ ଓ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ମିଳନ ମନ୍ଦିର ଥିଲା। ଏକଦା ଏଇଠି ବାଜୁଥିଲା ରାଜନୀତିର ଭେରୀ ଓ ସାହିତ୍ୟ-ସଂସ୍କୃତିର ତୂରୀ। ଶାସନକୁ ନିୟନ୍ତ୍ରିତ ଓ ପରିଚାଳିତ କରିବାରେ ତାହାର ଭୂମିକା ସୁଦୂରପ୍ରସାରୀ ଓ ଗୁରୁତ୍ୱପୂର୍ଣ୍ଣ ଥିଲା। ଜାନକୀବଲ୍ଲଭ ନିଜର ବୁଦ୍ଧି, ଦକ୍ଷତା ଓ ବିଚକ୍ଷଣତା ବଳରେ 'ପ୍ରଜାତନ୍ତ୍ର' ଓ 'ଇଷ୍ଟର୍ଣ୍ଣ ଟାଇମ୍ସ'କୁ ନୂତନ

ପ୍ରାଣଶକ୍ତି ପ୍ରଦାନ କରିଥିଲେ। ଏହି ପ୍ରଭାବଶାଳୀ ଚୌହଦୀ ଉପରେ ଦୃଢ଼ ଭାବେ ଠିଆ ହୋଇ ସେ ଭବିଷ୍ୟତ ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ।"

ଏହା ନିଃସନ୍ଦେହ ଯେ ଜାନକୀବଲ୍ଲଭଙ୍କର ସେଦିନର ସେହି ପ୍ରସ୍ତୁତି ଥିଲା ପ୍ରତ୍ୟକ୍ଷ ରାଜନୀତି ପାଇଁ; ଯଦିଓ ଶେଷଯାଏ ଜାନକୀବଲ୍ଲଭ ପ୍ରଜାତନ୍ତ୍ର ଛାଡ଼ିବାର ପୃଷ୍ଠଭୂମି ସଂପର୍କରେ କିଛି ନ କହିବାକୁ ହିଁ ଶ୍ରେୟସ୍କର ମନେ କରିଛନ୍ତି। କିନ୍ତୁ, ଘଟଣାକ୍ରମ ସ୍ପଷ୍ଟ କରେ ଯେ ସେ ପ୍ରତ୍ୟକ୍ଷ ରାଜନୀତିକୁ ଯାଆନ୍ତୁ; ଡକ୍ଟର ମହତାବ ସେଦିନ ତାହା ଚାହୁଁ ନ ଥିଲେ। ଜାନକୀବାବୁ ସେତେବେଳେ କେବଳ 'ପ୍ରଜାତନ୍ତ୍ର' ଓ 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର ସଂପାଦକ ନ ଥିଲେ, ଥିଲେ ମଧ୍ୟ 'ପ୍ରଜାତନ୍ତ୍ର ପ୍ରଚାର ସମିତି'ର ସଂପାଦକ। ଅଥଚ ତାଙ୍କୁ ନ ଜଣାଇ 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର ପ୍ରକାଶନକୁ ହଠାତ୍ ବନ୍ଦ କରିଦିଆଗଲା। ଫଳରେ ସ୍ୱାଭିମାନୀ ଜାନକୀବଲ୍ଲଭ 'ପ୍ରଜାତନ୍ତ୍ର' ଓ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଉଭୟର ସଂପାଦକ ପଦରୁ ଇସ୍ତଫା ଦେଇଦେଲେ। ସ୍ୱତନ୍ତ୍ର ଓ ସ୍ୱାଧୀନ ଭାବରେ ନିଜର ଅସ୍ତିତ୍ୱକୁ ସାବ୍ୟସ୍ତ କରିବାର ଦମ୍ଭ ତାଙ୍କର ଥିଲା।

ଏ ସଂପର୍କରେ ନମ୍ର ଅଥଚ ଦୃଢ଼ ସୂଚନା ମିଳେ ଜାନକୀବଲ୍ଲଭଙ୍କ ପୂର୍ବ ସୂଚିତ ସାକ୍ଷାତକାରରେ। ସେଥିରେ ସେ କହିଛନ୍ତି, "ଜଣେ ଯଦି ଜୀବନରେ ଏକ ବ୍ରତ ଗ୍ରହଣ କଲା କି ଦେଶ ପାଇଁ ବା ନିଜ ରାଜ୍ୟ ପାଇଁ କିଛି କରିବ, ତେବେ ସେ ଯେକୌଣସି କ୍ଷେତ୍ରରେ ରହି ତାହା କରିପାରିବ। ମନ୍ତ୍ରିତ୍ୱ ଏଥିପାଇଁ ଦରକାର ଯେ ସେଥିରେ ତାଙ୍କୁ ଅଧିକା ସୁବିଧା ସୁଯୋଗ ଓ ସମର୍ଥନ ମିଳେ। ସେ ଦୃଷ୍ଟିରୁ ମନ୍ତ୍ରିତ୍ୱର ଆବଶ୍ୟକତା ବ୍ୟକ୍ତିତ୍ୱର ଗରିମା ପାଇଁ ନୁହେଁ। 'ପ୍ରଜାତନ୍ତ୍ର' ଭିତରେ ମୁଁ ସବୁବେଳେ ଲୋକଙ୍କପାଇଁ କାମ କରିଛି। ୧୯୬୪ ଛାତ୍ର ଆନ୍ଦୋଳନରେ ମୁଁ ତାକୁ ପ୍ରୋତ୍ସାହନ ଦେଉଥିଲି। ସେ ଆନ୍ଦୋଳନ ବି ସଫଳ ହେଇଥିଲା ଓଡ଼ିଶାରେ। ତା'ପରେ ମୁଁ 'ପ୍ରଜାତନ୍ତ୍ର' ଛାଡ଼ି 'ପୌରୁଷ' ପ୍ରକାଶ କଲି। ପ୍ରଥମ ସଂଖ୍ୟାରୁ 'ପୌରୁଷ'କୁ ଏକ ଚ୍ୟାଲେଞ୍ଜ ଭାବରେ ଗ୍ରହଣ କରିଥିଲି। 'ପ୍ରଜାତନ୍ତ୍ର'ରୁ ଆସିବା ପରେ ସମସ୍ତେ ଭାବୁଥିଲେ, ମୁଁ ଚାକିରିବାକିରି କରିବି। କିନ୍ତୁ ମୁଁ ନିଷ୍ପତ୍ତି କଲି, ନିଜେ ଏକ ପତ୍ରିକା ବାହାର କରିବି–ଯେଉଁ ପତ୍ରିକା ଉଚ୍ଚମାନର ହୋଇଥିବ ଏବଂ ତା' ସାଙ୍ଗକୁ ଜନପ୍ରିୟ ମଧ୍ୟ ହୋଇପାରିବ। 'ପୌରୁଷ' କେବଳ ଏକ ସମ୍ବାଦପତ୍ର ନୁହେଁ, ତାହା ସାହିତ୍ୟ ଓ ସଂସ୍କୃତିର ପତ୍ରିକା। ତେଣୁ ସେ ପତ୍ରିକାରେ ମୁଁ ଅନେକ ଲେଖୁଥିଲି। ସେ ପତ୍ରିକାରେ ଯାହା ସବୁ ଲେଖା ହୋଇଛି ଓ ସେ ସମୟରେ ଯେପରି ସଂପାଦନା କରାହୋଇଛି, ସେ ସବୁ ସାହିତ୍ୟିକ କାମ। ମୁଁ କିନ୍ତୁ ସାହିତ୍ୟ ପାଇଁ ପୂରାପୂରି ସମୟ ଦେବା କେବେହେଲେ ସମ୍ଭବ ହୋଇ ନାହିଁ। ଏହାରି ଭିତରେ ଯେତିକି ସମୟ ପାଇଛି, ସାହିତ୍ୟକୁ ଜୀବନର ଏକ ବ୍ରତ ଭାବେ ନେଇ ସାହିତ୍ୟ ସାଧନା କରିବାକୁ ମୁଁ ଚେଷ୍ଟା କରିଛି।"

ଜାନକୀବଲ୍ଲଭ ଆରମ୍ଭରୁ ଯେ 'ପୌରୁଷ'କୁ ଏକ 'ଚ୍ଲେଞ୍ଜ' ଭାବରେ ଗ୍ରହଣ କରିଥିଲେ, ତାହାର ପ୍ରଧାନ ପ୍ରମାଣ ପତ୍ରିକାଟିର ନାମକରଣ। ଏ ସଂପର୍କରେ 'ପୌରୁଷ' ପତ୍ରିକାର ପ୍ରଥମ ସଂଖ୍ୟାରେ ହିଁ ରହିଛି ସ୍ପଷ୍ଟ ସ୍ୱୀକାରୋକ୍ତି। ସେହି ଜୁଲାଇ, ୧୯୬୭ ସଂଖ୍ୟାରେ ସେ କହିଛନ୍ତି, "ମହାଭାରତ ଯୁଦ୍ଧଭୂମିରେ କୌରବମାନଙ୍କର ସେନାପତି,

ଗୁରୁ ଦ୍ରୋଣାଚାର୍ଯ୍ୟ ନିହତ ହେଲେ। ଦ୍ରୋଣଙ୍କ ପୁତ୍ର ମହାରଥୀ ଅଶ୍ୱତ୍ଥାମା କହିଲେ, କୌରବମାନଙ୍କର ସେନାପତି ପଦରେ ତାଙ୍କୁ ହିଁ ବରଣ କରାଯାଉ। ଦୁର୍ଯ୍ୟୋଧନ କିନ୍ତୁ କର୍ଣ୍ଣଙ୍କର ଦାବି ଏଡ଼ାଇ ପାରିଲେ ନାହିଁ। ସେ କହିଲେ, କର୍ଣ୍ଣ ମୂଳରୁ ସେନାପତି ହେବାର କଥା; ପିତାମହ ଭୀଷ୍ମ ଓ ଗୁରୁ ଦ୍ରୋଣାଚାର୍ଯ୍ୟ ଥିବାଯୋଗୁଁ ସେ ହୋଇପାରୁ ନ ଥିଲେ। କର୍ଣ୍ଣଙ୍କ ପ୍ରତି କଠୋର ବାକ୍ୟ ପ୍ରୟୋଗ କରି ଅଶ୍ୱତ୍ଥାମା କହିଲେ, କର୍ଣ୍ଣ ସାରଥିର ପୁତ୍ର। ସେ ସେନାପତି ହେବାକୁ ଯୋଗ୍ୟ ନୁହେଁ। ତା'ର ଯେଉଁ ଉତ୍ତର କର୍ଣ୍ଣ ଦେଇଥିଲେ, ଏବର ଭାରତବର୍ଷର ଯୁବସମାଜପାଇଁ ମଧ୍ୟ ତାହା ପ୍ରଯୁଜ୍ୟ। ସଂସ୍କୃତ 'ବେଣୀ ସଂହାରମ୍' ନାଟକରେ ତାହା ଏହିପରି ଅଛି–

ସୂତୋ ବା ସୂତପୁତ୍ରୋ ବା
ଯୋ ବା କୋ ବା ଭବାମ୍ୟହଂ।
ଦୈବାୟତ୍ତଂ କୁଳେ ଜନ୍ମ
ମଦାୟତ୍ତଞ୍ଚ ପୌରୁଷମ୍।

– ମୁଁ ସାରଥି ବା ସାରଥିର ପୁତ୍ର ହୋଇପାରେ ବା ଯେ କେହି ହୋଇପାରେ। ଉଚ୍ଚକୁଳରେ ଜାତ ହେବା ମୋର ଆୟତ୍ତର ବାହାରେ। ତାହା ଦୈବର ଅଧୀନ; କିନ୍ତୁ ପୌରୁଷ ବା ପୁରୁଷକାର ମୋର ଅଧୀନ।"

ଏହି ଦୃଷ୍ଟିରୁ ପତ୍ରିକାର ନାମ 'ପୌରୁଷ' ରଖାଯାଇଛି ବୋଲି ସେ ସେହି ସଂପାଦକୀୟ ସ୍ୱୀକାରୋକ୍ତିରେ ସ୍ପଷ୍ଟଭାବେ କହିଥିଲେ। ପୁଣି ତାହାର ଆଭିମୁଖ୍ୟ ସୂଚିତ କରି କହିଥିଲେ, "ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ ଯେଉଁ ଅନ୍ତର୍ନିହିତ ଶକ୍ତି ଅଛି–ଜାତି, ବଂଶ ନିର୍ବିଶେଷରେ ତା'ର ଜାଗରଣ ପ୍ରତ୍ୟେକ ସମାଜ ଓ ରାଷ୍ଟ୍ରର ଧର୍ମ ହେବା ଆବଶ୍ୟକ।"

ଜାନକୀବଲ୍ଲଭ ପଟ୍ଟନାୟକ 'ପୌରୁଷ'ର ସଂପାଦକ ଥିଲେ ଜୁଲାଇ ୧୯୬୭ରୁ ଜାନୁଆରୀ ୧୯୭୩ ପର୍ଯ୍ୟନ୍ତ। ୧୯୭୧ ମସିହା ମାର୍ଚ୍ଚ ମାସରେ ଅନୁଷ୍ଠିତ ସାଧାରଣ ନିର୍ବାଚନରେ ସେ କଟକ ସଦର ଲୋକସଭା ଆସନରୁ କଂଗ୍ରେସ ପ୍ରାର୍ଥୀ ଭାବରେ ବିଜୟ ହାସଲ କରି ୧୯୭୩ ମସିହା ଫେବୃଆରୀ ମାସ ୫ ତାରିଖ ଦିନ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ମନ୍ତ୍ରିମଣ୍ଡଳରେ ପ୍ରତିରକ୍ଷା ବିଭାଗର ଉପମନ୍ତ୍ରୀ ଭାବରେ ନିଯୁକ୍ତ ହେଲେ। ଫଳରେ ୧୯୭୩ ମସିହା ଫେବୃଆରୀ ମାସରୁ 'ପୌରୁଷ'ର ସଂପାଦିକା ଦାୟିତ୍ୱ ଗ୍ରହଣ କଲେ ତାଙ୍କର ପତ୍ନୀ ତଥା ସୁଖ୍ୟାତ ଅନୁବାଦିକା ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ।

ଏହି ପ୍ରାୟ ସାଢ଼େ ପାଞ୍ଚ ବର୍ଷ ମଧ୍ୟରେ ସେ 'ପୌରୁଷ'କୁ ଦେଇଥିଲେ ଦୃଢ଼ ଭିତ୍ତି ଓ ଦୃପ୍ତ ପ୍ରତିଷ୍ଠା। ତାହା ଓଡ଼ିଶାରେ ପତ୍ରିକା ସଂପାଦନାର ଏକ ନବଦିଗନ୍ତ ଉନ୍ମୋଚନ କରିଥିଲା। କାରଣ ତା' ପୂର୍ବରୁ ଅନେକ ପତ୍ରିକା ଥିଲେ ମଧ ତାହା ଥିଲା ମୁଖ୍ୟତଃ ସାହିତ୍ୟ ପତ୍ରିକା। 'ଝଙ୍କାର'ର ସାହିତ୍ୟିକ ମାନ ଅବଶ୍ୟ ବେଶ୍ ଉନ୍ନତ ଥିଲା କିନ୍ତୁ 'ଆସନ୍ତାକାଲି' ପରି ପତ୍ରିକାଗୁଡ଼ିକର ଗୁଣମାନ ସନ୍ତୁଷ୍ଟ କରିପାରୁ ନ ଥିଲା ଜାନକୀବଲ୍ଲଭଙ୍କୁ। ଏ ସଂପର୍କରେ ପୂର୍ବସୂଚିତ ସାକ୍ଷାତକାରରେ ସେ କହିଛନ୍ତି, "ସେତେବେଳେ 'ଆସନ୍ତାକାଲି' ବାହାରୁଥିଲା।

ସେହିଭଳି ନାନା ପ୍ରକାର ପତ୍ରପତ୍ରିକା ବାହାରୁଥିଲା। ସେ ସବୁ ଭାରି ଶସ୍ତା ଥିଲା। ଆମେ କହିଲୁ ଯେ ଏତେ ଶସ୍ତା ହେବ ନାହିଁ। ଉଚ୍ଚମାନର ହେବ ଏବଂ ତା' ସଙ୍ଗେ ସଙ୍ଗେ ଜନପ୍ରିୟ ହେବ। ତେଣୁ 'ପୌରୁଷ'ରେ ବିଭିନ୍ନ ପ୍ରକାର ଲେଖା ସେସମୟରେ ପ୍ରକାଶ ପାଉଥିଲା। ଏବଂ ଯାହାସବୁ ଗଳ୍ପ ପ୍ରକାଶ ପାଉଥିଲା, ସେସବୁ ସୁପ୍ରସିଦ୍ଧ ଗଳ୍ପ। ଅନ୍ୟ ସବୁ ଭାଷାରୁ ତାକୁ ଅନୁବାଦ କରି ଦିଆଯାଉଥିଲା; ବଙ୍ଗଳାଠୁ ଆରମ୍ଭ କରି ତାମିଲ, ମାଲାୟଲମ ପର୍ଯ୍ୟନ୍ତ। ଏବଂ ତା' ଛଡ଼ା ଯେଉଁ ସବୁ ଜାତୀୟ, ଅନ୍ତର୍ଜାତୀୟ ପ୍ରସଙ୍ଗ ଆସୁଥିଲା, ସେ ସଂପର୍କରେ ସୁଚିନ୍ତିତ ଲେଖା ସବୁ ଦିଆଯାଉଥିଲା।"

'ପୌରୁଷ'ର ସେଦିନର ସଂଖ୍ୟାଗୁଡ଼ିକୁ ଯେ କେହି ଦେଖଲେ, ସେ ନିଶ୍ଚେ ହୃଦ୍‌ବୋଧ କରିବେ ଯେ, ଜାନକୀବଲ୍ଲଭ ପଟ୍ଟନାୟକଙ୍କର ଏ ଉକ୍ତି ଆଦୌ ଆତ୍ମପ୍ରୌଢ଼ି ନୁହେଁ; ଶତପ୍ରତିଶତ ଯଥାର୍ଥ। କାରଣ, ସେତେବେଳେ ଓଡ଼ିଶାରେ ପଠନୀୟ ସାମଗ୍ରୀ ଖୁବ୍ କମ୍ ଉପଲବ୍ଧ ହେଉଥିଲା। ଆଜିପରି ଟେଲିଭିଜନ, ଇଣ୍ଟରନେଟ୍ ଆଦି ନ ଥିଲା। ଜ୍ଞାନ-ଆହରଣର ଉତ୍ସ ଥିଲା ସୀମିତ। ମାତୃଭାଷା ଓଡ଼ିଆ ସମେତ ସଂସ୍କୃତ ଓ ଇଂରାଜୀ ଭାଷାରେ ଗଭୀର ବ୍ୟୁତ୍ପତ୍ତି ଥିବା ଯୋଗୁଁ ଜ୍ଞାନର ଯେଉଁ ଗଭୀର ସାଗରରେ ବୁଡ଼ ମାରୁଥିଲେ ପୋଖତ ପହଁରାଳି ଜାନକୀବଲ୍ଲଭ, ସେ ସାଗରରୁ ସଂଗ୍ରହ କରୁଥିବା ରତ୍ନାବଳିକୁ ସରଳ ଶବ୍ଦରେ ଓ ଭାବର ସୂତାରେ ଗୁନ୍ଥି ପାଠକ-ପାଠିକାଙ୍କୁ ପରଷି ଦେଉଥିଲେ। ତା' ସହିତ ମିଶୁଥିଲା ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଶିକ୍ଷାର ପରିବ୍ୟାପ୍ତ ଦୃଷ୍ଟି ଏବଂ ଦୀର୍ଘ ପ୍ରାୟ ଦେଢ଼ ଦଶନ୍ଧିର ଦୁଇ ଇଂରାଜୀ ଓ ଓଡ଼ିଆ ସମ୍ବାଦପତ୍ର ସଂପାଦନାର ଦକ୍ଷତା।

ଜାନକୀବାବୁ 'ପୌରୁଷ'ର ପ୍ରକାଶନ ଆରମ୍ଭ କଲାବେଳକୁ ଦେଶ ସ୍ୱାଧୀନ ହୋଇଥିଲା ମାତ୍ର ଦୁଇ ଦଶନ୍ଧି ତଳୁ। ଶହ ଶହ ବର୍ଷର ପରାଧୀନତା ପରେ ଯେଉଁ ବହୁ ବାଞ୍ଛିତ ସ୍ୱାଧୀନତା ପାଇଥିଲା ଏ ଦେଶ, ତାକୁ ଠିକ୍ ବାଟରେ ଆଗେଇ ନେବା ଯେ ଏକ ଜାତୀୟତାବୋଧ ସଂପନ୍ନ ସଂପାଦକର ଦାୟିତ୍ୱ, ଏହା ମର୍ମେ ମର୍ମେ ଉପଲବ୍ଧି କରିଥିଲେ ଜାନକୀବଲ୍ଲଭ। ତା' ସହିତ ଦେଶର ଭବିଷ୍ୟତ ଗଢ଼ିବାପାଇଁ ଛାତ୍ର ଓ ଯୁବକମାନଙ୍କୁ ଠିକ୍ ଭାବରେ ପରିଚାଳିତ କରିବା ମଧ୍ୟ ଜଣେ ପୁରୋଦୃଷ୍ଟିସମ୍ପନ୍ନ ରାଜନେତା ଭାବରେ ସେ ଅନୁଭବ କରୁଥିଲେ। ଏହି ଦୁଇ ଦାୟିତ୍ୱର ସୁଷ୍ଠୁ ସମନ୍ୱୟରେ 'ପୌରୁଷ' ପାଇଥିଲା ଏକ ମର୍ଯ୍ୟାଦାସଂପନ୍ନ ସ୍ଥିତି।

ଜାନକୀବଲ୍ଲଭ ଯେ ଏ ଦେଶର ନୂଆ ପିଢ଼ି ପ୍ରତି ପ୍ରଚୁର ଆସ୍ଥାଶୀଳ ଥିଲେ, ଏହାର ପ୍ରମାଣ ମିଳେ 'ପୌରୁଷ'ର ପ୍ରଥମ ସଂପାଦକୀୟରୁ। କେବଳ ଯେ 'ପୌରୁଷ'ର ପ୍ରଥମ ସଂପାଦକୀୟରେ ଜାନକୀବଲ୍ଲଭଙ୍କର ଏହି ଆଭିମୁଖ୍ୟ ପ୍ରକଟିତ ହୋଇଥିଲା, ତାହା ନୁହେଁ। ତା'ର ପ୍ରାୟ ପନ୍ଦରବର୍ଷ ପୂର୍ବରୁ, ୧୯୫୨ ମସିହା, ଅଗଷ୍ଟ ୨୧ ତାରିଖରେ 'ପ୍ରଜାତନ୍ତ୍ର'ର ସଂପାଦକ ଦାୟିତ୍ୱ ନେବା ପରେ ମଧ୍ୟ ତାଙ୍କର ପ୍ରଥମ ସଂପାଦକୀୟର ଶୀର୍ଷକ ଥିଲା 'ଛାତ୍ର ସମାଜରେ ଶୃଙ୍ଖଳା ରକ୍ଷା'। ସେହି ସଂପାଦକୀୟର ପ୍ରାସଙ୍ଗିକ ଉଦ୍ଧୃତି ଦେଇଛନ୍ତି ଡକ୍ଟର ଗୋବିନ୍ଦ ଭୂୟାଁ 'ସାର୍ଥକ ସାରଥି'ରେ ଏବଂ ସେ ସଂପର୍କରେ ମନ୍ତବ୍ୟ ଦେଇ କହିଛନ୍ତି,

"ନିକଟ ଅତୀତରେ ଛାତ୍ର ଜୀବନ ବିତାଇ ଆସିଥିବା ଛାତ୍ରଜୀବନ, ଶ୍ରେଣୀଗୃହ, ଶିକ୍ଷାଦାନ ପ୍ରଣାଳୀ, ଶିକ୍ଷାନୁଷ୍ଠାନରେ ରାଜନୀତିକ ପ୍ରଭାବ ଓ ପ୍ରବେଶ ଇତ୍ୟାଦି ବାବଦରେ ପ୍ରଚୁର ଅଭିଜ୍ଞତା ଆହରଣ କରିଥିବା ଜାନକୀବଲ୍ଲଭଙ୍କର ମଧୁର-ତିକ୍ତ ଅନୁଭୂତିରେ ଏହି ସଂପାଦକୀୟଟି ଶାଣିତ। ଛାତ୍ର ବିଶୃଙ୍ଖଳାର ଦ୍ୱାହିଦେଇ, ଏକତରଫା ଭାବରେ କାହାରି ଉପରେ ଦୋଷ ଲଦି ଦେବାର ସହଜ, ଚତୁର ପନ୍ଥା ସେ ଗ୍ରହଣ କରି ନାହାନ୍ତି। ସେ କାରଣ ସହିତ ନିରାକରଣପାଇଁ ମାର୍ଗ ନିର୍ଦ୍ଦେଶ କରିଛନ୍ତି। ଛାତ୍ରଜୀବନ ଶୃଙ୍ଖଳିତ ହେବା ଉପରେ ଗୁରୁତ୍ୱ ଦେବା ସହିତ ଅଧ୍ୟାପକ, ଅଭିଭାବକ ଏବଂ ସର୍ବୋପରି ରାଜନୀତିକ ବ୍ୟକ୍ତିମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ବିଷୟରେ ସୂଚନା ଦେଇଛନ୍ତି। କ୍ଷୁଦ୍ର ରାଜନୀତିକ ଉଦ୍ଦେଶ୍ୟ ନେଇ ଶିକ୍ଷାନୁଷ୍ଠାନକୁ ବ୍ୟବହାର କରାଯିବାକୁ ସେ ସମାଲୋଚନା କରିଛନ୍ତି।"

'କିଛି ବକ୍ତବ୍ୟ, କିଛି ସ୍ୱପ୍ନ' ଲେଖାରେ ଜାନକୀବଲ୍ଲଭ ଯାହା କହିଛନ୍ତି, ତାହା ମଧ୍ୟ ଏ ପ୍ରସଙ୍ଗରେ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ। ସେ କହିଛନ୍ତି, "ସାମ୍ବାଦିକ ଭାବରେ ପଣ୍ଡିତ ନେହରୁ ଓ ଇନ୍ଦିରା ଗାନ୍ଧୀଙ୍କ ପ୍ରତ୍ୟକ୍ଷ ସଂପର୍କରେ ଆସିଥିଲି। ଛାତ୍ରାବସ୍ଥାରୁ ଯେଉଁ ଆଦର୍ଶ ଥିଲା, ସାମ୍ବାଦିକ ଓ ସଂପାଦକ ଭାବରେ ତାହା ଆହୁରି ଦୃଢ଼ୀଭୂତ ହୋଇଥିଲା। ଥିଲା ଏକ ବିସ୍ତାରିତ ଦୃଷ୍ଟିକୋଣ। ଜାତିଆଣ ମନୋଭାବ ଓ ସାଂପ୍ରଦାୟିକତାର ବିରୋଧ, ଅସ୍ପୃଶ୍ୟତାର ବିରୋଧ, ରାଜା, ଜମିଦାର ଓ ଶିଳ୍ପପତିମାନଙ୍କର ଶୋଷଣ ଓ ଅତ୍ୟାଚାରର ବିରୋଧ।" ଏଣୁ ପ୍ରଥମେ 'ପ୍ରଜାତନ୍ତ୍ର' ଓ 'ଇଷ୍ଟର୍ଣ୍ଣ ଟାଇମ୍ସ'ରେ ଏବଂ ପରେ 'ପୌରୁଷ'ର ପୃଷ୍ଠାରେ ତାଙ୍କର ଏହି ଆଭିମୁଖ୍ୟ ସ୍ପଷ୍ଟ ପ୍ରତିଫଳିତ ହୋଇଥିଲା।

ଦୀର୍ଘ ପ୍ରାୟ ଦେଢ଼ ଦଶନ୍ଧି ଧରି ଓଡ଼ିଶାର ଦୁଇଟି ପ୍ରମୁଖ ଦୈନିକର ସଂପାଦକ ଭାବରେ ଓଡ଼ିଶାକୁ ଜାଣିବାର ବହୁ ସୁଯୋଗ ମିଳିଥିଲା ଜାନକୀବଲ୍ଲଭଙ୍କୁ। ତା' ସହିତ ଥିଲା ଓଡ଼ିଶା ପାଇଁ ଗର୍ବ ଓ ଅଭିମାନ। ଗୋପବନ୍ଧୁ ଦାସଙ୍କର ଆଦର୍ଶ–"ଜଗତ ସରିଲେ ଭାରତ କମଳ; ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ"କୁ ଜୀବନର ବ୍ରତ ରୂପେ ସେ ଗ୍ରହଣ କରିଥିଲେ। ତେଣୁ ପଦ୍ମର କେଶର ଭାବରେ ଓଡ଼ିଶାର ଅଭ୍ୟୁଦୟ ହିଁ ତାଙ୍କର ଧ୍ୟେୟ ଓ ଶ୍ରେୟ ଥିଲା। କିନ୍ତୁ ଓଡ଼ିଶାରେ ସେତେବେଳେ ଲାଗି ରହିଥିଲା ରାଜନୀତିକ ଅସ୍ଥିରତା। ତାହା ତାଙ୍କୁ ବ୍ୟଥିତ କରୁଥିଲା। ଦୃଢ଼ ପ୍ରତ୍ୟୟ ଥିଲା, ରାଜନୈତିକ ଅସ୍ଥିରତା ଦୂର ହୋଇପାରିଲେ ହିଁ ଓଡ଼ିଶାର ବିକାଶ ସମ୍ଭବ ହେବ। "ସ୍ୱାଧୀନତା ପରେ ଦେଶ ଆଗଉଛି, କିନ୍ତୁ ଓଡ଼ିଶା ବହୁ ପଛରେ ପଡ଼ିଥିବା ଯୋଗୁଁ ଦଉଡ଼ିବା ଦରକାର"–ଡକ୍ଟର ମହତାବଙ୍କର ଏ ଉକ୍ତି ତାଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରୁଥିଲା। କିନ୍ତୁ ଡକ୍ଟର ମହତାବ ନିଜେ ଓଡ଼ିଶାର ରାଜନୈତିକ ଅସ୍ଥିରତା ଦୂର କରିପାରି ନ ଥିଲେ। ତେଣୁ ପ୍ରତ୍ୟକ୍ଷ ରାଜନୀତିରେ ରହି ଓଡ଼ିଶାପାଇଁ ଆଖିଦୃଶିଆ କିଛି କାର୍ଯ୍ୟ କରିବାର ସ୍ୱପ୍ନ ଦେଖିଥିଲେ ଜାନକୀବଲ୍ଲଭ।

ସେ ସୁଯୋଗ ତାଙ୍କୁ ମିଳିଥିଲା ୧୯୭୧ରେ–ଯେତେବେଳେ ସେ ସଂସଦ ସଦସ୍ୟ ଭାବରେ କଂଗ୍ରେସ ଦଳରୁ ନିର୍ବାଚିତ ହେଲେ। ପ୍ରାୟ ଦୁଇବର୍ଷ ପରେ ଯେତେବେଳେ ଇନ୍ଦିରା ଗାନ୍ଧୀଙ୍କ ମନ୍ତ୍ରିପରିଷଦରେ ପ୍ରଥମେ ଉପମନ୍ତ୍ରୀ ଏବଂ ପରେ ରାଷ୍ଟ୍ରମନ୍ତ୍ରୀ ଓ କ୍ୟାବିନେଟ୍

ମନ୍ତ୍ରୀ ଭାବରେ କାର୍ଯ୍ୟ କଲେ, ସେତେବେଳେ ସେ ସୁଯୋଗ ଆହୁରି ବ୍ୟାପକ ହେଲା। ପୁଣି ଯେତେବେଳେ ୧୯୮୦ରେ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ ତାହା ପରିଣତ ହେଲା ସୁବର୍ଣ୍ଣ ସୁଯୋଗରେ। ପତ୍ରିକା ସଂପାଦନାରେ ସେ ଯେପରି ନିଜର ସର୍ଜନଶୀଳ ପୌରୁଷ ପ୍ରତିଷ୍ଠା କରିଥିଲେ, ରାଜନୀତିରେ ମଧ୍ୟ ସେପରି ନିଜର ଶାସକୀୟ ପୌରୁଷ ପ୍ରତିପାଦିତ କଲେ।

ଅନେକେ ମତ ଦିଅନ୍ତି ଯେ ଜାନକୀବଲ୍ଲଭ ଯଦି ରାଜନୀତିରେ ଯୋଗ ଦେଇ ନ ଥାନ୍ତେ, ତା'ହେଲେ ଓଡ଼ିଆ ସାହିତ୍ୟକୁ ଆହୁରି ଅନେକ ଅମୂଲ୍ୟ ଅବଦାନ ଦେଇପାରିଥାଆନ୍ତେ। କିନ୍ତୁ ଏ ପ୍ରଶ୍ନର ଉତ୍ତର ଖୋଜିଲେ ପ୍ରଥମେ ଯିଏ ସ୍ମରଣକୁ ଆସନ୍ତି, ସେ ହେଉଛନ୍ତି ପଣ୍ଡିତ ନୀଳକଣ୍ଠ ଦାସ। ନୀଳକଣ୍ଠଙ୍କ ଆତ୍ମଜୀବନୀରେ ପଣ୍ଡିତ ଗୋପବନ୍ଧୁଙ୍କ 'ଭାଗବତ ବ୍ରତ ପାରାୟଣ' ସଂପର୍କରେ ଏକ ସୁନ୍ଦର ଆଲେଖ୍ୟ ଅଛି। ନିଜର ଅନେକ ଲେଖାରେ ଓ ଭାଷଣରେ ଜାନକୀବଲ୍ଲଭ ବିଭିନ୍ନ ସମୟରେ ତାହାର ଅବତାରଣା କରିଛନ୍ତି। ତାଙ୍କ ନିଜ ଭାଷାରେ ସେହି ଆଲେଖ୍ୟଟି ହେଉଛି–ଗୋପବନ୍ଧୁଙ୍କ ଗାଁ ଘରେ ତାଙ୍କ ସହିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର, କୃପାସିନ୍ଧୁ ପ୍ରଭୃତି ବସିଛନ୍ତି। ସନ୍ଧ୍ୟା ଆଗତପ୍ରାୟ, ଦୂର ଶ୍ମଶାନରେ କେତେଗୁଡ଼ିଏ ଚିତା ଜଳୁଛି। ସେମାନେ ସେହିସବୁ ଚିତାକୁ ଚାହିଁ ସେଦିନ ପ୍ରତିଜ୍ଞା କରିଥିଲେ, ଜନ୍ମବେଳେ ଯେଉଁ ଓଡ଼ିଶା ଥିଲା ବା ବାଲ୍ୟ ଜୀବନରେ ଯେଉଁ ଓଡ଼ିଶାକୁ ଦେଖିଥିଲେ, ସଂସାରରୁ ବିଦାୟ ନେବାବେଳେ ଯେପରି ତାକୁ ଉତ୍କୃଷ୍ଟତର ରୂପରେ ଦେଖିଯିବେ। ଏହି ଆଲେଖ୍ୟର ଅବତାରଣା କରି ଜାନକୀବଲ୍ଲଭ କହିଛନ୍ତି, "ଏହା ସମସ୍ତଙ୍କ ଜୀବନର ସ୍ୱପ୍ନ ହେବା ଦରକାର।"

'ପୌରୁଷ' ପତ୍ରିକା ପ୍ରକାଶ ପାଇବାର ଚାରିମାସ ପରେ, ୧୯୬୭ ମସିହା ନଭେମ୍ବର ମାସ ୬ ତାରିଖରେ ପଣ୍ଡିତ ନୀଳକଣ୍ଠଙ୍କର ବିୟୋଗ ଘଟିଲା। ସେତେବେଳେ ଋଷିପ୍ରତିମ ଆଚାର୍ଯ୍ୟ ହରିହରଙ୍କୁ ତାଙ୍କର ସାନଭାଇ ଓ ସହକର୍ମୀ ନୀଳକଣ୍ଠଙ୍କ ସଂପର୍କରେ ଗୋଟିଏ ଲେଖା ଲେଖିବାକୁ ଅନୁରୋଧ କରିଥିଲେ ଜାନକୀବଲ୍ଲଭ ଏବଂ ସେହି ଲେଖାଟିକୁ 'ପୌରୁଷ'ର ନଭେମ୍ବର ସଂଖ୍ୟାରେ ପ୍ରକାଶ ମଧ କରିଥିଲେ। ତା' ସହିତ ନୀଳକଣ୍ଠଙ୍କ ସଂପର୍କରେ ଏକ ସଂପାଦକୀୟ ସେହି ସଂଖ୍ୟାରେ ଲେଖିଥିଲେ। ସେଥିରେ ସେ ପଣ୍ଡିତ ନୀଳକଣ୍ଠଙ୍କ ସଂପର୍କରେ ଯାହା କହିଥିଲେ, ସେଥିରେ ରହିଛି ତାଙ୍କ ନିଜ ଜୀବନର ଗଭୀର ପ୍ରତିଫଳନ। ସେ କହିଛନ୍ତି, "ଏ ସମାଜରେ ଯେଉଁମାନେ ଶିକ୍ଷା ଓ ସଭ୍ୟତାର ଆଲୋକ ଲାଭ କରନ୍ତି, ସେମାନଙ୍କ ଆଗରେ ଦୁଇଟି ପନ୍ଥା–ଗଡ୍ଡ଼ଳିକା ଯାଅ, ଗୋଟିଏ ମେଣ୍ଢା ଯେଉଁ ବାଟରେ ଯାଉଚି, ପଲକ ଯାକ ମେଣ୍ଢା ଯିବାପରି, ସରକାରୀ ଚାକିରି ବା ସେହିପରି ସମ୍ଭୋଗର ଜୀବନରେ ପଶିଯାଅ ଓ ଯେଉଁ ବାତାବରଣରୁ ତୁମେ ଆସିଚ ତାକୁ ଭୁଲିଯାଅ ଜନସାଧାରଣ ସେହିପରି ଥାଆନ୍ତୁ ସେହିପରି ଥାଉ ତାଙ୍କର ଦାରିଦ୍ର୍ୟ, ଅଶିକ୍ଷା, ଅଜ୍ଞାନ ଓ କୁସଂସ୍କାର। ଅନ୍ୟ ପନ୍ଥା ହେଉଚି–ନା, ତାହା ହୋଇପାରିବ ନାହିଁ ଏ ସମାଜକୁ, ଏ ଶାସନକୁ, ଏ ପ୍ରଚଳିତ ଧାରଣାକୁ ବଦଳାଇବାକୁ ହେବ। ଏଥିପାଇଁ ନିଜର ସମସ୍ତ ଶକ୍ତି, ଶିକ୍ଷା, ସାଧନା, ପ୍ରତିଭା ନିୟୋଜିତ କରିବାକୁ ହେବ। ପଣ୍ଡିତ ନୀଳକଣ୍ଠ ଥିଲେ ଏହି ମାର୍ଗର ପଥିକ।"

ଆଜି କହିବାରେ କାହାରି କୁଣ୍ଠା ନାହିଁ ଯେ ଜାନକୀବଲ୍ଲଭ ମଧ୍ୟ ଥିଲେ ଏହି ମାର୍ଗର ପଥିକ। ସେଥିପାଇଁ ପୂର୍ବସୂଚିତ ସାକ୍ଷାତକାରରେ ସେ କହିଛନ୍ତି, "ଗୋଟିଏ ସମୟ ଆସିଲା, ଯେତେବେଳେ ମୁଁ ଚିନ୍ତା କଲି, ସମାଜର ପରିବର୍ତ୍ତନପାଇଁ ଲୋକଙ୍କ ଅବସ୍ଥାରେ ପରିବର୍ତ୍ତନ ଆବଶ୍ୟକ। ରାଜନୀତିକୁ ନ ଆସିଲେ କେବେହେଲେ ଏ କାର୍ଯ୍ୟ ସମ୍ଭବ ହେବ ନାହିଁ। ତେଣୁ ରାଜନୀତିକୁ ଆସିବାକୁ ପଡ଼ିଲା।"

ଆଉ ତାଙ୍କର ସାହିତ୍ୟିକ ଜୀବନ? ଯାହା ପୂର୍ବରୁ ସୂଚିତ, କେତେକଙ୍କର ମତ ଯେ ଜାନକୀବଲ୍ଲଭ ଯଦି ରାଜନୀତିକୁ ଯାଇ ନ ଥାନ୍ତେ, ତେବେ ଓଡ଼ିଆ ସାହିତ୍ୟ ବହୁଭାବରେ ସମୃଦ୍ଧ ହୋଇଥାଆନ୍ତା। ପୁଣି କେତେକଙ୍କର ମତ ଯେ ରାଜନୀତିଜ୍ଞ ଜାନକୀବଲ୍ଲଭଙ୍କ ଅପେକ୍ଷା ସାହିତ୍ୟିକ ଜାନକୀବଲ୍ଲଭ ବଞ୍ଚିବେ ଅଧିକ ଦିନ। ଏହାର ଉତ୍ତର ମଧ୍ୟ ନୀଳକଣ୍ଠଙ୍କ ସଂପର୍କିତ ସେହି ସଂପାଦକୀୟ ଅଗ୍ରଲେଖରେ ପରୋକ୍ଷ ଭାବରେ ପ୍ରକାଶ ପାଇଛି। ଜାନକୀବଲ୍ଲଭ ଲେଖିଛନ୍ତି, "କେତେକ କହନ୍ତି, ରାଜନୀତିଜ୍ଞ ନୀଳକଣ୍ଠ ବଞ୍ଚିବେ ନାହିଁ, ସାହିତ୍ୟିକ ନୀଳକଣ୍ଠ ବଞ୍ଚିବେ। ଏଥିରୁ ଖିଅଧରି ପୁଣି କେତେକ କହନ୍ତି, ସେ ରାଜନୀତିକୁ ଆସି ଭୁଲ କଲେ, ସାହିତ୍ୟ ସାଧନାରେ ରହିଥିଲେ ଭଲ ହୋଇଥାଆନ୍ତା। ଏହା ଏକ ଭ୍ରମାତ୍ମକ ଯୁକ୍ତି। ଯେଉଁ ଯୁଗରେ, ଯେଉଁ ସମସ୍ୟାବହୁଳ ଭୂମିରେ ତାଙ୍କର ଜନ୍ମ, ସେଥିରେ ସେ ଗୋଟିଏ ଘର କଣରେ ବସି ଖାଲି ସାହିତ୍ୟ ସାଧନା କରିଥାଆନ୍ତେ, ଏହା କଳ୍ପନା ବିଳାସ ଛଡ଼ା ଅନ୍ୟ କିଛି ନୁହେଁ।"

ଏହି ସଂପାଦକୀୟଟିକୁ ଜାନକୀବଲ୍ଲଭ ଲେଖିଥିଲେ, ଆଜିଠୁଁ ପ୍ରାୟ ୪୮ବର୍ଷ ପୂର୍ବେ। ସେତେବେଳକୁ ପ୍ରତ୍ୟକ୍ଷ ରାଜନୀତିରେ ପାଦ ଥାପି ନ ଥିଲେ ସେ। କିନ୍ତୁ ସେଦିନରୁ ଆଜି– ତାଙ୍କର ଏଇ ଦୀର୍ଘ ୪୮ବର୍ଷର କର୍ମମୟ ଜୀବନକୁ ଲକ୍ଷ୍ୟକଲେ ସ୍ପଷ୍ଟ ଜଣାଯାଏ– ଘରକଣରେ ବସି ଖାଲି ସାହିତ୍ୟସାଧନା କରିବାର କଳ୍ପନାବିଳାସ ଜାନକୀବଲ୍ଲଭଙ୍କର କେବେବି ନ ଥିଲା। ଯେଉଁ ଯୁଗରେ, ଯେଉଁ ସମସ୍ୟାବହୁଳ ଭୂମିରେ ତାଙ୍କର ଜନ୍ମ, ସେଥିରେ ସେ ମେଣ୍ଢାଟିଏ ପରି ଗଡ୍ଡଳିକାର ପଛାରେ ଯାଇ ନାହାନ୍ତି। ନିଜ ସମୟର ସମାଜକୁ, ଶାସନକୁ ବଦଳାଇବାକୁ ଚେଷ୍ଟା କରିଛନ୍ତି। ସେଥିପାଇଁ ନିଜର ସମସ୍ତ ଶକ୍ତି, ଶିକ୍ଷା, ସାଧନା ଓ ପ୍ରତିଭାକୁ ନିୟୋଜିତ କରିଛନ୍ତି। ସାରାଜୀବନ ବାଟ ଚାଲିଛନ୍ତି ଗୋଟିଏ ହାତରେ ସାହିତ୍ୟର ଶଙ୍ଖ ଓ ଆର ହାତରେ ରାଜନୀତିର ଚକ୍ର ଧରି। ଓଡ଼ିଶାର, ଓଡ଼ିଶାର ଜନଜୀବନର ଯେଉଁ ପରିବର୍ତ୍ତନ ଥିଲା ତାଙ୍କର ଚିରବାଞ୍ଛିତ ସ୍ୱପ୍ନ, 'ପ୍ରଜାତନ୍ତ୍ର'ରୁ 'ପୌରୁଷ' ବାଟ ଦେଇ କେନ୍ଦ୍ରମନ୍ତ୍ରୀ, ରାଜ୍ୟ ମୁଖ୍ୟମନ୍ତ୍ରୀ, ରାଜ୍ୟ ବିଧାନସଭାରେ ବିରୋଧୀଦଳ ନେତା ଏବଂ ଶେଷରେ ଆସାମ ରାଜ୍ୟର ରାଜ୍ୟପାଳ ଦାୟିତ୍ୱ ମାଧ୍ୟମରେ, ସେହି ପରିବର୍ତ୍ତନକୁ ପ୍ରମୂର୍ତ୍ତ କରିବାକୁ ପ୍ରୟାସ କରିଛନ୍ତି। ତାହାରି ମାଧ୍ୟମରେ ବି ଜାନକୀବଲ୍ଲଭ ପଟ୍ଟନାୟକଙ୍କର ପୌରୁଷ ପାଇଛି ପ୍ରଭୂତ ପ୍ରତିଷ୍ଠା।



# ପ୍ରଜାତନ୍ତ୍ର ପ୍ରଚାର ସମିତି ଓ ଦୀର୍ଘଯାତ୍ରାପାଇଁ ପ୍ରସ୍ତୁତିପର୍ବ

ଗୋବିନ୍ଦ ଚନ୍ଦ୍ର ଚାନ୍ଦ

"ପ୍ରତିକୂଳ ଅବସ୍ଥା ସହ ସଂଗ୍ରାମ କରିଚାଲିବାର ଶକ୍ତି ଓଡ଼ିଆ ଯୁବକର ଅଛି ବୋଲି ମୋର ବିଶ୍ୱାସ। ଯଦି ତାହା ନ ଥାଏ, ତେବେ ଏ ଅନୁଷ୍ଠାନର ଅଗ୍ରଗତି ରୁଦ୍ଧ। ଉଚ୍ଚାଶାର ତରଙ୍ଗରେ ଜଳମଗ୍ନ ହେବା ବରଂ ଶ୍ରେୟସ୍କର; କିନ୍ତୁ ନିରାଶାର ତଟ ଉପରେ ଛିଡ଼ା ହୋଇ ଚାହିଁ ରହିବା ଅମଙ୍ଗଳଜନକ।" ଡକ୍ଟର ହରେକୃଷ୍ଣ ମହତାବଙ୍କ ଏହି ଦୃଷ୍ଟିକୋଣକୁ ସାକାର କରିବାପାଇଁ ଯେଉଁ ପ୍ରତିଭାବାନ୍ ଯୁବକମାନେ ନିଷ୍ଠାର ସହ କାର୍ଯ୍ୟ କରିଥିଲେ; ସେମାନଙ୍କ ମଧ୍ୟରେ ଜାନକୀବଲ୍ଲଭ ପଟ୍ଟନାୟକ ଥିଲେ ଅଗ୍ରଗଣ୍ୟ। ୧୯୪୭ ମସିହା ଜାନୁଆରୀ ପ୍ରଥମ ସପ୍ତାହରେ ରେଭେନ୍ସା କଲେଜରେ 'ଇଉନିୟନ ଜ୍ୟାକ୍ ହଟାଅ' ଆନ୍ଦୋଳନରେ ତାଙ୍କର ଭୂମିକା ଡକ୍ଟର ହରେକୃଷ୍ଣ ମହତାବଙ୍କ ଦୃଷ୍ଟି ଆକର୍ଷଣ କରିଥିଲା। ୧୯୨୩ ମସିହାରେ ସାପ୍ତାହିକ ସମ୍ବାଦପତ୍ର ରୂପେ ପ୍ରକାଶିତ ପ୍ରଜାତନ୍ତ୍ର ୧୯୩୦ ମସିହାରେ ଦୈନିକ ହେବା ପରେ ବ୍ରିଟିଶ ସରକାରର ରୋଷଦୃଷ୍ଟିର ଶିକାର ହୋଇ ୧୯୩୨ ମସିହାରେ ବନ୍ଦ ହୋଇଯାଇଥିଲା।

୧୯୪୭ ଅଗଷ୍ଟ ୮ ତାରିଖରେ ପ୍ରଜାତନ୍ତ୍ରକୁ ଦ୍ୱିତୀୟବାର ପ୍ରକାଶ କରିବାପାଇଁ ଲାଗିପଡ଼ିଥିବା ତତ୍କାଳୀନ ପ୍ରଧାନମନ୍ତ୍ରୀ ଡକ୍ଟର ମହତାବ, ଜାନକୀବଲ୍ଲଭଙ୍କୁ ଏଥିରେ ଯୋଗ ଦେବାକୁ ଇଚ୍ଛା ପ୍ରକାଶ କରିଥିଲେ। ହେଲେ ସେତେବେଳକୁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଏମ୍.ଏ. କରିବାକୁ ନିଷ୍ପତ୍ତି ନେଇସାରିଥିଲେ ଶ୍ରୀ ପଟ୍ଟନାୟକ। ପ୍ରଜାତନ୍ତ୍ର ପ୍ରଚାର ସମିତି ପ୍ରତିଷ୍ଠା କରି ଡକ୍ଟର ହରେକୃଷ୍ଣ ମହତାବ ପ୍ରତିକୂଳ ସ୍ଥିତିକୁ ଏଡ଼ାଇବାର ପ୍ରୟାସ ଆରମ୍ଭ କଲେ। ପ୍ରଜାତନ୍ତ୍ର, ଇଷ୍ଟର୍ଣ୍ଣ ଟାଇମ୍ସ, ଝଙ୍କାର, ମୀନାବଜାର ଆଦି ସମ୍ବାଦପତ୍ର ଓ ପତ୍ରିକା ପ୍ରକାଶ ତ୍ୱରାନ୍ୱିତ ହେଲା।

ଡକ୍ଟର ମହତାବ ୧୯୫୪ ମସିହାରେ ବିଷୁବ ମିଳନର ବାର୍ଷିକ ଅଧିବେଶନ ଉପଲକ୍ଷେ ତାଙ୍କ ଲେଖାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଗଠନ ସଂପର୍କରେ ଉଲ୍ଲେଖ କରିଥିଲେ, "ପ୍ରଜାତନ୍ତ୍ର ପ୍ରଚାର ସମିତିର ପରିକଳ୍ପନା ବାସ୍ତବିକ ଆରମ୍ଭ ହୁଏ ୧୯୨୩ ସାଲରେ କଟକ ସ୍ୱରାଜ୍ୟ ଆଶ୍ରମରେ। ସେତେବେଳେ ଅସହଯୋଗ ଆନ୍ଦୋଳନଜନିତ ଉତ୍ସାହ ଜୁଆରରେ ଭଟ୍ଟା ପଡ଼ିଯାଇଥାଏ। ସେତିକିବେଳେ ଆମ୍ଭେମାନେ କେତେଜଣ ଉପଲବ୍ଧି କଲୁ ଯେ, ଜାତିର ସଂଗଠନପାଇଁ ସୁଦୃଢ଼ ସାଂସ୍କୃତିକ ଭିତ୍ତି ଆବଶ୍ୟକ। କାର୍ଯ୍ୟର ସଫଳତାପାଇଁ ଚିନ୍ତାର ପ୍ରଖରତା ଆବଶ୍ୟକ; ଏହି ଉପଲବ୍ଧି ପ୍ରତୀକସ୍ୱରୂପ ପ୍ରଥମେ ସାପ୍ତାହିକୀ ଆକାରରେ 'ପ୍ରଜାତନ୍ତ୍ର'

ବାହାରିଲା।" ୧୯୨୩ ମସିହାରେ କଟକ ସ୍ୱରାଜ ଆଶ୍ରମରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଗଠନ ଓ ଏହାରି ମାଧ୍ୟମରେ ସାଂସ୍କୃତିକ ସଂଗଠନ କାର୍ଯ୍ୟ ପାଇଁ ଯେଉଁ ପରିକଳ୍ପନା ଆରମ୍ଭ ହୋଇଥିଲା; ୧୯୪୭ ମସିହାରେ ସେହି ପରିକଳ୍ପନା ପ୍ରକୃତପକ୍ଷେ ବାସ୍ତବତାର ଆଭରଣ ପିନ୍ଧିଲା।

୧୯୪୯ ଏପ୍ରିଲ ମାସରେ ବନାରସରେ ଶିକ୍ଷା ସମାପ୍ତ ପରେ ଓଡ଼ିଶା ଫେରି ଦୁଇ ମାସ ମଧ୍ୟରେ ଇଷ୍ଟର୍ଣ୍ଣ ଟାଇମ୍ସର ସହ-ସଂପାଦକଭାବେ ଯୋଗଦେଲେ ଜାନକୀବଲ୍ଲଭ ପଟ୍ଟନାୟକ। ଉଚ୍ଚଶିକ୍ଷା ଲାଭ କରିଥିବା ଜଣେ ମେଧାବୀ ଛାତ୍ର ସାମ୍ବାଦିକତା ବୃତ୍ତିକୁ ଆପଣାଇନେବା ପଛରେ ରହିଥିଲା ତାଙ୍କର ସ୍ୱାଧୀନ ମନୋଭାବ। ଏଇ ଆହ୍ୱାନକୁ ସେ ସାଦରେ ଗ୍ରହଣ କରିନେଇଥିଲେ। ଏକ ପରିବ୍ୟାପ୍ତ ପୃଥିବୀର ପଥଚାରୀ ହେବାର ଦୃଷ୍ଟିକୋଣ ତାଙ୍କୁ ସମ୍ବାଦପତ୍ର ଜଗତକୁ ଆମନ୍ତ୍ରଣ କରିଥିଲା। ୧୯୪୯ ମସିହା ଏପ୍ରିଲ୍ ୧ ତାରିଖରେ ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ଇଷ୍ଟର୍ଣ୍ଣ ଟାଇମ୍ସ ପ୍ରକାଶ ପାଇଥିଲା। ଭୈରବ ଚନ୍ଦ୍ର ମହାନ୍ତି ଏହାର ସଂପାଦକ ହେଲେ। ଏଇ ଇଂରାଜୀ ସମ୍ବାଦପତ୍ର ସଂପାଦନା ସହ ସଂପୃକ୍ତ ହୋଇଥିଲେ ବୈଦ୍ୟନାଥ ମିଶ୍ର; ଯିଏ କି ପରବର୍ତ୍ତୀକାଳରେ ବିଶିଷ୍ଟ ଅର୍ଥନୀତିଜ୍ଞ ଓ ଶିକ୍ଷାବିତ୍ ଭାବେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିଲେ। ୧୯୪୯ ମସିହା ଡିସେମ୍ବର ମାସରେ ଭୈରବ ଚନ୍ଦ୍ର ମହାନ୍ତିଙ୍କ ସହ ଜାନକୀବଲ୍ଲଭ ଯୁଗ୍ମ ସଂପାଦକ ଦାୟିତ୍ୱ ଗ୍ରହଣ କଲେ। ଯେଉଁ ସମୟରେ ଓଡ଼ିଶାର ସମସ୍ୟା ଓ ଓଡ଼ିଶାର ଚିତ୍ରକୁ ସର୍ବଭାରତୀୟ ସ୍ତରରେ ପହଞ୍ଚାଇବାର ଆବଶ୍ୟକତା ପଡୁଥିଲା, ସେତେବେଳେ ଏ କ୍ଷେତ୍ରରେ ଇଷ୍ଟର୍ଣ୍ଣ ଟାଇମ୍ସ ପ୍ରମୁଖ ଭୂମିକା ନେଇଥିଲା ଓ ଏହା ସହ ଜାନକୀବଲ୍ଲଭଙ୍କ ସଂପୃକ୍ତି ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଥିଲା। ଡକ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ନବ ଉତ୍କଳ ନିର୍ମାଣ ପର୍ବରେ ଯେଉଁ ଯୋଜନାମାନ ହାତକୁ ନିଆଯାଉଥିଲା ସେ ସଂପର୍କରେ ସବିସ୍ତୃତ ବିବରଣୀ 'ଇଷ୍ଟର୍ଣ୍ଣ ଟାଇମ୍ସ'ରେ ପ୍ରକାଶ ପାଉଥିଲା। ନିଷ୍ଠାପର କର୍ତ୍ତବ୍ୟ ସଂପାଦନ କରି ଅଳ୍ପ ଦିନ ମଧ୍ୟରେ ଜାନକୀବଲ୍ଲଭ ଇଷ୍ଟର୍ଣ୍ଣ ଟାଇମ୍ସର ସଂପାଦକ ଦାୟିତ୍ୱ ଗ୍ରହଣ କଲେ।

୧୯୫୨ ମସିହା ଅଗଷ୍ଟ ୨୧ ତାରିଖରେ ଜନକୀବଲ୍ଲଭ 'ପ୍ରଜାତନ୍ତ୍ର'ର ସଂପାଦକ ଦାୟିତ୍ୱ ଗ୍ରହଣ କଲେ। ଦୁଇଟି ସମ୍ବାଦପତ୍ର 'ଇଷ୍ଟର୍ଣ୍ଣ ଟାଇମ୍ସ' ଓ 'ପ୍ରଜାତନ୍ତ୍ର'ର ସଂପାଦକ ଦାୟିତ୍ୱ ନିର୍ବାହ କରିବା ତାଙ୍କର ଦକ୍ଷତାକୁ ହିଁ ପ୍ରମାଣିତ କରିଥିଲା। ୧୯୫୨ ଅଗଷ୍ଟ ୨୧ ତାରିଖରୁ ୧୯୬୭ ଫେବୃଆରୀ ପର୍ଯ୍ୟନ୍ତ ଦୀର୍ଘ ୧୫ ବର୍ଷ ଧରି ପ୍ରଜାତନ୍ତ୍ର ଓ ୧୯୫୦ରୁ ୧୯୬୭ ପର୍ଯ୍ୟନ୍ତ ଦୀର୍ଘ ୧୭ ବର୍ଷ ଧରି ଇଷ୍ଟର୍ଣ୍ଣ ଟାଇମ୍ସର ସଂପାଦକ ଭାବେ କାର୍ଯ୍ୟ ଜାନକୀବଲ୍ଲଭଙ୍କ କର୍ମମୟ ଜୀବନର ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ଥିଲା। ଜାନକୀବଲ୍ଲଭ ପ୍ରଜାତନ୍ତ୍ରର ସଂପାଦକ ଭାବେ ଦାୟିତ୍ୱ ନିର୍ବାହ କରୁଥିବାବେଳେ ୧୯୫୪ର ମରୁଡ଼ି, ୧୯୫୫ର ପ୍ରଳୟଙ୍କରୀ ବନ୍ୟା, ୧୯୫୬ ମସିହାର ସୀମା ଆନ୍ଦୋଳନ ଓଡ଼ିଶାର ଜନଜୀବନରେ ଗୋଟିଏ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଘଟଣା ଥିଲା। ପ୍ରଜାତନ୍ତ୍ର ଏ ସଂପର୍କରେ ନିର୍ଭୀକ ଭାବେ ନିଜର ଦୃଷ୍ଟିକୋଣ ପ୍ରକାଶ କରୁଥିଲା ସଂପାଦକୀୟ ସ୍ତମ୍ଭରେ। ଏହା ଥିଲା ଜାନକୀବଲ୍ଲଭଙ୍କ

ଗଭୀର ଅନ୍ତର୍ଦୃଷ୍ଟି ଓ ସମାଜ ପ୍ରତି ଏକ ସମ୍ବାଦପତ୍ରର ସଂପାଦକ ରୂପେ ନିଜର ଦାୟିତ୍ୱସଂପନ୍ନ ଭୂମିକା । ଯେଉଁ ସମୟ ରାଷ୍ଟ୍ରର ନବନିର୍ମାଣ ପର୍ବ ସେତେବେଳେ ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭକୁ ଅଧିକ ପ୍ରଭାବଶାଳୀ କରିବା ଦିଗରେ ଜାନକୀବଲ୍ଲଭଙ୍କ ଭୂମିକା ପ୍ରଶଂସନୀୟ ।

୧୯୬୦ ମସିହାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଟ୍ରଷ୍ଟ ଗଠନ ହୋଇଥିଲା । ପ୍ରଜାତନ୍ତ୍ରକୁ ଅଧିକ ବ୍ୟବସ୍ଥିତ କରିବା ଏହି ଟ୍ରଷ୍ଟ ଗଠନର ଲକ୍ଷ୍ୟ ଥିଲା । ଡକ୍ଟର ହରେକୃଷ୍ଣ ମହତାବ ଏହାର ଆଜୀବନ ଅଧ୍ୟକ୍ଷ ରହିଥିବାବେଳେ ଡକ୍ଟର ପ୍ରାଣକୃଷ୍ଣ ପରିଜା, ବନମାଳୀ ପଟ୍ଟନାୟକ ଓ ଗୋପୀନାଥ ଦାସଙ୍କ ସହ ଏଥିରେ ଅନ୍ୟତମ ଟ୍ରଷ୍ଟି ଥିଲେ ଜାନକୀବଲ୍ଲଭ ପଟ୍ଟନାୟକ । ସେ ମଧ୍ୟ କିଛି କାଳ ପ୍ରଜାତନ୍ତ୍ର ପ୍ରଚାର ସମିତିର ସେକ୍ରେଟାରୀ ରୂପେ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନିର୍ବାହ କରିଥିଲେ । ୧୯୬୭ ଫେବୃଆରୀ ୨୧ ତାରିଖରେ ଜାନକୀବଲ୍ଲଭ ପ୍ରଜାତନ୍ତ୍ର ସଂପାଦକ ପଦରୁ ବିଦାୟ ନେବା ସହ ସେହି ବର୍ଷ ସେପ୍ଟେମ୍ବର ୧୫ ତାରିଖରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଟ୍ରଷ୍ଟର ଟ୍ରଷ୍ଟି ପଦରୁ ଅବ୍ୟାହତି ନେଇଥିଲେ ।

ପ୍ରଜାତନ୍ତ୍ରରେ ସଂପାଦକ ରୂପେ ଶ୍ରୀ ପଟ୍ଟନାୟକ କାର୍ଯ୍ୟ କରୁଥିବାବେଳେ ଯେଉଁ କେତୋଟି ଆକର୍ଷଣୀୟ ସ୍ତମ୍ଭ ଆରମ୍ଭ କରାଯାଇଥିଲା, ତାହା ଥିଲା 'ଗ୍ରାମ-କୃଷି-କୃଷକ', 'ମନଗହନ' ଓ 'ଆନ୍ତର୍ଜାତିକ ସମୀକ୍ଷା' । ଏହି ଘଟଣାବହୁଳ ପର୍ଯ୍ୟାୟରେ ପ୍ରଜାତନ୍ତ୍ର 'ଗୋଆ ମୁକ୍ତି ସଂଗ୍ରାମ' (୧୯୬୦), ଚୀନ୍ ଆକ୍ରମଣ (୧୯୬୨) ଆଦି ସଂପର୍କରେ ସବିସ୍ତୃତ ବିବରଣୀ ପ୍ରକାଶ କରିବାଠାରୁ ଆରମ୍ଭ କରି '୧୮୫୭ ସ୍ୱାଧୀନତା ସଂଗ୍ରାମର ଶତବାର୍ଷିକ ବିଶେଷାଙ୍କ', 'ହୀରାକୁଦ ବନ୍ଧ ବିଶେଷାଙ୍କ' ଆଦି ସ୍ୱତନ୍ତ୍ର ସଂଖ୍ୟା ଆଜି ମଧ୍ୟ ଯେକୌଣସି ସଂବାଦପତ୍ରରେ ପ୍ରକାଶ ପାଇଥିବା ସ୍ୱତନ୍ତ୍ର ସଂଖ୍ୟା ଭିତରେ ଅନତିକ୍ରମ୍ୟ ହୋଇରହିଛି । 'ହୀରାକୁଦ ବନ୍ଧ ବିଶେଷାଙ୍କ' ସଂପର୍କରେ ଶ୍ରୀ ପଟ୍ଟନାୟକ ଉଲ୍ଲେଖ କରିଛନ୍ତି ଯେ "୧୯୫୬ ମସିହାରେ ହୀରାକୁଦ ବନ୍ଧ ଉଦ୍‌ଘାଟନ ଉପଲକ୍ଷେ ପ୍ରଜାତନ୍ତ୍ରରେ ୭୨ ପୃଷ୍ଠାର ଏକ ସ୍ୱତନ୍ତ୍ର ସଂଖ୍ୟା କରାଯାଇଥିଲା । ମୁଁ ତାହା ନେଇ ଅଶୋକ ନିବାସରେ ପଣ୍ଡିତ ନେହରୁଙ୍କୁ ଦେଇଥିଲି । ସେ ଏଥିରେ ଖୁବ୍ ଆନନ୍ଦ ପ୍ରକାଶ କରିଥିଲେ ।"

୧୯୬୧ ମସିହାରେ 'ସଂଜୟ' ଛଦ୍ମନାମରେ ସଂପାଦିତ 'ଆନ୍ତର୍ଜାତିକ ସମୀକ୍ଷା' ବିଭାଗ ଥିଲା ଅତି ଉଚ୍ଚକୋଟୀର । ପ୍ରକୃତରେ 'ନିରପେକ୍ଷତା- ପୃଥିବୀର ଏକ ବୈପ୍ଳବିକ ଶକ୍ତି', ବ୍ରିଟିଶ୍ ଗିନି- ସୁଦୂର ଆମେରିକାରେ ଭାରତୀୟ ଭୂମି', 'ନିରପେକ୍ଷ ସମ୍ମିଳନୀର ପତ୍ର', 'ଆମେରିକା-ନୂଆ ପରିବର୍ତ୍ତନର ଝଡ଼', 'ଆଫ୍ରିକା-ନବଜାତକର ସମସ୍ୟା', 'ଲାଓସ- ମହାର୍ଘ ବହୁଦର୍ଶିତା'ରେ ଅଭିନବ ରୀତିରେ ଯେଉଁ ଆନ୍ତର୍ଜାତିକ ସମସ୍ୟାଭିତ୍ତିକ ଲେଖା ପ୍ରକାଶ ପାଇଥିଲା, ତାହାର ଲେଖକ ଥିଲେ ଜାନକୀବଲ୍ଲଭ ପଟ୍ଟନାୟକ । ବିଦେଶନୀତି, ବିଦେଶ ରାଜନୀତି ଆଦି ସଂପର୍କରେ ତାଙ୍କର ଗଭୀର ଜ୍ଞାନ ଏଥିରେ ପ୍ରତିଫଳିତ ହୋଇଥିଲା । 'ସଂଜୟ' ଛଦ୍ମନାମରେ ସେ 'ଆନ୍ତର୍ଜାତିକ ସମୀକ୍ଷା'ରେ ଯେଉଁ ବିଷୟମାନ ଉପସ୍ଥାପନ କରୁଥିଲେ, ତାହା ଥିଲା ବିଶ୍ୱକୁ ଗବାକ୍ଷ । ପ୍ରଜାତନ୍ତ୍ରର ପାଠକମାନଙ୍କୁ ବିଶ୍ୱଜୀବନ ସହ ପରିଚୟ କରିବାର ଅଭିପ୍ରାୟ ସଂପାଦକଙ୍କ ଦୂରଦୃଷ୍ଟିକୁ ପ୍ରମାଣିତ କରିଥିଲା ।

'ବିଭିନ୍ନ ଜିଲ୍ଲା ସମ୍ବାଦ', 'ନୂତନ ମୁଦ୍ରାର ବିନିମୟ ତାଲିକା' , 'କଟକ ରେଳ ସମୟ', 'ପ୍ରବାସରେ ଓଡ଼ିଆ', 'ଆମ ନୂଆ ରାଜଧାନୀ', 'କଟନ ନଗର ସମାଚାର', 'ବିଭିନ୍ନ କଲେଜ ଖବର', 'ଅଭାବ ଅଭିଯୋଗ' ଆଦି ଶୀର୍ଷକ ଅନେକ ସ୍ତମ୍ଭ ସେ ନୂତନ ଭାବରେ ଆରମ୍ଭ କରିଥିଲେ। 'ପ୍ରଜାତନ୍ତ୍ର' କିପରି ସମାଜର ସବୁ ଶ୍ରେଣୀର ପାଠକଙ୍କଦ୍ୱାରା ଆକୃଷ୍ଟ ହେବ, ତାହାର ସୁଚିନ୍ତିତ ଯୋଜନା କରି ଏହାର ଲୋକପ୍ରିୟତା ବଢ଼ାଇବାପାଇଁ ସଂପାଦକ ଶ୍ରୀ ପଟ୍ଟନାୟକଙ୍କ ନେତୃତ୍ୱରେ ପ୍ରଜାତନ୍ତ୍ର ପରିଚାଳନା ମଣ୍ଡଳୀ ଯୋଜନାବଦ୍ଧ ଭାବରେ ଗ୍ରହଣ କରାଯାଇଥିଲା।

୧୯୫୫ ମସିହାର ମହାବନ୍ୟାରେ ସମ୍ବାଦପତ୍ର କିପରି ଭୂମିକା ଗ୍ରହଣ କରିବା ଦରକାର, ତାହା ପ୍ରଜାତନ୍ତ୍ର ଗ୍ରହଣ କରିଥିଲା। ୧୯୬୪ ଛାତ୍ର ଆନ୍ଦୋଳନବେଳେ ଶାସନକଳର ଦୁର୍ନୀତି ବିରୋଧରେ ପ୍ରଜାତନ୍ତ୍ର ମୁଖ୍ୟ ଭୂମିକା ଗ୍ରହଣ କରିଥିଲା ଓ ଏ କ୍ଷେତ୍ରରେ ସମର୍ଥ ସଂପାଦକର ଭୂମିକା ଗ୍ରହଣ କରିଥିଲେ ସଂପାଦକ ଜାନକୀବଲ୍ଲଭ ପଟ୍ଟନାୟକ। ସମାଜରେ ଦିଗ୍‌ଦର୍ଶକ ହେବାର ଭୂମିକାକୁ ସେ ନିଜ ବୃତ୍ତିଗତ ଜୀବନରେ ନିର୍ବାହ କରିଥିଲେ। ପରବର୍ତ୍ତୀ ସମୟରେ ଜଣେ ସଫଳ ଜନନେତା ଭାବରେ ପ୍ରତିଷ୍ଠା ପାଇବାରେ ଏହା ତାଙ୍କ ପାଇଁ ସହାୟକ ହୋଇଥିଲା। ଶ୍ରୀ ପଟ୍ଟନାୟକ ନିଜ ଭୂମିକା ସଂପର୍କରେ ଉଲ୍ଲେଖ କରିଥିଲେ, "ମୋ ସମୟରେ ପ୍ରଜାତନ୍ତ୍ରର ଇତିହାସ ଥିଲା ଏକ ସଂଗ୍ରାମର ଇତିହାସ। ଓଡ଼ିଶାର ସ୍ୱାଭିମାନ ଓ ଗରିମା ବୃଦ୍ଧି ପାଇଁ ଏବଂ ଏକ ନିର୍ଭୀକ ସଚ୍ଚୋଟ ସାମ୍ବାଦିକତା ଦୃଷ୍ଟିରୁ ପ୍ରଜାତନ୍ତ୍ର କାର୍ଯ୍ୟ କରୁଥିଲା। ମୁଁ କ୍ଷୁଦ୍ର ସମ୍ବାଦକୀୟ ଓ ଅଧିକ ସମ୍ବାଦ ଦେବା ଉପରେ ଗୁରୁତ୍ୱ ଦେଉଥିଲି। ସଂପାଦକୀୟରେ ସ୍ପଷ୍ଟ ମତ ପ୍ରକାଶ ପାଉଥିଲା। ମାତ୍ର ସମ୍ବାଦ ପରିବେଷଣରେ ନିରପେକ୍ଷତା ରକ୍ଷା କରିବା ମୋର କାର୍ଯ୍ୟ ଥିଲା। ପ୍ରଜାତନ୍ତ୍ରର ପ୍ରତିଷ୍ଠାତା ଭାବରେ ଏବଂ ନିଜେ ଜଣେ ସୁଲେଖକ ଓ ସୁସାମ୍ବାଦିକ ଭାବରେ ମହତାବବାବୁଙ୍କର ଅକୁଣ୍ଠ ସାହାଯ୍ୟ ଓ ସମର୍ଥନ ମୁଁ ସବୁବେଳେ ଲାଭ କରିଥିଲି।" (ପ୍ରଜାତନ୍ତ୍ର : ଏକ ସଂଗ୍ରାମର ଇତିହାସ–ପ୍ରଜାତନ୍ତ୍ର ସୁବର୍ଣ୍ଣ ଜୟନ୍ତୀ ସ୍ମାରକୀ ଗ୍ରନ୍ଥ : ୧୯୪୭-୧୯୯୭) ହଁ, ଶ୍ରୀ ପଟ୍ଟନାୟକଙ୍କ ସଂପାଦକୀୟରେ ଆଶା-ଆଶ୍ୱାସନାର ବାଣୀ ସହ ସାହିତ୍ୟ, ସଂସ୍କୃତି, ରାଜନୀତି, ଅର୍ଥନୀତି ଓ ସମାଜନୀତିଭିତ୍ତିକ ଲେଖାରେ ସଂଶୟଜନିତ ଛୋଟ ପ୍ରଶ୍ନବାଚୀଟିଏ ଉଙ୍କି ମାରିଥିବାର ଦେଖିବାକୁ ମିଳେ। 'ଅଗଣତାନ୍ତ୍ରିକ', 'ଆଦର୍ଶଗତ ଐକ୍ୟ', 'ଅବୈତନିକ ଶିକ୍ଷା', 'ଯୁଗର ଆହ୍ୱାନ', 'ଜଗନ୍ନାଥ ମନ୍ଦିର ସୁପରିଚାଳନା', 'ସିଂହଳରେ ନିର୍ବାଚନ', 'ଏ ଅଧୋଗତି କାହିଁକି ?' ଆଦି ଶୀର୍ଷକରେ ପ୍ରକାଶିତ ସଂପାଦକୀୟରେ ପାଠକମାନଙ୍କୁ ସଚେତନ କରିବାର ଏକ ମହତ୍ ଆଭିମୁଖ୍ୟକୁ ଗ୍ରହଣ କରାଯାଇଥିଲା।

ଜାନକୀବଲ୍ଲଭ ମଧ୍ୟ ଝଙ୍କାର ସଂପାଦନା ସହ ସଂପୃକ୍ତ ଥିଲେ। ଝଙ୍କାରର ୧୦ମ ବର୍ଷ, ୩ୟ ସଂଖ୍ୟା (ଜୁନ୍, ୧୯୫୮)ରେ ସଂପାଦନା ମଣ୍ଡଳୀରେ ଜାନକୀବଲ୍ଲଭଙ୍କ ନାମ ଉଲ୍ଲେଖ କରାଯାଇଥିଲା। ସେ ୧୩ବର୍ଷ ୪ର୍ଥ ସଂଖ୍ୟା ପର୍ଯ୍ୟନ୍ତ ଏହି ସଂପାଦନା ମଣ୍ଡଳୀର ସଦସ୍ୟ ରହିଥିଲେ। ଝଙ୍କାରର ଚତୁର୍ଥ ବର୍ଷ ପ୍ରଥମ ସଂଖ୍ୟାରେ ତାଙ୍କର 'ସ୍ତ୍ରୀ ଓ ତରୁଣୀ'

ଶୀର୍ଷକ କ୍ଷୁଦ୍ରଗଳ୍ପ ପ୍ରକାଶ ପାଇଥିବାବେଳେ ଏହି ପତ୍ରିକାରେ ତାଙ୍କ ଲିଖିତ 'ଦି' ବର୍ଷର ହିସାବ' (୧/୫), କୋରିଆ ଯୁଦ୍ଧ (୨/୫), କବି ଭର୍ତ୍ତୃହରି (୩/୭), ସମାଜ ଓ ସାହିତ୍ୟ (୧୬/୧), କାଳିଦାସ (୧୭/୧୦) ଶୀର୍ଷକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା।

ଜାନକୀବଲ୍ଲଭଙ୍କପାଇଁ ପ୍ରଜାତନ୍ତ୍ର ଏକ ସାଧାରଣ ସମ୍ବାଦପତ୍ର କିମ୍ବା ଅନୁଷ୍ଠାନ ନ ଥିଲା, ତାଙ୍କ ଜୀବନର ଅଂଶବିଶେଷ ହୋଇଯାଇଥିଲା। ପ୍ରଜାତନ୍ତ୍ର ତାଙ୍କ ଜୀବନର ବୃତ୍ତିଗତ କ୍ଷେତ୍ର କେବଳ ନ ଥିଲା। ଏହାର ପରିସରରେ ତାଙ୍କ ଜୀବନର ଅନେକ ମହାର୍ଘ ସମୟ ଅତିବାହିତ ହୋଇଛି। ପ୍ରଜାତନ୍ତ୍ର ପରିସର ଦେଖିଛି ତାଙ୍କ କର୍ମମୟ ଜୀବନର ଉତ୍ତରଣ ପର୍ବ। ବୈବାହିକ ଜୀବନଠାରୁ ରାଜନୀତିକ ଜୀବନର ପ୍ରାରମ୍ଭିକ ପର୍ଯ୍ୟାୟ। ରାଜନୀତି ଜୀବନରେ ଏଇଠି ବୀରେନ୍ ମିତ୍ରଙ୍କ ଠାରୁ ବନମାଳୀ ପଟ୍ଟନାୟକ, ନୀଳମଣି ରାଉତରାୟଙ୍କଠାରୁ ଚିନ୍ତାମଣି ପାଣିଗ୍ରାହୀ ଅନେକଙ୍କ ସହ ସଂପୃକ୍ତ ହେବାର ଅବକାଶ ମିଳିଥିଲା। ଏଠାରୁ ମିଳିଥିବା ଆତ୍ମପ୍ରତ୍ୟୟ ତାଙ୍କୁ ଧର୍ମଶାଳା ବିଧାନସଭା ନିର୍ବାଚନ ମଣ୍ଡଳୀରୁ ସ୍ୱାଧୀନପ୍ରାର୍ଥୀ ଭାବେ ନିର୍ବାଚନ ଲଢ଼ିବାପାଇଁ ପ୍ରେରଣା ଦେଇଥିଲା। ଏହିଠାରେ ସେ ଖୁବ୍ ନିକଟରୁ ଦେଖିଥିଲେ ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ରାଜନୀତିକ ଜୀବନ ଏବଂ ଏହି ଜୀବନର ଉତ୍ଥାନ ଓ ପତନକୁ। ପ୍ରତିକୂଳ ପରିସ୍ଥିତିକୁ ମୁକାବିଲା କରିବାର ସାମର୍ଥ୍ୟକୁ। ବାସ୍ତବ ଜୀବନର ଶିକ୍ଷା ହିଁ ମହତ୍ତର ଉପଲବ୍ଧି ଦେଇଥିଲା ତାଙ୍କୁ। ତାହା ହୋଇଥିଲା ତାଙ୍କ ସଫଳ ଜୀବନର ସବୁଠାରୁ ବଡ଼ ନିୟାମକ।

୧୯୪୯ରୁ ୧୯୬୭ - ଦୀର୍ଘ ବର୍ଷ ଧୁରୀଣ ସାମ୍ବାଦିକ ଭାବେ ନିଜେ ଦାୟିତ୍ୱ ନିର୍ବାହ କରିବା ଭିତରେ ଏକ ବିସ୍ତୃତ କ୍ଷେତ୍ରରେ କାମ କରିବାର ଯେଉଁ ସୁଯୋଗ ତାଙ୍କୁ ମିଳିଥିଲା; ତାହାକୁ ସେ ସଦୁପଯୋଗ କରି ସଫଳତାର ପାହାଚ ଚଢ଼ିଥିଲେ। ସଫଳ ସାରସ୍ୱତ ଜୀବନପାଇଁ ପ୍ରଜାତନ୍ତ୍ର ହିଁ ତାଙ୍କପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲା। ଏଠାରୁ ତାଙ୍କୁ ମିଳିଥିବା ଅନୁଭୂତି ପରବର୍ତ୍ତୀକାଳରେ 'ପୌରୁଷ' (ଜୁଲାଇ, ୧୯୬୭) ପରି ସଫଳ ପତ୍ରିକା ପ୍ରକାଶ ଓ ସଂପାଦନ ପାଇଁ ତାଙ୍କୁ ପ୍ରଚୋଦିତ କରିଥିଲା। ଏହି କ୍ଷେତ୍ରରେ ତାଙ୍କୁ ମିଳିଥିବା ବିପୁଳ ଅଭିଜ୍ଞତାର ଭିତ୍ତି ଉପରେ ସେ କେନ୍ଦ୍ରମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ବିରୋଧୀ ଦଳର ନେତା ଓ ରାଜ୍ୟପାଳ ଦାୟିତ୍ୱ ସୁଚାରୁରୂପେ ସଂପାଦନ କରିପାରିବାର ସାମର୍ଥ୍ୟ ଅର୍ଜନ କରିଥିଲେ ବୋଲି କୁହାଗଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ। ଅଦ୍ଭୁତ ସାଂଗଠନିକ ଦକ୍ଷତା, ଯାହା ତାଙ୍କ ଜୀବନର ସବୁଠାରୁ ବଡ଼ ଗୁରୁତ୍ୱପୂର୍ଣ୍ଣ ଦିଗ- ତାହାର ମୂଳଭିତ୍ତି ହିଁ ପ୍ରଜାତନ୍ତ୍ର ଦେଇଥିଲା। ସେଥିପାଇଁ ଆଜୀବନ ପ୍ରଜାତନ୍ତ୍ର ପ୍ରଚାର ସମିତି ତାଙ୍କ ପାଇଁ ସ୍ପନ୍ଦନଟିଏ ସୃଷ୍ଟି କରିଚାଲିଥିଲା।



# ସଂସ୍କାରବାଦୀ ଜାନକୀବଲ୍ଲଭ

ମୂଳ ଇଂରାଜୀ : ସ୍ୱାସ୍‌ବୀର ହୁସେନ୍
ଓଡ଼ିଆ ଅନୁବାଦ : ପ୍ରଶାନ୍ତ କୁମାର ବିଶ୍ୱାଳ

କେହି କେହି ମୃତ୍ୟୁ ପରେ ମଧ ଏ ପୃଥିବୀରେ ବଞ୍ଚି ରହନ୍ତି; ଜାନକୀବଲ୍ଲଭ ପଟ୍ଟନାୟକ ସେଇମାନଙ୍କ ମଧ୍ୟରେ ଜଣେ। ଏଭଳି ବ୍ୟକ୍ତିମାନେ ଅନନ୍ୟ ଜୀବନ ଦର୍ଶନ, ଚିନ୍ତାଧାରା ଓ ଆଦର୍ଶଦ୍ୱାରା ଅସାଧାରଣ ଜୀବନ ବଞ୍ଚିଥାଆନ୍ତି। ଜଣେ ମଣିଷ ଭାବରେ ଜାନକୀବାବୁଙ୍କର ମଧ ଦୋଷଦୁର୍ବଳତା ଥାଇପାରେ, ମାତ୍ର ଓଡ଼ିଶାର ଅଗ୍ରଗତିପାଇଁ ତାଙ୍କର ସ୍ୱାର୍ଥହୀନ ପ୍ରୟାସ ଏବଂ ଆମ ଦେଶର ସାମାଜିକ ଓ ରାଜନୀତିକ କ୍ଷେତ୍ରକୁ ତାଙ୍କର ଅବଦାନ ଅସୀମ ଏବଂ ଏହି ଅବଦାନ ତାଙ୍କର କିଞ୍ଚିତ୍ ଦୁର୍ବଳତାକୁ ମ୍ଳାନ କରିଛି। ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବେ ତାଙ୍କର ୧୫ ବର୍ଷର ଶାସନ ଓ ପରବର୍ତ୍ତୀ ସମୟରେ ଆସାମର ରାଜ୍ୟପାଳ ଭାବେ ତାଙ୍କର ଦକ୍ଷତା ଏହାକୁ ଯଥାର୍ଥଭାବେ ପ୍ରତିପାଦିତ କରିଅଛି।

୨୦୦୯ ମସିହା ଡିସେମ୍ବର ମାସରେ ଜାନକୀବାବୁ ଯେତେବେଳେ ଆସାମର ରାଜ୍ୟପାଳ ଭାବରେ ଦାୟିତ୍ୱ ଗ୍ରହଣ କରନ୍ତି, ସେତେବେଳେ ମୋର ତାଙ୍କ ସହ ପ୍ରଥମ ସାକ୍ଷାତ ହୁଏ। ପ୍ରଥମ ଦେଖାରେ ତାଙ୍କ ଭିତରେ ଥିବା ପ୍ରଜ୍ଞା, କରୁଣା, ବିଶ୍ୱଦୃଷ୍ଟିକୁ ଉପଲବ୍ଧି କରିପାରିଥିଲି। ଆସାମର ଉନ୍ନତି ଉପଲକ୍ଷେ ତାଙ୍କର ସ୍ୱତନ୍ତ୍ର ପରିକଳ୍ପନାକୁ ମଧ ଉପଲବ୍ଧି କରିପାରିଥିଲି। ମୋର ମନେ ଅଛି, ଆସାମର ସାମାଜିକ ବିଡ଼ମ୍ବନା, ଏ ରାଜ୍ୟର ସର୍ବାଙ୍ଗୀଣ ଉନ୍ନତିପାଇଁ ଯୋଜନା ସମ୍ପର୍କରେ ସେ ମୋ ସହ ଅନ୍ତରଙ୍ଗ ଆଳାପନା କରିଥିଲେ। ଓଡ଼ିଶାକୁ ଅର୍ଥନୈତିକ ଦୁର୍ଗତିରୁ ମୁଖ୍ୟମନ୍ତ୍ରୀ ଭାବେ ଜାନକୀବାବୁ ଓ ତାଙ୍କର ଅନୁଗାମୀମାନେ କିପରି ଉଦ୍ଧାର କରିଥିଲେ, ସେ ସଂପର୍କରେ ମଧ ମୋର ତାଙ୍କ ସହ ଆଲୋଚନା ହୋଇଛି। ପରବର୍ତ୍ତୀ ସମୟରେ ତାଙ୍କ ପରିକଳ୍ପିତ କିଛି ଯୋଜନାକୁ ଆସାମରେ ଯଥାର୍ଥ ରୂପାୟନ କରାଯାଇପାରିଛି।

ପଶ୍ଚିମ ଆସାମରେ ଅବସ୍ଥିତ ବାରପେଟା ସହରକୁ ୨୦୧୦ ମସିହା ଏପ୍ରିଲ ୪ ତାରିଖରେ ଜାନକୀବାବୁ ଗସ୍ତରେ ଆସିଥାଆନ୍ତି। ତାଙ୍କର ପରିଦର୍ଶନ ସ୍ଥଳ ଥିଲା ପାଟବଉସୀ ସତ୍ର। ଏକ ପ୍ରସିଦ୍ଧ ବୈଷ୍ଣବ ମଠ, ଯେଉଁଠାରେ ପଞ୍ଚଦଶ ଶତାବ୍ଦୀର ଦାର୍ଶନିକ ସନ୍ଥ ଶଙ୍କରଦେବ ତାଙ୍କ ଜୀବନର ୧୫ବର୍ଷ ଅତିବାହିତ କରିଥିଲେ। ତାଙ୍କର ଗାଡ଼ି ସଦଳବଳ ଯେତେବେଳେ ପାଟବଉସୀ ସତ୍ର ପରିସରରେ ପହଞ୍ଚେ, ତାଙ୍କୁ ଭବ୍ୟ ଓ ପାରମ୍ପରିକ ସ୍ୱାଗତ ଜଣାନ୍ତି ସତ୍ରାଧିକାରୀ, ଭକ୍ତବୃନ୍ଦ, ମଠର ଅନ୍ତେବାସୀଗଣ ଓ 'ସ୍ଥାନୀୟ ବାସିନ୍ଦାଗଣ' ସବୁ କୋଳାହଳ ଓ ବ୍ୟସ୍ତତା ଭିତରେ ଜାନକୀବାବୁଙ୍କ ଦୃଷ୍ଟିଟି ଯେଉଁ ଆଡ଼କୁ ଆକର୍ଷିତ ହୋଇଥିଲା, ସେ ସମ୍ପର୍କରେ ନିଜେ ଏକ ଆଳାପରେ କୁହନ୍ତି—

"ସତ୍ତ୍ରର ପ୍ରବେଶ ଦ୍ୱାର ନିକଟରେ ମୁଁ ଲକ୍ଷ୍ୟ କଲି ଯେ ଦଳ ଦଳ ହୋଇ ସ୍ତ୍ରୀଲୋକମାନେ ଠିଆ ହୋଇଥିଲେ। ମୁଁ ଜାଣିବାକୁ ପାଇଲି ଯେ ସେମାନଙ୍କୁ ସତ୍ତ୍ର ଭିତରକୁ ପ୍ରବେଶ ମନା।"

ଶଙ୍କରଦେବଙ୍କ ଦର୍ଶନ ଓ ବାଣୀ ବିଷୟରେ ତାଙ୍କର ଗଭୀର ଅଧ୍ୟୟନ ତାଙ୍କୁ ସ୍ଥିର-ନିଶ୍ଚିତ କରିଥିଲା ଯେ ଏହା ନାରୀମାନଙ୍କପାଇଁ ପକ୍ଷପାତିତା। ତେଣୁ, ସେ ସତ୍ତ୍ରାଧିକାରୀ ଓ ପାଟବଉସୀ ସତ୍ତ୍ରର ପରିଚାଳନା ସମିତିର ସଭ୍ୟମାନଙ୍କର ଏକ ବୈଠକ ଆୟୋଜନ କରିବାପାଇଁ ଅନୁରୋଧ କଲେ। ସେ ମତେ କହିଛନ୍ତି– ସତ୍ତ୍ରର କର୍ତ୍ତୃପକ୍ଷଙ୍କୁ ମୁଁ ବୁଝାଇବାକୁ ଚାହିଁଲି ଯେ ଶଙ୍କରଦେବ ନାରୀ ଓ ପୁରୁଷ ମଧ୍ୟରେ ପ୍ରଭେଦ ଦେଖୁ ନ ଥିଲେ ଓ ଧର୍ମୀୟ ଉପଚାରରେ ନାରୀମାନଙ୍କ ସଂଶ୍ଳିଷ୍ଟକୁ ପ୍ରୋତ୍ସାହିତ କରୁଥିଲେ। ସତ୍ତ୍ର କର୍ତ୍ତୃପକ୍ଷଙ୍କୁ ଏହା ଏକ ଅସ୍ୱାଭାବିକ ପରିସ୍ଥିତିରେ ପକାଇଲା। ଭାରତବର୍ଷର କିମ୍ବଦନ୍ତୀ ନାରୀ ଇନ୍ଦିରା ଗାନ୍ଧି, ଅମୃତା ପ୍ରୀତମ୍ ଓ ପ୍ରଖ୍ୟାତ ଅହମୀୟା ଲେଖିକା ଇନ୍ଦିରା ଗୋସ୍ୱାମୀଙ୍କୁ ମଧ୍ୟ ପୂର୍ବରୁ ପାଟବଉସୀ ସତ୍ତ୍ର ମଧ୍ୟକୁ ପ୍ରବେଶ ବାରଣ କରାଯାଇଥିଲା। ଏକ ପାରମ୍ପରିକ ଧାରଣା ଥିଲା ଯେ, ଋତୁସ୍ରାବ ସମୟରେ ନାରୀମାନେ ଅଶୁଦ୍ଧ ଓ ଅଶୌଚ ଏବଂ ବର୍ଷ ବର୍ଷ ଧରି ନାରୀମାନେ ସତ୍ତ୍ରର ପରିସରକୁ ପ୍ରବେଶ କରିପାରୁ ନ ଥିଲେ।

ଏସବୁ ସତ୍ତ୍ୱେ ସତ୍ତ୍ର କର୍ତ୍ତୃପକ୍ଷ ଉପଲବ୍ଧି କରିଥିଲେ ଯେ ରାଜ୍ୟପାଳ ଜାନକୀବାବୁଙ୍କ ଯୁକ୍ତିର ଯଥାର୍ଥତା ରହିଛି। ଶେଷରେ ଜାନକୀବାବୁଙ୍କ କଥା ରହିଲା। ଯୁଗଯୁଗର ନିଷିଦ୍ଧ ପ୍ରଥାକୁ ପରିହାର କରି ପାଟବଉସୀ ସତ୍ତ୍ର ନାରୀମାନଙ୍କୁ ଏହା ମଧ୍ୟକୁ ପ୍ରବେଶ କରିବାର ଅନୁମତି ପ୍ରଦାନ କଲେ। କାଳବିଳମ୍ବ ନ କରି ୨୦ଜଣ ନାରୀଙ୍କ ସହ ମହାମହିମ ରାଜ୍ୟପାଳ ପାଟବଉସୀ ସତ୍ତ୍ରର ପବିତ୍ର କୀର୍ତ୍ତନ ଘରକୁ ପ୍ରବେଶ କଲେ। ପରଦିନ ଗୌହାଟୀର ୫ଜଣ ନାରୀ ସତ୍ତ୍ର ମଧ୍ୟକୁ ପ୍ରବେଶ କରି ପୂଜାର୍ଚ୍ଚନା କଲେ ଓ ୫୧,୦୦୦ ଟଙ୍କାର ଅର୍ଥରାଶି ଦାନ କଲେ।

ବିଶ୍ୱ ଗଣମାଧ୍ୟମ ପ୍ରଶଂସାମୁଖର ହୋଇ ଲେଖିଲେ, 'ସଂସ୍କାରବାଦୀ ମହାମହିମ ରାଜ୍ୟପାଳ'। ଜାନକୀବାବୁ କିନ୍ତୁ ଏତିକିରେ ସନ୍ତୁଷ୍ଟ ହୋଇ ନ ଥିଲେ। କିଛି ସପ୍ତାହ ପରେ ଏକ ଉତ୍ସବରେ ମଞ୍ଚ ଉପରୁ ସେ ମତେ ଦେଖିଲେ ଓ ମଞ୍ଚକୁ ଯିବାପାଇଁ ଇସାରା ଦେଲେ। ଯେହେତୁ ଜାନକୀବାବୁ ବ୍ୟବସ୍ଥିତ ପରମ୍ପରାରେ ବିଶ୍ୱାସ କରୁ ନ ଥିଲେ। ହଜାର ହଜାର ଦର୍ଶକଙ୍କ ସାମ୍ନାରେ ମୁଁ ମଞ୍ଚ ଉପରକୁ ଗଲି। ସେ ମତେ ପରଦିନ କିଛି ସମୟ ତାଙ୍କ ସହ ଆଲୋଚନା କରିବାପାଇଁ ନିର୍ଦ୍ଦେଶ ଦେଲେ। ପରଦିନ ମଧ୍ୟାହ୍ନରେ ମୁଁ ଯେତେବେଳେ ତାଙ୍କୁ ରାଜଭବନରେ ସାକ୍ଷାତ କଲି, ସେ ମତେ କହିଲେ ଯେ, ପୂର୍ବ ଆସାମର ଶିବସାଗର ନିକଟରେ ଥିବା ସପ୍ତଦଶ ଶତାବ୍ଦୀର ମୁସଲମାନ ସନ୍ଥ ପ୍ରଚାରକ ଆଜାନ୍ ପୀର୍‌ଙ୍କ ଦରଘା ପରିଦର୍ଶନ କରିବାପାଇଁ ସେ ମନସ୍ଥ କରିଛନ୍ତି।

ଆଜାନ୍ ପୀର୍ ଆସାମର ଅନ୍ୟତମ ସମ୍ମାନନୀୟ ମୁସଲମାନ ସନ୍ଥ ଥିଲେ ଓ ସେ ବିଶ୍ୱ ଭ୍ରାତୃତ୍ୱ ଓ ମାନବବାଦର ପ୍ରଚାର କରୁଥିଲେ। ଦୀଖୋ ନଦୀକୂଳରେ ଅବସ୍ଥିତ ଏହି ଦରଘାକୁ ଉଭୟ ହିନ୍ଦୁ ମୁସଲମାନମାନେ ଦର୍ଶନପାଇଁ ଯାଇଥାନ୍ତି। ମୁଁ ଭାବିଲି ଜାନକୀବାବୁ ଆଜାନ୍ ପୀର୍‌ଙ୍କ ସଂପର୍କରେ ନିଶ୍ଚୟ ପଢ଼ିଛନ୍ତି ଓ ସେଥିପାଇଁ ଦରଘା ପରିଦର୍ଶନ କରିବାପାଇଁ ଇଚ୍ଛା ପ୍ରକାଶ

କରୁଛନ୍ତି । କିନ୍ତୁ ତାଙ୍କ ଭିତରେ ଥିବା ସଂସ୍କାରୀ ମଣିଷଟି ଆଉକିଛି ଚାହୁଁଥିଲା । ସେ ମତେ ପଚାରିଲେ ମସ୍‌ଜିଦ୍‌ଗୁଡ଼ିକରେ ପୁରୁଷମାନଙ୍କ ସହ ମିଶି ଆସାମର ମହିଳାମାନେ କାହିଁକି ନମାଜ୍ ପଢ଼ିପାରିବେନି ? ସେଥିପାଇଁ କିଛି ପ୍ରତିବନ୍ଧକ ଅଛି କି ?" ଅବଶ୍ୟ ସେଭଳି କିଛି ପ୍ରତିବନ୍ଧକ ନାହିଁ। କିନ୍ତୁ ପୁରୁଷ ଇମାମ୍‌ମାନଙ୍କ ତତ୍ତ୍ୱାବଧାନରେ ନମାଜ୍ ପଢ଼ିବାପାଇଁ ମସ୍‌ଜିଦ୍‌ଗୁଡ଼ିକରେ ମହିଳାମାନଙ୍କପାଇଁ ସ୍ୱତନ୍ତ୍ର ପ୍ରବେଶ ପଥ ଓ ପ୍ରାର୍ଥନା ପାଇଁ ସ୍ୱତନ୍ତ୍ର ସ୍ଥାନର ବ୍ୟବସ୍ଥା ନାହିଁ। ରାଜ୍ୟପାଳ ମହୋଦୟ ଦରଘା ପରିସରରେ ପୁରୁଷମାନଙ୍କ ସହ ମିଶି ନମାଜ ପାଠ ଓ ପ୍ରାର୍ଥନା କରିବାପାଇଁ ମହିଳାମାନଙ୍କୁ ସୁଯୋଗ ଦେବାର ବ୍ୟବସ୍ଥା ଆରମ୍ଭ କରିବାପାଇଁ ଦରଘା କର୍ତ୍ତୃପକ୍ଷଙ୍କୁ ସହମତ କରାଇପାରିଥିଲେ ।

ଫଳସ୍ୱରୂପ, ଆଜାନ୍ ପୀର୍‌ଙ୍କ ଦରଘା ପରିସରରେ ମୁସଲିମ୍ ମହିଳାମାନଙ୍କପାଇଁ ପ୍ରାର୍ଥନା କରିବାର ସ୍ୱଳ୍ପକାଳୀନ ବ୍ୟବସ୍ଥା କରାଗଲା ଓ କିଛି ମହିଳା ମଧ୍ୟ ନମାଜ ପାଠ କରିଥିଲେ । ଏହା ଏକ କ୍ଷୁଦ୍ର ପ୍ରୟାସ ହେଲେ ମଧ୍ୟ ନିଃସଂଦେହରେ ଐତିହାସିକ ପଦକ୍ଷେପ ।

ରାଷ୍ଟ୍ରନୀତିରେ ଏହି ବରିଷ୍ଠ ନେତାଙ୍କର ମଧ୍ୟ ଯଥେଷ୍ଟ ବ୍ୟୁତ୍ପତ୍ତି ଥିଲା । ୨୦୧୨ ମସିହା ଡିସେମ୍ବର ମାସରେ ସେ ବୋଡ଼ୋଲାଣ୍ଡ ଟେରିଟୋରିଆଲ କାଉନ୍‌ସିଲ (BTC)ର ନେତୃବର୍ଗଙ୍କ ସହ ଆଲୋଚନା କଲେ । ବୋଡ଼ୋ ଅଧ୍ୟୁଷିତ କୋକ୍ରୋଝର ଓ ଉତ୍ତର ଏବଂ ପଶ୍ଚିମ ଆସାମର ଜିଲ୍ଲାଗୁଡ଼ିକୁ ପରିଚାଳନା କରିବାପାଇଁ BTC ହେଉଛି ଏକ ରାଜନୈତିକ ଓ ପ୍ରଶାସନିକ ସ୍ୱୟଂଶାସିତ ପରିଷଦ । BTC ଉପମୁଖ୍ୟ କାମ୍ପା ବର୍ଗୋୟାରୀ ଓ ରାଜ୍ୟ ପରିବହନ ମନ୍ତ୍ରୀ ଚନ୍ଦନ ବ୍ରହ୍ମାଙ୍କୁ ସେ କହିଲେ ଯେ, ବିସ୍ଥାପିତ ମୁସଲମାନମାନଙ୍କ ପୁନଃ ଥଇଥାନ କରିବାପାଇଁ BTC ପ୍ରସ୍ତାବ ଗ୍ରହଣ କରିବା ଆବଶ୍ୟକ । ଉଲ୍ଲେଖଯୋଗ୍ୟ ଯେ, ସେତେବେଳେ ବେଡୋଲାଣ୍ଡ ପିପୁଲ୍‌ସ୍ ଫ୍ରଣ୍ଟ (BPF) ଶାସକ କଂଗ୍ରେସ ଦଳର ଅଂଶୀଦାର ଦଳ ଥିଲା ଓ ଚନ୍ଦନ ବ୍ରହ୍ମା BPFର ସଦସ୍ୟ ଥିଲେ । ସମ୍ବିଧାନ ଅନୁସାରେ ରାଜ୍ୟପାଳ ଷଷ୍ଠ ଅନୁସୂଚୀ ସମ୍ବନ୍ଧୀୟ ବ୍ୟାପାରରେ ହସ୍ତକ୍ଷେପ କରିବାର ସ୍ୱତନ୍ତ୍ର କ୍ଷମତା ପ୍ରୟୋଗ କରିପାରିବେ । ୨୦୧୨ ମସିହା ଜୁଲାଇ ମାସରୁ ଅଗଷ୍ଟ ମାସ ମଧ୍ୟରେ ହୋଇଥିବା ବୋଡୋ-ମୁସଲମାନ ସାଂପ୍ରଦାୟିକ ସଂଘର୍ଷରେ ଶହ ଶହ ଲୋକ ମୃତ୍ୟୁବରଣ କରିଥିଲେ ଓ ପ୍ରାୟ ୪୦,୦୦୦ ମୁସଲମାନ ଗୃହତ୍ୟାଗ କରିଥିଲେ । ଯେତେବେଳେ ଏହି ବିସ୍ଥାପିତ, ଦଂଗାଗ୍ରସ୍ତ ମୁସଲମାନମାନଙ୍କ ପୁନଃ ଥଇଥାନ ପ୍ରସଙ୍ଗ ଉଠିଲା, BTCର ନେତାମାନେ ଜମିର କାଗଜପତ୍ର ମୁଖ୍ୟ ଆଧାର ବୋଲି ଧରିବାକୁ ଯୁକ୍ତି କଲେ । ସେହି ନୀତି ଅନୁସାରେ ଜିଲ୍ଲା କର୍ତ୍ତୃପକ୍ଷ ଲୋକମାନଙ୍କର ବିଶେଷକରି ମୁସଲମାନମାନଙ୍କର ଜମିର ନଥିପତ୍ର ଯାଞ୍ଚ ଅଭିଯାନ ଆରମ୍ଭ କରିଦେଲେ । କହିବା ନିଷ୍ପ୍ରୟୋଜନ ଯେ, ବିସ୍ଥାପିତ ଲୋକମାନଙ୍କ ମଧ୍ୟରୁ ଅନେକଙ୍କ ପାଖରେ ଏହି କାଗଜପତ୍ର ନ ଥିଲା । ଖବର ଥିଲା ଯେ, ଏହିଭଳି ଅନେକ ଲୋକ ମାନସିକ ଯନ୍ତ୍ରଣାରେ ଥଇଥାନ କେନ୍ଦ୍ରରୁ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଇଥିଲେ ।

ରାଜ୍ୟପାଳ ମହୋଦୟ ଚାହୁଁଥିଲେ ଭୋଟର ତାଲିକାକୁ ଆଧାର କରି ଦଙ୍ଗାଗ୍ରସ୍ତମାନଙ୍କୁ ପୁନଃସ୍ଥାପିତ କରାଯାଉ ବୋଲି । ବୋଡ଼ୋ ନେତାମାନେ ରାଜ୍ୟପାଳଙ୍କ ଏହି ମତକୁ ଗ୍ରହଣ କରିପାରିଲେ ନାହିଁ । ସେମାନଙ୍କର ଯୁକ୍ତି ଥିଲା ଯେ, ଭୋଟର ତାଲିକା ତ୍ରୁଟିପୂର୍ଣ୍ଣ ହୋଇପାରିଥାଏ

ଏବଂ ଅନେକ ଅନୁପ୍ରବେଶକାରୀମାନଙ୍କର ନାମ ଏହି ଭୋଟର ତାଲିକାରେ ଅନ୍ତର୍ଭୁକ୍ତ ହୋଇଥାଇପାରେ । ତେଣୁ, ଭୋଟର ତାଲିକାକୁ ଆଧାର କରି ବିସ୍ଥାପିତମାନଙ୍କୁ ସେମାନଙ୍କର ପୂର୍ବର ବାସସ୍ଥାନକୁ ଫେରାଇଆଣିବା ଯୁକ୍ତିଯୁକ୍ତ ନୁହେଁ! କିନ୍ତୁ ଜଣେ ପୋଖତ ରାଜନେତା ମହାମହିମ ରାଜ୍ୟପାଳ ରାଜ୍ୟ ଶାସନର ବିଧି ଓ ନିମୟଗୁଡ଼ିକ ସମ୍ପର୍କରେ ସଂପୂର୍ଣ୍ଣ ଅବଗତ ଥିଲେ । ସେ ମଧ୍ୟ ଖୁବ୍ ପ୍ରତ୍ୟୁତ୍ପନ୍ନମତି ଥିଲେ । ସେ ଯୁକ୍ତି କଲେ ଯେ, BTCର ଦୁଇ ଦୁଇ ଥର ନିର୍ବାଚନ ମଧ୍ୟ ଭୋଟର ତାଲିକା ଆଧାରରେ ହୋଇଛି । ତେଣୁ ଏହି ନିର୍ବାଚନର ବୈଧତାକୁ ମଧ୍ୟ ସେହି ଦୃଷ୍ଟିରୁ ପ୍ରଶ୍ନ କରାଯାଇପାରେ । ଯଦିଓ ଦଙ୍ଗାଗ୍ରସ୍ତମାନଙ୍କ ପୁନର୍ବାସ ପାଇଁ ମୌଖିକ ନିର୍ଦ୍ଦେଶ ସରକାରଙ୍କର ଥିଲା, ରାଜ୍ୟପାଳ ପଟ୍ଟନାୟକ ସେଥିରେ ସନ୍ତୁଷ୍ଟ ହେଲେ ନାହିଁ । ଭୋଟର ତାଲିକା ଆଧାରରେ ବିସ୍ଥାପିତମାନଙ୍କୁ ଥଇଥାନ କରିବାପାଇଁ ଆସାମର ମୁଖ୍ୟ ଶାସନ ସଚିବଙ୍କୁ ନିର୍ଦ୍ଦେଶ ଦେଲେ ।

ରାଜ୍ୟପାଳ ପଟ୍ଟନାୟକ ବିଚକ୍ଷଣ ରାଜନେତା ଥିଲେ ସମସ୍ୟାର ସମାଧାନ ପାଇଁ ଏହାର ଉତ୍ସର ବିଶ୍ଳେଷଣ କରିପାରୁଥିଲେ । ବୋଡ଼ୋ ଅଧ୍ୟୁଷିତ ଅଞ୍ଚଳରେ ଯେତେବେଳେ ସାଂପ୍ରଦାୟିକ ସଂଘର୍ଷ ଚାଲିଥିଲା, ସେତେବେଳେ ସେ ଅବୈଧ ଅସ୍ତ୍ର କାରବାର ଏଭଳି ହିଂସାକୁ ବ୍ୟାପକ କରୁଛି ବୋଲି ଅନୁଭବ କରିଥିଲେ । ସେ କହିଥିଲେ ଯେ, ଯଦି ପର୍ଯ୍ୟାପ୍ତ ଭାବେ ବ୍ୟବହାର ହେଉଥିବା ଏଭଳି ମାରଣାସ୍ତ୍ରଗୁଡ଼ିକୁ ଜବତ କରା ନ ଯାଏ, ସାଂପ୍ରଦାୟିକ ହିଂସାକୁ ରୋକିବା କଷ୍ଟକର ହେବ । ତେଣୁ, ଘରକୁ ଘର ତଲାସ କରି ଅବୈଧ ମାରଣାସ୍ତ୍ରଗୁଡ଼ିକୁ ଜବତ କରିବାପାଇଁ ସେ ରାଜ୍ୟ ପୋଲିସ୍ ମହାନିର୍ଦ୍ଦେଶକଙ୍କୁ ସ୍ପଷ୍ଟଭାବେ ନିର୍ଦ୍ଦେଶ ଦେଲେ । ଏହି ତଲାସି ବ୍ୟାପାରରେ କୌଣସି ବ୍ୟକ୍ତିର ପ୍ରତିଷ୍ଠା ଓ କ୍ଷମତା ଯେପରି ଅନ୍ତରାୟ ନ ହୁଏ, ସେଥିପ୍ରତି ଧ୍ୟାନ ଦେବାକୁ ମଧ୍ୟ ସେ ପରାମର୍ଶ ଦେଲେ । ରାଜ୍ୟପାଳଙ୍କ ଏହି ନିର୍ଦ୍ଦେଶ ସହ ଯଦିଓ ବୋଡ଼ୋ ପରିଷଦ ସହମତ ନ ଥିଲା, ଏହି ତଲାସି ଅଭିଯାନରେ କିନ୍ତୁ ଫଳ ମିଳିଲା । ସାଂପ୍ରଦାୟିକ ଦଙ୍ଗା ଆଶ୍ଚର୍ଯ୍ୟଜନକ ଭାବେ ହ୍ରାସ ପାଇଲା; ବିଶେଷକରି, ଯେତେବେଳେ ଜଣେ ସ୍ଥାନୀୟ ନିର୍ବାଚିତ ପ୍ରତିନିଧିଙ୍କୁ ବେଆଇନ ଅସ୍ତ୍ର ରଖିବା ଅଭିଯୋଗରେ ଗିରଫ କରାଗଲା ।

ପରେ ଚର୍ଚ୍ଚାକୁ ଆସିଥିଲେ କେନ୍ଦ୍ର ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଜୟରାମ ରମେଶ । ସେ ସର୍ବସାଧାରଣରେ ଘୋଷଣା କଲେ ଯେ, ରାଜ୍ୟ ସରକାର ପୂର୍ବ ଆସାମର ତିନ୍‌ସୁକିଆ ଓ ଦିବ୍ରୁଗଡ ଜିଲ୍ଲା ଦୁଇଟିକୁ ମାଓ ଅଧ୍ୟୁଷିତ ଜିଲ୍ଲା ଭାବେ ଘୋଷଣା କରିବା ଉଚିତ୍ । ଏହି ଘୋଷଣା ବଳରେ ଏହି ଜିଲ୍ଲା ଦୁଇଟି ସ୍ୱତନ୍ତ୍ର ସାହାଯ୍ୟ ପାଇଁ ଯୋଗ୍ୟ ହେବେ ବୋଲି ସେ କହିଲେ । ଏହା ୨୦୧୨ ମସିହା ଶେଷ ବେଳର କଥା ।

କିନ୍ତୁ ୨୦୧୨ ମସିହା ଜୁନ୍ ୧୧ ତାରିଖରେ ରାଜ୍ୟପାଳ ପଟ୍ଟନାୟକ (ଚିଠି ସଂଖ୍ୟା GSAG : OFF/1/2010) ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀଙ୍କୁ ତିନ୍‌ସୁକିଆ ଜିଲ୍ଲାର ସାଦିଆ ଭଳି ଦୁର୍ଗମ ଅଞ୍ଚଳଗୁଡ଼ିକରେ ଯୋଗାଯୋଗ ବ୍ୟବସ୍ଥାର ଉନ୍ନତୀକରଣ ପାଇଁ ଚିଠି ଲେଖିଥିଲେ । ପ୍ରକାଶଯୋଗ୍ୟ, ସାଦିଆ ଅଞ୍ଚଳ ବର୍ତ୍ତମାନ ଏକ ମାଓପ୍ରବଣ ଜାଗା ।

ସୁରକ୍ଷା ବ୍ୟାପାରରେ ମଧ୍ୟ ରାଜ୍ୟପାଳ ପଟ୍ଟନାୟକଙ୍କ ବିଚାର ବେଶ୍ ସ୍ପଷ୍ଟ ଥିଲା। ଅକ୍ଟୋବର ୨୯-୩୦, ୨୦୧୧ରେ ନୂଆଦିଲ୍ଲୀର ରାଷ୍ଟ୍ରପତି ଭବନରେ ଅନୁଷ୍ଠିତ ରାଜ୍ୟପାଳମାନଙ୍କ ସମ୍ମିଳନୀରେ 'ଗୁପ୍ତ' ଶୀର୍ଷକ ତାଙ୍କର ତେର ପୃଷ୍ଠା ବ୍ୟାପୀ ଲିଖିତ ଭାଷଣରେ ଆସାମର ସୁରକ୍ଷା ବ୍ୟବସ୍ଥା କିପରି ଅସ୍ୱାଭାବିକ୍, ତାହା ଦର୍ଶାଇଥିଲେ। ଏଥିମଧ୍ୟରୁ ତିନିପୃଷ୍ଠା ଥିଲା, ରାଜ୍ୟରେ ହିଂସାତ୍ମକ ଓ ବିଦ୍ରୋହାତ୍ମକ କାର୍ଯ୍ୟ ସଂପର୍କିତ ସବିଶେଷ ବିବରଣୀ। ତାଙ୍କ ଭାଷଣରେ ସେ ସ୍ପଷ୍ଟ ଭାବେ ଚେତେଇ ଦେଇଥିଲେ ଯେ, ଉଲ୍‌ଫା ବିଦ୍ରୋହୀ ଓ ଅନ୍ୟ ଜନଗୋଷ୍ଠୀ ବିଦ୍ରୋହୀମାନଙ୍କ ସହ ଶାନ୍ତି ଆଲୋଚନା ଚାଲିଛି ବୋଲି କହି ରାଜ୍ୟ ପ୍ରଶାସନ ଚୁପ୍ ହୋଇ ବସିବା ଅନୁଚିତ।

ରାଜନୈତିକ ବାଦବିସମ୍ବାଦରୁ ଦୂରେଇ ରହିବା ଉଦ୍ଦେଶ୍ୟରେ ସାଧାରଣତଃ ରାଜ୍ୟପାଳମାନେ ସେମାନଙ୍କର ମୁକ୍ତମତ ରଖିବାରେ କୁଣ୍ଠାପ୍ରକାଶ କରିଥାନ୍ତି। କିନ୍ତୁ ଏଭଳି ମତ ପ୍ରକାଶ କରିବାରେ ଜାନକୀବଲ୍ଲଭ ଥିଲେ ବେଶ୍ ସ୍ପଷ୍ଟ ଓ ନିର୍ଭୀକ। ଖରାପକୁ ଖରାପ ବୋଲି କହିବାର ସେ ଦ୍ୱିଧା ପ୍ରକାଶ କରୁ ନ ଥିଲେ। ରାଜଭବନରେ ଥରେ ମୋ ସହ ଏକ ଦୀର୍ଘ ଆଲୋଚନାକୁ ତାଙ୍କର ମନନଶୀଳତା ଓ ଗଭୀର ଅନୁଭବକୁ ମୁଁ ଉପଲବ୍ଧି କରିପାରିଥିଲି। ଆଲୋଚନାଟିର ସଂକ୍ଷିପ୍ତ ଅବତାରଣା ଏହିପରି : ଆସାମର ଦଙ୍ଗା ମତେ ବ୍ୟଥିତ କରିଛି। ମଣିଷମାନେ ମଣିଷମାନଙ୍କୁ ହତ୍ୟା କରିବା ସତରେ କେତେ ଦୁର୍ଭାଗ୍ୟଜନକ ଓ ମର୍ମନ୍ତୁଦ।" ୨୦୧୨ ମସିହା ଜୁଲାଇ-ଅଗଷ୍ଟ ମଧ୍ୟରେ ବୋଡ଼ୋ ଜନଜାତି ଓ ମୁସଲମାନମାନଙ୍କ ମଧ୍ୟରେ ଉତ୍ତର ଓ ପଶ୍ଚିମ ଆସାମରେ ଘଟିଥିବା ସାଂପ୍ରଦାୟିକ ଦଙ୍ଗା ସମ୍ପର୍କରେ ସେ କହିଥିଲେ। ସେ ଅନୁଭବ କରିଥିଲେ ଯେ ବୋଡୋ ଓ ମୁସଲମାନ ବାସିନ୍ଦାମାନଙ୍କ ମଧ୍ୟରେ ଘଟୁଥିବା ଏହି ଗୋଷ୍ଠୀ ବିଦ୍ୱେଷ ଓ ସାଂପ୍ରଦାୟିକ ବିଭେଦର ମୂଳ ହେଉଛି ଜମି। ମୁସଲମାନ ବାସିନ୍ଦାମାନେ ବୋଡ଼ୋ ଅଧ୍ୟୁଷିତ ଅଞ୍ଚଳକୁ ଆପେ ଆପେ ଆସିଥାଇପାରନ୍ତି, କି ବୋଡ଼ୋମାନେ ତାଙ୍କୁ ସେମାନଙ୍କର ଜମିଚାଷ କରିବାପାଇଁ ଆଣିଥାଇପାରନ୍ତି; ପ୍ରକୃତ କଥା ହେଉଛି, ବୋଡୋ ଅଞ୍ଚଳରେ ସେମାନଙ୍କର ବସତିସ୍ଥାପନଦ୍ୱାରା ଚାଷଜମି ପରିମାଣ ଦ୍ରୁତ ଗତିରେ ହ୍ରାସ ପାଉଛି ଓ ଜମି ପାଇଁ ବିବାଦ ଦିନକୁ ଦିନ ତୀବ୍ର ହେଉଛି। ସେ ସ୍ପଷ୍ଟଭାବରେ କହିଥିଲେ ଯେ ବାଂଲାଦେଶ ଦେଶାନ୍ତରୀ ଓ ଅନୁପ୍ରବେଶକାରୀଙ୍କପାଇଁ ଆସାମରେ ଉପୁଜିଥିବା ସମସ୍ୟାକୁ ଆଡ଼େଇ ଦେଇ ହେବ ନାହିଁ। ଯଦିଓ ସୀମା ସୁରକ୍ଷା ବାହିନୀ ସୀମାନ୍ତ ଜଗି ରହିଛନ୍ତି, ମୋର ବ୍ୟକ୍ତିଗତ ମତ ଯେ, ରାଜ୍ୟ ପୋଲିସଦ୍ୱାରା ଦ୍ୱିତୀୟ ସ୍ତରର ସୁରକ୍ଷା ବ୍ୟବସ୍ଥା କରାଯିବା ଆବଶ୍ୟକ। ସ୍ଥାନୀୟ ପୋଲିସ୍ ଅନୁପ୍ରବେଶକାରୀଙ୍କୁ ଭଲଭାବେ ଚିହ୍ନିପାରିବେ ଓ ପୁରୁଣା ବାସିନ୍ଦା ଓ ସେମାନଙ୍କ ମଧ୍ୟରେ ପ୍ରଭେଦକୁ ମଧ୍ୟ ଜାଣିପାରିବେ। ସେ ରାଜ୍ୟପାଳ ଥିବା ସମୟରେ ଆସାମ ସମ୍ମୁଖୀନ ହେଉଥିବା ମୁଖ୍ୟ ସମସ୍ୟା ସମ୍ପର୍କରେ ତାଙ୍କର ଗଭୀର ଅନୁଶୀଳନ ଓ ସ୍ପଷ୍ଟ ମତ ଥିଲା।

ହଁ, ଜାନକୀବଲ୍ଲଭ ପଟ୍ଟନାୟକ ଅନେକ ସୁଗୁଣର ଅଧିକାରୀ ଥିଲେ। କିନ୍ତୁ, ଭାରତବର୍ଷର ଅନ୍ୟ ପରିପକ୍ୱ ରାଜନେତା ଓ ତାଙ୍କ ମଧ୍ୟରେ ପ୍ରଭେଦ ଥିଲା; ତାଙ୍କର ସ୍ପଷ୍ଟ, ନିର୍ଭୀକ ଓ ଦ୍ୱିଧାହୀନ ମତପ୍ରକାଶ।



# କଲିକତାରେ ଜାନକୀବଲ୍ଲଭ ପଟ୍ଟନାୟକ

**କୃଷ୍ଣଚନ୍ଦ୍ର ଭୂୟାଁ**

୧୯୬୨। ମୋର ସେତେବେଳେ କଟକରେ ଛାତ୍ରଜୀବନ। ପ୍ରଜାତନ୍ତ୍ର ପ୍ରଚାର ସମିତି ଆୟୋଜିତ ବିଷୁବ ମିଳନ ଉତ୍ସବରେ ପ୍ରବନ୍ଧ ପୁରସ୍କାର ପାଇଁ ମୋ ନାମ ଘୋଷିତ ହୋଇଥିଲା। ପୁରସ୍କାର ଗ୍ରହଣ କରିବାକୁ ମୁଁ ଉତ୍ସବରେ ଯୋଗଦେଇପାରି ନ ଥିଲି। କେଇଦିନ ପରେ ମୁଁ ପ୍ରଜାତନ୍ତ୍ର କାର୍ଯ୍ୟାଳୟରେ ସଂପାଦକଙ୍କୁ ଭେଟିଲି। ସେ ସେଦିନର ସଂପାଦକୀୟ ମୁହେଁ ମୁହେଁ କହୁଥିଲେ ଏବଂ ସହ-ସଂପାଦକ ଗୋବିନ୍ଦ ଦାସ ତାହା ଲେଖୁଥିଲେ। ଲେଖା ଶେଷ ହେବାପରେ ସଂପାଦକଙ୍କୁ ମୁଁ ସାକ୍ଷାତର ଅଭିପ୍ରାୟ କହିଲି ଏବଂ ତାଙ୍କ ହାତରୁ ପୁରସ୍କାର ଗ୍ରହଣ କଲି। ଦୈନିକ ପ୍ରଜାତନ୍ତ୍ରର ସେହି ସଂପାଦକ ଥିଲେ ଜାନକୀବଲ୍ଲଭ ପଟ୍ଟନାୟକ। ଶାନ୍ତ, ସୌମ୍ୟ, ସ୍ୱଚ୍ଛ, ପବିତ୍ର ଚେହେରା, ପରିହିତ ଧୋତି ପଞ୍ଜାବି। ତା'ପରଠାରୁ ମୁଁ ଦୈନିକ ପ୍ରଜାତନ୍ତ୍ରର ସଂପାଦକୀୟ ପଢ଼ିବାକୁ ଆରମ୍ଭ କଲି । ତାହା ଥିଲା ମନନଶୀଳ, ଉଦ୍ଦୀପ୍ତ, ଗୋଟିଏ ସ୍ତମ୍ଭରେ ସୀମିତ। ଅନ୍ୟ ସମ୍ବାଦପତ୍ରର ସଂପାଦକୀୟଠାରୁ ସ୍ୱତନ୍ତ୍ର।

ମୁଁ କଟକରୁ କଲିକତା ଆସିଲି ଅଧ୍ୟାପନା କରିବାକୁ ୧୯୬୫ରେ। କଲିକତାରେ ଜାନକୀବାବୁଙ୍କ ସଂପର୍କରେ ଆସିଲି ଅନେକଦିନ ପରେ। ସେତେବେଳକୁ ସେ ରାଜନୀତିରେ ପ୍ରବେଶ କରିଛନ୍ତି, ଜାତୀୟସ୍ତରରେ ପରିଚିତ ହୋଇଛନ୍ତି, କେନ୍ଦ୍ରମନ୍ତ୍ରୀ ହୋଇଛନ୍ତି, ଓଡ଼ିଶାରେ ମୁଖ୍ୟମନ୍ତ୍ରୀର ଦାୟିତ୍ୱ ତୁଲାଇଛନ୍ତି ଏବଂ ସେହି ସଙ୍ଗେ ସଙ୍ଗେ ଜଣେ ଯଶସ୍ୱୀ ଲେଖକ ଓ ବିଦ୍ୱାନ୍ ଭାବରେ ପ୍ରତିଷ୍ଠିତ ହୋଇଛନ୍ତି। ଉଭୟ କ୍ଷେତ୍ରରେ, ରାଜନୀତି ଓ ସାହିତ୍ୟ କ୍ଷେତ୍ରରେ ସବ୍ୟସାଚୀତ୍ୱ ପ୍ରମାଣ କରିଛନ୍ତି ପଣ୍ଡିତ ନୀଳକଣ୍ଠ ଦାସ ଓ ହରେକୃଷ୍ଣ ମହତାବଙ୍କ ଭଳି। ଓଡ଼ିଆ, ବଙ୍ଗଳା, ହିନ୍ଦୀ, ସଂସ୍କୃତ, ଇଂରାଜୀ ଭାଷା ସାହିତ୍ୟରେ ତାଙ୍କର ପାଣ୍ଡିତ୍ୟ ଥିଲା। ପରେ ଅସମୀୟା ଭାଷା ସାହିତ୍ୟରେ ବି। ତାଙ୍କର କବିତା ପୁସ୍ତକ ସିନ୍ଧୁ ଉପତ୍ୟକା, ପ୍ରବନ୍ଧ ସଂକଳନ ଓ ଅନ୍ୟାନ୍ୟ କେତେକ ଗ୍ରନ୍ଥ ବଙ୍ଗଳାରେ ଅନୂଦିତ ହୋଇ ପ୍ରକାଶିତ ହୋଇଥିଲା ଓ ଜନାଦୃତ ମଧ୍ୟ ହୋଇଥିଲା। ତାଙ୍କର ବହୁମୁଖୀ କର୍ମ, ପ୍ରତିଭା ଓ ସାହିତ୍ୟ ସୃଷ୍ଟିକୁ ନେଇ ଲେଖକ ଡକ୍ଟର ଗୋବିନ୍ଦ ଭୂୟାଁଙ୍କ ରଚିତ ସାର୍ଥକସାରଥି ବଙ୍ଗଳାରେ ମଧ୍ୟ ଅନୂଦିତ ହୋଇ ପ୍ରକାଶିତ ହୋଇଥିଲା। ଭାରତୀ ନନ୍ଦୀ ହେଉଛନ୍ତି ଏହି ପୁସ୍ତକର ବଙ୍ଗଳା ଅନୁବାଦିକା। ସେ ଅନୁବାଦ ପାଇଁ ସାହିତ୍ୟ ଏକାଡେମୀ ପୁରସ୍କାର ଗ୍ରହଣ କରିଛନ୍ତି। କଲିକତାର ବେଶ୍ ଜଣାଶୁଣା ପ୍ରକାଶନୀ ସଂସ୍ଥା 'ନାଥ ପବ୍ଲିଶିଂ' ପୁସ୍ତକର ପ୍ରକାଶକ। ଏହି ପୁସ୍ତକର ଉନ୍ମୋଚନ କଲିକତା ପୁସ୍ତକ ମେଳାରେ ଏକ ବର୍ଣ୍ଣାଢ଼୍ୟ ଉତ୍ସବରେ ଅନୁଷ୍ଠିତ ହୋଇଥିଲା। ଭାରତର ପୂର୍ବତନ ଶିକ୍ଷାମନ୍ତ୍ରୀ ତଥା ବିଶିଷ୍ଟ ବିଦ୍ୱାନ୍ ପ୍ରତାପ ଚନ୍ଦ୍ର ଚନ୍ଦ୍ର ଏହି ପୁସ୍ତକକୁ ଉନ୍ମୋଚନ କରିଥିଲେ। ଓଡ଼ିଶାରୁ ପ୍ରତିଷ୍ଠିତ ସାହିତ୍ୟିକଙ୍କ ସମେତ ବଙ୍ଗଳା ସାହିତ୍ୟର ବହୁ ଖ୍ୟାତନାମା ବ୍ୟକ୍ତି ଏହି ସଭାରେ ଯୋଗଦେଇଥିଲେ। ଉନ୍ମୋଚନ

ଉତ୍ସବରେ ଜାନକୀବାବୁ ମଧ୍ୟ ଉପସ୍ଥିତ ଥିଲେ। ବଙ୍ଗଳା ପତ୍ରପତ୍ରିକାରେ ସେହି ବହିଗୁଡ଼ିକୁ ସମୀକ୍ଷା ମଧ୍ୟ ପ୍ରକାଶିତ ହୋଇଥିଲା ଏବଂ ଏହି ସମୟ ବଙ୍ଗଳା ପତ୍ରିକାରେ ମୁଁ ତାଙ୍କର ପ୍ରବନ୍ଧ ସଂକଳନର ଦୀର୍ଘ ସମାଲୋଚନା ମଧ୍ୟ ପ୍ରକାଶ କରିଥିଲି। ଉଭୟ ବଙ୍ଗଳା ଓ ଆସାମରେ ସେ ଜଣେ ବାଗ୍ମୀ ପୁରୁଷ ଓ ବିଶିଷ୍ଟ ସାହିତ୍ୟ ସାଧକ ଭାବେ ସମ୍ମାନିତ ହୋଇଥିଲେ।

ରବୀନ୍ଦ୍ରନାଥ ଠାକୁର ଓଡ଼ିଶାର ଜଗତ୍‌ସିଂହପୁର ଅନ୍ତର୍ଭୁକ୍ତ ପଣ୍ଡୁଆ ଜମିଦାରୀ ପରିଚାଳନା କରିବାକୁ ଯାଇ ବିଭିନ୍ନ ସମୟରେ ପୁରୀରେ ଅବସ୍ଥାନ କରୁଥିଲେ। ସେଇଠି ସେ ପ୍ରାୟ ୨୦ଟି କବିତା ଲେଖିଥିଲେ ଏବଂ ଆତ୍ମୀୟମାନଙ୍କ ନିକଟକୁ କେତେଗୁଡ଼ିଏ ସ୍ମରଣୀୟ ଚିଠି ଲେଖିଥିଲେ। ପରେ ରବୀନ୍ଦ୍ରନାଥଙ୍କ ପ୍ରତିଷ୍ଠିତ ଶାନ୍ତିନିକେତନରେ ସ୍ନାତକୋତ୍ତର ଓଡ଼ିଆ ବିଭାଗ ଖୋଲାଯାଇଥିଲା। ପ୍ରଫେସର ଖଗେଶ୍ୱର ମହାପାତ୍ର ବିଭାଗୀୟ ମୁଖ୍ୟ ଥିବା ସମୟରେ ଓଡ଼ିଆ ସାହିତ୍ୟ ଉତ୍ସବ ଅନୁଷ୍ଠିତ ହୋଇଥିଲା। ବିଶ୍ୱଭାରତୀର କର୍ତ୍ତୃପକ୍ଷ ଓ ଓଡ଼ିଆ ବିଭାଗର ଅନୁରୋଧରେ ସେହି ସାହିତ୍ୟ ଉତ୍ସବରେ ଜାନକୀବାବୁ ଯୋଗଦେଇଥିଲେ ଏବଂ ତାହା ଉଦ୍‌ଘାଟନ କରିଥିଲେ। ସେତେବେଳେ ଜାନକୀବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ ବିଶ୍ୱଭାରତୀର ଉପାଚାର୍ଯ୍ୟ ଐତିହାସିକ ନିମାଇଁ ସାଧନ ବସୁ। ଉତ୍ସବରେ ବହୁ ପ୍ରବୀଣ ଓ ନବୀନ ଓଡ଼ିଆ ଓ ବଙ୍ଗାଳୀ ଲେଖକ ଯୋଗଦେଇଥିଲେ। ଉତ୍ସବଟି ଥିଲା ସ୍ମରଣୀୟ ଓ ଐତିହାସିକ। ଉପାଚାର୍ଯ୍ୟ ଇଂରାଜୀରେ ଭାଷଣ ଦେଲାବେଳେ ଶ୍ରୋତାମାନେ ସ୍ତବ୍ଧ ହୋଇ ଶୁଣୁଥିଲେ। ତାହାପରେ ଭାଷଣ ଦେଇଥିଲେ ମୁଖ୍ୟ ଅତିଥି ଜାନକୀବଲ୍ଲଭ ପଟ୍ଟନାୟକ। ସେ ଭାଷଣ ଦେଲେ ସଂସ୍କୃତରେ। ସେହି ଭାଷଣ ଶୁଣି ଶ୍ରୋତାମାନେ ଚକିତ ହୋଇଥିଲେ, ମନ୍ତ୍ରମୁଗ୍ଧ ମଧ୍ୟ ହୋଇଥିଲେ। ଏହାପରେ ଜାନକୀବାବୁଙ୍କ ଭାଷଣ ଶାନ୍ତିନିକେତନର ଆଲୋଚନା ପରିସରକୁ ଆସିଥିଲା ଅନେକଦିନ ପର୍ଯ୍ୟନ୍ତ। ଜାନକୀବାବୁଙ୍କ ଭାଷଣର ଶେଷକଥା ଥିଲା ଆଶ୍ରମକୁ ଆସିଲେ ଦକ୍ଷିଣାଦେବାର ବିଧି ଥାଏ। ସେହି ବିଧି ସେ ପାଳନ କରିବେ କହି ସାତ ଲକ୍ଷ ଟଙ୍କାର ଦକ୍ଷିଣା (ଅନୁଦାନ) ଦେବାକୁ ପ୍ରତିଶ୍ରୁତି ଦେଇଥିଲେ ଏବଂ କିଛିଦିନ ପରେ ତାହା ପୂରଣ କରିଥିଲେ। ଏହାଥିଲା ୧୯୮୫ ମସିହାର ଘଟଣା। ସେହି ଉତ୍ସବର ସଫଳତାର ମଧ୍ୟ ମଣି ଥିଲେ ପ୍ରଫେସର ଖଗେଶ୍ୱର ମହାପାତ୍ର।

ଏହା ପରେ ପରେ କଲିକତାର ଐତିହ୍ୟସମ୍ପନ୍ନ ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲର ସଭାଗୃହରେ ଅନୁଷ୍ଠିତ ହୋଇଥିଲା ସର୍ବଭାରତୀୟ ଲେଖକ ସମ୍ମିଳନୀ। ଏହାର ଆବାହକ ଥିଲା ଏହି ଲେଖକ। ଦୁଇଦିନିଆ ଲେଖକ ସମ୍ମିଳନୀର ଗୋଟିଏ ଦିନ ଉତ୍ସର୍ଗୀକୃତ ଥିଲା ଓଡ଼ିଆ ସାହିତ୍ୟପାଇଁ। ଓଡ଼ିଶାରୁ ପ୍ରାୟ ୨୫ ଜଣ ଲେଖକଙ୍କ ସହିତ ସ୍ଥାନୀୟ ଓଡ଼ିଆ ଲେଖକ ଓ ବଙ୍ଗୀୟ ଲେଖକମାନେ ଯୋଗଦେଇ ପାରସ୍ପରିକ ସାହିତ୍ୟର ଆଲୋଚନା କରିବା ସଙ୍ଗେ ସଙ୍ଗେ କବିତା ପାଠୋତ୍ସବ କାର୍ଯ୍ୟକ୍ରମରେ ବିଭିନ୍ନ ଭାଷାଭାଷୀ ପ୍ରବୀଣ, ପ୍ରତିଷ୍ଠିତ ଓ ଯୁବକବିମାନେ ସ୍ୱରଚିତ କବିତା ପାଠ କରିଥିଲେ। ଉଲ୍ଲେଖଯୋଗ୍ୟ ଯେ ଜାନକୀବାବୁ ଏଇ ଉତ୍ସବକୁ ଉଦ୍‌ଘାଟନ କରିଥିଲେ ଓ ବଙ୍ଗୋତ୍କଳ ସାହିତ୍ୟ, ସଂସ୍କୃତି ସଂପର୍କରେ ବିଦଗ୍ଧ ଆଲୋଚନା କରି ଭାରତୀୟ ପ୍ରେକ୍ଷାପଟରେ ସାହିତ୍ୟର ଭୂମିକାର ସମୀକ୍ଷା କରିଥିଲେ। କାର୍ଯ୍ୟକ୍ରମର ପୂର୍ବରାତିରେ ଜାନକୀବାବୁ ବିମାନବନ୍ଦରରୁ ଆସିବା, ବାଟରେ ଗାଡ଼ି ଅଚଳ ହେବା, ଶେଷରେ ଗ୍ରେଟ୍ ଇଷ୍ଟର୍ଣ୍ଣରେ ପହଞ୍ଚିବା ଏବଂ ତାଙ୍କ ନିୟମାନୁବର୍ତ୍ତୀ ଶୃଙ୍ଖଳିତ ଜୀବନ ସଂପର୍କରେ ଅବଗତ ହେବା ବିଷୟ ଏବେବି ମୋର

ମାନସପଟରେ ଲିପିବଦ୍ଧ ହୋଇ ରହିଛି । ସର୍ବଭାରତୀୟ ଲେଖକ ସମ୍ମିଳନୀର ଦ୍ୱିତୀୟ ଦିନ କାର୍ଯ୍ୟକ୍ରମ ଉଦ୍ଦିଷ୍ଟ ଥିଲା ସର୍ବଭାରତୀୟ ଭାଷାଭାଷୀ ଲେଖକମାନଙ୍କପାଇଁ ।

ସାହିତ୍ୟିକ ଦୁର୍ଗାମାଧବ ମିଶ୍ର ଥିଲେ ସେତେବେଳେ ସିଆରପିଏଫ୍‌ର (ପୂର୍ବଭାରତ) ନିର୍ଦ୍ଦେଶକ । ସେ କଲିକତାରେ ଅବସ୍ଥାପିତ ଥିଲେ ଏବଂ ଉଚ୍ଚଶିକ୍ଷିତ ଓ ସଂସ୍କୃତିସମ୍ପନ୍ନ ବ୍ୟକ୍ତିମାନଙ୍କ ପ୍ରତିଷ୍ଠିତ ଉତ୍କଳ ଶିକ୍ଷା ସଂସଦର ମଧ୍ୟ ସଭାପତି ଥିଲେ । ତାଙ୍କ କାର୍ଯ୍ୟାଳୟରେ ଆମେ କଲିକତା ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଓଡ଼ିଆ ବିଭାଗ ଖୋଲିବାପାଇଁ ପ୍ରସ୍ତାବ ଆଗତ କରିବାକୁ ସ୍ଥିର କଲୁ । ତାହାପରେ ଉତ୍କଳ ଶିକ୍ଷା ସଂସଦର ଉତ୍କଳ ଦିବସ ପାଳନ କାର୍ଯ୍ୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଯୋଗଦିଅନ୍ତି ମୁଖ୍ୟ ଅତିଥି ଭାବରେ । ସେହି ସଭାରେ ପଶ୍ଚିମବଙ୍ଗର ଶିକ୍ଷାମନ୍ତ୍ରୀ ଶମ୍ଭୁ ଘୋଷ ଥିଲେ ଅତିଥି । ଦୁର୍ଗାମାଧବବାବୁ ପ୍ରସ୍ତାବ ଉପସ୍ଥାପନ କଲେ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଏମ୍‌.ଏ. ଶ୍ରେଣୀ ଖୋଲିବାକୁ । ଅର୍ଥ ସେଥିପାଇଁ ବାଧକ ଥିଲା । ଜାନକୀବାବୁ ସେହି ପ୍ରସ୍ତାବକୁ ସ୍ୱାଗତ ଜଣାଇ ଓଡ଼ିଶା ସରକାରଙ୍କ ତରଫରୁ ଏକ ଲକ୍ଷ ଟଙ୍କା ଅନୁଦାନ ଦେବାକୁ ପ୍ରତିଶ୍ରୁତି ଦେଲେ । ଶମ୍ଭୁବାବୁ ମଧ୍ୟ ଏକ ଲକ୍ଷ ଟଙ୍କା ଅନୁଦାନ ଦେବାକୁ ରାଜି ହୋଇଗଲେ । ଏହାକୁ ଭିତ୍ତିକରି ମୁଁ ପଶ୍ଚିମବଙ୍ଗ ଉତ୍କଳ ସମାଜ ତରଫରୁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ଅବଗତ କରାଇଲି ଓ ଦୁର୍ଗାମାଧବ ମିଶ୍ର ଉତ୍କଳ ଶିକ୍ଷା ସଂସଦ ତରଫରୁ ମଧ୍ୟ ନିବେଦନ କଲେ । ଇତିମଧ୍ୟରେ ଓଡ଼ିଶା ସରକାରଙ୍କ ଅନୁଦାନ ବିଶ୍ୱବିଦ୍ୟାଳୟ ପାଇଗଲେ । ଆମେ ଭାଇସ୍ ଚାନ୍‌ସେଲର ଓ ରେଜିଷ୍ଟ୍ରାରଙ୍କ ସହିତ ଯୋଗାଯୋଗ କଲୁ । ବିଶ୍ୱବିଦ୍ୟାଳୟ କାଳକ୍ଷେପଣ ନ କରି ଓଡ଼ିଆ ଏମ୍‌.ଏ. ଶ୍ରେଣୀ ଖୋଲିବାକୁ ସିଦ୍ଧାନ୍ତ ନେଲେ । ଏହାପରେ ବିଭାଗୀୟ ପ୍ରଫେସର ପଦ ପୂରଣପାଇଁ ବିଜ୍ଞାପନ ପ୍ରକାଶିତ ହେଲା ଓ ଦରଖାସ୍ତ ମଧ୍ୟ ବିଶ୍ୱବିଦ୍ୟାଳୟ କାର୍ଯ୍ୟାଳୟରେ ପହଞ୍ଚିଲା । ତାହାପରେ ପଶ୍ଚିମବଙ୍ଗ ସରକାରଙ୍କ ଶିକ୍ଷାବିଭାଗରେ ଶମ୍ଭୁ ଘୋଷଙ୍କୁ ଏବଂ ସଂପୃକ୍ତ ଅଫିସରଙ୍କୁ ବାରମ୍ବାର ଯୋଗାଯୋଗ କରିବାପରେ ମଧ୍ୟ ବିଶ୍ୱବିଦ୍ୟାଳୟକୁ ଏକ ଲକ୍ଷ ଟଙ୍କା ମିଳିଲା ନାହିଁ । ଶେଷରେ ବିଶ୍ୱବିଦ୍ୟାଳୟ ଆମକୁ ଜଣାଇଦେଲେ ଯେ ବର୍ଷକୁ ଚାରି ଲକ୍ଷ ଟଙ୍କା ନ ପାଇଲେ ଜଣେ ପ୍ରଫେସର, ଜଣେ ରିଡର୍ ଓ ଦୁଇ ଜଣ ଲେକ୍‌ଚର୍‌ଙ୍କୁ ନିଯୁକ୍ତି ଦିଆଯାଇପାରିବ ନାହିଁ । ଏଇ ଘଟଣା ପରେ ଆମେ ଆଉ ଆଗେଇପାରିଲୁ ନାହିଁ । ଜାନକୀବାବୁଙ୍କ ଏକ ଲକ୍ଷ ଟଙ୍କା ଅନୁଦାନ ଓ ୧୯୨୪ରେ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ସ୍ନାତକୋତ୍ତର ଶ୍ରେଣୀର ଉନ୍ନତି ପାଇଁ ସୋନପୁର ମହାରାଜା ଦେଇଥିବା ଷାଠିଏ ହଜାର ଟଙ୍କା ଅନୁଦାନ ରହିଗଲା କଲିକତା ବିଶ୍ୱବିଦ୍ୟାଳୟରେ ।

କ୍ରମଶଃ କଲିକତାରେ ଜାନକୀବାବୁଙ୍କ ସହିତ ମୋର ସମ୍ପର୍କ ଗଭୀର ହୋଇଆସୁଥିଲା । ଯେଉଁ ସଭାରେ ସେ ଯୋଗ ଦେଉଥିଲେ ଭାଷଣ ଦେଇସାରି ମୋତେ ପଚାରୁଥିଲେ ତାଙ୍କ ଆଲୋଚନା କିପରି ହେଲା ? ବାଗବଜାର ଉତ୍କଳ ସମାଜର ବାର୍ଷିକ ଅଧିବେଶନ ହେଉଥାଏ ଗିରୀଶ ମଞ୍ଚରେ । ଭାଷଣ ଦେବାପରେ ମୋତେ ସେହି ପ୍ରଶ୍ନ କରିଥିଲେ । ମୁଁ କହିଲି, 'ଆପଣ ଓଡ଼ିଶାର ଶିକ୍ଷାନୀତି ଓ ଶିକ୍ଷା ପ୍ରସାର ସଂପର୍କରେ ଆଲୋଚନା କରୁ କରୁ ଓଡ଼ିଶାର ଶିଳ୍ପ ବିକାଶ ଆଡ଼କୁ ଚାଲିଗଲେ ।' ସେ କହିଲେ, 'ସେଇୟା ହୋଇଗଲା । ମୁଁ ଶିକ୍ଷା ସଂପର୍କରେ ଆଲୋଚନା କରିବାକୁ ଚାହିଁଥିଲି ।' ସେ ବଙ୍କିମ ଉପନ୍ୟାସ ସମଗ୍ର ଓଡ଼ିଆରେ ଅନୁବାଦ କରି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ । ଜାତୀୟ ଗ୍ରନ୍ଥାଗାରର ସଭାଗୃହରେ ବଙ୍କିମ ସାହିତ୍ୟ ଉପରେ

ଆଲୋଚନା କରିବାକୁ ସେ ନିମନ୍ତ୍ରିତ ହୋଇଥିଲେ। ଜାନକୀବାବୁ ଆସୁଛନ୍ତି ବୋଲି ବହୁ ଓଡ଼ିଆ ଗୁଣୀ ବ୍ୟକ୍ତି, ଲେଖକ, ବୁଦ୍ଧିଜୀବୀ ସେଠି ଉପସ୍ଥିତ ହୋଇଥିଲେ। ସେ ସେଦିନ ବଙ୍କିମଚନ୍ଦ୍ର ଓ ତାଙ୍କ ସାହିତ୍ୟ ଉପରେ ଏକ ସାରଗର୍ଭକ, ମନନଶୀଳ ଭାଷଣ ଦେଇଥିଲେ। ସଭା ଶେଷ ହେବାପରେ ମୁଁ ତାଙ୍କୁ ନମସ୍କାର କରି ଚାଲିଆସୁଥିଲି। ସେ ଶୁଣ ଶୁଣ ବୋଲି କହି ପଛରୁ ଡାକିଲେ। ପଚାରିଲେ, ଆଲୋଚନା କିପରି ହେଲା ? "ମୁଁ କହିଲି, କେବଳ ମୁଁ ନୁହେଁ, ସଭାରେ ସବୁ ଶ୍ରୋତା ଆପଣଙ୍କ ଆଲୋଚନାରେ ମୁଗ୍ଧ ହୋଇଛନ୍ତି।" ବାସ୍ତବରେ ସେଦିନର ଭାଷଣ ତାଙ୍କର ଅତି ଗୁଣାତ୍ମକ ହୋଇଥିଲା।

ସେହି ଜାତୀୟ ଗ୍ରନ୍ଥାଗାରରେ ୨୦୧୨ ସେପ୍ଟେମ୍ବର ୧୬ରେ ଆମେ ପଶ୍ଚିମବଙ୍ଗ ଉତ୍କଳ ସମାଜ ତରଫରୁ ଓ ଅନ୍ୟାନ୍ୟ ସହଯୋଗୀ ଅନୁଷ୍ଠାନ ତରଫରୁ ଭକ୍ତକବି ମଧୁସୂଦନ ରାଓଙ୍କ ମୃତ୍ୟୁ ଶତବାର୍ଷିକୀ ପାଳନ କରିଥିଲୁ। ସଭାରେ କଟକରୁ ଭକ୍ତକବିଙ୍କ ବଂଶଧର କଲିକତାରୁ ଭକ୍ତକବିଙ୍କ ଆତ୍ମୀୟ, ବଙ୍ଗୀୟ ଲେଖକ, ବିଭିନ୍ନ ଭାଷାଭାଷୀ ଲେଖକ ଓ ସର୍ବୋପରି ବହୁସଂଖ୍ୟାରେ ଓଡ଼ିଆଭାଷୀ ଶ୍ରୋତା ଯୋଗଦେଇଥିଲେ। ସେହି ଆଡ଼ମ୍ବରପୂର୍ଣ୍ଣ ସାହିତ୍ୟ ଉତ୍ସବକୁ ଉଦ୍‌ଘାଟନ କରିଥିଲେ ଜାନକୀବାବୁ। ସେ ସେତେବେଳେ ଆସାମର ରାଜ୍ୟପାଳ। ଏକ ତାତ୍ତ୍ୱିକ, ମର୍ମସ୍ପର୍ଶୀ ଭାଷଣ ଦେଇଥିଲେ ଭକ୍ତକବିଙ୍କ ସାହିତ୍ୟ ସଂପର୍କରେ। ଅଧିକାଂଶ ସଭା ପରେ ତାଙ୍କୁ ସାମ୍ବାଦିକମାନଙ୍କର ପ୍ରଶ୍ନର ଉତ୍ତର ଦେବାକୁ ହୋଇଥାଏ।

କଲିକତା ବହି ମେଳାର ଆନ୍ତର୍ଜାତିକ ଖ୍ୟାତି ରହିଛି। ବିଭିନ୍ନ ରାଜ୍ୟର ପୁସ୍ତକ ପ୍ରକାଶକ ଓ ବିଦେଶୀ ପ୍ରକାଶକମାନେ ଏଇ ମେଳାରେ ଅଂଶଗ୍ରହଣ କରନ୍ତି। ବିଭିନ୍ନ ଭାଷାଭାଷୀ ଲେଖକମାନଙ୍କର ମଧ୍ୟ ସେଠାରେ ସମାବେଶ ହୁଏ। ବହି ମେଳାର ଏକ କାର୍ଯ୍ୟକ୍ରମରେ ସେ ଅତିଥି ଭାବରେ ଯୋଗଦେଇଥିଲେ। କେବଳ ଓଡ଼ିଶା ନୁହେଁ, ସମଗ୍ର ଦେଶରେ ସେ ଜଣେ ସାହିତ୍ୟିକ ଓ ରାଜନୀତିଜ୍ଞ ହିସାବରେ ପରିଚିତ। ତେଣୁ ତାଙ୍କୁ ଦେଖିବାକୁ ଓ ତାଙ୍କ ଭାଷଣ ଶୁଣିବାକୁ ବେଶ୍ ସମାବେଶ ହୁଏ। ସେଦିନ ସେ ଓଡ଼ିଶା ଓ ବଙ୍ଗଳାର ସାଂସ୍କୃତିକ ଓ ଧର୍ମୀୟ ସଂପର୍କ ଆଲୋଚନା କରୁ କରୁ ପ୍ରସଙ୍ଗକ୍ରମେ ଚୈତନ୍ୟଦେବଙ୍କ ଅବଦାନ ସଂପର୍କରେ ଆଲୋଚନା କରିଥିଲେ। ସଭାପରେ ସେ ମଞ୍ଚରୁ ଓହ୍ଲାଇ ଆସିବା ପୂର୍ବରୁ ସାମ୍ବାଦିକମାନଙ୍କର ପ୍ରଶ୍ନର ସମ୍ମୁଖୀନ ହେଲେ। ପ୍ରଶ୍ନ ଥିଲା, ଚୈତନ୍ୟଦେବଙ୍କ ମୃତ୍ୟୁକୁ ନେଇ। ଏଇ ମୁଖ୍ୟ ପ୍ରଶ୍ନକୁ ଗୁଡ଼େଇ ତୁଡ଼େଇ ସେମାନେ ଅନେକ ପ୍ରଶ୍ନ କରିଥିଲେ ଏବଂ ଜାନକୀବାବୁ ସବୁ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଇଥିଲେ। ତାଙ୍କ ଉତ୍ତରର ମର୍ମ ଥିଲା, ଚୈତନ୍ୟଦେବଙ୍କୁ ହତ୍ୟା କରାଯାଇ ନ ଥିଲା। ଟିଟାନସରେ ତାଙ୍କର ମୃତ୍ୟୁ ହୋଇଥିଲା। ଏ ସଂପର୍କରେ ସେ ବିଶଦଭାବରେ ପ୍ରାମାଣିକ ତଥ୍ୟ ଦେଇଥିଲେ ହେଁ ସେମାନଙ୍କ ମନ ମାନୁ ନ ଥିଲା। ଅବୁଝାକୁ ଯେତେ ବୁଝାଇଲେ ବି ବୁଝେନା। କେବଳ ସାମ୍ବାଦିକମାନେ ନୁହନ୍ତି, ବିଜ୍ଞ ଲେଖକ ଓ ଐତିହାସିକମାନଙ୍କର ଯେଉଁ ବଦ୍ଧମୂଳ ଧାରଣା ରହିଛି, ତାହାର ପରିବର୍ତ୍ତନ ଏ ଯାଏ ହୋଇନି। ଏବେବି ଚୈତନ୍ୟଦେବଙ୍କ ମୃତ୍ୟୁ ସଂପର୍କରେ ଗଳ୍ପ, ପ୍ରବନ୍ଧ ଓ ଧାରାବାହିକ ଉପନ୍ୟାସ ପ୍ରକାଶିତ ହେଉଛି ବଙ୍ଗଳା ପତ୍ରପତ୍ରିକାରେ ମିଥ୍ୟା ଜନଶ୍ରୁତିକୁ ଆଶ୍ରୟ କରି।

●

# ନଦୀର ଦ୍ୱୀପ ମାଜୁଲୀର
# 'ଆଞ୍ଚା ପ୍ରଭୁ'-ଜାନକୀବଲ୍ଲଭ

**ପ୍ରତିଭା ରାୟ**

ସାମ୍ପ୍ରତିକ ସମୟରେ 'ରାଷ୍ଟ୍ରୀୟ ଐକ୍ୟ', 'ଜାତୀୟ ସଂହତି' ଓ 'ଅନ୍ତର୍ରାଷ୍ଟ୍ରୀୟ ସଂପ୍ରୀତି'-ଏହି ତିନି ଗୋଟି ଶବ୍ଦକୁ ଯେକୌଣସି ସମ୍ପ୍ରଦାୟର ଈଶ୍ୱରଙ୍କ ଆରାଧନାପାଇଁ ମନ୍ତ୍ରଧ୍ୱନି ଭାବରେ ଗ୍ରହଣ କରାଯାଇପାରେ। ଯଦି କେହି ସଂହତି ସମନ୍ୱୟ ଓ ସଂପ୍ରୀତି ସ୍ଥାପନ ଦିଗରେ ସହାୟକ ହୋଇଛି ତାହା ହେଉଛି ସାହିତ୍ୟ। ଭାଷା ଯେତେବେଳେ ସାର୍ବଜନୀନ ସାହିତ୍ୟରେ ରୂପାନ୍ତରିତ ହୁଏ ସେତେବେଳେ ତାହା ଆଞ୍ଚଳିକତା, ଧର୍ମ ଓ ରାଷ୍ଟ୍ରର ସଂକୀର୍ଣ୍ଣ ସୀମା ଲଂଘନ କରି ବିଶ୍ୱ ଶାନ୍ତି ପ୍ରତିଷ୍ଠା ଦିଗରେ ସହାୟକ ହୁଏ। କିନ୍ତୁ ସବୁକାଳେ କ୍ଷମତାସୀନ ରାଜନେତାମାନେ ଏ ଦିଗରେ ପଦକ୍ଷେପ ନେବାବେଳେ ସାହିତ୍ୟର ଯେ ବିଶେଷ ଭୂମିକା ଅଛି ତାହା ମନେ କରନ୍ତି ନାହିଁ।

ସାହିତ୍ୟ ଓ ରାଜନୀତି ମନ୍ଦିର ଓ ମସ୍‌ଜିଦ୍ ଭଳି ପ୍ରାୟ ଭିନ୍ନଧର୍ମୀ ମନେ ହୁଅନ୍ତି। ସାହିତ୍ୟିକ ରାଜନୀତିଠାରୁ ନିଜକୁ ନିରାପଦ ଦୂରତାରେ ରଖିବାକୁ ଶ୍ରେୟ ମଣେ। ସେହିପରି ରାଜନୀତିଜ୍ଞ ସାହିତ୍ୟକୁ ରାଜନୀତିର ପରିପୂରକ ବୋଲି ମଣେ ନାହିଁ। ଖୁବ୍ କ୍ୱଚିତ୍ ରାଜନୀତିଜ୍ଞ ସାହିତ୍ୟ ସାରଥି ପଦବାଚ୍ୟ ହୋଇପାରନ୍ତି। ପୁଣି ଜଣେ ସଫଳ ରାଜନୀତିଜ୍ଞ ସାର୍ଥକ ସାହିତ୍ୟିକଭାବେ ସର୍ବଜନସ୍ୱୀକୃତ ହେବା କ୍ୱଚିତ୍ ଦେଖାଯାଏ। କିନ୍ତୁ ସେପରି ବିରଳ ଦୃଷ୍ଟାନ୍ତ ଓଡ଼ିଶାର ସାହିତ୍ୟ ଓ ରାଜନୀତିର ଇତିହାସ ସର୍ବସମ୍ମତିକ୍ରମେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଛି। ସେହି ଦୃଷ୍ଟାନ୍ତର ନାମ ସର୍ବମାନ୍ୟ ଜାନକୀବଲ୍ଲଭ ପଟ୍ଟନାୟକ।

କର୍ମୀର ହାତ, ଜ୍ଞାନୀର ଚକ୍ଷୁ, ଭକ୍ତର ହୃଦୟ ନେଇ ଯେଉଁ ଯୋଗଜନ୍ମା ପୁରୁଷଙ୍କର ଜୀବନ ସାର୍ଥକ ହୋଇଥିଲା ଏବଂ ମୃତ୍ୟୁ ହୋଇଥିଲା ମହିମାମୟ ସେ କେବଳ ହୋଇପାରନ୍ତି ଉତ୍କଳ ଜନନୀର ବରପୁତ୍ର, ଭାରତମାତାର ସୁଯୋଗ୍ୟ ସନ୍ତାନ, ଅନନ୍ୟ ପ୍ରାଜ୍ଞପୁରୁଷ, ଜାନକୀବଲ୍ଲଭ। ଧୀମାନ୍ ବାଗ୍ମୀ, ସୁସାହିତ୍ୟିକ, ସଫଳ ଅନୁବାଦକ, ସମାଜ ସଂସ୍କାରକ, ନିଷ୍ପାପର ସାରସ୍ୱତ ସାଧକ, ଧୈର୍ଯ୍ୟବନ୍ତ, ସ୍ଥିରଚିତ୍ତ, ଧୀରମତି, ସହାନୁଭୂତିଶୀଳ, ସ୍ନେହୀ, ଗୁଣଗ୍ରାହୀ, ସଂସ୍କୃତିବିତ୍, ବହୁଭାଷୀ, ନିରହଂକାର, ମିଷ୍ଟଭାଷୀ, ନମ୍ର, ବିଚକ୍ଷଣ ରାଜନୀତିଜ୍ଞ, ପ୍ରବୀଣ ସାମ୍ବାଦିକ, ସୁଦକ୍ଷ ସମ୍ପାଦକ, ଚିନ୍ତାନାୟକ, ସଂସ୍କାରଶୀଳ ଅଥଚ ଆଧୁନିକ, ଆତ୍ମପ୍ରତ୍ୟୟରେ ଦୃଢ଼ ହିମାଳୟସମ ତୁଙ୍ଗ ବ୍ୟକ୍ତିତ୍ୱ, ଲୋକପ୍ରିୟ ଜନନାୟକ, ନେତାଙ୍କର

ନେତା–ଏଥିମଧ୍ୟରୁ କେଉଁ ବିଶେଷଣର ନାମବାଚକ ବିଶେଷ ପଦ ନୁହନ୍ତି ବା ଜାନକୀବଲ୍ଲଭ ! କିଏ ବା କହିପାରିବ ଜାନକୀବଲ୍ଲଭଙ୍କ ପାଇଁ ଏତେ ସବୁ ବିଶେଷଣ ଅତିରଞ୍ଜନ ?

ଅବଶ୍ୟ ରାଜନୀତି, ସାହିତ୍ୟ ଓ ସମାଜ-ସଂସ୍କାର କ୍ଷେତ୍ରରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ନାମଟି ଏଠାରେ ସ୍ୱତଃ ମନକୁ ଆସେ। ମାତ୍ର ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଭଳି ନିରବଚ୍ଛିନ୍ନଭାବେ ରାଜନୀତିର ଟର୍ଣ୍ଣାଡ଼ୋ ଭିତରେ ଥାଇ ମୃତ୍ୟୁ ପର୍ଯ୍ୟନ୍ତ ସାହିତ୍ୟର ଅଭୟାରଣ୍ୟଟିଏ ସୃଷ୍ଟି କରିଚାଲିଥିବା କେବଳ ଜାନକୀବଲ୍ଲଭ ପଟ୍ଟନାୟକଙ୍କଦ୍ୱାରା ହିଁ ସମ୍ଭବ ହୋଇଥିଲା। ସମାଜପାଇଁ କଳଙ୍କିତ ପ୍ରଥା ବିରୋଧରେ ନିର୍ଭୀକ ସ୍ୱର ଉତ୍ତୋଳନ କରିବା ଜଣେ ସାଧାରଣ ରାଜନେତା ପକ୍ଷରେ ସମ୍ଭବ ନୁହେଁ। କାରଣ ପ୍ରଥା ମଣିଷଠାରୁ ବଳୀୟାନ୍ ବୋଲି ଲୋକେ ବିଶ୍ୱାସ କରନ୍ତି ଏବଂ ଲୋକବିଶ୍ୱାସ ଉପରେ ଆଘାତ କରିବାପାଇଁ ରାଜନେତାମାନେ ନିର୍ବାଚନକୁ ଆଖି ଆଗରେ ସାହସ କରନ୍ତି ନାହିଁ। ଅବଶ୍ୟ ଓଡ଼ିଶାରେ ସେହିଭଳି ସଂସ୍କାରକ ରାଜନୀତିଜ୍ଞ ଥିଲେ ଡକ୍ଟର ହରେକୃଷ୍ଣ ମହତାବ। କିନ୍ତୁ ରାଜ୍ୟ ବାହାରେ ଏଭଳି ମୁକ୍ତ ଚିନ୍ତାକୁ ପ୍ରକଟ କରି ସମାଜକୁ କଳଙ୍କମୁକ୍ତ କରିବାର ନିର୍ଭୀକତା ଥିଲା ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଭଳି ଜଣେ ବରପୁତ୍ରଙ୍କର। ତାଙ୍କର ବହୁମୁଖୀ ପ୍ରତିଭାସମ୍ପନ୍ନ ବ୍ୟକ୍ତିତ୍ୱର ଚିତ୍ରଣ କରିବା ଏହି କ୍ଷୁଦ୍ର ଲେଖା ମାଧ୍ୟମରେ ସମ୍ଭବ ନୁହେଁ। ତଥାପି ଦିବାଲୋକରେ ଦୀପଟିଏ ଜାଳି ସୂର୍ଯ୍ୟପୂଜା କରିବାଭଳି ଜାନକୀବଲ୍ଲଭଙ୍କ ସାମଗ୍ରିକ ପ୍ରତିଭାର ସୂଚନା ଏଠାରେ ଦେବା ପ୍ରାସଙ୍ଗିକ ମନେକରେ।

**ସାହିତ୍ୟ ସାଧନା-** ସର୍ବଜନାଦୃତ ମହାକାବ୍ୟ ସଂସ୍କୃତ ରାମାୟଣ-ମହାଭାରତ-ଶ୍ରୀମଦ୍ ଭାଗବତକୁ ସର୍ବବୋଧ, ସାବଲୀଳ ଓଡ଼ିଆ ଭାଷାରେ ଗଦ୍ୟାନୁବାଦ କରି ସବୁଶ୍ରେଣୀର ପାଠକଙ୍କୁ ସେ ଅର୍ପଣ କରି ତାଙ୍କ ଅନନ୍ୟ ପ୍ରତିଭାର ପରିଚୟ ଦେଇଛନ୍ତି। ଏହି ଦୃଷ୍ଟିରୁ ସେ ସାରଳା ଦାସ, ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କର ପ୍ରକୃତ ଦାୟାଦ ବୋଲି ପ୍ରମାଣ କରିଛନ୍ତି। ଭର୍ତ୍ତୃହରି ଶତକର ତିନିଖଣ୍ଡ ଗ୍ରନ୍ଥର ପ୍ରାଞ୍ଜଳ ଅନୁବାଦ କରି ବିସ୍ମୟକର ପାଣ୍ଡିତ୍ୟର ପରିଚୟ ଦେଇଛନ୍ତି। ୧୯୯୬ ମସିହାରେ ବୈରାଗ୍ୟ ଶତକର ଅନୁବାଦପାଇଁ ସେ ପାଇଥିଲେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର।

**ଅନୁବାଦ**–ସେହିପରି ବଙ୍ଗଳା ସାହିତ୍ୟର ଉଲ୍ଲେଖନୀୟ ସୃଷ୍ଟି ବଙ୍କିମ ଉପନ୍ୟାସମାଳାକୁ ମୂଳ ବଙ୍ଗଳାରୁ ଓଡ଼ିଆକୁ ଅନୁବାଦ କରି ୨୦୦୧ରେ ପାଇଥିଲେ କେନ୍ଦ୍ର ସାହିତ୍ୟ ଏକାଡେମୀ ଅନୁବାଦ ପୁରସ୍କାର। ଅନୁବାଦ କ୍ଷେତ୍ରରେ ଉଭୟ ରାଜ୍ୟ ଏବଂ କେନ୍ଦ୍ର ଏକାଡେମୀ ପୁରସ୍କାର ପାଇବାରେ ସେ ହେଉଛନ୍ତି ଏକମାତ୍ର ସାହିତ୍ୟିକ।

**ସାମ୍ବାଦିକତା**–ସାମ୍ବାଦିକତା କ୍ଷେତ୍ରରେ ସଂଜୟ, ଶ୍ରୀସାମ୍ବାଦିକ, ବାୟୁଦୂତ, ଚିତ୍ରସେନ ଆଦି ଅନେକ ଛଦ୍ମନାମରେ ଲେଖୁଥିଲେ ମଧ୍ୟ ସେ ଥିଲେ ନିର୍ଭୀକ, ନିରପେକ୍ଷ, ନିଷ୍କପଟ ସାମ୍ବାଦିକ। ସମାଜ ସଂସ୍କାରଭିତ୍ତିକ ନିର୍ଭୀକ ସମ୍ପାଦକୀୟ ଲେଖି ସାମ୍ବାଦିକତାର ନୀତିନିଷ୍ଠତାକୁ ବିଶ୍ୱାସଯୋଗ୍ୟ କରିପାରିଥିଲେ।

**ସମ୍ପାଦନା**–ଯୁବକ ବୟସରେ 'ପ୍ରଜାତନ୍ତ୍ର' ଓ 'ଇଷ୍ଟର୍ଣ୍ଣ ଟାଇମ୍ସ' ଭଳି ଦୁଇଟି ଗୁରୁତ୍ୱପୂର୍ଣ୍ଣ ପତ୍ରିକା ଓଡ଼ିଆ ଏବଂ ଇଂରାଜୀରେ ସମ୍ପାଦନା କରି ଏବଂ ପରେ 'ପୌରୁଷ' ଭଳି ଏକ ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକାର ପ୍ରତିଷ୍ଠାତା ସମ୍ପାଦକ ଭାବରେ ସେ ଜଣେ ତୁଙ୍ଗ, ବୁଦ୍ଧିଜୀବୀ ସମ୍ପାଦକର ମାନ୍ୟତା ଲାଭ କରିଥିଲେ ଓ ନିଜର ପୌରୁଷକୁ ପ୍ରତିପାଦନ କରିଥିଲେ।

**ରାଜନୀତି**–ରାଜନୀତି କ୍ଷେତ୍ରରେ ସେ ଥିଲେ ଜଣେ ଜାତିପ୍ରେମୀ, ଦେଶପ୍ରେମୀ, ସଂସ୍କୃତିପ୍ରେମୀ, ଦୂରଦୃଷ୍ଟିସମ୍ପନ୍ନ ରାଜନେତା। ଦେଶବିଦେଶର ବିଭିନ୍ନ ବିଷୟରେ, ବିଭିନ୍ନ ଭାଷାରେ ରଚିତ ବହୁ ଉପାଦେୟ ଗ୍ରନ୍ଥର ଅବିରତ ଅଧ୍ୟୟନ, ଅନୁଶୀଳନ ଓ ବିଚାର-ବିଶ୍ଳେଷଣ ଫଳରେ ରାଜ୍ୟ ତଥା ଦେଶର ସମୃଦ୍ଧି ଓ ସର୍ବବିଧ ବିକାଶ ସଂପର୍କରେ ସେ କେବଳ ସ୍ୱପ୍ନ ଦେଖୁ ନ ଥିଲେ ତା' ସହିତ ଅନେକ ସ୍ୱପ୍ନକୁ ସାକାର ମଧ୍ୟ କରିଥିଲେ। ତାଙ୍କ ସ୍ୱପ୍ନର ଓଡ଼ିଶାର ଚିତ୍ରରେ ସର୍ବାଗ୍ରେ ଥିଲା ଓଡ଼ିଆ ଭାଷାର ସୁରକ୍ଷା ଓ ଓଡ଼ିଆ ଭାଷାକୁ ଜାତୀୟ ଅନ୍ତର୍ଜାତୀୟ କ୍ଷେତ୍ରରେ ମର୍ଯ୍ୟାଦା ପ୍ରଦାନ। ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବା ସମୟରେ ୧୯୯୨ ମସିହାରେ ସେ ଓଡ଼ିଆ ଭାଷାକୁ ରାଜ୍ୟ ଭାଷା ଭାବରେ ବ୍ୟବହାର କରିବାର ନିୟମକୁ କଡ଼ାକଡ଼ି ପାଳନ କରିବାପାଇଁ ଆଇନ ପ୍ରଣୟନ କରିଥିଲେ।

**ସମାଜ ସଂସ୍କାର**–ପ୍ରଥା ବଳୀୟାନ, ପ୍ରଥା ଅପରିବର୍ତ୍ତନୀୟ, ପରମ୍ପରା ଦେହର ଚିତାକୁଟା ଦାଗପରି ସ୍ଥାୟୀ ଏହାହିଁ ଆଜିର ବିଜ୍ଞାନ ଯୁଗରେ ଅନେକ ଉଚ୍ଚଶିକ୍ଷିତ ବ୍ୟକ୍ତିଙ୍କର ଧାରଣା। ସମସ୍ତ ପ୍ରଥା ବର୍ଜନୀୟ ନୁହେଁ, ମାତ୍ର ଯଦି କୁସଂସ୍କାର, ଅନ୍ଧବିଶ୍ୱାସ ଓ ଅମାନବିକ କର୍ମକାଣ୍ଡ ଉପରେ ପ୍ରଥା ଗଢ଼ିଉଠେ କ୍ରମଶଃ ନ୍ୟସ୍ତସ୍ୱାର୍ଥାନ୍ୱେଷୀ ମୁଷ୍ଟିମେୟଙ୍କ ପ୍ରୋତ୍ସାହନ ବଳରେ ନରବଳି, ପଶୁବଳି, ଧର୍ମନାମରେ ରକ୍ତପାତ, ସତୀତ୍ୱର ଜୟଗାନ କରି ଜୀବନ୍ତ ନାରୀଦାହ ଆଦି କୁତ୍ସିତ ନାରକୀୟ ଘଟଣାମାନ ଅତ୍ୟାଧୁନିକ ସମାଜରେ ଏବେ ମଧ୍ୟ କେଉଁଠି ନା କେଉଁଠି ବଳବତ୍ତର ରହିଛି। ଭାରତୀୟ ସଂସ୍କୃତିର ମୂଲ୍ୟବୋଧ ବିଶ୍ୱରେ ଅନନ୍ୟ। ତା'ସତ୍ତ୍ୱେ ଏହିଭଳି କଳଙ୍କିତ ପ୍ରଥା ଯୋଗୁଁ ଭାରତ ବିଶ୍ୱରେ ନିନ୍ଦିତ ମଧ୍ୟ ହୋଇଥାଏ। କିନ୍ତୁ ଏହି ପ୍ରଥାକୁ ଦୂର କରିବାପାଇଁ ଯେଉଁ ସତ୍‌ସାହସ ଲୋଡ଼ା ତାହା ସମସ୍ତଙ୍କର ନ ଥାଏ। ଜଣେ ସାଧାରଣ ରାଜନେତାଙ୍କଠାରୁ ସବୁକ୍ଷେତ୍ରରେ ସତ୍‌ସାହସ ଆଶା କରିବା ନିରର୍ଥକ ହୋଇପାରେ। କିନ୍ତୁ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଭଳି ଜଣେ ବିଦ୍ୱାନ୍, ଶାସ୍ତ୍ରଜ୍ଞ, ଦୂରଦୃଷ୍ଟିସମ୍ପନ୍ନ ସାହିତ୍ୟିକ ରାଜନେତାଙ୍କ କର୍ମମୟ ଜୀବନରେ ଏଭଳି ସତ୍‌ସାହସର ସ୍ୱର୍ଣ୍ଣିମ ଦୃଷ୍ଟାନ୍ତ ଯେକୌଣସି ଉତ୍କଳୀୟକୁ ଗର୍ବିତ କରିବ। ଜାନକୀବଲ୍ଲଭଙ୍କ ରାଜନୈତିକ କୀର୍ତ୍ତି ଓ ସାରସ୍ୱତ ପ୍ରତିଭା ସମ୍ପର୍କରେ ଓଡ଼ିଆମାନେ ବିଦିତ। କିନ୍ତୁ ଓଡ଼ିଶା ବାହାରେ ଆସାମ ରାଜ୍ୟରେ ମହାମହିମ ରାଜ୍ୟପାଳ ଭାବରେ ସେ କିଭଳି ନିର୍ଭୀକତା ଏବଂ ସତ୍‌ସାହସ ପ୍ରଦର୍ଶନ କରିଛନ୍ତି ତା' ଆମ ସମସ୍ତଙ୍କର ଜାଣିବା ଉଚିତ। ତାଙ୍କର ଏହି କୀର୍ତ୍ତି ଉତ୍ତରପିଢ଼ିକୁ ନିଶ୍ଚୟ ଉଦ୍‌ବୁଦ୍ଧ କରିବ।

ଓଡ଼ିଶା ଏବଂ ଆସାମର ଆଧ୍ୟାତ୍ମିକ ସମ୍ପର୍କ ମହାପ୍ରଭୁ ଶ୍ରୀଚୈତନ୍ୟ ଓ ଶ୍ରୀଶଙ୍କରଦେବଙ୍କଠାରୁ ରହିଆସିଛି। ଓଡ଼ିଶାବାସୀ ଦେବୀ କାମାକ୍ଷାଙ୍କୁ ଯେତିକି ଭକ୍ତି ଓ ଶ୍ରଦ୍ଧା କରନ୍ତି ଆସାମବାସୀ ଶ୍ରୀକ୍ଷେତ୍ରବିହାରୀ ଶ୍ରୀଜଗନ୍ନାଥଙ୍କୁ ସେତିକି ଶ୍ରଦ୍ଧା ଓ ଭକ୍ତି କରନ୍ତି।

ଜଗନ୍ନାଥଙ୍କ ମଥାର ମଣି କୌଣସି ଅସମୀୟା ଭକ୍ତଙ୍କର ଦାନ ବୋଲି ବିଶ୍ୱାସ କରାଯାଏ। ଜାନକୀବଲ୍ଲଭ ପଟ୍ଟନାୟକ ପ୍ରକୃତ ଅର୍ଥରେ ଜଣେ ଧର୍ମପ୍ରାଣ ବ୍ୟକ୍ତି। ରକ୍ଷଣଶୀଳତା ଓ ଜଡ଼ବାଦୀ ପରମ୍ପରାର ଊର୍ଦ୍ଧ୍ୱରେ ରହି ସେ ଯେକୌଣସି ସମ୍ପ୍ରଦାୟର, ଯେକୌଣସି ସ୍ଥାନର ଉପାସ୍ୟ ଦେବତାଙ୍କୁ ଭକ୍ତିପ୍ରଦର୍ଶନ କରିଥାନ୍ତି। ୨୦୧୨ ମସିହା ଡିସେମ୍ବର ୫ରେ ଜାନକୀବାବୁ ଆସାମ ରାଜ୍ୟର ରାଜ୍ୟପାଳ ପଦରେ ଅଧିଷ୍ଠିତ ହେଲେ। ଖୁବ୍ କମ୍ ସମୟ ଭିତରେ ସେ ଆସାମବାସୀଙ୍କର ହୃଦୟ ଜୟ କରିପାରିଥିଲେ। ଜାନକୀବାବୁ ଥିଲେ ଜଣେ ବହୁଭାଷୀ ପଣ୍ଡିତ। ନିଜର ମାତୃଭାଷା ଓଡ଼ିଆ, ଇଂରାଜୀ, ହିନ୍ଦୀ, ସଂସ୍କୃତ, ବଙ୍ଗଳା ଭାଷାରେ ସେ ପ୍ରବୀଣ ଥିଲେ। ସେହି ଭାଷାମାନଙ୍କରେ ସେ ପାଣ୍ଡିତ୍ୟପୂର୍ଣ୍ଣ ବକ୍ତବ୍ୟ ରଖିପାରୁଥିଲେ। ତାଙ୍କର ବାଗ୍ମିତାରେ ଶ୍ରୋତାମାନେ ମନ୍ତ୍ରମୁଗ୍ଧ ହୋଇଯାଉଥିଲେ। ପୃଥିବୀର ଯେକୌଣସି ଭାଷା ସାହିତ୍ୟ ପ୍ରତି ଜାନକୀବାବୁଙ୍କର ଅସୀମ ଶ୍ରଦ୍ଧା ଥିଲା। ଭାଷା ଶିକ୍ଷା କରିବାର ଅସାମାନ୍ୟ ପ୍ରତିଭା ଯୋଗୁଁ ସେ ଖୁବ୍ ଶୀଘ୍ର ନୂତନ ଭାଷାଟିଏ ଶିଖିଯାଉଥିଲେ। ଆସାମରେ ପହଞ୍ଚିବାର ଖୁବ୍ କମ୍ ସମୟ ଭିତରେ ସେ ଆସାମବାସୀଙ୍କ ସହ ଅସମୀୟା ଭାଷାରେ କଥାବାର୍ତ୍ତା କରିବା ସହ ସାହିତ୍ୟ ସଭାମାନଙ୍କରେ ଅସମୀୟା ଭାଷାରେ ସାରଗର୍ଭକ ଭାଷଣ ଦେଲେ। ଏହି ଲେଖିକା ମହାମହିମ ରାଜ୍ୟପାଳ ଜାନକୀବଲ୍ଲଭଙ୍କ ସହ ଆସାମର ଗୋଟିଏ ସଭା ମଞ୍ଚରେ ଉପସ୍ଥିତ ରହି ତାଙ୍କର ଅସମୀୟା ବକ୍ତବ୍ୟରେ ଚକିତା ହୋଇଥିଲା। ଜାନକୀବାବୁ କେବଳ ଦାର୍ଶନିକ ବା ମୁକ୍ତଚିନ୍ତକ ନ ଥିଲେ ତା' ସହ ସେ ଥିଲେ ଜଣେ ମନସ୍ତତ୍ତ୍ୱବିତ୍। ତାଙ୍କର ଧୀରଚିତ୍ତ, ସ୍ଥିରମତି ଓ ସରସ ବ୍ୟକ୍ତିତ୍ୱ ବଳରେ ସେ ଆସାମବାସୀଙ୍କ ହୃଦୟକୁ ପୁଲକିତ କରିଥିଲେ। କିନ୍ତୁ ସେମାନଙ୍କର ହୃଦୟ ଜୟ କରିନେଲେ ଆସାମବାସୀଙ୍କ ମାତୃଭାଷା ମାଧ୍ୟମରେ। ନିଜ ମା'ର ଭାଷାରେ ଡାକିଲେ କିଏ ବା ସେ ସମ୍ବୋଧନର ଉତ୍ତର ନ ଦେବ? ଆସାମର ରାଜ୍ୟପାଳ ଜାନକୀବାବୁଙ୍କ ସହ ତାହାହିଁ ଘଟିଲା। ପ୍ରଥମେ ଜାନକୀବାବୁ ଆସାମ ରାଜ୍ୟରେ ଭାଷା, ସାହିତ୍ୟ, ସଂସ୍କୃତି, ନୃତ୍ୟ, ଗୀତ ଆଦିର ପ୍ରଚାର-ପ୍ରସାର ଓ ବିକାଶ ଦିଗରେ ପଦକ୍ଷେପ ନେଲେ। ଆସାମର ବିଭିନ୍ନ ସ୍ଥାନରେ ଥିବା ଜୀର୍ଣ୍ଣ ମନ୍ଦିର, ଅହୋମ୍ ରାଜାମାନଙ୍କର କୀର୍ତ୍ତି ଓ ପରମ୍ପରାର ପୁନରୁଦ୍ଧାର ଓ ସଂରକ୍ଷଣ କରିଥିଲେ। ଆସାମର ପ୍ରାୟ ସବୁ ଜିଲ୍ଲା ସେ ଗସ୍ତ କରିଥିଲେ। ଓଡ଼ିଶାର ସମ୍ବଲପୁରଠାରେ ଥିବା ଆସାମର ପ୍ରଥମ ସାହିତ୍ୟିକ ଓ ଆସାମ ସାହିତ୍ୟସଭାର ପ୍ରତିଷ୍ଠାତା ଲକ୍ଷ୍ମୀନାଥ ବେଜ୍‌ବରୁଆଙ୍କ ଗୃହର ପୁନରୁଦ୍ଧାର କରି ସେଠାରେ ତାଙ୍କର ଏକ ସ୍ମାରକୀ ପ୍ରତିଷ୍ଠାର ଉଦ୍ୟମ କଲେ। ଶ୍ରୀ ବେଜ୍‌ବରୁଆ କାଠ ବ୍ୟବସାୟ କରିବାପାଇଁ କଲିକତାରୁ ସମ୍ବଲପୁର ଆସିଥିଲେ। ବ୍ୟବସାୟରେ ଉନ୍ନତି କଲେ। କିନ୍ତୁ ସେ ମୂଳତଃ ଥିଲେ ଜଣେ ସାହିତ୍ୟିକ। ରବୀନ୍ଦ୍ରନାଥ ଠାକୁରଙ୍କ ସମ୍ପର୍କୀୟାଙ୍କୁ ସେ ବିବାହ କରିଥିଲେ। ରାଜ୍ୟପାଳ ଜାନକୀବାବୁ ଆସାମରୁ କୋଡ଼ିଏ ସଦସ୍ୟ ବିଶିଷ୍ଟ ସାହିତ୍ୟିକ ଦଳଟିଏ ଧରି ୨୦୧୨ ମସିହାରେ ସମ୍ବଲପୁରଠାରେ ଏକ ସାହିତ୍ୟ ସମ୍ମିଳନୀ କଲେ। ଲକ୍ଷ୍ମୀନାଥ ବେଜ୍‌ବରୁଆଙ୍କ ସାହିତ୍ୟ ଚର୍ଚ୍ଚା ହେଲା। ଓଡ଼ିଶା ଏବଂ ଆସାମ ରାଜ୍ୟ ତଥା ଦୁଇ ରାଜ୍ୟର ଭାଷାସାହିତ୍ୟ ମଧ୍ୟରେ ଏକ ସମ୍ପର୍କର ସେତୁ ସେଠାରେ ନିର୍ମିତ ହେଲା ବୋଲି ସାହିତ୍ୟିକମାନେ

ଅନୁଭବ କଲେ। ଆସାମରେ ଜାନକୀବାବୁଙ୍କ ଲୋକପ୍ରିୟତା ଆହୁରି ବଢ଼ିଗଲା। ଭାଷା ଓ ସଂସ୍କୃତି ମାଧ୍ୟମରେ ଦୁଇ ରାଜ୍ୟ ମଧ୍ୟରେ ମୈତ୍ରୀ ସ୍ଥାପନପାଇଁ ସେ ଦୁଇ ଭାଷାସାହିତ୍ୟର ଅନୁବାଦ ପାଇଁ ଅନୁବାଦକ ଓ ପ୍ରକାଶକମାନଙ୍କୁ ପ୍ରୋତ୍ସାହନ ଦେଲେ। ଗୋଟିଏ ସଭାମଞ୍ଚରେ ରାଜ୍ୟପାଳ ଜାନକୀବଲ୍ଲଭଙ୍କର ଦୁଇଟି ଓଡ଼ିଆ ବହିର ଆସାମୀ ଅନୁବାଦ 'ଗୌତମବୁଦ୍ଧ' ଓ 'ମାଳିନୀର ଫୁଲ' ଏବଂ ଏହି ଲେଖିକାର ଦୁଇଟି ଉପନ୍ୟାସ 'ଶିଳାପଦ୍ମ' ଓ 'ଯାଜ୍ଞସେନୀର' ଦ୍ୱିତୀୟ ସଂସ୍କରଣ ଲୋକାର୍ପିତ ହେଲା। ପ୍ରକାଶଥାଉକି 'ଗୌତମ ବୁଦ୍ଧ', 'ମାଳିନୀର ଫୁଲ' ଓ 'ଶିଳାପଦ୍ମ'ର ଓଡ଼ିଆରୁ ଅସମୀୟାକୁ ଅନୁବାଦ କରିଥିଲେ ଶ୍ରୀମତୀ କବିତା ଦତ୍ତ ଗୋସ୍ୱାମୀ। ସମସ୍ତ ବହିର ପ୍ରକାଶକ ଥିଲେ ବାଣୀ ପ୍ରକାଶନୀ। ସେଦିନ ମଧ୍ୟ ଜାନକୀବାବୁ ଆସାମୀ ଭାଷାରେ ନିଜର ଚମତ୍କାର ବକ୍ତବ୍ୟ ରଖିଥିଲେ। ମଞ୍ଚରେ ଉପସ୍ଥିତ ଥିଲେ ପ୍ରଖ୍ୟାତ ସାହିତ୍ୟିକ ଲକ୍ଷ୍ମୀନନ୍ଦନ ବୋରା।

ନିଜକୁ ରାଜ୍ୟପାଳ ବୋଲି ଭୁଲିଯାଇ ଜାନକୀବାବୁ ଗାଁ ଗାଁ ବୁଲି ଲୋକମାନଙ୍କର ନାନାଦି ଦୁଃଖ କଷ୍ଟ ସମ୍ପର୍କରେ ବୁଝୁଥିଲେ। ସମାଜର ଆର୍ଥିକ କ୍ଷେତ୍ରରେ ଅନଗ୍ରସର ଏବଂ ଅବହେଳିତ ଲୋକଙ୍କ ଜୀବନ ପ୍ରଣାଳୀକୁ ସୁଗମ କରିବାପାଇଁ ସେ ଅଧିକ ଧ୍ୟାନ ଦେଇଥିଲେ। ସରକାରଙ୍କୁ ସେମାନଙ୍କର ସମସ୍ୟା ଦୂରପାଇଁ ସଚେତନ କରୁଥିଲେ। ଓଡ଼ିଶାରେ ମଧ୍ୟ ଆଦିବାସୀ ଓ ସାମାଜିକ ସ୍ତରରେ ଅବହେଳିତ ଲୋକଙ୍କପାଇଁ ତାଙ୍କର ସ୍ୱତନ୍ତ୍ର ବିକାଶ ଯୋଜନା ଥିଲା ଅଭିନନ୍ଦନୀୟ। ଅତ୍ୟନ୍ତ ସାହସିକ ବୈପ୍ଳବିକ ପଦକ୍ଷେପ ନେଇ ଆସାମର ମୁସ୍‌ଲିମ୍ ମହିଳାମାନଙ୍କୁ ସେ ମସ୍‌ଜିଦ୍‌ରେ ନମାଜ ପଢ଼ାଇ ବିରୋଧୀଦଳମାନଙ୍କଦ୍ୱାରା ଅଭିନନ୍ଦିତ ହୋଇଥିଲେ। ଗୋଟିଏ ରାଜ୍ୟର ରାଜ୍ୟପାଳଙ୍କୁ ଘରେ ଘରେ ଲୋକେ ପ୍ରାୟ ଜାଣନ୍ତି ନାହିଁ। ତେଣୁ ସାଧାରଣ ଜ୍ଞାନ ପରୀକ୍ଷାରେ ପ୍ରଶ୍ନପଡ଼େ- 'ରାଜ୍ୟପାଳଙ୍କ ନାମ କ'ଣ?' କିନ୍ତୁ ଜାନକୀବାବୁଙ୍କ କ୍ଷେତ୍ରରେ ଏହି ଉତ୍ତରଟି ଗାଁ ଗାଁରେ ଲୋକମୁଖରେ ଥିଲା। ଜାନକୀବାବୁ ରାଜ୍ୟପାଳ ଭାବରେ ଆସାମରେ ଜନସାଧାରଣ, ବୁଦ୍ଧିଜୀବୀ ଓ ପୂଜକ-ପଣ୍ଡିତମାନଙ୍କର ଆସ୍ଥାଭାଜନ ହେବାପରେ ତାଙ୍କର ଆକାଂକ୍ଷିତ ଲକ୍ଷ୍ୟ ସାଧନ କରିବାପାଇଁ ପଦକ୍ଷେପ ନେଲେ। ତାହା ଥିଲା ମହିଳାମାନଙ୍କର 'ନାମଘର' ମଧ୍ୟରେ ପ୍ରବେଶ ଅଧିକାର। ଆସାମର ବଡ଼ପେଟାଠାରେ ଶ୍ରୀ ଶଙ୍କରଦେବଙ୍କର ଶିଷ୍ୟ ମାଧବଦେବଙ୍କର ଗୋଟିଏ ବିଶାଳ 'ନାମଘର' (ସତ୍ର ବା କୀର୍ତ୍ତନ ଘର) ଅଛି। ସେଠାରେ ଗୁରୁମାନେ ଶିଷ୍ୟମାନଙ୍କୁ ଗୁରୁ-ଶିଷ୍ୟ ପରମ୍ପରା ଅନୁଯାୟୀ ଶାସ୍ତ୍ର ଶିକ୍ଷା ଦେଇଥା'ନ୍ତି। ସେଠାରେ ଭାଗବତ, ରାମାୟଣ, ମହାଭାରତ ଆଦି ଶାସ୍ତ୍ର ପଠନ ଓ ଆଲୋଚନା ହୁଏ। ସେହି ସ୍ଥାନକୁ ଉପନିଷଦ କୁହାଯାଏ। କାଳକ୍ରମେ ତା'କୁ 'ସତ୍ର' କୁହାଗଲା। ସେହି 'ସତ୍ର' ବା ନାମଘର ଭିତରକୁ ମହିଳାମାନଙ୍କର ପ୍ରବେଶ ନିଷେଧ ଥିଲା। ଏହି ନିଷେଧାଜ୍ଞା ସମ୍ପର୍କରେ ଏକ କାହାଣୀ ଲୋକମୁଖରୁ ଶୁଣାଯାଏ। ଆରମ୍ଭରେ ଏଭଳି ନାରୀବିଦ୍ୱେଷୀ ପ୍ରଥା ନ ଥିଲା। ମହିଳାମାନେ ମଧ୍ୟ 'ନାମଘରେ' ପ୍ରବେଶ କରିପାରୁଥିଲେ। ଗୁରୁମାନଙ୍କଠାରୁ ଶାସ୍ତ୍ର ଶିକ୍ଷା କରୁଥିଲେ। ଥରେ ଜଣେ ମହିଳା ଶିଷ୍ୟା 'ନାମଘର' ଭିତରେ ବସି ନାମକୀର୍ତ୍ତନ କରୁ କରୁ ତାଙ୍କର ରକ୍ତସ୍ରାବ ହେଲା ବୋଲି

ଜଣାପଡ଼ିଲା। ତାହାଦ୍ୱାରା 'ନାମଘର' ଅପବିତ୍ର ହୋଇଗଲା ବୋଲି ସତ୍ରୀୟ ଭାଇମାନେ କହିଲେ। କୀର୍ତ୍ତନ ଘରକୁ ଗଙ୍ଗାଜଳ ଦେଇ ପବିତ୍ର କରାଗଲା। ଏହାରି ପରଠୁ 'ନାମଘର'କୁ ମହିଳା ପ୍ରବେଶ ନିଷେଧ ହେଲା ବୋଲି ଶୁଣିବାକୁ ମିଳେ। ଜାନକୀବାବୁ ରାଜ୍ୟପାଳ ହେବାବେଳକୁ ମହିଳା ପ୍ରବେଶ ନିଷେଧ ବଳବତ୍ତର ଥିଲା। ଜାନକୀବାବୁ ଶାସ୍ତ୍ରଜ୍ଞ ପଣ୍ଡିତ, ସାହିତ୍ୟିକ ଏବଂ ସାଧାରଣ ଜନତାଙ୍କୁ ଏକତ୍ର କରି ମହିଳାମାନଙ୍କ ନାମଘର ପ୍ରବେଶ ନିଷେଧକୁ ଅମାନବୀୟ ବୋଲି କହିଥିଲେ। ଶାସ୍ତ୍ରର ନାନା ଉଦାହରଣ ଦେଇ ମହିଳାମାନେ ଅପବିତ୍ର ନୁହନ୍ତି ବୋଲି ପ୍ରମାଣ କରିଥିଲେ। ମହିଳାମାନଙ୍କୁ 'ନାମଘର'କୁ ପ୍ରବେଶ ଅଧିକାର ମିଳୁ ବୋଲି ବିନମ୍ରତାର ସହ ଦାବି କରିଥିଲେ। ସବୁକାଳେ ସବୁ ସ୍ଥାନରେ ପ୍ରଥା ମଣିଷଠାରୁ ବଳୀୟାନ୍। କୀର୍ତ୍ତନଘର ପାଚେରି ଭିତରକୁ ପ୍ରବେଶ କରିବାରେ ନାନା କାଇଦାକଟକଣା ଏବେ ମଧ୍ୟ ଅଛି। ଜୋତା, ସାଇକଲ, ଚମଡ଼ା ଜିନିଷ ଆଦି ଦ୍ରବ୍ୟ 'ସତ୍ର' ଭିତରକୁ ନିଆଯାଏ ନାହିଁ। ସତ୍ରାଧିକାରୀମାନଙ୍କର ଏକ କମିଟି ଅଛି। ସତ୍ର ସମ୍ପର୍କିତ ନିୟମାବଳୀର ପାଳନ ଓ ପ୍ରଶାସନିକ ଦାୟିତ୍ୱ ସେମାନଙ୍କର। ସତ୍ର ଭିତରେ ଅଛି ସଂସ୍କୃତ ଟୋଲ, ସତ୍ରିଆ ସଂସ୍କୃତିର ପ୍ରଶିକ୍ଷଣ କେନ୍ଦ୍ର। ସେଠି ଗୀତ, ଖୋଳ, ଖଞ୍ଜି, ତାଳ, ମଞ୍ଜରୀ ଆଦି ଶିକ୍ଷା ଦିଆଯାଏ। ମୋଟଉପରେ ସତ୍ରୀୟ ସଂସ୍କୃତିର ମୂଳକେନ୍ଦ୍ର ହେଉଛି 'ନାମଘର'। ଆସାମର ସତ୍ରୀୟ ସଂସ୍କୃତି ହେଉଛି ଓଡ଼ିଶାର ଜଗନ୍ନାଥ ସଂସ୍କୃତି ସହ ତୁଳନୀୟ। ଜାନକୀବାବୁ ସେହି କମିଟିଙ୍କ ଦରବାରରେ ନିଜର ପ୍ରସ୍ତାବ ଉପସ୍ଥାପନ କରିଥିଲେ। ମହାମହିମ ରାଜ୍ୟପାଳଙ୍କ ଅନୁରୋଧକୁ କିଏ ବା 'ନାସ୍ତି' କହିପାରିବ। ତେଣୁ ସତ୍ରାଧିକାରୀମାନେ 'ଆଜ୍ଞା ପ୍ରଭୁ' 'ଆଜ୍ଞା ପ୍ରଭୁ' କହି ଏହି ଆବେଦନ ଗ୍ରାହ୍ୟ ହେଲା ବୋଲି ସଙ୍କେତ ଦେଲେ।

ଆସାମର ଜୋରହାଟ୍ ନିକଟରେ ଅଛି ଏକ ନଦୀର ଦ୍ୱୀପ 'ମାଜୁଲୀ'। ବ୍ରହ୍ମପୁତ୍ର ନଦୀ ମଝିରେ ପ୍ରକୃତିରାଣୀ କୋଳରେ ଏହି ସୁନ୍ଦର ଦ୍ୱୀପ ହେଉଛି 'ମାଜୁଲୀ' ହେଉଛି- ଏସିଆର ସର୍ବବୃହତ୍ 'ନଦୀର ଦ୍ୱୀପ' ଅସମୀୟା ଭାଷାରେ ମାଜୁଲୀର ଅର୍ଥ ହେଉଛି ଦ୍ୱୀପ। ଏହି ଦ୍ୱୀପରେ ଅଛି ବଡ଼ପେଟାଠାରୁ ଆହୁରି ବଡ଼ ଏକ ନାମଘର। ବହୁକାଳରୁ ସତ୍ରୀୟ ସଂସ୍କୃତିର ବିଖ୍ୟାତ ପ୍ରଶିକ୍ଷଣ କେନ୍ଦ୍ର ଏଠାରେ ଅଛି। ଏହି ଦ୍ୱୀପରେ ଆସାମର ବିଶ୍ୱପ୍ରସିଦ୍ଧ 'ମୁଖା' ଶିଳ୍ପକେନ୍ଦ୍ର ଅଛି। କଳାତ୍ମକ ମୁଖାମାନ ସେଠାରେ ନିର୍ମାଣ ହୋଇଥାଏ। ରାଜ୍ୟପାଳ ଜାନକୀବଲ୍ଲଭ ନଦୀର ଦ୍ୱୀପ ମାଜୁଲୀକୁ ମଧ୍ୟ ଯାଉଥିଲେ। ସେଠାରେ ଥିବା ସତ୍ରର ଉନ୍ନୟନ ପାଇଁ ରାଜ୍ୟସରକାରଙ୍କୁ ଆର୍ଥିକ ଅନୁଦାନପାଇଁ ସୁପାରିସ କରିଥିଲେ। ସତ୍ରାଧିକାରୀମାନେ ଏହାଦ୍ୱାରା ଅତ୍ୟନ୍ତ ଖୁସି ହୋଇଥିଲେ। ଏହାପରେ ଦାର୍ଶନିକ ମନସ୍ତତ୍ତ୍ୱବିତ୍ ସାହିତ୍ୟିକ ରାଜନୀତିଜ୍ଞ ଜାନକୀବଲ୍ଲଭ ତାଙ୍କର ମନୋବାଞ୍ଛା ପେଶ୍ କରିଥିଲେ। ମାଜୁଲୀ ସତ୍ର ମଧ୍ୟକୁ ମହିଳାମାନଙ୍କର ପ୍ରବେଶ ଅଧିକାର ରହିବା ଆବଶ୍ୟକ ବୋଲି ସତ୍ରାଧିକାରୀମାନଙ୍କୁ ବୁଝାଇଥିଲେ। ସତ୍ରାଧିକାରୀମାନଙ୍କ ମଧ୍ୟରେ ରୋଳ ଉଠିଥିଲା 'ଆଜ୍ଞା ପ୍ରଭୁ' 'ଆଜ୍ଞା ପ୍ରଭୁ'। ରାଜ୍ୟପାଳ ଜାନକୀବାବୁଙ୍କ ସମୟରୁ ହିଁ ସାଧାରଣତନ୍ତ୍ର ଦିବସ ଓ ସ୍ୱାଧୀନତା ଦିବସରେ ରାଜଭବନରେ ଆର୍ଟହୋମପାର୍ଟି ବନ୍ଧୁମିଳନର ଆୟୋଜନ ପ୍ରଥମଥର ଆରମ୍ଭ ହେଲା। ଫଳରେ

ସାହିତ୍ୟିକ ମହଲରେ ଉତ୍ସାହ ଏବଂ ଉଦ୍ଦୀପନାର ସୀମା ନ ଥିଲା। ସେହି ବର୍ଷ ଏହି ଲେଖିକା ଜ୍ଞାନପୀଠ ବିଜୟିନୀ ଇନ୍ଦିରା ଗୋସ୍ୱାମୀଙ୍କୁ ତାଙ୍କ ଘରେ ଶେଷଥର ପାଇଁ ଭେଟିଥିଲା। ଆର୍ଟହୋମ ପାର୍ଟିକୁ ରାଜ୍ୟପାଳ ତାଙ୍କୁ ନିମନ୍ତ୍ରଣ କରିଛନ୍ତି ବୋଲି କହି ସେ ନିଜର ଆନନ୍ଦ ପ୍ରକାଶ କରିଥିଲେ। ରାଜଭବନରେ ଜାନକୀବାବୁ ଅନେକ ଅସମୀୟା ଲେଖକଙ୍କର ପୁସ୍ତକ ଉନ୍ମୋଚନ ଉତ୍ସବ କରିଥିଲେ। ଆଜି ମଧ୍ୟ ଜାନକୀବାବୁଙ୍କ ଅବର୍ତ୍ତମାନରେ ଏହି ଘଟଣାଗୁଡ଼ିକର ସ୍ମୃତିଚାରଣ ହୁଏ।

ଅବଶ୍ୟ ଜାନକୀବାବୁ ଆସାମରେ ରାଜ୍ୟପାଳ ଥିବା ସମୟ ଭିତରେ ତାଙ୍କୁ ଶ୍ରଦ୍ଧାରେ ଓ ଭକ୍ତିରେ 'ଆଜ୍ଞା ପ୍ରଭୁ ଆଜ୍ଞା ପ୍ରଭୁ' କହି ଯେଉଁ ପ୍ରତିଶ୍ରୁତି ଦିଆଯାଇଥିଲା ତାହା ପାଳନ ହୋଇପାରି ନ ଥିଲା। ଏବେ ମଧ୍ୟ ତାହା ପ୍ରତିଶ୍ରୁତିରେ ଅଛି। କିନ୍ତୁ ରାଜ୍ୟପାଳ ଜାନକୀବଲ୍ଲଭ ଯେଉଁ ନବଜାଗରଣଟି ବଡ଼ପେଟାଠାରେ ଏବଂ ମାଜୁଲୀ ଦ୍ୱୀପରେ ସୃଷ୍ଟି କରିଦେଇଆସିଲେ ତା'ର ନିର୍ଭୀକ ସ୍ୱର ଏବେବି ବ୍ରହ୍ମପୁତ୍ରର ତରଙ୍ଗରେ ଝଙ୍କୃତ ହେଉଛି। ଦିନେହେଲେ ଆଜ୍ଞାପ୍ରଭୁର ପ୍ରତିଶ୍ରୁତିର ଆଜ୍ଞାମାଳ ମିଳିବ। ମହିଳାମାନେ ତାଙ୍କର ଧାର୍ମିକ ଅଧିକାର ନିଶ୍ଚୟ ପାଇବେ ବୋଲି ଆସାମର ସଂସ୍କୃତିସମ୍ପନ୍ନା ମହିଳାମାନେ ଆଶା କରନ୍ତି। ଢେଉଟିଏ ସୃଷ୍ଟି ହେଲେ ନଦୀ ପ୍ରବାହିତ ହୁଏ। ଢେଉଟିଏ ସୃଷ୍ଟି କରିବାପାଇଁ ଦମ୍ଭିଲା ହାତଟିଏ ଲୋଡ଼ା ଓ ଶକ୍ତ ପଥର ଖଣ୍ଡିଏ ଲୋଡ଼ା, ନିର୍ଭୀକ ଝଡ଼ର ଝଙ୍କାର ଲୋଡ଼ା, ପାହାଡ଼ ଶିଖରରୁ ପବିତ୍ର ସ୍ରୋତଟିଏ ଆଧ୍ୟାତ୍ମିକତାର ବାରିଧାରାରେ ଝରି ଆସିବା ଲୋଡ଼ା। ପାହାଡ଼ ଶିଖରରେ ଅବସ୍ଥିତ ରାଜଭବନରେ ବସି ରାଜଭୋଗ କରୁ ନ ଥିଲେ ମହାମହିମ ରାଜ୍ୟପାଳ ଜାନକୀବଲ୍ଲଭ। ସେ ନିଜର ପ୍ରଜ୍ଞାର ସ୍ରୋତକୁ ଶିଖରଦେଶରୁ ପ୍ରବାହିତ କରୁଥିଲେ ଆସାମର ମହାନ୍ ସଂସ୍କୃତିରେ ସଂସ୍କାର ଆଣିବାପାଇଁ। ପ୍ରଜ୍ଞାର ସ୍ୱର ହଜିଯାଏ ନାହିଁ। ଆସାମ ମହାମହିମ ରାଜ୍ୟପାଳ ଜାନକୀବଲ୍ଲଭଙ୍କର ସ୍ୱର ହଜିଯାଇ ନାହିଁ। ଯେଉଁଦିନ ଶୁଭ ସଂସ୍କାରଟି ଆସିବ ସେଦିନ ଜାନକୀବଲ୍ଲଭ ଆସାମ ମାଟିରେ ଆଉ ଥରେ ଜନ୍ମ ହେବେ, ଏହି ଆଶା ଆସାମର ସଂସ୍କୃତିପ୍ରେମୀ ନାଗରିକମାନଙ୍କ ମଧ୍ୟରେ ଅଛି।

**ଶ୍ରୀକ୍ଷେତ୍ର ଜଗନ୍ନାଥ ମନ୍ଦିର**–ଜାନକୀବଲ୍ଲଭ ଓଡ଼ିଶା ମାଟିକୁ ପ୍ରାଣଦେଇ ଭଲପାଉଥିଲେ। ଶ୍ରୀଜଗନ୍ନାଥ ଥିଲେ ତାଙ୍କ ହୃଦୟର ଦେବତା। ଆସାମ ମାଟିରେ ଇଷ୍ଟଦେବତାଙ୍କୁ ପ୍ରତିଷ୍ଠିତ ନ କରି ସେ ଫେରିଆସିଥାନ୍ତେ କିପରି! ଡିବ୍ରୁଗଡ଼ଠାରେ ସେ ଆସାମର ଚା' ବଗିଚାରେ କାମ କରୁଥିବା ଓଡ଼ିଆମାନଙ୍କପାଇଁ କେବଳ ନୁହେଁ, ଆସାମବାସୀ ଜଗନ୍ନାଥପ୍ରେମୀମାନଙ୍କପାଇଁ ଯେଉଁ ଭବ୍ୟ ଜଗନ୍ନାଥ ମନ୍ଦିର ନିର୍ମାଣ କରି ନିଜର ରାଜ୍ୟପାଳ କାର୍ଯ୍ୟକାଳ ସମାପ୍ତ କଲେ ସେହି ମନ୍ଦିରରେ ଭିନ୍ନ ଜାତି ଓ ଭିନ୍ନ ଧର୍ମର ଲୋକମାନଙ୍କର ପ୍ରବେଶ ଅବାଧ ବୋଲି ସେଠାରେ ଘୋଷଣା କରିଥିଲେ। ସେତେବେଳେ ଏହି ଲେଖିକାର ସ୍ମରଣକୁ ଆସିଥିଲା ପୁରୀ ଶ୍ରୀକ୍ଷେତ୍ରରେ ଜଗନ୍ନାଥ ମନ୍ଦିରବେଢ଼ାରେ ଲେଖିକା ଏବଂ ତା'ର ପ୍ରଫେସର ବାନ୍ଧବୀଙ୍କ ସହ ହୋଇଥିବା ଅପ୍ରୀତିକର ଘଟଣା। ଏହିପରି ଏକ ଶୁଭ ସଂସ୍କାରମୂଳକ ଘୋଷଣା କେବେ ପୁରୀ ଶ୍ରୀକ୍ଷେତ୍ର ମନ୍ଦିରବେଢ଼ାରେ ହେବ ତାହା ଶ୍ରୀଜଗନ୍ନାଥଙ୍କୁ ଜଣା।

ଏକଥା ଜାନକୀବାବୁ ହୁଏତ ଚାହୁଁଥିଲେ, ମାତ୍ର କରିପାରିଲେ ନାହିଁ। କିନ୍ତୁ ଦିବ୍ରୁଗଡ଼ ଶ୍ରୀଜଗନ୍ନାଥ ମନ୍ଦିର ବେଢ଼ାକୁ ସବୁ ସମ୍ପ୍ରଦାୟର ଲୋକଙ୍କର ଅବାଧ ପ୍ରବେଶ ଘୋଷଣାର ସ୍ୱର ଓଡ଼ିଶା ପାଇଁ ଏକ ଆହ୍ୱାନ ଭାବରେ ଝଙ୍କୃତ ହେଲା।

ଏହି ଲେଖିକା ୨୦୧୫ ମସିହାରେ ଦିବ୍ରୁଗଡ଼ଠାରେ ସାହିତ୍ୟ ଏକାଡେମୀର ଅନୁବାଦ ପୁରସ୍କାର ଉତ୍ସବକୁ ଉଦ୍‌ଘାଟନ କରିବାପାଇଁ ଯିବା ଅବସରରେ ଦିବ୍ରୁଗଡ଼ ଶ୍ରୀକ୍ଷେତ୍ର ଜଗନ୍ନାଥ ମନ୍ଦିରକୁ ଯାଇ ତିନି ଠାକୁରଙ୍କୁ ଦର୍ଶନ କରିବାର ସୁଯୋଗ ପାଇଥିଲା। ମାତ୍ର ଦୁଃଖର କଥା ଯାହା ଆଶାକରି ଏହି ଲେଖିକା ଯାଇଥିଲା ତା' ପାଇଲା ନାହିଁ। ଦିବ୍ରୁଗଡ଼ ସହରରୁ ମନ୍ଦିର ପର୍ଯ୍ୟନ୍ତ ରାସ୍ତା ଅତ୍ୟନ୍ତ ଖରାପ ଅବସ୍ଥାରେ ଅବହେଳିତ ହୋଇପଡ଼ିଥିଲା। ଫଳରେ ଭକ୍ତମାନଙ୍କର ସମାଗମ ଯେପରି ହେବା କଥା ତାହା ହେଇପାରୁ ନାହିଁ। କେବଳ ଜଣେ ଦ୍ୱାରରକ୍ଷକ ଏବଂ ଜଣେ ପୂଜକ ମନ୍ଦିରରେ ଉପସ୍ଥିତ ଥିଲେ। ଜାନକୀବାବୁ ଆସାମରୁ ବିଦାୟ ନେବାପରେ ମନ୍ଦିରଟି ଅବହେଳିତ ହୋଇପଡ଼ିଥିଲାଭଳି ମନେହେଲା। ଦିବ୍ରୁଗଡ଼ରେ ଅବସ୍ଥିତ ଓଡ଼ିଆ ଅଫିସରମାନେ ମନ୍ଦିର ପ୍ରତି ଯେତିକ ଶ୍ରଦ୍ଧାଶୀଳ ହେବାକଥା ସେତିକି ହେଉ ନାହାନ୍ତି ବୋଲି ଶୁଣିବାକୁ ମିଳିଲା। କିନ୍ତୁ ମନ୍ଦିର କେବଳ ଓଡ଼ିଆମାନଙ୍କର ନୁହେଁ ଆସାମବାସୀମାନଙ୍କର ମଧ୍ୟ। ଏଥିପାଇଁ ଆସାମବାସୀ ସହଯୋଗ କରିବେ ବୋଲି ମତ ଦେଇଥିଲେ। ସମସ୍ତଙ୍କର ମିଳିତ ଉଦ୍ୟମରେ ମନ୍ଦିରର ସର୍ବାଙ୍ଗୀଣ ଉନ୍ନତି ହେବ ବୋଲି ଆଶା କରାଯାଏ।

ସତ୍ୟ, ପ୍ରେମ, କରୁଣା, ଅହିଂସା, ଶାନ୍ତି, ଦେଶପ୍ରେମ, ମୈତ୍ରୀ, ମାନବପ୍ରେମ, ଜୀବେଦୟା ଇତ୍ୟାଦି ଭାରତୀୟ ଦର୍ଶନର ମୂଳସ୍ୱର ଏତେ ଶାଶ୍ୱତ, ବଳିଷ୍ଠ, ଶୁଭଙ୍କର ଏବଂ ବରଣୀୟ ଯେ ସେଇ ମୂଲ୍ୟବୋଧଗୁଡ଼ିକ ହିଁ ପ୍ରକୃତରେ ରଚନାତ୍ମକ ବ୍ୟକ୍ତିତ୍ୱକୁ କରେ ବିଦ୍ରୋହୀ-ବିପ୍ଳବୀ। ଏ ବିଦ୍ରୋହ ମୂଲ୍ୟବୋଧ ବିରୋଧରେ ନୁହେଁ। ରୂଢ଼ିବାଦ, ଭ୍ରାନ୍ତି ଏବଂ ଅମାନବିକ ସଂସ୍କାର ବିରୋଧରେ। ବାହ୍ୟ ଦୃଷ୍ଟିରୁ ଦେଖିଲେ ମନେହେବ ପରମ୍ପରା ବିରୋଧୀ। ମାତ୍ର ଟିକିଏ ଗଭୀର ଦୃଷ୍ଟିରେ ଦେଖିଲେ ଦୃଶ୍ୟ ହେବ ସେହି ବିଦ୍ରୋହୀଙ୍କର ଆତ୍ମତ୍ୟାଗର ଚରମ ଉତ୍କର୍ଷ। ପରମ୍ପରାଗତ ସଂସ୍କାର ସହ ଲଢ଼ିବାର ଅର୍ଥ ସମୂହ ସହ ଲଢ଼ିବା ଏବଂ ଲହୁଲୁହାଣ ହେବା। ଏ କ'ଣ କମ୍ ଆତ୍ମତ୍ୟାଗ।

ଓଡ଼ିଶାର ଅନନ୍ୟ ବରପୁତ୍ର ଏବଂ ଆସାମର 'ଆଞ୍ଚା-ପ୍ରଭୁ' ଜାନକୀବଲ୍ଲଭ ପଟ୍ଟନାୟକ ଜଣେ ରାଜନେତା ଭାବରେ ଅମାନବୀୟ ପରମ୍ପରା ସହ ଲଢ଼ି କେତେ ଯେ ଲହୁଲୁହାଣ ହୋଇଥିଲେ ତାହା ସେ ଜାଣିଥିଲେ। ମାତ୍ର ତାଙ୍କର ସୌମ୍ୟ-ଶାନ୍ତ ବ୍ୟକ୍ତିତ୍ୱରେ ତା'ର ଚିହ୍ନବର୍ଣ୍ଣ ନ ଥିଲା। ସାରାଜୀବନ ରାଜନୀତିର ପଙ୍କ କାଦୁଅରେ ବୁଡ଼ି ରହିଥିଲେ ବି ସେ ପୋଲୁହ ଭିତରର ରାଜନେତା ନ ଥିଲେ। ସେହି ପ୍ରଣମ୍ୟ ପୁରୁଷ ଥିଲେ ମୁକ୍ତଚିନ୍ତନର ସକାରାତ୍ମକ ଅଭିବ୍ୟକ୍ତି।



# ପୂର୍ଣ୍ଣାଙ୍ଗ ମଣିଷ

ଭର୍ତ୍ତୃହରି ମହତାବ

ପରିଣତ ବୟସରେ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବିୟୋଗ ଘଟିଥିଲେ ମଧ୍ୟ ଲାଗୁଛି ସେ ହଠାତ୍ ଆକସ୍ମିକ ଭାବେ ଚାଲିଗଲେ। ତାଙ୍କର ପରଲୋକ ଗମନ କଥା ଶୁଣି ସମସ୍ତେ ଚକିତ, ଆଚମ୍ବିତ ମଧ୍ୟ। ଶେଷ ପର୍ଯ୍ୟନ୍ତ ନିଜକୁ କର୍ମଠ ରଖିଥିବା ଜାନକୀବାବୁ ଜଣେ ପୂର୍ଣ୍ଣାଙ୍ଗ ମଣିଷ ଭାବେ ନିଜକୁ ଗଢ଼ିଥିଲେ। ସାହିତ୍ୟ, ସାମ୍ବାଦିକତା ଓ ରାଜନୀତିରେ ସେ ଉତ୍ତୁଙ୍ଗ ଶିଖରରେ ପହଞ୍ଚିପାରିଲେ ନିଜର ଏକନିଷ୍ଠ ସାଧନା ଓ ଅଧ୍ୟବସାୟ ବଳରେ। ଜଣେ ବନ୍ଧୁବତ୍ସଳ ଓ ସ୍ନେହୀ ମଣିଷ ଭାବେ ତାଙ୍କୁ ସମସ୍ତେ ଜାଣନ୍ତି। ମାର୍ଜିତ ଭାଷା ଓ ଭଦ୍ର ବ୍ୟବହାର ତାଙ୍କୁ ରାଜନୀତିକ ଜୀବନରେ ଅନନ୍ୟ କରି ଗଢ଼ି ତୋଳିଥିଲା। ଦୀର୍ଘ ୮୯ ବର୍ଷର ଜୀବନକାଳ ଭିତରେ ଜାନକୀବାବୁ ଦୁଃଖକଷ୍ଟ ଦେଖିଛନ୍ତି, ସୁଖ ସଂପଦକୁ ମଧ୍ୟ ଭୋଗିଛନ୍ତି। କିନ୍ତୁ ଯେଉଁ ବିଚାର-ସଂସ୍କୃତିକୁ ସେ ନିଜ ଯୁବାବସ୍ଥାରେ ଆଦରି ନେଇଥିଲେ, ସେ ସଂକଳ୍ପରୁ ସେ ଆଦୌ ବିଚ୍ୟୁତ ହୋଇ ନାହାନ୍ତି। ଏକ ନିମ୍ନ ମଧ୍ୟବିତ୍ତ ପରିବାରର ସନ୍ତାନ ଭାବେ, ଖୋର୍ଦ୍ଧାରୁ ସ୍କୁଲ୍ ଶିକ୍ଷା ଗ୍ରହଣ କରି ରେଭେନ୍ସାରେ ଉଚ୍ଚଶିକ୍ଷା ଲାଭ କଲାବେଳେ ଦେଶମାତୃକାର ସେବାପାଇଁ ସାଧାରଣ ଜୀବନରେ ବ୍ରତୀ ହେବା ସକାଶେ ସେ ମନ ସ୍ଥିର କରିଥିଲେ ଏବଂ ପରେ ଉପାଧ୍ୟୁତ୍ତୋର ଶିକ୍ଷା ଗ୍ରହଣ କରିବାକୁ ବାରାଣସୀ ଯାଇ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ କଟକ ଫେରିବା ପରେ ପ୍ରଜାତନ୍ତ୍ର ପ୍ରଚାର ସମିତି ସହ ନିଜକୁ ସଂଶ୍ଳିଷ୍ଟ କରି ଉଭୟ ଇଂରାଜୀ ଓ ଓଡ଼ିଆ ସାମ୍ବାଦିକତାରେ ନିଜର ଦକ୍ଷତା ଓ ପାରଦର୍ଶିତା ପ୍ରଦର୍ଶନ କରିବାକୁ ସକ୍ଷମ ହୋଇଥିଲେ।

ଇଷ୍ଟର୍ଣ୍ଣ ଟାଇମ୍‌ସ ଓ ପ୍ରଜାତନ୍ତ୍ରର ସଂପାଦନା କଲାବେଳେ ସାମ୍ବାଦିକତାକୁ ଏକ ନିର୍ଦ୍ଦିଷ୍ଟ ମାର୍ଗ ପ୍ରଦର୍ଶନ କରିବାରେ ଜାନକୀବାବୁ ଯେଉଁ ଉଦ୍ୟମ କରିଥିଲେ ତାହାର ତୁଳନା ନାହିଁ। ୧୯୫୨ରୁ ୧୯୬୭ ମସିହା, ଏହି ପନ୍ଦର ବର୍ଷ ମଧ୍ୟରେ ସେ ଓଡ଼ିଶାର ଜନଜୀବନ ସହ, ସାହିତ୍ୟ-ସଂସ୍କୃତି ସହ ନିଜକୁ ସଂଶ୍ଳିଷ୍ଟ କରି କେବଳ ତଥ୍ୟ ଉପସ୍ଥାପନ କରି ନ ଥିଲେ, ଆବଶ୍ୟକସ୍ଥଳେ ସାମନ୍ତବାଦୀ ବ୍ୟବସ୍ଥା ବିରୋଧରେ ଚାଲିଥିବା ଆନ୍ଦୋଳନର ମଙ୍ଗ ଧରିଥିଲେ, ଦୁର୍ନୀତି ବିରୋଧୀ ଛାତ୍ର ଆନ୍ଦୋଳନରୁ ସଞ୍ଚାଳିତ ମଧ୍ୟ କରିଥିଲେ। ଏଭଳି କାର୍ଯ୍ୟରେ କ୍ୱଚିତ୍ କୌଣସି ଖବରକାଗଜର ସଂପାଦକ, ସ୍ୱାଧୀନତା-ଉତ୍ତର ଭାରତରେ କାର୍ଯ୍ୟ କରିଥିବା ଦେଖିବାକୁ ମିଳେ। ଜାନକୀବାବୁଙ୍କ ରାଜନୈତିକ ଜୀବନ, ସଂପାଦକ

ହେବା ଦିନରୁ ଆରମ୍ଭ ହୋଇଥିଲେ ମଧ୍ୟ ପ୍ରତ୍ୟକ୍ଷ ଦଳୀୟ ରାଜନୀତିର ସଫଳତା ୧୯୭୧ରୁ ଆରମ୍ଭ ବୋଲି କୁହାଯିବ ଯେବେ ସେ କଟକ ଲୋକସଭା ଆସନରୁ କଂଗ୍ରେସ ପ୍ରାର୍ଥୀ ଭାବେ ନିର୍ବାଚିତ ହେଲେ। ତାହା ତାଙ୍କୁ ଜାତୀୟସ୍ତରରେ କାର୍ଯ୍ୟ କରିବାକୁ ସୁଯୋଗ ଦେଲା। କେନ୍ଦ୍ରରେ ସେ ପ୍ରଥମେ ଉପମନ୍ତ୍ରୀ ଓ ପରେ ରାଷ୍ଟ୍ରମନ୍ତ୍ରୀ ହେଲେ। ୧୯୮୦ରେ କ୍ୟାବିନେଟ୍ ମନ୍ତ୍ରୀ ମଧ୍ୟ ହୋଇଥିଲେ ସ୍ୱଳ୍ପକାଳପାଇଁ। ତେବେ ତାଙ୍କ ରାଜନୀତିକ ଜୀବନରେ ଏକ ପ୍ରମୁଖ ମୁହୂର୍ତ୍ତ ଥିଲା ୧୯୭୮ ମସିହା, ଯେବେ କଂଗ୍ରେସର ବିଭାଜନ ଘଟିଲା ଏବଂ ସେ ଇନ୍ଦିରା ଗାନ୍ଧୀଙ୍କ ସହ ରହି ଓଡ଼ିଶାରେ ନୂଆ କରି କଂଗ୍ରେସକୁ ଗଢ଼ିଲେ। ଆଜି ସେହି କଂଗ୍ରେସ ଓଡ଼ିଶାରେ ଅଛି। ୧୯୮୦ ଓ ୧୯୮୪ରେ କଂଗ୍ରେସକୁ ବିଜୟୀ କରି ସଫଳତାର ସହ ସରକାର ଗଢ଼ିବାର ଶ୍ରେୟ ଯଦି କାହାକୁ ଦିଆଯିବ, ତେବେ ସେ ହେଉଛନ୍ତି ଜାନକୀବଲ୍ଲଭ ପଟ୍ଟନାୟକ। ୧୯୯୫ରେ ପୁନର୍ବାର ଜାନକୀବାବୁ ମୁଖ୍ୟମନ୍ତ୍ରୀ ହୋଇ ୧୯୯୯ ଯାଏ ଶାସନ କରି ସର୍ବାଧିକ ସମୟ ମୁଖ୍ୟମନ୍ତ୍ରୀ ହେବାର ଇତିହାସ ଗତ ଶତାବ୍ଦୀରେ ସୃଷ୍ଟି କରିଛନ୍ତି।

ଜଣେ ପ୍ରଗଲ୍‌ଭ ବକ୍ତା, ସଂସ୍କୃତି ସଚେତନ ବ୍ୟକ୍ତି ଓ ସର୍ବୋପରି ଜଗନ୍ନାଥ ଭକ୍ତ ଭାବେ ଜାନକୀବାବୁ ନିଜର ପରିଚୟ ସୃଷ୍ଟି କରିଥିବା କାରଣରୁ ତାଙ୍କର ବ୍ୟକ୍ତିତ୍ୱର ସୁଶୋଭିତ ଦିଗ ପ୍ରତି ଅନେକ ଆକର୍ଷିତ ହୋଇଥାନ୍ତି। ଜଣେ ବିଚକ୍ଷଣ ରାଜନେତା ଭାବେ ମଧ୍ୟ ସେ ନିଜର ଉପସ୍ଥିତିଦ୍ୱାରା ଏକ ଯୁଗ ନିର୍ମାଣ କରିଯାଇଛନ୍ତି। ଆଜି ହୁଏତ ଓଡ଼ିଶାର ଜନଜୀବନକୁ ତାଙ୍କର ଦାନ ସମ୍ପର୍କରେ ସେଭଳି ସମୀକ୍ଷା କରିବାର ସମୟ ନୁହେଁ, କିନ୍ତୁ ଅଚିରେ ସେଦିନ ଆସିବ, ଯେବେ ଜାନକୀବାବୁଙ୍କ ଓଡ଼ିଶାର ଉନ୍ନତିପାଇଁ ସମର୍ପିତ ଜୀବନ ପ୍ରତି ଲୋକେ ସଚେତନ ହେବେ ଏବଂ ଜାଣିବେ କିପରି ଜଣେ ପ୍ରାଇମେରୀ ସ୍କୁଲ ଶିକ୍ଷକଙ୍କ ପୁତ୍ର ନିଜର ଅଧ୍ୟବସାୟ, ସାଧନା, ନିରଳସ ବ୍ୟବହାର ଓ ଉଚ୍ଚକୋଟୀର ବାଗ୍ମିତାଦ୍ୱାରା ରାଜ୍ୟର ଶାସନ ଡୋରି ୧୪ବର୍ଷ ପର୍ଯ୍ୟନ୍ତ ନିଜ ହାତରେ ରଖି ଓଡ଼ିଶାର ଉନ୍ନତିର ମାର୍ଗକୁ କ୍ଷିପ୍ରତର କରିପାରିଥିଲେ। ତିରୁପତିରେ ତାଙ୍କର ଦୁଃଖଦ ବିୟୋଗଦ୍ୱାରା ଆମେ ମର୍ମାହତ, ସମଗ୍ର ଓଡ଼ିଶା ମଧ୍ୟ।



# କଟକର ବିକାଶ ଓ ଜାନକୀବଲ୍ଲଭ

ଅନ୍ନଦା ପ୍ରସାଦ ରାୟ

ଇତିହାସର ଅବାରିତ ସ୍ରୋତମୁଖରେ କେତେ ସଭ୍ୟତା ଓ କେତେ ସଂସ୍କୃତିର ଉତ୍‌ଥାନ ପତନ ହୋଇଆସିଛି ତା'ର ଇୟତ୍ତା ନାହିଁ। ସେହି କାଳପ୍ରବାହରେ ଓଡ଼ିଶା ରାଜ୍ୟର ସର୍ବପ୍ରାଚୀନ ଅନ୍ୟତମ ସହର କଟକର ଅବସ୍ଥିତି ହଜାର ବର୍ଷ ଧରି ଗୋଟିଏ କ୍ରମବର୍ଦ୍ଧିଷ୍ଣୁ ବିକାଶ ପ୍ରକ୍ରିୟାରେ ନବକଳେବର ଧାରଣ କରିଛି ବୋଲି ମନେ ହେବା ସ୍ୱାଭାବିକ। କଟକର ସମୃଦ୍ଧ ଐତିହ୍ୟ ଥିଲା, ବିସ୍ତୃତି ନ ଥିଲା। ଶୃଙ୍ଖଳିତ ଓ ସମନ୍ୱିତ ବିକାଶ ଧାରା ନ ଥିଲା। ବାସ୍ତବରେ ୧୯୮୦ ମସିହାରେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଦୂରଦୃଷ୍ଟି, ସମୟୋପଯୋଗୀ ଯୋଜନା ଓ କାର୍ଯ୍ୟକ୍ରମ ହେତୁ କଟକର ସଂପ୍ରସାରଣ ଓ ଆଧୁନିକୀକରଣ ଆରମ୍ଭ ହେଲା।

ଏକଦା କଟକସହର ଦୁଇଟି ନଦୀ – ମହାନଦୀ ଓ କାଠଯୋଡ଼ିର ବର୍ଗବନ୍ଧନୀ ମଧ୍ୟରେ ସୀମିତ ଥିଲା। ୧୮୭୦-୮୦ ମସିହା ସମୟକୁ ସହରର ଜନସଂଖ୍ୟା ୪୦ ହଜାର ପାଖାପାଖି ଥିବାବେଳେ ୧୯୭୦-୮୦ ବେଳକୁ ଏହା ଚାରି ଲକ୍ଷ ଟପି ସାରିଥିଲା। ଏକପ୍ରକାର ଶ୍ୱାସରୁଦ୍ଧ ଅବସ୍ଥା। ସହରର ବିଭବ ବଢୁଥିଲା, ଜନସଂଖ୍ୟା ବଢୁଥିଲା–ମାତ୍ର ତାହାର ଭୌଗୋଳିକ ବିସ୍ତାର ଘଟୁ ନ ଥିଲା। ପୁଣି ପ୍ରତିବର୍ଷ ବନ୍ୟାବିପତ୍ତି। ବର୍ଷା ଚାରି ମାସ ବିଶେଷକରି ନଦୀରେ ବନ୍ୟା ଆସିଲେ ସହରବାସୀ ଆଶଙ୍କା ଓ ଆତଙ୍କ ଭିତରେ ଉନ୍ନିଦ୍ର ରଜନୀ ବିତାଉଥିଲେ। ଦୁଇଟିଯାକ ନଦୀର ଶଯ୍ୟା ଉପରେ, କଟକସହର ତଳେ। ଦିନେ ଯାହାକୁ ଲକ୍ଷ୍ୟକରି ଉନବିଂଶ ଶତାବ୍ଦୀର ଶେଷ ଭାଗରେ 'ଉତ୍କଳ ଦୀପିକା' ପତ୍ରିକା କଟକସହର ସଂପର୍କରେ ଲେଖିଥିଲେ, କଟକ ଏକ କଡ଼େଇ। କଡ଼େଇର ଚାରିପଟ ମଙ୍ଗ ହେଉଛି ମହାନଦୀ ଓ କାଠଯୋଡ଼ିର ପଥରବନ୍ଧ। ମହାବିପତ୍ତି। ମର୍କତକେଶରୀଙ୍କ ନିର୍ମିତ ପଥରବନ୍ଧ ବନ୍ୟାର ପ୍ରକୋପ ସମ୍ଭାଳିବାକୁ ଦିନକୁ ଦିନ ଦୁର୍ବଳରୁ ଦୁର୍ବଳତର। କଟକର ବିସ୍ତାରପାଇଁ ସୁଯୋଗ ସୃଷ୍ଟି ହୋଇ ନ ଥିବାରୁ ବୋଧହୁଏ ସ୍ୱାଧୀନତା ପରେ ଐତିହ୍ୟ ଓ ପ୍ରାଚୀନତ୍ୱ ଥାଇ ମଧ୍ୟ କଟକସହର ଓଡ଼ିଶାର ରାଜଧାନୀ ହୋଇପାରିଲା ନାହିଁ। ଭୁବନେଶ୍ୱର ହେଲା ଓଡ଼ିଶାର ରାଜଧାନୀ। ଯଦିଓ ପୂର୍ବରୁ ଶହଶହବର୍ଷ ଧରି କଟକ ହିଁ ଥିଲା ଓଡ଼ିଶାର ରାଜଧାନୀ। ସୋମବଂଶୀ ରାଜାଙ୍କଠାରୁ ଆରମ୍ଭ କରି ଗଜପତି ରାଜା, ମୋଗଲ, ମରହଟ୍ଟା ସମସ୍ତେ କଟକକୁ ରାଜଧାନୀ କରିଥିଲେ। ଇଂରେଜଶାସନ ସମୟରେ ମଧ୍ୟ କଟକ ଥିଲା ଓଡ଼ିଶାର ରାଜଧାନୀ। କଟକ ସହରର ସମୃଦ୍ଧ ଐତିହ୍ୟ ଓ ବିଭିନ୍ନ କ୍ଷେତ୍ରରେ ଏହାର ପ୍ରାଧାନ୍ୟ ହେତୁ ସେତେବେଳେ ରାଜ୍ୟର ପ୍ରଖ୍ୟାତ ବ୍ୟକ୍ତିମାନେ କଟକ ସହରରେ ନିଜର ବାସଗୃହ ନିର୍ମାଣ

କରୁଥିଲେ। ଆଳି, କନିକା, ମଧୁପୁରର ପ୍ରସିଦ୍ଧ ଜମିଦାରମାନେ କଟକସହରରେ କୋଠି ନିର୍ମାଣ କରିଥିଲେ ଓ ରହୁଥିଲେ। ସୁବିଖ୍ୟାତ ମୋତିଲାଲ ପଣ୍ଡିତଙ୍କର ଥିଲା ମୋତିଲାଲ ଇଷ୍ଟେଟ। ମୁକୁର ପତ୍ରିକାର ସଂପାଦକ, ବିଶିଷ୍ଟ ଜମିଦାର ତଥା ସାହିତ୍ୟିକ ବ୍ରଜସୁନ୍ଦର ଦାସ, ଗୌରୀଶଙ୍କର ରାୟଙ୍କ ପରିବାର, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀଙ୍କ ପିତା ଗୋକୁଳାନନ୍ଦ ଚୌଧୁରୀ, କଂଗ୍ରେସ ନେତା ଓ ମନ୍ତ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରମୁଖ ଜମିଦାର ଓ ପରିବାର କଟକ ସହରରେ ବାସ କରୁଥିଲେ। ଉତ୍କଳଗୌରବ ମଧୁବାବୁଙ୍କର ମଧ୍ୟ କଟକରେ ବାସଗୃହ ଥିଲା। କଟକ ହେଉଛି ସୁଭାଷ ବୋଷଙ୍କର ଜନ୍ମସ୍ଥାନ। ବୋଧହୁଏ ସେହି ଜମିଦାରୀ ଖାତିରରେ ମୋର ପିତା କୃଷ୍ଣକାନ୍ତ ରାୟ ମଧ୍ୟ କଟକର କାଠଯୋଡ଼ି କୂଳରେ, ତଲତେଲେଙ୍ଗା ବଜାରରେ ବାସଗୃହ ନିର୍ମାଣ କରିଥିଲେ। ତେଣୁ ମୋର କଟକସହର ସହିତ ସଂପୃକ୍ତି ବାଲ୍ୟକାଳରୁ। ମୁଁ ସେ କାଳର କଟକର ସ୍ଥିତିକୁ ଦେଖିଛି। ଆଜିର ସୁବିସ୍ତୃତ ଓ ସମୁନ୍ନତ କଟକକୁ ବି ଦେଖୁଛି। ୧୯୮୦ ମସିହା ପରେ ଏହାର ବିକାଶ ପ୍ରକ୍ରିୟା ଓ ତା'ର ସମର୍ଥ ବିନ୍ଧାଣି ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଭୂମିକାକୁ ସେଥିପାଇଁ ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ହୁଏ। ଜାନକୀବାବୁଙ୍କର କଟକ ସହିତ ଦୀର୍ଘ ଦିନର ନିବିଡ଼ ସଂପର୍କ ଥିଲା। କଟକର ଆବଶ୍ୟକତା ଓ ସମସ୍ୟା ସେ ବୁଝିଥିଲେ, ବିକାଶ ଚାହୁଁଥିଲେ ଏବଂ ସୁଯୋଗ ପାଇବାମାତ୍ରେ ସେ ତା'ର ବାଞ୍ଛିତ ସଦୁପଯୋଗ କରିଥିଲେ।

ଜାନକୀବାବୁ ରେଭେନ୍ସା କଲେଜରେ ଚାରି ବର୍ଷ ପାଠ ପଢ଼ିଛନ୍ତି। ଏଇଠି କଲେଜ ପରିସରରେ ବିଦେଶୀ ୟୁନିୟନ ଜ୍ୟାକ୍ ହଟେଇ, ଜାତୀୟ ତ୍ରିରଙ୍ଗା ଉଡ଼େଇ ଛାତ୍ର ଜୀବନରେ ସେ ତାଙ୍କ ଦେଶପ୍ରେମର ସଙ୍କେତ ଦେଇଛନ୍ତି। ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଶିକ୍ଷା ଶେଷ କରି ସେ ଏହି କଟକ ସହରରୁ ହିଁ ଦୈନିକ ପ୍ରଜାତନ୍ତ୍ର ଓ ଇଂରେଜୀ ଭାଷାର ଦୈନିକ ଇଷ୍ଟର୍ଣ୍ଣ ଟାଇମ୍‌ସର ସଂପାଦକ ଭାବରେ ୧୯୫୧-୫୨ ମସିହାରେ ନିଜର କର୍ମମୟ ଜୀବନ ଆରମ୍ଭ କରିଛନ୍ତି। ୧୯୫୩ ମସିହାରେ ପ୍ରଜାତନ୍ତ୍ରର ସଂପାଦକ ଥାଇ, ସହରର ଶିକ୍ଷିତ ଯୁବକମାନଙ୍କୁ ଏକତ୍ର କରାଇ କଟକ କଲେଜ ଛକ ପୋଷ୍ଟ ଅଫିସ୍‌ଠାରୁ ଭୀମା ବରଫ କଳଯାଏ, ମୁଣ୍ଡରେ ମାଟି ବୋହି ରାସ୍ତା ନିର୍ମାଣ କରିଛନ୍ତି। ଏଇ ସହରରୁ ସେ ତାଙ୍କର ମାନସ ସନ୍ତାନ 'ପୌରୁଷ' ପତ୍ରିକା ୧୯୬୭ ମସିହାରେ ପ୍ରକାଶ କରିଛନ୍ତି। ଜାନକୀବାବୁଙ୍କର ବୌଦ୍ଧିକ, ସାଂସ୍କୃତିକ ଓ ରାଜନୀତିକ ଜୀବନର ଭୂୟୋବିକାଶର କ୍ଷେତ୍ର ହେଉଛି କଟକସହର। କଟକ ଲୋକସଭା ଆସନରୁ ସେ ୧୯୭୧ ମସିହା ସାଧାରଣ ନିର୍ବାଚନରେ ପାର୍ଲ୍ୟାମେଣ୍ଟକୁ ନିର୍ବାଚିତ ହୁଅନ୍ତି। ସେହି ସୂତ୍ରରେ କଟକର ନାନାବିଧ ବିକାଶର ସେ ସୂତ୍ରଧର ସାଜିଛନ୍ତି ପରବର୍ତ୍ତୀକାଳରେ। ଇଷ୍ଟର୍ଣ୍ଣ ଟାଇମ୍ସରେ ସେ ଲେଖିଥିବା ଏକ ସଂପାଦକୀୟ ବିଷୟ ଏଠାରେ ଉଲ୍ଲେଖ କଲେ ଭାବୁଛି ଅପ୍ରାସଙ୍ଗିକ ହେବ ନାହିଁ। କଟକ ସହରର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ଦେଇ ୧୧. ୯. ୧୯୫୨ ତାରିଖରେ ସେ ଲେଖିଥିଲେ ସଂପାଦକୀୟ। 'Clean Cuttack'। ବିନୋବା ଭାବେଙ୍କର ସାରା ଦେଶରେ 'ସ୍ୱଚ୍ଛ ଭାରତ' ଆନ୍ଦୋଳନ ଡାକରାକୁ ଲକ୍ଷ୍ୟ କରି ସେ ଲେଖିଥିଲେ 'Acharya Vinoba Bhave has

initiated what he calls Swachha Bharat Movement. The aim of this movement is to keep the towns and cities of this country clean.

If any where in Odisha, this movement is urgently needed it is in Cuttack. It is the centre of learning, business and administration of Odisha. An unclean Cuttack is a disgrace to the state. The youth of Cuttack should rise to the occasion and set an example for others in the state to follow.

ମୁଖ୍ୟମନ୍ତ୍ରୀ ଭାବରେ ଦାୟିତ୍ୱ ଗ୍ରହଣ କରିବା ପରେ ସେ ତାଙ୍କ ଛାତ୍ରଜୀବନର ତପୋଭୂମି, କର୍ମମୟ ଜୀବନର ଆଦ୍ୟଭୂମି, ଓଡ଼ିଶାର ପ୍ରାଚୀନ ଓ ଐତିହାସିକ ସହର କଟକର ବିସ୍ତୃତି ପ୍ରତି ପ୍ରଥମେ ଧ୍ୟାନ ଦେଇଛନ୍ତି। ସହରର ପରିସୀମାର ଅଭିବୃଦ୍ଧି ଘଟିବା ଆବଶ୍ୟକ ବୋଲି ସେ ବହୁ ପୂର୍ବରୁ ଅନୁଭବ କରିଥିଲେ। ସହରର ଜନସଂଖ୍ୟା ଯେଉଁ ହାରରେ ବଢୁଛି, କଟକସହରର ଗୁରୁତ୍ୱ ଓ ବିଭିନ୍ନ ବିଚାରରୁ କଟକସହର ଉପରେ ରାଜ୍ୟର ଜନସାଧାରଣ ଯେପରି ନିର୍ଭର କରୁଛନ୍ତି-ସହରର ବିସ୍ତୃତି ବିନା ଜୀବନଯାତ୍ରା ଦୁର୍ବିସହ ହେଉଥିବାର ଲକ୍ଷ୍ୟ କରି ସେ ପ୍ରଥମେ ଆରମ୍ଭ କଲେ କଟକର ବିସ୍ତାର ପର୍ବ। ମହାନଦୀ, କାଠଯୋଡ଼ି, ବିରୂପା, କୁଆଖାଇ ଆଦି ନଦୀରେ ସେତୁମାନ ନିର୍ମାଣ କରି ଚତୁର୍ଦ୍ଦିଗକୁ ସେ କଟକ ସହରକୁ ପରିବ୍ୟାପ୍ତ କରାଇଲେ। ଉତ୍ତରରେ ଚୌଦ୍ୱାର ପର୍ଯ୍ୟନ୍ତ ଓ ଦକ୍ଷିଣରେ ବୟାଳିଶ ମୌଜା, ବାରଙ୍ଗ ପର୍ଯ୍ୟନ୍ତ, ପଶ୍ଚିମରେ ନରାଜ-ମୁଣ୍ଡୁଳି ଓ ପୂର୍ବରେ ନୂଆବଜାର ଶେଷ ପର୍ଯ୍ୟନ୍ତ ଏହାର ସଘନ ପରିବ୍ୟାପ୍ତି ଘଟିଲା। ବାରଙ୍ଗରେ କୁଆଖାଇ ସେତୁ ନିର୍ମାଣ ଫଳରେ ଏହା ବାଙ୍କି ସହିତ ସଂଯୁକ୍ତ ହେଲା। ନରାଜ ବ୍ୟାରେଜ ଓ ସେତୁ ହେବା ଯୋଗୁଁ ପଶ୍ଚିମ କଟକର ଏକ ପତିତ ଓ ବିସ୍ତୃତ ଅଞ୍ଚଳ ବିକାଶ ପ୍ରକ୍ରିୟାରେ ସାମିଲ ହୋଇପାରିଲା। କଟକ ଓ ଚୌଦ୍ୱାର ଏକ ହୋଇଗଲା। ଫୁଲନଖରା କଟକର ସାଟେଲାଇଟ ସହର ହେଲା ଏବଂ କଟକର ବ୍ୟାପ୍ତି ଭୁବନେଶ୍ୱରକୁ ଛୁଇଁଲା-ଦ୍ୱୈତନଗରୀ ପରିକଳ୍ପନା କରାଗଲା। କଟକ ସହରର ବିସ୍ତୃତିରେ ଜାନକୀବାବୁଙ୍କର ସବୁଠୁଁ ବଡ଼ ଅବଦାନ ହେଉଛି ବିଡ଼ାନାସୀ କଟକ। ୧୯୮୫ ମସିହା ଅକ୍ଟୋବର ଦୁଇ ତାରିଖ ଗାନ୍ଧୀଜୟନ୍ତୀ ଅବକାଶରେ ସେ କଟକର ଆଉ ଏକ ଅଭିନବ ସଂସ୍କରଣ 'ବିଡ଼ାନାସୀ କଟକ' ପ୍ରକଳ୍ପର ଶୁଭାରମ୍ଭ କରିଥିଲେ। ଜାନକୀବାବୁ ସେତେବେଳେ କହିଥିଲେ, ମର୍କତ କେଶରୀ କଟକରେ ତାଙ୍କର ରାଜଧାନୀ ପ୍ରତିଷ୍ଠା କଲାବେଳେ ବିଡ଼ାନାସୀକୁ ଦୁର୍ଗ ଭାବରେ ବ୍ୟବହାର କରୁଥିଲେ। ବିଡ଼ାନାସୀରୁ ହିଁ କଟକର ଜନ୍ମ ଓ ଏହାର ଐତିହାସିକ ନାମ ହେଉଛି ବିଡ଼ାନାସୀ କଟକ। ଏହାକୁ ଜାନକୀବାବୁ ବାରାଣସୀ କଟକ ଭାବରେ ଅଭିହିତ କରିଥିଲେ। କାରଣ ବିଡ଼ାନାସୀ ଶବ୍ଦ ବାରାଣସୀ ଶବ୍ଦର ଅପଭ୍ରଂଶ। ଏହି ବିସ୍ତୃତ ଅଞ୍ଚଳ ଏବେ ସି.ଡ଼ି.ଏ. ବା ମର୍କତନଗର ନାମରେ ନାମିତ। ଏହି ସିଡ଼ିଏ ଅଞ୍ଚଳ କଟକର ଏକ ସଂଭ୍ରାନ୍ତ ଅଞ୍ଚଳ ଏବଂ ବିଭିନ୍ନ ବର୍ଗର ବହୁ ବୁଦ୍ଧିଜୀବୀ ଏଠାରେ ବସବାସ କରୁଛନ୍ତି। ଏହାକୁ ପାରମ୍ପରିକ ସହରର ଭିତ୍ତିଭୂମିଜନିତ ବିଭିନ୍ନ ସମସ୍ୟାରୁ ମୁକ୍ତି କରିବାପାଇଁ ଭୁବନେଶ୍ୱର ଢାଞ୍ଚାରେ ଏକ ଯୋଜନାବଦ୍ଧ ସହର ଭାବରେ ଗଢ଼ା ଯାଇଛି।

ଏହାର ବିକାଶ ଓ ତତ୍ତ୍ୱାବଧାନ ପାଇଁ ସେହି ସମୟରୁ କଟକ ଉନ୍ନୟନ କର୍ତ୍ତୃପକ୍ଷ ବା Cuttack Development Authorityର ସୃଷ୍ଟି। ଏହି କଟକ ଉନ୍ନୟନ କର୍ତ୍ତୃପକ୍ଷଙ୍କ ଅଧୀନରେ ମହାନଦୀର ପୂର୍ବ ଉପକୂଳରେ ଶିଖରପୁରଠାରୁ ନୂଆବଜାର ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ 'ମହାନଦୀ ବିହାର' ଭାବରେ ନାମିତ ହୋଇ ଏକ ବିରାଟ ସଂଭ୍ରାନ୍ତ ଜନବସତି ଅଞ୍ଚଳରେ ଏବେ ପରିଗଣିତ ହେଉଛି।

୧୯୮୨ ମସିହାର ମହାବନ୍ୟା କଟକ ସହର ପାଇଁ ବିପଦ ଆଣିଥିଲା। ଏହି ମହାବନ୍ୟାରେ ଉପକୂଳ ଓଡ଼ିଶାର ବହୁ କ୍ଷତି ହୋଇଯାଇଛି। ଯଦି ତଳମୁଣ୍ଡରେ ଦଳେଇ ଘାଇ ଭାଙ୍ଗି ନ ଥାନ୍ତା ଓ କାଠଯୋଡ଼ିରେ ଗୋପାଳପୁରଠାରେ ଘାଇ ହୋଇ ନ ଥାନ୍ତା କଟକସହର ଭାସି ଯାଇଥାନ୍ତା। ସର୍ବପ୍ରାଚୀନ ଐତିହାସିକ ସହର, ସଂସ୍କୃତିର ପ୍ରାଣପୀଠ, ରାଜ୍ୟ ବାଣିଜ୍ୟ-ବ୍ୟବସାୟର କେନ୍ଦ୍ରସ୍ଥଳୀ ସବୁଦିନ ପାଇଁ ଧ୍ୱସ୍ତ ହୋଇଯାଇଥାଆନ୍ତା। ପୂର୍ବରୁ ବନ୍ୟା ସମୟରେ ଜାନକୀବାବୁ କଟକ ସହର ପ୍ରତି ବିପଦକୁ ମଧ ଅନୁଭବ କରିଥିଲେ। ମୁଖ୍ୟମନ୍ତ୍ରୀ ହେବା ପୂର୍ବରୁ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥିବା ସମୟରେ ଦିଲ୍ଲୀ ପରି କଟକଠାରେ ରିଂ ରୋଡ୍ ନିର୍ମାଣପାଇଁ ସେ ବାରମ୍ବାର ଦାବି କରି ଆସୁଥିଲେ। ପ୍ରତିବର୍ଷ ବନ୍ୟା ସମୟରେ ଜଳସେଚନ ବିଭାଗର କର୍ମଚାରୀମାନେ ମାତାମଠ ଠାରୁ ଖାନନଗର ଯାଏ ଦୁର୍ବଳ ପଥରବନ୍ଧ ଉପରେ ଥାକ ଥାକ ବାଲି ଭର୍ତ୍ତି ବସ୍ତା ଗଦେଇ ବନ୍ୟା ଜଳକୁ ନିୟନ୍ତ୍ରଣ କରିବାକୁ ଯେଉଁ ଅସହ୍ୟ ଉଦ୍ୟମ କରନ୍ତି-ଜାନକୀବାବୁ ସେ ଦୁରବସ୍ଥାକୁ ପୂର୍ବରୁ ଅନୁଭବ କରିଥିଲେ। ମର୍କତକେଶରୀଙ୍କ ଅମଳରେ ନିର୍ମିତ ପଥର ବନ୍ଧ ଆଉ କଟକକୁ ସୁରକ୍ଷା ଦେବାପାଇଁ ଆଦୌ ସମର୍ଥ ନ ଥିଲା। ୧୯୮୨ ବନ୍ୟାରେ ଓଡ଼ିଶାର ଅନ୍ୟାନ୍ୟ କ୍ଷତିଗ୍ରସ୍ତ ଅଞ୍ଚଳର ଉପଯୁକ୍ତ ପୁନରୁଦ୍ଧାର କାର୍ଯ୍ୟକ୍ରମ ସହିତ କଟକର ମହାନଦୀ-କାଠଯୋଡ଼ି ରିଂ ରୋଡ୍ ନିର୍ମାଣ ପାଇଁ ସେ ନିର୍ଦ୍ଦେଶ ଦେଲେ। ଦକ୍ଷ ଇଂଜିନିୟରମାନଙ୍କୁ ଦାୟିତ୍ୱ ଦେଇ ନିର୍ଦ୍ଧାରିତ ସମୟସୀମା ମଧ୍ୟରେ କାର୍ଯ୍ୟ ଶେଷ କରାଇବାକୁ ବ୍ୟବସ୍ଥା କରାଇଲେ। ଆଜି ଏହି ରିଂ ରୋଡ୍ କଟକ ସହରକୁ କେବଳ ବନ୍ୟା ପ୍ରକୋପରୁ ସୁରକ୍ଷା ଦେଉ ନାହିଁ; ଏହାକୁ ଗମନାଗମନ ପାଇଁ ପ୍ରମୁଖ ରାସ୍ତା ଭାବରେ ବ୍ୟବହାର କରାଯାଉଛି। କଟକର ଜନସଂଖ୍ୟା ଯେପରି ବଢ଼ିଛି, ରିଂ ରୋଡ୍ ନ ଥିଲେ ଯାତାୟାତ ବର୍ତ୍ତମାନ ବିଷମ ସମସ୍ୟା ସୃଷ୍ଟି କରୁଥାନ୍ତା। ଏହି ରିଂ ରୋଡ୍ ବର୍ତ୍ତମାନ କଟକସହରର ମୁଖ୍ୟ ଗମନାଗମନର ଭାର ସମ୍ଭାଳୁଛି। ଜଳସେଚନ ବିଭାଗ ଜରିଆରେ କଟକସହର ପାଇଁ ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରାଯିବା ସମୟରେ ଶ୍ରୀ ନିରଞ୍ଜନ ପଟ୍ଟନାୟକ ଜଳସେଚନ ବିଭାଗର ଓ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ନଗର ଉନ୍ନୟନ ବିଭାଗର ମନ୍ତ୍ରୀ ଭାବରେ ଜାନକୀବାବୁଙ୍କ ମନ୍ତ୍ରିମଣ୍ଡଳରେ କାର୍ଯ୍ୟ କରୁଥିଲେ। ମୁଖ୍ୟମନ୍ତ୍ରୀଙ୍କ ସ୍ୱପ୍ନକୁ ସଫଳ କରିବାପାଇଁ ସେମାନେ ନିଷ୍ଠାର ସହିତ ଦାୟିତ୍ୱ ସଂପାଦନ କରୁଥିଲେ। ବାସ୍ତବରେ କଟକ ରିଂ ରୋଡ୍ ନିର୍ମାଣ ଜାନକୀବାବୁଙ୍କର ଏକ ଐତିହାସିକ ପଦକ୍ଷେପ ଏବଂ ଏହା ଚିରକାଳ ଅବିସ୍ମରଣୀୟ ହୋଇ ରହିଥିବ।

ମୁଖ୍ୟମନ୍ତ୍ରୀ ଥିବା ସମୟରେ ଶ୍ରୀ ପଟ୍ଟନାୟକ ଓ.ଡ଼ି.ଏ. (ବ୍ରିଟିଶ ସରକାରଙ୍କ ଉନ୍ନୟନ ସଂସ୍ଥା)କୁ କଟକର ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାପାଇଁ ଅନୁରୋଧ କରିଥିଲେ। ଫଳରେ ବ୍ରିଟିଶ ସରକାରଙ୍କଦ୍ୱାରା ବିପୁଳ ଅର୍ଥ କଟକର ଉନ୍ନତିପାଇଁ ଆସିଲା। କଟକ ମହାନଗର ନିଗମ ଅଧୀନରେ ଏହି ପ୍ରକଳ୍ପଟି କାର୍ଯ୍ୟ କଲା ଏବଂ 'କଟକ ସହର ଏକ ବସ୍ତିର ସହର'... ଏ ଅପବାଦକୁ ଦୂର କରିବା ଲକ୍ଷ୍ୟରେ ବସ୍ତି ଉନ୍ନୟନ ନାମରେ କଟକର ପ୍ରାୟ ସବୁ ବସ୍ତି ଅଞ୍ଚଳକୁ ଆଧୁନିକ ସୁବିଧା, ଯଥା...ପକ୍କାଘର ନିର୍ମାଣ, ଶୌଚାଳୟ ସ୍ଥାପନ, ପାନୀୟ ଜଳଯୋଗାଣ, ରାସ୍ତା ଓ ବିଦ୍ୟୁତ୍ ଇତ୍ୟାଦି ସହିତ ଅନ୍ୟାନ୍ୟ ସ୍ୱାସ୍ଥ୍ୟଗତ ସହାୟତାର ସୁଯୋଗ ମିଳିଲା। କଟକର ବସ୍ତି ଅଞ୍ଚଳ ହେଉଛି କଟକ ସହରର ଐତିହାସିକ ପରମ୍ପରାର ଏକ ଅଂଶ। ତେଣୁ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କ ଉଦ୍ୟମରେ ବସ୍ତି ଉନ୍ନୟନ କରାଯାଇ ବସ୍ତିର ସ୍ଥାୟିତ୍ୱକୁ ଦୃଢ଼ୀଭୂତ କରାଯାଇଥିଲା। ଅଥଚ ପରବର୍ତ୍ତୀ ସମୟରେ କଟକରୁ ବସ୍ତି ଉଚ୍ଛେଦ କରିବାପାଇଁ ସରକାର ପଦକ୍ଷେପ ନେଲେ। ଉଚ୍ଚ ନ୍ୟାୟାଳୟରେ ମଧ୍ୟ ଏ ସଂକ୍ରାନ୍ତ ମାମଲା ରୁଜୁ ହେଲା ଏବଂ କଟକ ସହରରୁ ବସ୍ତି ସବୁ ନିର୍ମୂଳ କରିବାର ନିଷ୍ପତ୍ତି ନିଆଗଲା। ଏବେ ମଧ୍ୟ ଲକ୍ଷ ଲକ୍ଷ ବସ୍ତିର ମଣିଷ ନିରୁପାୟ ହୋଇ ଗଛ ତଳେ, ରାସ୍ତା କଡ଼ରେ ମୁଣ୍ଡ ଗୁଞ୍ଜି ରହିଛନ୍ତି। ସେମାନଙ୍କର ସ୍ୱତ୍ୱ ସଂପତ୍ତି କିଛି ନାହିଁ। ସରକାରଙ୍କ ଅଧୀନରେ ଥିବା ପତିତ ଜମିରେ ସେମାନେ ପରମ୍ପରାକ୍ରମେ ଶହ ଶହ ବର୍ଷ ଧରି ରହି ଆସିଥିଲେ। ଏବେ ସେମାନଙ୍କୁ ଥଇଥାନ କରିବାର ବ୍ୟବସ୍ଥା ନ କରି ଉଚ୍ଛେଦ ଅଭିଯାନ ଚାଲିବା ଅନ୍ଧାରି ଶାସନର ପ୍ରମାଣ। କେବଳ କଟକ ନୁହେଁ ଜାନକୀବାବୁଙ୍କ ସମୟରେ ଭୁବନେଶ୍ୱରରେ ମଧ୍ୟ ବସ୍ତିବାସିନ୍ଦାଙ୍କ ଉପଯୁକ୍ତ ଥଇଥାନ ପାଇଁ ପଦକ୍ଷେପ ନିଆଯାଇଥିଲା।

ତାଙ୍କରି ମୁଖ୍ୟମନ୍ତ୍ରିତ୍ୱ ସମୟରେ କଟକ ମ୍ୟୁନିସିପାଲିଟି କାଉନ୍‌ସିଲ ବା କଟକ ପୌର ପରିଷଦ କଟକ ମହାନଗର ନିଗମରେ ବା କରପୋରେସନରେ ପରିଣତ ହୋଇଥିଲା। କଟକସହରକୁ ଐତିହ୍ୟର ସହର ଭାବେ ସୁରକ୍ଷିତ କରିବାପାଇଁ ତାଙ୍କରି ଉଦ୍ୟମରେ ବାରବାଟୀ ଦୁର୍ଗର ରକ୍ଷଣାବେକ୍ଷଣ, ଗଡ଼ଖାଇର ଐତିହାସିକ ଅବସ୍ଥିତିକୁ ସୁରକ୍ଷିତ କରାଯାଇଥିଲା। କଟକ ସହରରେ ସହସ୍ରାବ୍ଦ ଉପଲକ୍ଷେ ତାଙ୍କରି ଆନୁକୂଲ୍ୟରେ ଜଷ୍ଟିସ ହରିହର ମହାପାତ୍ର, ସମାଜସେବୀ ଗିରିଜା ଭୂଷଣ ପଟ୍ଟନାୟକ ପ୍ରମୁଖଙ୍କ ପ୍ରଚେଷ୍ଟାରେ ଏକ ବର୍ଣ୍ଣାଢ଼୍ୟ ଉତ୍ସବ ଅନୁଷ୍ଠିତ ହୋଇଥିଲା ଏବଂ ଏକ ସୁଶୋଭନୀୟ ସ୍ମରଣିକା ପ୍ରକାଶ ପାଇଥିଲା, ଯାହା କଟକସହରର ଇତିବୃତ୍ତ ସଂପର୍କରେ ବହୁ ତଥ୍ୟପୂର୍ଣ୍ଣ ଓ ଗବେଷଣାମୂଳକ ହୋଇପାରିଛି। ଓଡ଼ିଶାର ଶାସନମୁଖ୍ୟ ହେବା ପରେ ରେଭେନ୍‌ସା କଲେଜର ଛାତ୍ର ଜୀବନର ସ୍ମୃତିକୁ ନିଜ ଭିତରେ ଉଜ୍ଜୀବିତ କରି ସେ ରେଭେନ୍‌ସା କଲେଜର ନୂତନ ଛାତ୍ରାବାସର ଅଟ୍ଟାଳିକାର ନିର୍ମାଣ କରାଇ ଅନ୍ତେବାସୀ ଛାତ୍ରମାନଙ୍କ ବହୁ ଈପ୍‌ସିତ ସୁବିଧା ସୁଯୋଗ ପ୍ରଦାନ କରିବା ସହିତ ରେଭେନ୍‌ସା କଲେଜକୁ ଏକ ଆବାସିକ ବିଶ୍ୱବିଦ୍ୟାଳୟରେ ରୂପାନ୍ତରିତ କରିବାପାଇଁ ଏକ ପ୍ରକଳ୍ପର ଶୁଭ ଦେଇଥିଲେ।

କଟକସହର ହେଉଛି ଓଡ଼ିଶାର ସଂସ୍କୃତିର ପ୍ରାଣକେନ୍ଦ୍ର। ଶତାବ୍ଦୀବ୍ୟାପ୍ତ ଉତ୍କଳ ସାହିତ୍ୟ ସମାଜ ଭଳି ଏକ ସର୍ବପ୍ରାଚୀନ ସାରସ୍ୱତ ଅନୁଷ୍ଠାନ ପାଇଁ ସେ ସରକାରୀ ଅନୁଦାନର ପରିମାଣ ବୃଦ୍ଧି କରିଥିଲେ। ସେ ନିଜେ ମଧ୍ୟ ଉତ୍କଳ ସାହିତ୍ୟ ସମାଜର ଆଜୀବନ ସଭ୍ୟ।

ସେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଥିବା ସମୟରେ କହିଥିଲେ,...ଉତ୍କଳ ସାହିତ୍ୟ ସମାଜ ଏକ ଜାତୀୟ ଅନୁଷ୍ଠାନ। ଏହାର ମହାନ୍ ଗୌରବମୟ ପରମ୍ପରା ରହିଛି। ଉତ୍କଳ ସାହିତ୍ୟ ସମାଜର ସାହିତ୍ୟିକ ସ୍ୱୀକୃତି ଅନ୍ୟାନ୍ୟ ସାହିତ୍ୟିକ ସ୍ୱୀକୃତି ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ। କଟକକୁ ସେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ପ୍ରଧାନ ପୀଠ ଭାବେ ଅଭିହିତ କରିଥିଲେ। ଏହି ମହତର ଅନୁଷ୍ଠାନକୁ ରାଜ୍ୟର ପ୍ରତ୍ୟେକ ସ୍ତରରୁ, ପ୍ରତ୍ୟେକ ଅଞ୍ଚଳରୁ ସାହିତ୍ୟିକମାନଙ୍କର ଆଗମନ ଓ ସମାବେଶ ହୋଇଥାଏ। ଏହା ସାରସ୍ୱତ ଓ ସାଂସ୍କୃତିକ ସମନ୍ୱୟ ରକ୍ଷାର ପ୍ରାଣପୀଠ।

କଟକର ବାରବାଟୀ ଦୁର୍ଗ ପରିସରରେ, ଇନ୍‌ଡୋର ଷ୍ଟାଡ଼ିୟମ ଠାରେ ମୁଖ୍ୟମନ୍ତ୍ରୀ ଜାନକୀବାବୁ ନିଖିଳ ଭାରତ ସାମ୍ବାଦିକ ସମ୍ମିଳନୀର ଆୟୋଜନ କରିଥିଲେ। ଏହା ଜାତୀୟସ୍ତରରେ ବହୁ ପ୍ରଖ୍ୟାତ ସାମ୍ବାଦିକ ତଥା ସମ୍ବାଦପତ୍ରର ଦୃଷ୍ଟି ଆକର୍ଷଣ କରିପାରିଥିଲା। ବହୁ ବିଶିଷ୍ଟ ସାମ୍ବାଦିକ ତଥା ସମ୍ବାଦପତ୍ରର ସଂପାଦକ କଟକ ଆସିଥିଲେ ଓ ସହରକୁ ଦେଖି ଅଭିଭୂତ ହୋଇଥିଲେ। ଏଠାରେ ଗ୍ରାମୀଣ ସଂସ୍କୃତି ଓ ନଗର ସଂସ୍କୃତିର ସମନ୍ୱୟ ସେମାନଙ୍କୁ ବିସ୍ମିତ କରିଥିଲା।

କଟକରେ ଓଡ଼ିଶାର ସବୁଠାରୁ ବଡ଼ ମେଡିକାଲ ଶ୍ରୀରାମଚନ୍ଦ୍ର ଭଞ୍ଜ ଭେଷଜ ମହାବିଦ୍ୟାଳୟ ଏକ ଜାତୀୟ ସ୍ୱୀକୃତିପ୍ରାପ୍ତ ମେଡିକାଲ ହୋଇଥିବାରୁ ଏଠାକୁ ସୁଚିକିତ୍ସା ପାଇଁ ରାଜ୍ୟ ତଥା ରାଜ୍ୟ ବାହାରୁ ବହୁ ରୋଗୀ ଆସିଥାନ୍ତି। ଓଡ଼ିଶାରେ କର୍କଟ ରୋଗର ସଫଳ ଓ ପୂର୍ଣ୍ଣାଙ୍ଗ ଚିକିତ୍ସାପାଇଁ ଜାନକୀବାବୁ ମୁଖ୍ୟମନ୍ତ୍ରୀ ଥିଲାବେଳେ ଆଚାର୍ଯ୍ୟ ହରିହରଙ୍କ ନାମରେ ନାମିତ କର୍କଟ ପ୍ରତିଷ୍ଠାନ ଓ ଗବେଷଣା କେନ୍ଦ୍ରର ଶୁଭାରମ୍ଭ କରିଥିଲେ। ଫଳରେ ଓଡ଼ିଶାର କର୍କଟ ରୋଗରେ ପୀଡ଼ିତ ବହୁ ରୋଗୀ ଶସ୍ତା ଓ ସୁଲଭ ଚିକିତ୍ସାର ସୁଯୋଗ ପାଇପାରୁଛନ୍ତି। ତାଙ୍କରି ସମୟରେ ବାରବାଟୀ ଷ୍ଟାଡ଼ିୟମର ସଂପ୍ରସାରଣ କରାଯାଇଥିଲା। କଟକ ଇଂଜିନିୟରିଂ ସ୍କୁଲକୁ ପୂର୍ବତନ ସାଂସଦ ଭୁବନାନନ୍ଦ ଦାସଙ୍କ ସ୍ମୃତିରେ ସେ ନାମିତ କରିଥିଲେ। କଟକ କଚେରି ପରିସରରେ ନଅତାଲା କୋଠା ନିର୍ମାଣ କରି ରାଜ୍ୟ ପ୍ରାଶାସନିକ କାର୍ଯ୍ୟାଳୟଗୁଡ଼ିକ ସ୍ଥାନିତ କରିଥିଲେ। ପରିବହନ ନିର୍ଦ୍ଦେଶକ, ରାଜସ୍ୱ ପରିଷଦ, ଯେଉଁସବୁ କାର୍ଯ୍ୟାଳୟ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହେବାର ସ୍ଥିର ହୋଇଥିଲା, ସବୁ କଟକରେ ରହିଲା। କଟକରେ ତାଙ୍କରି ସମୟରୁ ରାଜ୍ୟ ପ୍ରାଧିକରଣ ଆଜିପର୍ଯ୍ୟନ୍ତ ରହି ଆସିଛି।

ଇଂରେଜ ସାହେବ ଜନ୍ ବୀମ୍‌ସ କଟକର ଜିଲ୍ଲାପାଳ ଥିବାବେଳେ ମହାନଦୀ କୂଳରୁ ଦୂରସ୍ଥ ପର୍ବତମାନଙ୍କର ଦୃଶ୍ୟରେ ବିମୋହିତ ହୋଇ କଟକକୁ ଏକ ସୁନ୍ଦର ଓ ପରିଚ୍ଛନ୍ନ ସହର ରୂପରେ ବର୍ଣ୍ଣନା କରିଛନ୍ତି। ସେ ଓଡ଼ିଆ ଭାଷାର ଜଣେ ବଡ଼ ସହିଚ୍ଛୁ ଓ ପ୍ରଶଂସକ ଥିଲେ। ସେହି କଟକ ସହରକୁ ଯଥାସମ୍ଭବ ପ୍ରଦୂଷଣମୁକ୍ତ ଓ ଶୋଭନୀୟ କରିବାପାଇଁ ଏହାକୁ ଉଦ୍ୟାନନଗରୀ କରିବାର ସ୍ୱପ୍ନ ଦେଖିଥିଲେ ଜାନକୀବାବୁ ଏବଂ ତାଙ୍କରି ସମୟରେ ଅନେକ ମନୋରମ ଉଦ୍ୟାନ କଟକ ସହରରେ ପ୍ରତିଷ୍ଠା କରାଯାଇଛି। ବକ୍ସି ବଜାରଠାରେ ଚଳଚ୍ଚିତ୍ର ଭବନ ନିର୍ମାଣ ହୋଇଛି ଜାନକୀବାବୁଙ୍କ ଶାସନ ସମୟରେ। ଏହାଦ୍ୱାରା ରାଜ୍ୟର ସାଂସ୍କୃତିକ

ବିକାଶର ପଥ ସୁଗମ ହେଲା ଏବଂ ସେହି ଅଟ୍ଟାଳିକାରେ ଅନ୍ୟ କେତେକ ସଂସ୍ଥାର କାର୍ଯ୍ୟାଳୟ ସ୍ଥାନିତ ହୋଇପାରିଲା । କଟକ ସହରରେ ନୂଆପାଟଣାଠାରେ ଥିବା ପୁରୁଣା ସର୍କିଟ ହାଉସକୁ ଭାଙ୍ଗି ନୂଆ ସର୍କିଟ ହାଉସ କରାଗଲା । ଏହି ସର୍କିଟ ହାଉସରେ ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ଥାଇ କଟକ ଆସି ରାତ୍ରିଯାପନ କରିଥିଲେ; ଭୁବନେଶ୍ୱର ରାଜଭବନକୁ ଯାଇ ନ ଥିଲେ । କଟକକୁ ସେ ଦେଖିଥିଲେ ଓ ଚଳଚଞ୍ଚଳ ଜୀବନଯାତ୍ରାକୁ ଉପଭୋଗ କରିଥିଲେ । ଖାନନଗରଠାରେ ବୈଦ୍ୟୁତିକ ଶବଦାହ ବ୍ୟବସ୍ଥାକୁ ଜାନକୀବାବୁ କାର୍ଯ୍ୟକାରୀ କରାଇବାରୁ ଶବ ଦାହ ପାଇଁ ଉପୁଜୁଥିବା ବହୁ ସମସ୍ୟାର ସମାଧାନ ହୋଇପାରିଥିଲା ।

କଟକ ସହର ଏକ ମନୋରମ ସହର । ଶାନ୍ତି ଓ ସୌହାର୍ଦ୍ଦ୍ୟର ସହର । ଜାନକୀବାବୁ କଟକର ସାଧାରଣ ଜୀବନକୁ ବହୁଳ ଭାବରେ ପ୍ରଭାବିତ କରିଛନ୍ତି । ଜଣେ ଅସାଧାରଣ ବିଦ୍ୱାନ୍, ବାଗ୍ମୀ, ସାମ୍ବାଦିକ, ଶାସକ, ସାହିତ୍ୟିକ ଓ ସଂସ୍କୃତିସଂପନ୍ନ ଏବଂ ୧୪ ବର୍ଷ ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ଅଳଙ୍କୃତ କରିଥିବା ଜଣେ ରେକର୍ଡ଼ ସୃଷ୍ଟିକାରୀ ମୁଖ୍ୟମନ୍ତ୍ରୀ ଭାବରେ ଯେଉଁସବୁ କାର୍ଯ୍ୟ କରିଯାଇଛନ୍ତି ତା'ର ଉପଯୁକ୍ତ ତତ୍ତ୍ୱାବଧାନ ଆଜିର ପ୍ରଶ୍ନ । ଖାନନଗରଠାରେ ଏକ ସୁରମ୍ୟ ଉଦ୍ୟାନ ବିଶ୍ୱନାଥ ପଣ୍ଡିତଙ୍କ ନାମରେ ପ୍ରତିଷ୍ଠା କରାଯାଇଛି । ଦିଲ୍ଲୀସ୍ଥ ଇନ୍ଦିରାଗାନ୍ଧୀ ଇନ୍‌ଡୋର ଷ୍ଟାଡିୟମ ଅନୁସରଣରେ ବାରବାଟୀ ଦୁର୍ଗ ପରିସର ମଧ୍ୟରେ ଜବାହରଲାଲ ନେହରୁଙ୍କ ନାମରେ ଏକ ଇନ୍‌ଡୋର ଷ୍ଟାଡିୟମ ପ୍ରତିଷ୍ଠା ହୋଇଛି । କଟକ ସହରକୁ ଆନ୍ତର୍ଜାତିକ ସ୍ତରରେ କ୍ରୀଡ଼ାକ୍ଷେତ୍ର ଭାବରେ ଚିହ୍ନିତ କରିବାପାଇଁ ଜାନକୀବାବୁ ଏସିଆନ୍ ଗେମ୍‌ସ ପରେ ଯେଉଁ ସବୁ ସ୍ୱପ୍ନ ଦେଖିଥିଲେ, ତାହା ତାଙ୍କ ଦ୍ୱାରା ଆଂଶିକ ସାକାର ହେଲା । କଟକରେ ନିଖିଳ ଭାରତ ଶିଶୁ ଚଳଚ୍ଚିତ୍ର ଉତ୍ସବ ତାଙ୍କରି ମୁଖ୍ୟମନ୍ତ୍ରିତ୍ୱ ସମୟରେ ଅନୁଷ୍ଠିତ ହୋଇଥିଲା, ଯାହାକୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ଉଦ୍‌ଘାଟନ କରିଥିଲେ ।

କଟକର ପୂର୍ବାଞ୍ଚଳ ଚାଉଳିଆଗଞ୍ଜ, ନୂଆବଜାର ଆଡ଼କୁ କଲେଜଛକ ମୁଖ୍ୟରାସ୍ତା ଦେଇ ଯାନବାହନ ଚଳାଚଳ ତଥା ଗମନାଗମନର ଯେଉଁ ଅସୁବିଧା ଓ.ଏମ୍.ପି. ଛକଠାରେ ରେଳଷ୍ଟେସନର ଲେଭଲ କ୍ରସିଂକୁ ନେଇ ସୃଷ୍ଟି ହେଉଥିଲା, ତାହାକୁ ଏକ ଓଭର ବ୍ରିଜ ନିର୍ମାଣଦ୍ୱାରା ସମାଧାନ କରିବାକୁ ୧୯୭୧ ମସିହାରେ ଜାନକୀବାବୁ କଟକର ସାଂସଦ ଥିବା ସମୟରେ କେନ୍ଦ୍ରସରକାରଙ୍କ ନିକଟରେ ଦାବି କରିଥିଲେ । ତାହା ତାଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଫଳବତୀ ହୋଇଥିଲା । ଏଥିପାଇଁ ଓଡ଼ିଶା ସରକାର ୫୦ ଭାଗ ଓ କେନ୍ଦ୍ର ସରକାର ୫୦ ଭାଗ ଖର୍ଚ୍ଚ ବହନ କରିଥିଲେ । ଫଳରେ କଟକ ସହରର ଗୋଟିଏ ପ୍ରଧାନ ଅସୁବିଧା ଦୂରୀଭୂତ ହୋଇପାରିଥିଲା । ଜାନକୀବାବୁଙ୍କ ସରକାର ଥିବା ସମୟରେ କାଠଯୋଡ଼ି କୂଳର ଅବକ୍ଷୟମୁଖୀ ସନ୍‌ସାଇନ ଫିଲ୍‌ଡ, ପ୍ୟାରୀମୋହନ ଏକାଡେମୀ, ରାଜାବଗିଚ୍ଚ ସିଟି ହାଇସ୍କୁଲ, ଇଞ୍ଜିନିୟରିଂ ସ୍କୁଲ ପଡ଼ିଆ ଓ ନୂଆବଜାର ପୋତାପୋଖରୀ ଖେଳପଡ଼ିଆର ଭୂୟୋବିକାଶ କରାଯାଇଥିଲା । କଟକର କ୍ରୀଡ଼ାବିତ୍‌ମାନଙ୍କର ରହଣିପାଇଁ ସାଇ ସ୍ପୋର୍ଟ୍ସ ହଷ୍ଟେଲ ପ୍ରତିଷ୍ଠା କରାଯାଇ କ୍ରୀଡ଼ାବିତ୍‌ମାନଙ୍କୁ ପ୍ରଶିକ୍ଷଣ ପ୍ରଦାନ କରିବାର ଉଦ୍ୟମ କାର୍ଯ୍ୟକାରୀ ହୋଇଥିଲା । ପରବର୍ତ୍ତୀ ସମୟରେ ଏହି ଅନୁଷ୍ଠାନର ବହୁ କୃତୀ କ୍ରୀଡ଼ାବିତ୍ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଖ୍ୟାତି ଅର୍ଜନ କରିଛନ୍ତି ।

ଏହିପରି ଜାନକୀବାବୁଙ୍କ ସରକାର ଥିବା ସମୟରେ କଟକ ସହରର ବହୁବିଧ ବିକାଶ ହୋଇଥିଲା। କଟକର ସଂଖ୍ୟାଲଘୁ ସଂପ୍ରଦାୟର ଉଦ୍ୟୋଗୀମାନଙ୍କୁ ସାହାଯ୍ୟ କରିବାପାଇଁ ମାଇନରିଟି ଫାଇନାନ୍ସ ଡେଭଲପ୍‌ମେଣ୍ଟ ସଂସ୍ଥା ପ୍ରତିଷ୍ଠା, ଖାଉଟୀମାନଙ୍କୁ ଋଣ ସଂକ୍ରାନ୍ତ ସୁବିଧା ଦେବା ଲକ୍ଷ୍ୟରେ କଟକ ଅର୍ବାନ କୋଅପରେଟିଭ ବ୍ୟାଙ୍କ ପ୍ରତିଷ୍ଠା କରାଯାଇଥିଲା।

କଟକ କାଳେ କାଳେ ଭାଇଚାରାର ସହର। ଜାନକୀବାବୁଙ୍କ ସମୟରେ ଏହି ଧାରା ଓ ଚିନ୍ତନକୁ ଦୃଢ଼ୀଭୂତ କରିବାକୁ ବହୁବିଧ କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଇଥିଲା। ଜାନକୀବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ କଟକର ଧାର୍ମିକ ସ୍ମୃତିପୀଠ ଦରଘାବଜାରସ୍ଥ କଦମ୍‌ରସୁଲ୍, ସତୀଚଉରା ପାଖରେ ଥିବା ଇଦ୍‌ଗା ପଡ଼ିଆ ଓ ସତୀଚଉରା ଶ୍ମଶାନର ପୁନରୁଦ୍ଧାର କରାଯାଇଥିଲା। କଟକର ସ୍ଥାୟୀ ବାସିନ୍ଦା ମୁସଲମାନ ଭାଇମାନଙ୍କ ସାଂସ୍କୃତିକ ସଚେତନତା ପାଇଁ ଉର୍ଦ୍ଦୁ ଏକାଡେମୀ ପ୍ରତିଷ୍ଠା ସହିତ ଉର୍ଦ୍ଦୁ ଲାଇବ୍ରେରୀକୁ ଆର୍ଥିକ ସହାୟତା ଯୋଗାଇ ଦିଆଯାଇଥିଲା। କଟକର ପାରମ୍ପରିକ ବିଭିନ୍ନ ସାହି ବସ୍ତିରେ ଥିବା ପୂଜାମଣ୍ଡପ ତଥା ଝଉଳିଆଗଞ୍ଜସ୍ଥ ଶକ୍ତିପୀଠ, ଦୁର୍ଗାଘର, ଖାନନଗର, ଯୋବ୍ରା, ରାଣୀହାଟ ପୂଜାମଣ୍ଡପକୁ ମଧ ରିମଡେଲିଂ କରାଯାଇଥିଲା। କଟକସହର ଉପଭୋକ୍ତାମାନଙ୍କୁ ନିର୍ଦ୍ଦିଷ୍ଟ ଅଞ୍ଚଳର ସମସ୍ତ ପ୍ରକାର ସାମଗ୍ରୀ ଯୋଗାଇଦେବାପାଇଁ ସି.ଡି.ଏ. ମାର୍କେଟ କଂପ୍ଲେକ୍ସ ନିର୍ମାଣ କରାଯାଇଥିଲା। ମହାନଦୀର ଉତ୍ତର ଉପକଣ୍ଠରେ କଟକର ଜଗତ୍‌ପୁରଠାରେ ଟ୍ରକ ଟର୍ମିନାଲ ଓ ଶିଳ୍ପାଞ୍ଚଳ ପ୍ରତିଷ୍ଠା କରାଯାଇଥିଲା। ଜଗତ୍‌ପୁରଠାରେ ବହୁବିଧ ଶିଳ୍ପ କାରଖାନା ବ୍ୟକ୍ତିଗତ ଉଦ୍ୟମରେ ପ୍ରତିଷ୍ଠାପାଇଁ ପ୍ରଚୁର ସରକାରୀ ପ୍ରୋତ୍ସାହନ ପ୍ରଦାନ କରାଯାଇଥିଲା। ଫଳରେ ଆଶାତୀତ ଭାବରେ ଏହି ଦୁଇ ଅଞ୍ଚଳ ଶିଳ୍ପସମୃଦ୍ଧ ହୋଇ ଉଠିଥିଲା ଏବଂ ଏହାଦ୍ୱାରା ହଜାର ହଜାର ଉଦ୍ୟୋଗୀ ଉପକୃତ ହୋଇଥିଲେ। କ୍ୟାଣ୍ଟନ୍‌ମେଣ୍ଟ୍ ରୋଡ୍‌ଠାରେ ବିହାର-ଓଡ଼ିଶାର ପ୍ରଥମ ଓଡ଼ିଆ ମନ୍ତ୍ରୀ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ପ୍ରତିମୂର୍ତ୍ତି, ଓ.ଏମ୍.ପି. ଛକଠାରେ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ (ମୁଖ୍ୟମନ୍ତ୍ରୀ) ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ପ୍ରତିମୂର୍ତ୍ତି ଓ ପାର୍କ ପ୍ରତିଷ୍ଠା କରାଯାଇଥିଲା। କଲେଜଛକରେ ଜାତିର ଗର୍ବ ନେତାଜୀ ସୁଭାଷ ବୋଷଙ୍କ ପ୍ରତିମୂର୍ତ୍ତି ସ୍ଥାପିତ ହୋଇପାରିଥିଲା।

ଏହିପରି ଜାନକୀବଲ୍ଲଭ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ କଟକ ସହରର ବହୁ ବିକାଶ ସମ୍ଭବ ହୋଇଥିଲା। ଏଥିପାଇଁ କଟକ ସହରର ନାଗରିକ ଓ ସ୍ଥାୟୀ ଅଧିବାସୀ ଭାବରେ ସେ କଟକବାସୀଙ୍କପାଇଁ ଅଭିନନ୍ଦିତ ହେଉଥିବେ। କଟକ ସହରର ନୂଆ ଚେହେରା ଫୁଟି ଉଠିଥିଲା ତାଙ୍କରି ପ୍ରଚେଷ୍ଟାରେ, ତାଙ୍କରି ଉଦ୍ୟମରେ, ତାଙ୍କରି କରକମଳରେ। କଟକ ତାଙ୍କର, ଆଉ ସେ କଟକର। କଟକର ଗର୍ବ, କଟକର ଗୌରବ, କଟକର ବରପୁତ୍ର ଜାନକୀବଲ୍ଲଭ କଟକବାସୀଙ୍କର ପ୍ରାଣର, ଅନ୍ତରର, ହୃଦୟର ହୋଇ ରହିଛନ୍ତି। ସେ ବାସ୍ତବରେ କଟକର ଦ୍ୱିତୀୟ ମର୍କତକେଶରୀ।



# ବିରଳ ବ୍ୟକ୍ତିତ୍ୱ ଜାନକୀବଲ୍ଲଭ

ନିରଞ୍ଜନ ପଟ୍ଟନାୟକ

୨୦୧୫ ମସିହା ପବିତ୍ର ଅକ୍ଷୟତୃତୀୟାର ସୂର୍ଯ୍ୟୋଦୟବେଳକୁ ଯେଉଁ ଦୁଃସମ୍ବାଦଟି ସମଗ୍ର ଓଡ଼ିଶାବାସୀଙ୍କୁ ସ୍ତମ୍ଭୀଭୂତ କରିଦେଇଥିଲା, ତାହାହେଲା ବିଶିଷ୍ଟ ଜନନାୟକ, ଦୂରଦର୍ଶୀ ଜାତିପ୍ରାଣ–ଜାନକୀବଲ୍ଲଭ ପଟ୍ଟନାୟକଙ୍କ ମହାପ୍ରୟାଣ। କୁହାଯାଏ, ଯେକୌଣସି ବ୍ୟକ୍ତିର ବ୍ୟକ୍ତିତ୍ୱକୁ ଆକଳନ କରାଯାଏ ତାଙ୍କର ଆଦର୍ଶ, ତାଙ୍କ କାର୍ଯ୍ୟଧାରା ଓ ବିଚାରଧାରାରୁ। ପୂଜ୍ୟ ଜାନକୀବଲ୍ଲଭ ପଟ୍ଟନାୟକ ସଶରୀର ଆମ ପାଖରେ ନାହାନ୍ତି; କିନ୍ତୁ ରାଜନୀତିରୁ ଊର୍ଦ୍ଧ୍ୱକୁ ଯାଇ ଓଡ଼ିଶାର ସାମଗ୍ରିକ ବିକାଶପାଇଁ ତାଙ୍କର ଚିନ୍ତା ଓ କାର୍ଯ୍ୟଧାରାକୁ ବିଶ୍ଳେଷଣ କଲେ ସ୍ୱୀକାର କରିବାକୁ ହୁଏ ଯେ, ସେ ଚିରକାଳ ଅମର ହୋଇ ରହିଛନ୍ତି ଓ ତାଙ୍କ ଜୀବନର ଦୀପ ଏକ ଅନିର୍ବାଣ ଶିଖା ହୋଇ ଆମକୁ ଆଲୋକ ପ୍ରଦାନ କରୁଛି।

୧୯୫୪-୫୫ ମସିହାବେଳକୁ ମୁଁ ସ୍କୁଲ ଛାତ୍ର ଥିବା ସମୟରେ ମହାନ୍ ଜନନାୟକ ଡକ୍ଟର ହରେକୃଷ୍ଣ ମହତାବଙ୍କ ପ୍ରେରଣାରେ ଯେତେବେଳେ ମୁଁ ଆମ ଅଞ୍ଚଳରେ ବୈତରଣୀ ମୀନା ମଣ୍ଡଳୀ ଗଠନ କରି ତା'ର ପ୍ରଧାନମନ୍ତ୍ରୀ ହୋଇଥିଲି, ସେତେବେଳେ କେତେଥର 'ପ୍ରଜାତନ୍ତ୍ର'କୁ ଯିବାର ସୁଯୋଗ ପାଇଥିଲି ଏବଂ ସେହି ସମୟରେ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ଥରେ ଦି' ଥର ହୁଏତ ଦେଖିଥିଲି। କିନ୍ତୁ ଜାନକୀବାବୁଙ୍କ ସହ ପରିଚୟ ଆରମ୍ଭ ହୋଇଥିଲା। ୧୯୬୦-୬୧ ମସିହାବେଳକୁ। ସେତେବେଳକୁ ମୁଁ କଲେଜର ଛାତ୍ର। ସେତେବେଳେ ଯୁବ କଂଗ୍ରେସ ନାମରେ କୌଣସି ସ୍ୱତନ୍ତ୍ର ସଂଗଠନ ନ ଥିଲା। କିନ୍ତୁ ସନ୍ତୋଷ କୁମାର ସାହୁ ଥିଲେ କଂଗ୍ରେସର ଯୁବବର୍ଗର ରାଜ୍ୟ ଆବାହକ ଏବଂ ମୁଁ ଥିଲି ଆମ ଜିଲ୍ଲା ଆବାହକ। ସେହି ସମୟରେ ତତ୍‌କାଳୀନ କଂଗ୍ରେସ ନେତା ବିଜୁ ପଟ୍ଟନାୟକଙ୍କ ସମେତ ଅନେକ କଂଗ୍ରେସ ନେତାଙ୍କ ସହ ମୋର ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପିତ ହୋଇଥିଲା। ୧୯୬୯ରେ କଂଗ୍ରେସ ଦଳର ବିଭାଜନ ହେଲା ଏବଂ ଦଳର ଏକ ପ୍ରମୁଖ ଭାଗ ବିଜୁବାବୁଙ୍କ ସହ ଚାଲିଗଲେ। କିନ୍ତୁ ଆମେ କେନ୍ଦୁଝର ଜିଲ୍ଲାର ମୁଷ୍ଟିମେୟ ଲୋକ ମୂଳ କଂଗ୍ରେସ ସହ ରହି କଂଗ୍ରେସ ସଂଗଠନକୁ ଅଧିକ ମଜବୁତ କରିବାପାଇଁ ବିଭିନ୍ନ କାର୍ଯ୍ୟକ୍ରମ ଆୟୋଜନ କରୁଥିଲୁ। କଂଗ୍ରେସକୁ ସୁଦୃଢ଼ କରିବାକୁ ଆମେ ଯେଉଁମାନେ ଜିଲ୍ଲାସ୍ତରରେ କାର୍ଯ୍ୟ କରୁଥିଲୁ, ଜାନକୀବାବୁ ସେମାନଙ୍କ ସହ ନିୟମିତ ଯୋଗାଯୋଗ ରଖୁଥିଲେ। ଏହିକ୍ରମରେ ଜାନକୀବାବୁଙ୍କ ସହ ମୋର ପରିଚୟ କ୍ରମଶଃ ସୁଦୃଢ଼ ହେବାକୁ ଲାଗିଲା। ସମୟକ୍ରମେ ୧୯୭୩ ମସିହାରେ ମୁଁ କେନ୍ଦୁଝର ମ୍ୟୁନିସିପାଲିଟିର ଚେୟାରମ୍ୟାନ ହେଲି ଏବଂ ୧୯୭୫ରେ କେନ୍ଦୁଝର ସେଣ୍ଟ୍ରାଲବ୍ୟାଙ୍କର

ସଭାପତି ହେଲି। ୧୯୭୭ରେ ଜାନକୀବାବୁ ଆନୁଷ୍ଠାନିକଭାବେ ଓଡ଼ିଶା କଂଗ୍ରେସ ଦଳର ଗୁରୁଦାୟିତ୍ୱ ବହନ କଲେ ଏବଂ ମୁଁ ହେଲି କେନ୍ଦୁଝର ଜିଲ୍ଲା କଂଗ୍ରେସ ସଭାପତି। ସେହି ୧୯୭୭ ମସିହାରୁ ୨୦୧୫ ମସିହା ପର୍ଯ୍ୟନ୍ତ ତାଙ୍କ କାର୍ଯ୍ୟଧାରାକୁ ଖୁବ୍ ନିକଟରୁ ଦେଖିବାର ସୁଯୋଗ ମୋତେ ମିଳିଥିଲା। ମୁଁ ଲକ୍ଷ୍ୟ କରିଥିଲି, ଅନେକ ଦୃଷ୍ଟିରୁ ତାଙ୍କର ତୁଳନୀୟ ବ୍ୟକ୍ତିତ୍ୱ ପ୍ରାୟ ବିରଳ। ସେ ଦୀର୍ଘଦିନ ଧରି ପ୍ରତ୍ୟକ୍ଷ ରାଜନୀତିରେ କ୍ରିୟାଶୀଳ ଥିଲେ, ହେଲେ କାହାପ୍ରତି ପ୍ରତିଶୋଧପରାୟଣ ନ ଥିଲେ ବା ଅସହିଷ୍ଣୁ ନ ଥିଲେ। ମୁଖ୍ୟମନ୍ତ୍ରୀ ପରି ଏକ ବ୍ୟସ୍ତବହୁଳ କର୍ତ୍ତବ୍ୟ ସଂପାଦନ କରୁଥିବାବେଳେ ମଧ ସେ ସମାନ୍ତରାଳ ଭାବେ ସାହିତ୍ୟ ସାଧନା କରୁଥିଲେ ଏବଂ ଓଡ଼ିଶାର କଳା ସାହିତ୍ୟର ପ୍ରସାରପାଇଁ ନିଜକୁ ପ୍ରତ୍ୟକ୍ଷ ଭାବେ ସଂପୃକ୍ତ କରୁଥିଲେ।

ଆଜି ଓଡ଼ିଶାର ଚାଷୀମାନେ ଚାଷ ଉପରୁ ଆସ୍ଥା ହରେଇ ଆତ୍ମହତ୍ୟା କରିବାକୁ ଉଚିତ୍ ମନେ କରୁଥିବାବେଳେ ଜାନକୀବାବୁଙ୍କ ବିଚାରଧାରା ବାରମ୍ବାର ସ୍ମରଣକୁ ଆସୁଛି। ଜାନକୀବାବୁ ସବୁବେଳେ କହୁଥିଲେ ଯୋଜନା ଏପରି ଦୀର୍ଘମିଆଦୀ ହେବା ଦରକାର, ଯାହାର ସୁଫଳ ସାଧାରଣ ମଲିମୁଣ୍ଡିଆ ଠାରୁ ସମ୍ଭ୍ରାନ୍ତ ଲୋକଙ୍କ ପର୍ଯ୍ୟନ୍ତ ସବୁଠାରେ ପହଞ୍ଚିପାରିବ। ଉଦାହରଣସ୍ୱରୂପ, ଏବେ ରାଜ୍ୟ ସରକାର ଛାତ୍ରୀମାନଙ୍କୁ ମାଗଣାରେ ସାଇକେଲ ବଣ୍ଟନ କରୁଛନ୍ତି, ଜାନକୀବାବୁ କହୁଥିଲେ ଏହାଦ୍ୱାରା ଛାତ୍ରୀମାନେ ଯେତିକି ଲାଭ ପାଉଛନ୍ତି, ତା'ର ବହୁଗୁଣ ଅଧିକ ଲାଭ ପାଉଛନ୍ତି ସାଇକଲେ ନିର୍ମାତା କମ୍ପାନୀ ଓ ବ୍ୟବସାୟର ମଧ୍ୟସ୍ଥମାନେ। ତେଣୁ ତାଙ୍କର ଯୋଜନା ଥିଲା, ରାଜ୍ୟରେ ସାଇକେଲ ତିଆରି କାରଖାନା କରିବା। ଏହାଦ୍ୱାରା ରାଜ୍ୟର ଅନେକ ବେକାର ନିଯୁକ୍ତି ପାଇବାସହ ରାଜ୍ୟ ଅର୍ଥନୀତି ସୁଦୃଢ଼ ହୋଇପାରିଥାନ୍ତା ଏବଂ ତୁଳନାତ୍ମକ ଭାବେ ଛାତ୍ରୀମାନଙ୍କୁ ସାଇକଲ ବଣ୍ଟନ ପ୍ରକ୍ରିୟାରେ ରାଜ୍ୟସରକାରଙ୍କୁ କମ୍ ଅର୍ଥ ଖର୍ଚ୍ଚ କରିବାକୁ ପଡ଼ନ୍ତା। ସେହିପରି ଓଡ଼ିଶାର ଚାଷୀମାନଙ୍କ ପାଇଁ ମୁଖ୍ୟ ସମସ୍ୟା ହେଲା ଜଳସେଚନ। ସେଥିପାଇଁ ଜାନକୀବାବୁଙ୍କ ମୁଖ୍ୟମନ୍ତିତ୍ୱ ସମୟରେ ମୁଁ ଯେତେବେଳେ ଜଳସେଚନ ଓ ଶକ୍ତିବିଭାଗର ମନ୍ତ୍ରୀ ଥିଲି, ସେତେବେଳେ ଲଘୁ, ମଧ୍ୟମ ଓ ଉଠା ଜଳସେଚନପାଇଁ ଅନେକ କାର୍ଯ୍ୟକ୍ରମ ଆରମ୍ଭ କରିଥିଲୁ। ୧୯୮୦ ମସିହା ବେଳକୁ ରାଜ୍ୟର ଆର୍ଥିକ ଅବସ୍ଥା ଭଲ ନ ଥିଲା ବା କେନ୍ଦ୍ରରୁ ଏତେ ପରିମାଣରେ ଅନୁଦାନ ମିଳୁ ନ ଥିବାରୁ କାର୍ଯ୍ୟ କରିବାରେ କିଛି ପରିମାଣରେ ଅବଶ୍ୟ ସମସ୍ୟା ସୃଷ୍ଟି ହେଉଥିଲା; କିନ୍ତୁ ଜାନକୀବାବୁଙ୍କ ଦୃଢ଼ ରାଜନୀତିକ ଇଚ୍ଛାଶକ୍ତି ବଳରେ ସେହି ସମୟରେ ରେଙ୍ଗାଲି, ଅପରକୋଲାବ, ଇନ୍ଦ୍ରାବତୀ ଆଦି ଜଳସେଚନ ପ୍ରକଳ୍ପକୁ ପୁନଃ କାର୍ଯ୍ୟକ୍ଷମ କରାଯିବା ସହ ବାଲିମେଳା, ହୀରାକୁଦ ଆଦି ହାଇଡ୍ରୋପାୱାର ପ୍ରୋଜେକ୍ଟକୁ ବିକଶିତ କରାଯାଇଥିଲା।

ଜାନକୀବାବୁ ଯେକୌଣସି ଭଲକାମକୁ ପ୍ରୋତ୍ସାହିତ କରୁଥିଲେ ଏବଂ ନିଃସର୍ତ୍ତ ସମର୍ଥନ କରୁଥିଲେ। ସେ ସବୁବେଳେ କହୁଥିଲେ, ଏହି ରାଜନୀତି ମାଧ୍ୟମରେ ସମାଜର ବିକାଶ କରିବାପାଇଁ ଏବଂ ଲୋକଙ୍କ ଜୀବନଧାରଣର ମାନବୃଦ୍ଧି କରିବାପାଇଁ ଆମକୁ ସୁଯୋଗ ମିଳୁଛି। ଆମେ ଯଦି ସେତିକି ନ କରିପାରିବା, ତେବେ ରାଜନୀତି କାହିଁକି କରିବା?

ତାଙ୍କର ଏହି ପ୍ରେରଣାଦାୟୀ କଥା, ମନ୍ତ୍ରିମଣ୍ଡଳର ମନ୍ତ୍ରୀମାନଙ୍କଠାରୁ ସାଧାରଣ କର୍ମୀମାନଙ୍କୁ ମଧ୍ୟ ଉତ୍ସାହିତ କରୁଥିଲା। ତେଣୁ ସମସ୍ତେ ଏକ ବିକଶିତ ରାଜ୍ୟର ନକଲ ପ୍ରସ୍ତୁତ କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ। ତାଙ୍କରି ପ୍ରେରଣାରେ ମୁଁ ଶକ୍ତିବିଭାଗର ମନ୍ତ୍ରୀ ଥିବା ସମୟରେ ଓଡ଼ିଶାର ଏକ ନିଜସ୍ୱ ଶକ୍ତି ଉତ୍ପାଦନ କେନ୍ଦ୍ରଭାବେ ଓ.ପି.ଜି.ସି. ପ୍ରତିଷ୍ଠା କରାଯାଇଥିଲା ଏବଂ ଏନ.ଟି.ପି.ସି.କୁ ଓଡ଼ିଶାର ଶକ୍ତିକ୍ଷେତ୍ରରେ କାର୍ଯ୍ୟ କରିବାକୁ ସୁଯୋଗ ମିଳିଥିଲା। ଏକ ସାଧାରଣ କଥା ହେଲା, ଅନେକ କାରଖାନାରେ ଜାଳେଣି ଭାବରେ କୋଇଲା ବ୍ୟବହାରଦ୍ୱାରା ଲୁହାପଥର ବା ସ୍ପଞ୍ଜ ଆଇରନ ଆଦି ଉତ୍ପାଦନ ସମୟରେ ଅନେକ ତାପଜ ଶକ୍ତି ନଷ୍ଟ ହୋଇଯାଇଥାଏ। ତେଣୁ ସେହି ୧୯୮୦ ପରବର୍ତ୍ତୀ ସମୟରେ ଜାନକୀବାବୁଙ୍କ ନିର୍ଦ୍ଦିଷ୍ଟ ପରାମର୍ଶ ଅନୁସାରେ ମୋ ଅଧୀନରେ ଥିବା ଶକ୍ତି ବିଭାଗ ଅମଲାତାନ୍ତ୍ରିକ ବିରୋଧକୁ ଟାଳି ଦେଇ ଅନେକ କାରଖାନାକୁ ନିଜସ୍ୱ ବିଦ୍ୟୁତ୍ ଉତ୍ପାଦନ ପାଇଁ ଅନୁମତି ଦେଇଥିଲା। ଯାହାର ଫଳସ୍ୱରୂପ ସମଗ୍ର ଭାରତବର୍ଷରେ ଓଡ଼ିଶାର ପ୍ରଥମକରି ଶିଳ୍ପ ଅନୁଷ୍ଠାନଗୁଡ଼ିକ କ୍ୟାପଟିଭ୍ ପ୍ଲାଣ୍ଟ ପ୍ରତିଷ୍ଠା କଲେ। ଆଜି ନାଲକୋ, ସେଲ, ଇମ୍ଫା ଆଦି ଶିଳ୍ପଗୋଷ୍ଠୀ ଯେଉଁ ନିଜସ୍ୱ କ୍ୟାପଟିଭ ପ୍ଲାଣ୍ଟ ପ୍ରତିଷ୍ଠା କରିଛନ୍ତି, ତାହା ସମ୍ଭବ ହୋଇଥିଲା ସେହି ଦୂରଦ୍ରଷ୍ଟା ଜନନେତା ଜାନକୀବଲ୍ଲଭଙ୍କ ଦୃଢ଼ ଇଚ୍ଛାଶକ୍ତି ଯୋଗୁଁ। ଆଜି ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି, ଏହି ସବୁ ଜନମଙ୍ଗଳ ଯୋଜନା ଫଳରେ ମାତ୍ର ପାଞ୍ଚ ବର୍ଷ ମଧ୍ୟରେ ଓଡ଼ିଶା ବିଦ୍ୟୁତ୍ କ୍ଷେତ୍ରରେ ଏକ ବଳକା ରାଜ୍ୟ ହୋଇପାରିଥିଲା। ଜାନକୀବାବୁଙ୍କ ତୃତୀୟଥର ମୁଖ୍ୟମନ୍ତ୍ରିତ୍ୱ ସମୟରେ ଶକ୍ତି କ୍ଷେତ୍ରରେ ଓଡ଼ିଶା ଭାରତବର୍ଷର ପ୍ରଥମ ରାଜ୍ୟ ଭାବେ ସଂସ୍କାର ଆଣିପାରିଥିଲା। ତତ୍‌କାଳୀନ ଶକ୍ତି ମନ୍ତ୍ରୀ ଭାବେ ସେହି ସଂସ୍କାରକୁ କାର୍ଯ୍ୟକାରୀ କରିବାର ଦାୟିତ୍ୱ ମୋତେ ଦିଆଯାଇଥିଲା। ଓଡ଼ିଶାର ସେହି ଦୂରଦୃଷ୍ଟିସଂପନ୍ନ ସଂସ୍କାର କାର୍ଯ୍ୟକ୍ରମକୁ ପରବର୍ତ୍ତୀ ସମୟରେ ଭାରତର ଅନେକ ରାଜ୍ୟ ମଡେଲ ଭାବେ ଅନୁକରଣ କରିଛନ୍ତି।

ଓଡ଼ିଶା ପାଇଁ ଜାନକୀବାବୁଙ୍କ ଅନ୍ୟତମ ଦୀର୍ଘମିଆଦୀ କାର୍ଯ୍ୟକ୍ରମ ଥିଲା ସ୍ପିନିଙ୍ଗ୍ ମିଲ୍ ପ୍ରତିଷ୍ଠା। ଏହାଦ୍ୱାରା ଓଡ଼ିଶାର ବିଭିନ୍ନ ଅଞ୍ଚଳରେ କପା ଚାଷ ଏକ ଲାଭଜନକ ବୃତ୍ତିରେ ପରିଣତ ହୋଇଥିଲା ଏବଂ ୧୨ଟି ସ୍ପିନିଂ ମିଲରେ ବହୁ ହଜାର ଲୋକ ନିଯୁକ୍ତି ପାଇଥିଲେ। ପୁଣି ଓଡ଼ିଶାର ସ୍ପିନିଙ୍ଗ୍ ମିଲ୍ ଯୋଗୁଁ ଓଡ଼ିଶାରେ ଅନେକ ଲୁଗା ବୁଣାଳି ଉପକୃତ ହେବା ସହ କପଡ଼ା କାରଖାନା ପ୍ରତିଷ୍ଠାର ପରିବେଶ ସୃଷ୍ଟି ହୋଇଥିଲା। କୃଷି ଓ କୃଷକର ଉନ୍ନତିରେ ଶୀତଳ ଭଣ୍ଡାରର ଯଥେଷ୍ଟ ଗୁରୁତ୍ୱ ରହିଛି। ତେଣୁ ଜାନକୀବାବୁଙ୍କ ସମୟରେ ଓଡ଼ିଶାରେ ଅନେକ ଶୀତଳ ଭଣ୍ଡାର ପ୍ରତିଷ୍ଠା ହୋଇଥିଲା। ଏବେ ଶୀତଳଭଣ୍ଡାର ସବୁ ନଷ୍ଟ ହୋଇଯିବାରୁ ଚାଷୀମାନେ ପନିପରିବାକୁ ଅଭାବୀ ଦରରେ ବିକ୍ରୁଛନ୍ତି ଏବଂ ଅଭାବ ସମୟରେ ବାହାର ରାଜ୍ୟ ଉପରେ ନିର୍ଭର କରୁଛନ୍ତି। ଜାନକୀବାବୁଙ୍କ ଅନ୍ୟତମ ପ୍ରମୁଖ ଅବଦାନ ହେଲା ଆଜିର ବିକଶିତ କଟକ ସହର। ମୁଁ ଜଳସେଚନ ମନ୍ତ୍ରୀ ଥିବା ସମୟରେ ୧୯୮୨ ମସିହାରେ କଟକର ରିଂବନ୍ଧ କାମ ଆରମ୍ଭ ହୋଇଥିଲା ଏକ ଦୃଢ଼ ଇଚ୍ଛାଶକ୍ତି ଯୋଗୁଁ। ସେତେବେଳେ ଜାନକୀବାବୁଙ୍କୁ ମୁଁ କଟକ ସହର ଚାରିପଟେ ଏକ ରିଂବନ୍ଧ କରିବାକୁ ପ୍ରସ୍ତାବ ଦେଇଥିଲି।

ବନ୍ୟା, ବାତ୍ୟାର ମୁକାବିଲାପାଇଁ କେନ୍ଦ୍ର ସରକାର ଯେଉଁ ପାଣ୍ଠି ଯୋଗାଇ ଦେଇଛନ୍ତି ସେଥିରୁ ଏହାର ଖର୍ଚ୍ଚ ଭରଣା ହୋଇପାରିବ ବୋଲି ମୁଁ ପ୍ରସ୍ତାବ ଦେଇଥିଲି। ଜାନକୀବାବୁ କେବଳ ଏହି ପ୍ରସ୍ତାବରେ ରାଜି ହୋଇ ନ ଥିଲେ ବରଂ ସେ ତାଙ୍କର ଦୂରଦୃଷ୍ଟିଯୋଗୁଁ ଆଉ ଦି' ପାଦ ଆଗେଇ ଯାଇ କହିଥିଲେ; କାଠଯୋଡ଼ିର ବାମ ପାର୍ଶ୍ୱକୁ ମଜବୁତ୍ ବନ୍ଧବାନ୍ଧି ଦେଲେ କଟକ ସହର ପାଇଁ ଆଉ କିଛି ଅଞ୍ଚଳ ବୃଦ୍ଧି ପାଇଯିବ ଏବଂ ବମ୍ବେର ମେରାଇନ୍ ଡ୍ରାଇଭ ପରି ସହର ଚାରିପଟେ ଏକ ସୁଦୃଢ଼ ବନ୍ଧ ହୋଇପାରିବ। ଏଥିପାଇଁ ୧୯୮୨ ମସିହାରେ କଟକର ଗଡ଼ଗଡ଼ିଆ ମହାଦେବଙ୍କ ମନ୍ଦିର ପାଖରେ ଆମେ ଏକ ସଭାକରି କଟକର ବୁଦ୍ଧିଜୀବୀମାନଙ୍କୁ ପ୍ରସ୍ତାବିତ ସି.ଡି.ଏ.ର ଏକ ନକ୍ସା ଦେଖାଇଥିଲୁ ଏବଂ ସେମାନଙ୍କ ସହମତି ଭିତିରେ ରିଂ ବନ୍ଧ କାମ ଆରମ୍ଭ ହୋଇଥିଲା।

ଏହିପରି ଓଡ଼ିଶାର ଅନେକ ସଫଳତା ସହ ଜାନକୀବାବୁଙ୍କ ଦୂରଦର୍ଶୀ ଚିନ୍ତାଧାରା ସଂଯୁକ୍ତ ହୋଇରହିଛି। ଜାନକୀବାବୁଙ୍କ ବିଚକ୍ଷଣତା ଓ ଆନ୍ତରିକତା ନ ଥିଲେ ଆଜି ନାଲ୍‌କୋ ପରି ଏକ ବୃହତ୍ ଶିଳ୍ପାନୁଷ୍ଠାନ ଓଡ଼ିଶା ପରିବର୍ତ୍ତେ ଆନ୍ଧ୍ରରେ ପ୍ରତିଷ୍ଠିତ ହୋଇଥାନ୍ତା। ଓଡ଼ିଶାର ଭୁବନେଶ୍ୱର ଆଜି ବୈଷୟିକ ଶିକ୍ଷାକ୍ଷେତ୍ରରେ ଯେଉଁ ସୁନାମ ଅର୍ଜନ କରିଛି, ତାହା ସମ୍ଭବ ହୋଇଥିଲା ଜାନକୀବାବୁଙ୍କ କାର୍ଯ୍ୟଧାରା ଯୋଗୁଁ। ତାଙ୍କରି ପରାମର୍ଶକ୍ରମେ ଆମେ ବାଙ୍ଗାଲୋର ଯାଇ ସେଠାରେ ବୈଷୟିକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାର ପଦ୍ଧତି ସବୁ ଅନୁଧ୍ୟାନ କରିଥିଲୁ ଏବଂ ଓଡ଼ିଶାରେ ବୈଷୟିକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାପାଇଁ ପୂର୍ବରୁ ଥିବା ନିୟମକୁ ବଦଳାଇ ଅନେକ ସରଳୀକରଣ କରିଦେଇଥିଲୁ। ଯାହା ଫଳରେ ଅନେକ ଯୁବ ଉଦ୍ୟୋଗୀ ଏଠାରେ ବୈଷୟିକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବାକୁ ଆଗେଇ ଆସିଥିଲେ।

ଆଜି ଓଡ଼ିଆ ଭାଷାକୁ କେନ୍ଦ୍ର ସରକାର ଶାସ୍ତ୍ରୀୟ ଭାଷାର ମାନ୍ୟତା ପ୍ରଦାନ କରିଥିଲେ ମଧ୍ୟ ସରକାରୀ ସ୍ତରରେ ଏହାର ପ୍ରଚଳନ ଅତ୍ୟନ୍ତ ନଗଣ୍ୟ। କିନ୍ତୁ ଜାନକୀବାବୁ ଓଡ଼ିଆଭାଷାକୁ କେବଳ ସରକାରୀ ଭାଷା କରି ନ ଥିଲେ। ଏଥିପାଇଁ ସରକାରୀ ସ୍ତରରେ ଓଡ଼ିଆ ଟାଇପ ରାଇଟର ଉପଲବ୍ଧ କରାଇବା ସହ ଟାଇପିଷ୍ଟ୍‌ମାନଙ୍କୁ ଅଧିକ ଭତ୍ତା ଦେବାର କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ। ନଥିପତ୍ରରେ ଶୁଦ୍ଧ ଓଡ଼ିଆ ଲେଖିବାକୁ ଅଧିକାରୀ ବା କର୍ମଚାରୀଙ୍କୁ ପ୍ରୋତ୍ସାହିତ କରାଯାଉଥିଲା। ଓଡ଼ିଶାରେ ପାଠାଗାର ଆନ୍ଦୋଳନ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲା। ଗାଁ ଗାଁରେ ସରକାରୀ ପାଠାଗାର ପ୍ରତିଷ୍ଠା ହେବା ସହ ରାଜା ରାମମୋହନ ରାୟ ଯୋଜନାରେ ମାଗଣା ପୁସ୍ତକ ଯୋଗାଇ ଦିଆଯାଉଥିଲା। ଏବେ ସେହିସବୁ ପାଠାଗାର ପରିଚ୍ଛାଳନାପାଇଁ ପାଣ୍ଠି ନ ଥିବାରୁ ମାଗଣାରେ ବହି ମିଳୁଥିଲେ ମଧ୍ୟ ଅନେକ ପାଠାଗାର ବହି ଗ୍ରହଣ କରୁ ନାହାନ୍ତି।

ରାଜ୍ୟକୁ ସାକ୍ଷରତା ହାର ଶତପ୍ରତିଶତ କରିବା ଲକ୍ଷ୍ୟରେ ତାଙ୍କରି ମୁଖ୍ୟମନ୍ତ୍ରିତ୍ୱ ସମୟରେ ଆରମ୍ଭ ହୋଇଥିଲା ପ୍ରୌଢ଼ ଶିକ୍ଷା କେନ୍ଦ୍ର। ପରବର୍ତ୍ତୀ ସମୟରେ ଏହା ଜନଶିକ୍ଷା କେନ୍ଦ୍ରରେ ରୂପାନ୍ତରିତ ହୋଇଥିଲା। ଏହି କେନ୍ଦ୍ରମାଧ୍ୟମରେ ଓଡ଼ିଶାର ଗାଁରୁ ସହର ପର୍ଯ୍ୟନ୍ତ

ଖୋଜି ଖୋଜି ନିରକ୍ଷରମାନଙ୍କୁ ଶିକ୍ଷା ଦିଆଯାଇ କର୍ମକୁଶଳ କରାଯାଉଥିଲା। ଏବେ ପ୍ରୌଢ଼ ଶିକ୍ଷାକେନ୍ଦ୍ର ସବୁ ଅତୀତ ହୋଇଗଲାଣି।

ଆଜି ରାଜରାସ୍ତାରେ ଶିକ୍ଷକମାନଙ୍କର ଧର୍ମଘଟ, ଡାକ୍ତର, ଇଂଜିନିୟରମାନଙ୍କର ଜୋତା ସଫେଇ, ବେକାରମାନଙ୍କର ଧର୍ମଘଟ ଦେଖିଲେ ମନେ ପଡୁଛନ୍ତି ସେହି ଦୂରଦର୍ଶୀ ଜନନାୟକ ଜାନକୀବାବୁ। ସେ ସବୁବେଳେ କହୁଥିଲେ, କାର୍ଯ୍ୟ କରିବାର ଆନ୍ତରିକତା ଥିଲେ ଏବଂ ଯାହା ପାଇଁ କାର୍ଯ୍ୟକ୍ରମ ଉଦ୍ଦିଷ୍ଟ ତାଙ୍କୁ ବିଶ୍ୱାସକୁ ନେଲେ ଯୋଜନା ନିଶ୍ଚୟ ସଫଳ ହେବ। ସେଥିପାଇଁ ସେ ସବୁ ସ୍ତରରେ ଲୋକଙ୍କୁ ଗୁରୁତ୍ୱ ଦେଉଥିଲେ। ରାଜନୀତିରେ ଥିବା ସାଧାରଣ କର୍ମୀଠାରୁ ପ୍ରଶାସନରେ ଥିବା ସର୍ବୋଚ୍ଚ ଅଧିକାରୀଙ୍କପର୍ଯ୍ୟନ୍ତ ସେ ସମସ୍ତଙ୍କୁ ପ୍ରାଧାନ୍ୟ ଦେଉଥିଲେ ଏବଂ ନିଜେ ନିରପେକ୍ଷ ତଥା ସମାଜ ହିତକର ନିଷ୍ପତ୍ତି ଗ୍ରହଣ କରୁଥିଲେ।

ଜଣେ ମୁଖ୍ୟମନ୍ତ୍ରୀ ଭାବେ ସେ ଯେତିକି କର୍ମତତ୍ପର ଥିଲେ ପରବର୍ତ୍ତୀ ଜୀବନରେ ଆସାମର ରାଜ୍ୟପାଳ ହେବାପରେ ମଧ୍ୟ ସେ ସେତିକି କର୍ମତତ୍ପର ଥିଲେ। ଆସାମ ଓ ଓଡ଼ିଶାର ସାଂସ୍କୃତିକ ସେତୁକୁ ସୁଦୃଢ଼ କରିବାରେ ସେ ଅନେକ ଉଦାହରଣଯୋଗ୍ୟ କାର୍ଯ୍ୟ କରିଯାଇଛନ୍ତି। ଦିବ୍ରୁଗଡ଼ ଠାରେ ୧୦୫ ଫୁଟ ଉଚ୍ଚତା ବିଶିଷ୍ଟ ଜଗନ୍ନାଥ ମନ୍ଦିରର କାର୍ଯ୍ୟ ଆରମ୍ଭ କରିଥିଲେ। ଆସାମର ସତ୍ରଗୁଡ଼ିକରେ ମହିଳାମାନଙ୍କୁ ପ୍ରବେଶ କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ସାମ୍ବାଦିକତା ହେଉ, ରାଜନୀତି ହେଉ ବା ରାଜ୍ୟପାଳ ପରି ଏକ ସାମ୍ବିଧାନିକ ପଦବୀ ହେଉ ସବୁଠାରେ ସେ ନିଜର କର୍ମ ପ୍ରବଣତା ଓ ସୁଦୂରପ୍ରସାରୀ ଚିନ୍ତା ଚେତନାର ଛାପ ଛାଡ଼ି ଯାଇଛନ୍ତି। ଜଣେ ଧୁରୀଣ ସଂସ୍କୃତ ବିଦ୍ୱାନ୍, ବିଚକ୍ଷଣ ବାଗ୍ମୀ ତଥା ସୁସାହିତ୍ୟିକ ଭାବେ ସେ ସାରସ୍ୱତ ଜଗତର ଯେତିକି ନମସ୍ୟ, ଜଣେ ଦୂରଦ୍ରଷ୍ଟା ଓ କର୍ମପ୍ରବଣ ଜନନେତା ଭାବରେ ସେ ସେତିକି ସୁବିଦିତ। ତାଙ୍କପରି ପ୍ରଚାର ବିମୁଖ ବିରଳ ବ୍ୟକ୍ତିତ୍ୱ ସତରେ ବିରଳ !



# ଶ୍ୟାମସଖା ମନ କରିବ ସିନା !

**ଶ୍ରୀନିବାସ ଉଦ୍‌ଗାତା**

'ସୌମ୍ୟ, ଶୂର, କୃତଜ୍ଞ ଓ ଦୃଢ଼ବ୍ରତ' ଭାବିଲେ ଏତିକି ତ, ସ୍ନେହୀ, ଅପୂର୍ବ ସଂଗଠନ ସାମର୍ଥ୍ୟର ଅସାଧାରଣ ପୁରୁଷ, ବହୁପାଠୀ, ବିଦ୍ୟାଧୁରୀଣ ପ୍ରବୀଣ, ଭାବମର୍ମଜ୍ଞ ଅଧ୍ୟବସାୟୀ, ସାମ୍ବାଦିକ, ସଂପାଦକ, ବାଗ୍ମୀ, ସତ୍‌ସାରସ୍ୱତ ଚିନ୍ତକ ତପସ୍ୱୀ, ଭାରତୀୟ ତତ୍ତ୍ୱ ଦର୍ଶନର ପ୍ରଖର ପ୍ରଜ୍ଞାପକ ବିଦ୍ୱାନ୍, ବିପୁଳ ଗ୍ରନ୍ଥାବଳୀର ଅଭ୍ୟର୍ଚ୍ଚିତ ପ୍ରଣେତା, ବନ୍ଧୁବତ୍ସଳ, ଅନ୍ତକାଳରେ ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳାଧିପତି, ଆସାମ ପ୍ରଦେଶର ମହାମହିମ ରାଜ୍ୟପାଳ, ସକାରାତ୍ମକ ରାଜନୈତିକ ଚିନ୍ତନ ସହିତ ଆବଶ୍ୟକସ୍ଥଳରେ କୂଟନୈତିକ ପ୍ରବନ୍ଧକର ବିଚକ୍ଷଣତାର ବିଚାରରେ ଚାଣକ୍ୟଙ୍କର ଅବତାରଭାବରେ ବିବେଚିତ ବିଷ୍ଣୁଲୀନ ଜାନକୀବଲ୍ଲଭ ପଟ୍ଟନାୟକଙ୍କର ପରିଚୟ ଭାବରେ ଏହି ଚାରୋଟି ଶବ୍ଦ ତାଙ୍କର ରୂପ ଓ ଗୁଣର ପରିଚାୟକ ହେବ। ତେବେ, ବିଶେଷକରି ମୁଁ ତାଙ୍କୁ କେବଳ ଜଣେ ନିରହଂକାରର ଅକପଟ ବନ୍ଧୁ ଭାବରେ ହିଁ ଜାଣିଛି। ଜାଣିଛି ଯେ ସେ ମାତା ଶାରଦା ସରସ୍ୱତୀଙ୍କର ଜଣେ ସତ୍‌ପୁତ୍ର ଅନ୍ୟାନ୍ୟ ସହସ୍ର ମାୟା ପ୍ରପଂଚ ଦାୟିତ୍ୱ ଜଂଜାଳର ଚାରିପଟେ ନିଆଁ ଜାଳି ତପସ୍ୟା କରିଛନ୍ତି, ସିଦ୍ଧିଲାଭ କରିଛନ୍ତି। ବିଷ୍ଣୁକୃପାଲାଭ କରି ମାତୃ ଆରାଧନା ଆଶ୍ରିତ ହୋଇ ଆଉ କିଛିକୁ ତାଙ୍କର ଲୋଭ ନ ଥିଲା। ସେ ସ୍ୱାଧ୍ୟାୟୀ, ଅର୍ଥାତ୍ ନିଜେ ନିଜର ଅଧ୍ୟୟନ କରିଥିଲେ। ଆପଣାର ଯଥାର୍ଥ ବିବେଚନାରେ ଆକଳନ କରିଥିଲେ। ସେହି କାରଣରୁ ସବୁ କିଛିକୁ ଜଗତପାଳକ କରୁଣାବରୁଣାଳୟର ମହାଦାନ ଭାବରେ ସ୍ୱୀକାର କରି ଆନନ୍ଦ ପ୍ରମୁଦିତ, ପରିତୁଷ୍ଟ ହୋଇ ରହିଥିଲେ। ସେହି ଶିଖର ଅଧିଷ୍ଠାନ ସକାଶେ ଅହଂଠାରୁ ଦୂରେଇ ରହି ସ୍ୱଭାବରେ ବିନୟୀ ଓ ଜିଜ୍ଞାସୁ ଥିଲେ।

ତାଙ୍କର କବିତା ସଂକଳନ ଭାବରେ 'ସିନ୍ଧୁ ଉପତ୍ୟକା' ପ୍ରକାଶିତ ହେଲା। ତାଙ୍କଠାରୁ ଉପହାରସ୍ୱରୂପ ଖଣ୍ଡିଏ ପାଇଥିଲି, ପଢ଼ିଛି। ସେତେବେଳେ ପ୍ରଖ୍ୟାତ ସାହିତ୍ୟିକ ମହାପାତ୍ର ନୀଳମଣି ସାହୁ ପୁସ୍ତକ ସଂପର୍କରେ ଏକ ଦୀର୍ଘ ସମୀକ୍ଷା କରି ପ୍ରଶଂସା କରିଥିଲେ ଯାହା 'ଧରିତ୍ରୀ'ର ସାହିତ୍ୟପୃଷ୍ଠାରେ ପ୍ରକାଶିତ ହୋଇଥିଲା। ସେହି ବର୍ଷ 'ଧରିତ୍ରୀ'ର ବାର୍ଷିକୋତ୍ସବର ଅତିଥିଭାବରେ ମୁଁ ଆବାହିତ ହୋଇଥିଲି। ଜାନକୀବାବୁ ଉତ୍ସବ ଉଦ୍‌ଘାଟନ କରିଥିଲେ। ସେତେବେଳେ ତାଙ୍କ ସହିତ ଆଳାପ-ଆଲୋଚନା ଭିତରେ ମୁଁ 'ସିନ୍ଧୁ ଉପତ୍ୟକା'ର ହିନ୍ଦୀ ରୂପାନ୍ତରଣ କରିବା ଆଳରେ ବୃହତ୍ତମ ରାଷ୍ଟ୍ରୀୟ ମଂଚପ୍ରଦାନ କରିବାର ଇଚ୍ଛା ପ୍ରକାଶ କରିଥିଲି। କହିଥିଲି, ଭାରତ ଭଳି ବହୁ ଲାବଣ୍ୟବତୀ ବାଣୀର ରାଷ୍ଟ୍ରରେ ଭାବନାତ୍ମକ

ଏକାତ୍ମତା ପ୍ରତିଷ୍ଠା ହେତୁ ଅନୁବାଦ ପରମ ଆବଶ୍ୟକ। ସେ ମୋର ଉକ୍ତି-ସ୍ୱୀକାର କଲେ ସିନା ପ୍ରସ୍ତାବ ଗ୍ରହଣ କଲେ ନାହିଁ। କହିଲେ– ଶ୍ରୀନିବାସବାବୁ, ଓଡ଼ିଶାର ସାରସ୍ୱତ ମାଟି ତ ଭାରି ଉର୍ବର। ଆପଣ ଅନେକ କିଛି କରିଛନ୍ତି, କରୁଛନ୍ତି ଓ କରିବେ ବି। ଆପଣଙ୍କର ସାହିତ୍ୟ ସର୍ଜନାର କ୍ଷେତ୍ର ବିପୁଳାୟତନ ତାହା ସହିତ ଯାହା କହିଲେ ତାହା ବି ସର୍ଜନା ଧର୍ମଭାବରେ ନେଇ ଅନେକ କିଛି କଲେଣି। ମୁଁ ଗଦ୍ୟରେ ଯାହା କିଛି ମୋର ଚିନ୍ତନ ସାମର୍ଥ୍ୟର ସୀମାଭିତରେ କରିପାରିଛି ସିନା, ସେଥିପ୍ରତି ମୋର ଆତ୍ମବିଶ୍ୱାସ ଓ ଆସ୍ଥା ବି ରହିଛି। ଜାଣିଛି କବିତାର କ୍ଷେତ୍ର ଶ୍ୟାମଳ ପୁଷ୍ପିତ ଓ ସୁକୁମାର। ଜାଣିଛି, ଅନୁଭବ କରୁଛି ଯେ 'ସିନ୍ଧୁ ଉପତ୍ୟକା' ତୁଳନାତ୍ମକ ବିଚାରରେ ତା'ର ସମୀପବର୍ତ୍ତୀ ହେବ ନାହିଁ। ଜାଣିଛି ଆପଣ ମହତାବ୍‌ଜୀଙ୍କର 'ତୃତୀୟ ପର୍ବ' ହିନ୍ଦୀରେ ଦିବ୍ୟ ଅନୁବାଦ କରିଛନ୍ତି, ଯାହା ସକାଶେ ହିନ୍ଦୀ ସାହିତ୍ୟ ସଂସ୍ଥାନ, ଲକ୍ଷ୍ନୌ, ଆପଣଙ୍କୁ ସୌହାର୍ଦ୍ଦ୍ୟ ସମ୍ମାନ ବିମଣ୍ଡିତ କରି ସର୍ବଭାରତୀୟ ସ୍ୱୀକୃତି ଦେଇଛନ୍ତି ଓ ପୁରସ୍କୃତ କରିଛନ୍ତି। ଆପଣଙ୍କ ହାତରେ 'ସିନ୍ଧୁ ଉପତ୍ୟକା' ରୂପାନ୍ତରିତ ହେବା ନିଶ୍ଚିତ ଗୌରବର କଥା ତେବେ ଆପଣ ବି ମୋପରି ଜାଣିଛନ୍ତି ଯେ ତାହା ଭିତରେ ଆଉ ଯାହା ଥାଉ ନ ଥାଉ କବିତାର ଲଳିତ ରୀତି, ଦିବ୍ୟ ମାଧୁରୀ ନାହିଁ। ହୁଏତ ମୁଁ ଯାହା ଗଦ୍ୟରେ କହିଥାଆନ୍ତି ପଦ୍ୟରେ କହିବାକୁ ଚାହିଁଛି। ତାହା ସେଇ ସତ୍ୟନିଷ୍ଠ ଅହଂଶୂନ୍ୟ ଉଦାସୀନ ସାରସ୍ୱତ ତପସ୍ୱୀ, ଯେ ସତ୍ୟ ସ୍ୱୀକାର କରିବାକୁ କୁଣ୍ଠିତ ହେବ ନାହିଁ।

ଜାନକୀବାବୁ ନିଶ୍ଚିତଭାବରେ ରାଜନୀତିରେ ସଖ୍ୟ ସହଯୋଗ ଲୋଡ଼ିଛନ୍ତି। ସ୍ୱାର୍ଥ ତ ନିଶ୍ଚିତ ରହିଛି। ସଂଗଠନ ଓ କ୍ରିୟାର ଅନୁଶାସନ ହେତୁ ଅନେକଙ୍କ ଉପରେ କିଛି କାର୍ଯ୍ୟଭାର ନ୍ୟସ୍ତ କରିଛନ୍ତି। ସେତେବେଳେ ବି ସେ ଆପଣାର ଅଧିକାର, ପଦ ପ୍ରତିଷ୍ଠାର ଚାପପ୍ରୟୋଗ କରି ନାହାନ୍ତି। ଯାହାକୁ କିଛି ବରଗି ଦାୟିତ୍ୱ ଦେବେ ସେତେବେଳେ ପ୍ରାୟତଃ କହିବେ - ଏ କାମ କେବଳ ତମେ କରିଦେଇପାରିବ ବୋଲି ବିଶ୍ୱାସ କରି, ମୁଁ ତୁମକୁ କହୁଛି। ତମେ ତାହା ଠିକ୍‌ଠିକ୍ ତୁଲେଇଦେବ ନିଶ୍ଚୟ! ବହୁ ପ୍ରସାରିତ ଓ ପ୍ରିୟ ଖବରକାଗଜ 'ପ୍ରଜାତନ୍ତ୍ର' ଓ ମୁଦ୍ରଣାଳୟର କଟକରେ ସର୍ବାଧିକ କର୍ମଚାରୀଙ୍କୁ ଏକଦା ନିଯୁକ୍ତ କରିଥିବା ସଂସ୍ଥା ସେମିତି ଶୃଙ୍ଖଳିତ ଚାଲିଥିଲା। ଏତେ ମିତ୍ରମୟ ଯେ କଟକ ପହଞ୍ଚ ପ୍ରଜାତନ୍ତ୍ର ପରିସରରେ ପ୍ରବେଶ କଲେ 'ଘରବାହୁଡ଼ା' ଆନନ୍ଦ ପ୍ରମୁଦିତ କରୁଥିଲା। ପରିଚାଳନା ଦାୟିତ୍ୱରେ ତ ପ୍ରତ୍ୟେକ ବିଭାଗରେ କାର୍ଯ୍ୟକର୍ତ୍ତା ଥିଲେ, ମାତ୍ର, ସମ୍ପାଦନାର ନିର୍ଦ୍ଧାରିତ କର୍ତ୍ତବ୍ୟକର୍ମରେ ବାନ୍ଧି ହୋଇ ନ ରହି ସବୁ ଦେଖି, ସବୁ କିଛି ଉପସ୍ଥିତ ସମସ୍ୟାର ସମାଧାନ କରୁଥିଲେ ସେହି ଦକ୍ଷ ଓ ନିରପେକ୍ଷପୁରୁଷ ଜାନକୀବଲ୍ଲଭ।

ଆଜି 'ରାଜନୀତି' ତ ସାରା ଭାରତରେ ଏକ ବିଶାଳ ବ୍ୟାପକ ସଂଗଠନ। ଅନେକ ନୀତି ଅଜ୍ଞ ନୀତିଜ୍ଞଭାବରେ ଏକାଠି ହେଇ ପରସ୍ପରକୁ ବିରୋଧ କରିବା, ନିନ୍ଦା କରିବାର ଯେମିତି ଗୋଟାଏ ଅବସର ବିନୋଦନ କ୍ଲବ! ଅଯୋଗ୍ୟ ଅପଣ୍ଡିତ ବି ଅବସର ସୁଯୋଗ ଉଣ୍ଡି ରହିଥାନ୍ତି, କେମିତି ନୈମିଷ୍ୟାରଣ୍ୟର ସନ୍ଥ, ବିଦ୍ୱାନ୍ ଉତ୍ସବ ସମାରୋହର ଅଂଶୀଦାର

ହେବେ। ସେମାନଙ୍କ ଭିତରେ ସତପୁରୁଷ ନାହାନ୍ତି, ତାହା ନୁହେଁ, ମୁଁ ସେହି ମହତ ଜନଙ୍କୁ ପ୍ରଣାମ କରୁଛି। ଜାନକୀବାବୁଙ୍କୁ ମୁଁ ଯେତିକି ଅନୁଭବ କରିଛି ସ୍ମୃତିଚକ୍ରରେ ସେ ରାଜନୀତିର ଶିଖର ଆରୋହଣ କରିଥିଲେହେଁ ତାଙ୍କର ଅନ୍ତରାତ୍ମାରେ ନିର୍ମଳ ସାରସ୍ୱତ ଜଣେ ଯୋଗୀ ତପସ୍ୱୀ ବିରାଜିତ ହୋଇ ରହିଥିଲା ଓ ସେ ବିମଳ ଭାବ-ପ୍ରୀତିର ସ୍ତାବକ ଥିଲେ। ବିଶ୍ୱର ସର୍ବଶ୍ରେଷ୍ଠ ପ୍ରୀତିକାବ୍ୟ ଶ୍ରୀମଦ୍‌ଭାଗବତ ସେହି ଗତଦର୍ଶୀ ବିଦ୍ୱାନ୍‌ଙ୍କୁ ଯେଉଁ ପରିମାଣରେ ପ୍ରଭାବିତ, ଅନୁପ୍ରେରିତ, ମୋହିତ, ସମ୍ମୋହିତ କରି ରଖିଥିଲା ତାହା ସହିତ ତାଙ୍କ ଭିତରେ ଅନ୍ୟାନ୍ୟ ଦିବ୍ୟ ପୁରାଣ ଓ ଅଧ୍ୟାତ୍ମ ତତ୍ତ୍ୱବୋଧର ଦେଦୀପ୍ୟମାନ ମର୍ମଜ୍ଞତା ସମସ୍ତଙ୍କୁ ପ୍ରୀତିଡୋରିରେ ବାନ୍ଧି ଆପଣାର କରିନେବାକୁ ଆତୁର ଆତ୍ମଭୋଳା କରୁଥିଲା। ଏହି ମୋର ଅନୁଭବ ଅପର ସାରସ୍ୱତ ସଂସ୍କୃତିର ଭାବନିକଟତାର ବିଶ୍ୱାସୀ ମିତ୍ରମାନେ ବି ଅନୁଭବ କରିଥିବେ। ମୋ ସହିତ ଭେଟାଭେଟିରେ ଔପଚାରିକ କୁଶଳ ଜିଜ୍ଞାସା ପରେ ଆମ ଭିତରେ ସାହିତ୍ୟ ଭିନ୍ନ କିଛି ବି ଭିନ୍ନ ପ୍ରସଙ୍ଗର ଆଳାପ ଆଲୋଚନା, ବିଚାର ବିନିମୟ କେବେ ବି ହୋଇ ନାହିଁ।

ଏକ ସ୍ମୃତିରେ ସମାହିତ ସୁଖଦ ବାଗଶ୍ରୀର ମୂର୍ଚ୍ଛନାସଦୃଶ ରହିଛି, ସ୍ମରଣ କରୁଛି। ବଲାଙ୍ଗୀରରେ ସାଂସ୍କୃତିକ ସଂସ୍ଥା 'ଭୂମିକା'ର 'ମଠଖାଇ' ମହୋତ୍ସବର ମୁଖ୍ୟ ଅତିଥିଭାବରେ ପୂର୍ବରୁ ସ୍ୱୀକୃତିପ୍ରଦାନ କରିଥିଲେ ବୋଲି ଜାନକୀବାବୁ ଆସିଥିଲେ। ସର୍କିଟ ହାଉସରେ ମୁଦ୍ରିତ ନିମନ୍ତ୍ରଣପତ୍ରର କୋଉଠି ହେଲେ ମୋ ନାଆଁ ନ ଦେଖି ଆୟୋଜକ କର୍ମକର୍ତ୍ତାଙ୍କର ଜଣେ ପ୍ରମୁଖଙ୍କୁ କହିଲେ ମୋ ସାଙ୍ଗରେ କିଏ ମଞ୍ଚରେ ଥିବେ ? ଶ୍ରୀନିବାସବାବୁ ନ ରହିଲେ ମୋତେ କ'ଣ ଭଲ ଲାଗିବ ? ବାଧ ହୋଇ ମୋତେ ଆସି ମନେଇ ନେଇଯିବାକୁ ସେମାନେ ଆସିଥିଲେ। ମୁଁ ଯୋଗ ଦେଇ ନ ଥାନ୍ତି ମାତ୍ର ଜାନକୀବାବୁଙ୍କ ଇଚ୍ଛାକୁ ସମ୍ମାନ ଦେଇ ଯୋଗଦେବାକୁ ଗଲି। ଜାନକୀବାବୁଙ୍କୁ ସ୍ୱାଗତ କରି ପାଛୋଟି ଆଣିଲି। ତାଙ୍କଠାରୁ ଭାରତ ସରକାର ତାଙ୍କୁ ଆସାମର ରାଜ୍ୟପାଳ ପଦଭାର ଗ୍ରହଣ କରିବା ସକାଶେ ମନୋନୀତ କରିଛନ୍ତି, ଜାଣିଲି। ସେଦିନ ଉତ୍ସବ ପରେ ସେ ଭୁବନେଶ୍ୱର ଫେରିଯିବେ ଓ ତା'ପରଦିନ ଗୌହାଟୀ ଯାଇ କାର୍ଯ୍ୟଭାର ଗ୍ରହଣ କରିବେ। ସଭା ସରି ସାଂସ୍କୃତିକ କାର୍ଯ୍ୟକ୍ରମ ବେଳେ ଆରମ୍ଭର ପ୍ରାୟ ଘଣ୍ଟାଏ ଆମେ ଆଗ ଧାଡ଼ିରେ ବସିଥିବା ବେଳେ କହିଲେ–ଦେଖନ୍ତୁ, ମଝିରେ ବେଳ ବାହାର କରି ଗୁଆହାଟୀ ନିଶ୍ଚୟ ଆସିବେ। ଗୋଟାଏ ବହୁଭାଷୀ କବିତା ପାଠୋତ୍ସବ କରିବା, କିଛି ସାହିତ୍ୟ ଆଲୋଚନା ହେବ। ଆସାମର ଅନେକ ଦର୍ଶନୀୟ ସ୍ଥାନ ଅଛି। କିଛି ଦିନ ମୋର ଅତିଥିଭାବରେ ରହି ବୁଲି ଆସିବେ। ତାହା ଅନେକ କାରଣରୁ ସମ୍ଭବ ହୋଇପାରି ନାହିଁ। 'ଶୂନ୍ୟସୀମନ୍ତିନୀ ରାଧା' ଓଡ଼ିଆ କବିତା ସଂକଳନର ଅହମୀୟା ଅନୁବାଦ ତାଙ୍କରି ହାତରେ ଲୋକାର୍ପିତ କରିବା ଇଚ୍ଛା ପ୍ରକାଶ କରି ଯୋଗାଯୋଗ କଲାରୁ ସେ ନିଜେ ତିଥିର ସୂଚନା ଦେଲେ ତାହା ନଭେମ୍ବର ୫ ଓ ମୋତେ ଫୋନ୍‌ରେ ଜଣେଇଲେ, ଆସାମରେ ତାଙ୍କର କାର୍ଯ୍ୟକାଳ ଡିସେମ୍ବର ଦଶରେ ସରିଯାଉଛି। ମୁଁ 'ଶୂନ୍ୟ ସୀମନ୍ତିନୀ, ରାଧା' ପୁସ୍ତକର କବି ବିଜୟ କୁମାର ତ୍ରିପାଠୀଙ୍କ ସହିତ ଗୁଆହାଟୀରେ ଯଥାସମୟରେ

ପହଞ୍ଚିଲି । ସୁସାହିତ୍ୟିକ ମିତ୍ର ଡକ୍ଟର ଗୋବିନ୍ଦ ଭୂୟାଁ, ରାଜ୍ୟପାଳଙ୍କର ସ୍ୱତନ୍ତ୍ର ସଚିବ । ସେ ସର୍ବବିଧ ବ୍ୟବସ୍ଥା କରିଥିଲେ । ରାଜଭବନ ବାଟିକାରେ ଲୋକାର୍ପଣ ଉତ୍ସବ ଅନୁଷ୍ଠିତ ହେଲା । ଆଦି ଆଦି ସମ୍ବାଦ ବହୁଳ ପ୍ରସାରିତ ହେଲା । ସେ ସ୍ମୃତି ହୁଏତ ମନରୁ ମଉଳିଯିବ । ମାନନୀୟା ଜୟନ୍ତୀ ଦେବୀ ସଭା ଦିନ ସକାଳ ଫ୍ଲାଇଟ୍‌ରେ ଭୁବନେଶ୍ୱରରୁ ଗୁଆହାଟୀରେ ପହଞ୍ଚି ସଭାରେ ଯୋଗ ଦେଇଥିଲେ । ଡକ୍ଟର ଭୂୟାଁ ସଭାରେ ସଭାପତିତ୍ୱ କରିଥିଲେ । ପ୍ରାୟ ଦୁଇଶତ ଲେଖକ ଓ ସାହିତ୍ୟପ୍ରେମୀ ସେଥିରେ ଯୋଗ ଦେଇଥିଲେ ।

ସୁଖ ସନ୍ତୋଷ ସ୍ମୃତି ରୋମଂଥନ ସକାଶେ ବି ଜୀବନ କାଳ ଭାରି ଅଳପ । ସେ ସଭାରେ ମୁଁ ମୋର ଅଭିଭାଷଣରେ ଜାନକୀବାବୁଙ୍କୁ ଲକ୍ଷ୍ୟ କରି କହିଥିଲି, ତାଙ୍କୁ ସାରସ୍ୱତ ସର୍ଜନା କ୍ଷେତ୍ର ଭାରି ଲୋଡୁଛି । ସେତେବେଳେ ଜାନକୀବାବୁ ବି ତାଙ୍କର ସମ୍ଭାଷଣ ଆଂଶିକ ଅହମିୟାରେ ବ୍ୟକ୍ତ କରି କହିଥିଲେ ଯେ ଏଣିକି ରାଜନୀତିରୁ ସନ୍ନ୍ୟାସ ନେଇ ମୁଁ ବି ଲେଖାପଢ଼ାରେ ସଂପୂର୍ଣ୍ଣ ମନୋନିବେଶ କରିବି ବୋଲି ଚିନ୍ତା କରୁଛି ।

ଜୀବନ ଜଂଜାଳରେ ବେଳ ଅବେଳରେ ବହୁ କଥା ମନେ ପଡ଼େ । ବିଦ୍ୟମାନତାର ଅନୁଭବ ଯେତେ ଆନନ୍ଦ ଦିଏ ସ୍ଥୁଳ ଶରୀରର ଅବିଦ୍ୟମାନତା ତାଠାରୁ ଅଧିକ ରୋମାଂଚିତ କରିଥାଏ । ଯିବାକୁ ହେବ ତ, ସେତେବେଳେ ଅବଶ୍ୟ ଭେଟ ହେବ ! ସେଇ ଆଶ୍ୱାସନା । ସେହି ପବିତ୍ରାତ୍ମା ମାୟାପ୍ରପଂଚକୁ କଦାପି ଫେରିବେ ନାହିଁ, କରୁଣାବରୁଣାଳୟ ଅନନ୍ତ ପ୍ରଭୁ ପାଖରେ ବସେଇ ଆପଣାର ଅନନ୍ତ କଥା, ଯଶୋଗାନ ତାଙ୍କଠାରୁ ଶୁଣିବାକୁ ମନ କରିବ ସିନା ।

କୋଟି ପ୍ରଣାମ ଜଣାଇ ଶ୍ରଦ୍ଧାର୍ପିତ କରୁଛି...



# ସଂସ୍କୃତ ଓ ସଂସ୍କୃତିର ଭଗୀରଥ
# ରାଜର୍ଷି ଜାନକୀବଲ୍ଲଭ

**ହରେକୃଷ୍ଣ ଶତପଥୀ**

ପ୍ରଜ୍ଞାନବାଚସ୍ପତି ଜାନକୀବଲ୍ଲଭ ପଟ୍ଟନାୟକ ଜଣେ ବିଶିଷ୍ଟ ରାଷ୍ଟ୍ରନୀତିଜ୍ଞ ଭାବରେ ସର୍ବବିଦିତ। ଓଡ଼ିଶାର ବହୁବର୍ଷଧରି ମୁଖ୍ୟମନ୍ତ୍ରୀ ଏବଂ ବିରୋଧୀଦଳର ନେତା, ଭାରତର କେନ୍ଦ୍ରମନ୍ତ୍ରୀ ଏବଂ ଭାରତୀୟ ଜାତୀୟ କଂଗ୍ରେସ ଦଳର ଜଣେ ଅନ୍ୟତମ ପୁରୋଧା ଭାବରେ ସେ ନିଜର ରାଷ୍ଟ୍ରଭକ୍ତି, ଜନସେବା ଏବଂ ସାଂଗଠନିକ ବିଚକ୍ଷଣତାର ଅନେକ ଉଦାହରଣ ରଖିଯାଇଛନ୍ତି। ଜାତିର ଜନକ ମହାତ୍ମାଗାନ୍ଧୀ, ପଣ୍ଡିତ ମଦନମୋହନ ମାଲବ୍ୟ, ପଣ୍ଡିତ ଜବାହରଲାଲ୍ ନେହରୁ ଏବଂ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଭଳି ଜନନାୟକଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ଆଜୀବନ ଦେଶସେବାରେ ନିଜକୁ ନିୟୋଜିତ କରିଛନ୍ତି। ଏହି ଦେଶସେବା ଏବଂ ରାଷ୍ଟ୍ରଭକ୍ତିର ପ୍ରକ୍ରିୟାକୁ ଅଧିକ ରୁଚିମନ୍ତ ଓ ଋଦ୍ଧିମନ୍ତ କରିବା ଉଦ୍ଦେଶ୍ୟରେ ସେ ଯେଉଁ ବିଭିନ୍ନ ମାଧ୍ୟମ ଅବଲମ୍ବନ କରିଥିଲେ ତନ୍ମଧ୍ୟରୁ ସଂସ୍କୃତ ଓ ସଂସ୍କୃତିର ସେବା ଥିଲା ତାଙ୍କର ଅନ୍ୟତମ ମାଧ୍ୟମ। ଭାରତବର୍ଷ ଭଳି ଏକ ବିଶାଳ ରାଷ୍ଟ୍ରର ଐକ୍ୟ, ସଂହତି, ଅଖଣ୍ଡତା, ନୈତିକ ଓ ଆଧ୍ୟାତ୍ମିକ ଉନ୍ନତିପାଇଁ ସଂସ୍କୃତ ଓ ସଂସ୍କୃତିର ସଂରକ୍ଷଣ ଓ ପ୍ରଚାରର ଯଥେଷ୍ଟ ଆବଶ୍ୟକତା ରହିଛି ବୋଲି ସେ ହୃଦୟଙ୍ଗମ କରିଥିଲେ।

ସଂସ୍କୃତ ହେଉଛି ବିଶ୍ୱର ଏକ ପ୍ରାଚୀନ ଭାଷା ଏବଂ ଏହା ପ୍ରାୟ ଅଧିକାଂଶ ଭାରତୀୟ ଭାଷାର ଜନନୀ। ଏପରିକି କନ୍ନଡ଼, ତେଲୁଗୁ, ତାମିଲ୍, ମାଲୟାଲମ ଭଳି ଦ୍ରାବିଡ଼ ଭାଷାମାନଙ୍କର ମଧ୍ୟ ସଂସ୍କୃତ ସହିତ ଗଭୀର ସମ୍ପର୍କ ରହିଛି। ଏହି ଦକ୍ଷିଣ-ଭାରତୀୟ ଭାଷାରେ ଲିଖିତ ପ୍ରାଚୀନ ସାହିତ୍ୟ ସଂସ୍କୃତ ସାହିତ୍ୟର ପ୍ରାଚୀନ ସୃଷ୍ଟି ଓ ସ୍ରଷ୍ଟାମାନଙ୍କଦ୍ୱାରା ବହୁଭାବରେ ପ୍ରଭାବିତ ହେବା ମଧ୍ୟ ଦେଖାଯାଏ। ସଂସ୍କୃତ ବାଙ୍ମୟର ପ୍ରସିଦ୍ଧ ଗ୍ରନ୍ଥ– ବେଦ, ଉପନିଷଦ୍, ରାମାୟଣ, ମହାଭାରତ ଓ ପୁରାଣ ପ୍ରଭୃତି ଗ୍ରନ୍ଥ ତଥା କାଳିଦାସ, ମାଘ, ଭାରବି ଓ ଭବଭୂତି ଭଳି ବିଶ୍ୱବିଦିତ କାଳଜୟୀ କବିମାନଙ୍କର କୃତିକଦମ୍ବକ ଦ୍ୱାରା କେବଳ ଦକ୍ଷିଣ-ଭାରତର କାହିଁକି; ସମଗ୍ର ଭାରତ ଓ ଭାରତ ବାହାରର ରଚନାମାନ ମଧ୍ୟ ଅନୁପ୍ରାଣିତ ହୋଇଥିବାର ଯଥେଷ୍ଟ ପ୍ରମାଣ ରହିଛି। ସଂସ୍କୃତ ଭାଷା ଓ ସାହିତ୍ୟର ଉଦାର ଭାବନା, ଉଦାତ୍ତ ଦାର୍ଶନିକୀ ଚେତନା, ପ୍ରକୃତି ପ୍ରତି ପ୍ରେମ ଓ ସମ୍ମାନ, ଶୃଙ୍ଗାରର ମାଦକତା ଓ ଭାଷାବିନ୍ୟାସର ମଧୁରତା ଦେଶବିଦେଶର ଅନେକ ସ୍ରଷ୍ଟା ଓ ସୃଷ୍ଟିକୁ ପ୍ରଭାବିତ କରିଛି।

ସଂସ୍କୃତଭାଷାକୁ ମହର୍ଷିମାନେ ଦେବଭାଷାର ଆଖ୍ୟା ଦେଇଛନ୍ତି–

**ସଂସ୍କୃତଂ ନାମ ଦୈବୀ ବାଗ୍ ଅନ୍ୱଖ୍ୟାତା ମହର୍ଷିଭିଃ ।**

ଦିବ୍ୟଶକ୍ତିର ଅଧିକାରୀ ଦେବତାମାନେ ଯେଉଁ ଭାଷାରେ ଭାବବିନିମୟ କରିଥାନ୍ତି ତାହା ହେଉଛି ଦେବଭାଷା ବା ସଂସ୍କୃତ । ଏହି ଦେବଭାଷା ଭାରତବର୍ଷରେ ବହୁବର୍ଷଧରି 'ଲୋକଭାଷା' ଭାବରେ କଥିତ ହେଉଥିବାର ପ୍ରମାଣ ରହିଛି । ଏହି ପ୍ରସଙ୍ଗରେ ପାଣିନିଙ୍କର ବ୍ୟାକରଣ, ବାଲ୍ମୀକିଙ୍କ ରାମାୟଣ ଓ ଅନ୍ୟାନ୍ୟ ଗ୍ରନ୍ଥରେ ଯଥେଷ୍ଟ ଉଦାହରଣମାନ ରହିଛି । 'ସଂସ୍କୃତ'ର ଅର୍ଥ ହେଉଛି ପବିତ୍ର । ଏହି ଭାଷା ପ୍ରତ୍ୟେକଙ୍କ ଅନ୍ତଃକରଣକୁ ପବିତ୍ର କରିବା ସଙ୍ଗେ ସଙ୍ଗେ ମନୁଷ୍ୟକୁ ସଂସ୍କାର-ସମ୍ପନ୍ନ କରିଥାଏ ଏବଂ ତା'ର ହୃଦୟରେ ସମସ୍ତ ଦୈବଗୁଣର ଆବିର୍ଭାବ କରାଇଥାଏ । ଗୀତାରେ ଦୈବୀସମ୍ପତ୍ତି ବା ଦୈବଗୁଣ ବିଷୟରେ ଉଲ୍ଲେଖ କରାଯାଇଛି, ଯଥା–

ଅହିଂସା ସତ୍ୟମକ୍ରୋଧସ୍ତ୍ୟାଗଃ ଶାନ୍ତିରପୈଶୁନମ୍ ।
ଦୟା ଭୂତେଷ୍ୱଲୋଲୁପ୍ତ୍ୱଂ ମାର୍ଦବଂ ହ୍ରୀରଚାପଳମ୍ ।
ତେଜଃ କ୍ଷମା ଧୃତିଃ ଶୌଚମଦ୍ରୋହୋନାତିମାନିତ ।
ଭବନ୍ତି ସଂପଦଂ ଦୈବୀମଭିଜାତସ୍ୟ ଭାରତ ! ॥

(ଗୀତା- ୧୬/୨-୩)

ଅହିଂସା, ସତ୍ୟ, ଅକ୍ରୋଧ, ତ୍ୟାଗ, ଶାନ୍ତି, କାହାର ନିନ୍ଦା ନ କରିବା, ପ୍ରାଣୀମାନଙ୍କଠାରେ ଦୟା, ନିର୍ଲୋଭତା, ସରଳତା, ଲଜ୍ଜା, ଅଚାପଲ୍ୟ, ତେଜ, କ୍ଷମା, ଧୈର୍ଯ୍ୟ, ପବିତ୍ରତା, କାହାକୁ ଦ୍ରୋହ ବା ଈର୍ଷା ନ କରିବା ଏବଂ ଗର୍ବ ବା ଅହଂକାର ପ୍ରଦର୍ଶନ ନ କରିବା– ଏଗୁଡ଼ିକ ହେଉଛି ଦୈବ ଗୁଣ । ସଂସ୍କୃତଭାଷାର ଅଧ୍ୟୟନ ଏବଂ ଜ୍ଞାନବଳରେ ଏହି ଦୈବଗୁଣଗୁଡ଼ିକର ମନୁଷ୍ୟ ନିକଟରେ ଆବିର୍ଭାବ ହେଉଥିବାରୁ ଏହି ଭାଷାକୁ 'ଦେବଭାଷା' ବୋଲି କୁହାଯିବାର ଯଥାର୍ଥତା ରହିଛି ।

ସଂସ୍କୃତଭାଷାର ବିଶେଷତ୍ୱ ବିଷୟରେ ବିଶିଷ୍ଟ ଦାର୍ଶନିକ ଭର୍ତ୍ତୃହରି କହନ୍ତି–

କେୟୁରାଣି ନ ଭୂଷୟନ୍ତି ପୁରୁଷଂ ହାରା ନ ଚନ୍ଦ୍ରୋଜ୍ଜ୍ୱଳାଃ
ନ ସ୍ନାନଂ ନ ବିଲେପନଂ ନ କୁସୁମଂ ନାଲଂକୃତା ମୂର୍ଦ୍ଧଜାଃ ।
ବାଣ୍ୟେକା ସମଲଙ୍କରୋତି ପୁରୁଷଂ ଯା ସଂସ୍କୃତା ଧାର୍ଯ୍ୟତେ
କ୍ଷୀୟନ୍ତେ ଖଳୁ ଭୂଷଣାନି ସତତଂ ବାଗ୍‌ଭୂଷଣଂ ଭୂଷଣମ୍ ॥

ଅର୍ଥାତ୍ ମନୁଷ୍ୟକୁ କୌଣସି ବାହ୍ୟ ଅଳଂକାର, ଯଥା–କେୟୂର, ହାର, ଅଥବା ସ୍ନାନ, ବିଲେପନ, କୁସୁମ ଇତ୍ୟାଦି ଭୂଷିତ କରି ନ ଥାଏ । କେବଳ ସଂସ୍କୃତବାଣୀ ହିଁ ତାକୁ ସବୁ ଦୃଷ୍ଟିରୁ ଅଳଙ୍କୃତ ବା ସୁଶୋଭିତ କରିଥାଏ । ବାହ୍ୟ ଅଳଙ୍କାରଗୁଡ଼ିକ କ୍ରମଶଃ କ୍ଷୟପ୍ରାପ୍ତ ହୋଇଯାଏ; ହେଲେ ସଂସ୍କୃତବାଣୀ ରୂପକ ଅଳଙ୍କାର ମଣିଷପାଇଁ ସଦାସର୍ବଦା ଭୂଷଣ ଭାବରେ ରହିଥାଏ ।

ଜାନକୀବଲ୍ଲଭ ପଟ୍ଟନାୟକଙ୍କର ସଂସ୍କୃତ ଭାଷା ଓ ସାହିତ୍ୟ ପ୍ରତି ଶ୍ରଦ୍ଧା, ସମର୍ଥନ ଓ ପୃଷ୍ଠପୋଷକତା ଥିଲା ଅବର୍ଣ୍ଣନୀୟ। ସେ ଥିଲେ ସଂସ୍କୃତବିଦ୍ୱାନ୍। ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ସେ ବି.ଏ.ରେ ସଂସ୍କୃତ ଅନର୍ସ ନେଇ ବିଶ୍ୱବିଦ୍ୟାଳୟରେ ପ୍ରଥମଶ୍ରେଣୀ ଲାଭ କରି କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ପରବର୍ତ୍ତୀ ସମୟରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଏମ୍.ଏ.ପଢ଼ିବା ସମୟରେ ଯଦ୍ୟପି ରାଜନୀତି ବିଜ୍ଞାନ ଥିଲା ତାଙ୍କର ବିଷୟ; ତଥାପି ତାଙ୍କର ସଂସ୍କୃତ ପ୍ରତି ପ୍ରଗାଢ଼ ଶ୍ରଦ୍ଧା ଏବଂ ବାରାଣସୀର ସଂସ୍କୃତ ବାତାବରଣ ତାଙ୍କୁ ସଂସ୍କୃତରେ ଅଧିକ ପାରଙ୍ଗମତା ହାସଲ କରିବାପାଇଁ ସାହାଯ୍ୟ କରିଥିଲା। ସେ ସଂସ୍କୃତରେ ଅନର୍ଗଳ ଭାଷଣ ଦେଇପାରୁଥିଲେ ଏବଂ ସଂସ୍କୃତରେ ଅନେକ ପ୍ରବନ୍ଧ ଓ ଗ୍ରନ୍ଥ ମଧ୍ୟ ରଚନା କରିଛନ୍ତି। ସଂସ୍କୃତରେ ଲିଖିତ ଭର୍ତ୍ତୃହରିଙ୍କର ଶତକତ୍ରୟ, ଯଥା–ନୀତିଶତକ, ଶୃଙ୍ଗାରଶତକ ଓ ବୈରାଗ୍ୟଶତକ; ବ୍ୟାସଙ୍କର ଭାଗବତ ପ୍ରଭୃତି ଅନେକ ଗ୍ରନ୍ଥର ଓଡ଼ିଆ ଅନୁବାଦ କରି ସେ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭକରିବା ସଙ୍ଗେ ସଙ୍ଗେ ଅଧିକ ଲୋକପ୍ରିୟ ମଧ୍ୟ ହୋଇଛନ୍ତି। ସଂସ୍କୃତ ରାମାୟଣ ଓ ମହାଭାରତକୁ ଆଧାର କରି ସେ ଓଡ଼ିଆରେ ରାମାୟଣ ଓ ମହାଭାରତର ସାର ପ୍ରସଙ୍ଗଗୁଡ଼ିକୁ ନେଇ ସ୍ୱତନ୍ତ୍ର ପୁସ୍ତକ ରଚନା କରି ନିଜର ସଂସ୍କୃତଜ୍ଞାନର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି। ସଂସ୍କୃତରେ ଲିଖିତ ତାଙ୍କର ପ୍ରବନ୍ଧଗୁଡ଼ିକର ସଂକଳନ ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟ, ତିରୁପତିଦ୍ୱାରା ୨୦୦୭ ମସିହାରେ ପ୍ରକାଶିତ ହୋଇଛି। ଉକ୍ତ ପୁସ୍ତକରେ ମୋଟ ୧୮ଟି ପ୍ରବନ୍ଧ ସ୍ଥାନିତ ହୋଇଛି। ସେଗୁଡ଼ିକ ହେଉଛି– (୧) ଭାରତୀୟ ପରମ୍ପରାରେ ସଂସ୍କୃତର ଭୂମିକା, (୨) ଆଧୁନିକ ଯୁଗରେ ବେଦର ପ୍ରାସଙ୍ଗିକତା, (୩) ଉପନିଷଦର ଗୌରବ, (୪) ରମ୍ୟା ରାମାୟଣୀ କଥା, (୫) ପ୍ରଜ୍ୱାଳିତଃ ଜ୍ଞାନମୟଃ ପ୍ରଦୀପଃ, (୬) ଗୀତା ସୁଗୀତା କର୍ତ୍ତବ୍ୟା, (୭) ବିଦ୍ୟାବତାଂ ଭାଗବତେ ପରୀକ୍ଷା, (୮) ନୀତିନିର୍ମାତା ବିଷ୍ଣୁଶର୍ମା, (୯) ଦୈବାୟତ୍ତଂ କୁଳେ ଜନ୍ମ ମଦାୟତ୍ତଂ ତୁ ପୌରୁଷମ୍, (୧୦) ଭର୍ତ୍ତୃହରି, (୧୧) ପ୍ରାଚ୍ୟପାଶ୍ଚାତ୍ୟ ସୌନ୍ଦର୍ଯ୍ୟଶାସ୍ତ୍ର, (୧୨) ବିଶ୍ୱକବି କାଳିଦାସ, (୧୩) ଭାରବେରର୍ଥଗୌରବମ୍, (୧୪) ମାଘେ ସନ୍ତି ତ୍ରୟୋ ଗୁଣାଃ, (୧୫) ଏକା ରସଃ କରୁଣ ଏବ, (୧୬) ଜାତୀୟକବି ଜୟଦେବ, (୧୭) ନୈଷଧେ ପଦଲାଳିତ୍ୟମ୍, (୧୮) ଆଳଙ୍କାରିକ ବିଶ୍ୱନାଥ। ଏହାବ୍ୟତୀତ ବିଭିନ୍ନ ସ୍ଥାନରେ ସଂସ୍କୃତ ଭାଷାରେ ସେ ପ୍ରଦାନ କରିଥିବା ଭାଷଣଗୁଡ଼ିକ ମଧ୍ୟ ଉକ୍ତ ପୁସ୍ତକରେ ଲିପିବଦ୍ଧ କରାଯାଇଛି। ଅଭିଭାଷଣଗୁଡ଼ିକ ହେଲା–

୧. ନିଖିଳୋତ୍କଳ ସଂସ୍କୃତ ଅଧ୍ୟାପକମାନଙ୍କର ଚତୁର୍ଥ ବାର୍ଷିକ ସମ୍ମେଳନ– ଉଦ୍‌ଘାଟନ ଅବସରରେ କଟକ ଶୈଳବାଳା ମହିଳା ମହାବିଦ୍ୟାଳୟଠାରେ ୧୧.୦୪.୧୯୮୪ ମସିହାରେ ପ୍ରଦତ୍ତ ଅଭିଭାଷଣ।

୨. ୦୧.୦୯.୧୯୯୫ ତାରିଖରେ ପୁରୀ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟଠାରେ ଅନୁଷ୍ଠିତ କେନ୍ଦ୍ରୀୟ ସଂସ୍କୃତ ପରିଷଦର ଅଧିବେଶନରେ ପ୍ରଦତ୍ତ ସଂସ୍କୃତ ଭାଷଣ।

୩. ୧୯.୧୨.୧୯୯୬ ତାରିଖରେ ତିରୁପତି ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟର ଦୀକ୍ଷାନ୍ତ ସମାରୋହରେ 'ବାଚସ୍ପତି' ଉପାଧି ଗ୍ରହଣ ଅବସରରେ ପ୍ରଦତ୍ତ ଅଭିଭାଷଣ।

୪. ୧୬.୧୧.୧୯୯୭ ତାରିଖରେ ଉଜ୍ଜୟିନୀଠାରେ ଅନୁଷ୍ଠିତ କାଳିଦାସ ସମାରୋହରେ ପ୍ରଦତ୍ତ ଭାଷଣ।

ଉକ୍ତ ପୁସ୍ତକରେ ସନ୍ନିବେଶିତ ସମସ୍ତ ପ୍ରବନ୍ଧ ଓ ଭାଷଣରେ ଜାନକୀବଲ୍ଲଭଙ୍କର ବହୁଶାସ୍ତ୍ରଦର୍ଶିତା, ଚିନ୍ତାର ମୌଳିକତା ଏବଂ ଭାବାଭିବ୍ୟକ୍ତିର ନିପୁଣତା–ଖୁବ୍ ସୁନ୍ଦର ଭାବରେ ପ୍ରତିଫଳିତ ହୋଇଛି। ବିଶେଷକରି ପ୍ରଥମ ଦୁଇଟି ପ୍ରବନ୍ଧ–ସଂସ୍କୃତଭାଷା ଓ ଆଧୁନିକ ଯୁଗରେ ବେଦର ଯଥାର୍ଥତା–ତାଙ୍କର ଗଭୀର ଅଧ୍ୟୟନ ଓ ଗବେଷଣାର ଜ୍ୱଳନ୍ତ ଉଦାହରଣ। ଅନେକ ନୂତନ ତଥ୍ୟ ଉକ୍ତ ପ୍ରବନ୍ଧରେ ସନ୍ନିବେଶିତ କରି ସାଂପ୍ରତିକ ସମାଜରେ ଉଭୟ ସଂସ୍କୃତଭାଷା ଓ ବେଦର ଯଥେଷ୍ଟ ଆବଶ୍ୟକତା ଓ ପ୍ରାସଙ୍ଗିକତା ରହିଛି ବୋଲି ସେ ପ୍ରମାଣିତ କରିଛନ୍ତି। ପ୍ରତ୍ୟେକ ସଂସ୍କୃତବିଦ୍ୱାନ୍ ଓ ସଂସ୍କୃତପ୍ରେମୀ ଏହାକୁ ଅଧ୍ୟୟନ କରିବା ଏକାନ୍ତ ଉଚିତ। 'ଭାରତୀୟ ପରମ୍ପରାରେ ସଂସ୍କୃତର ଭୂମିକା' ଶୀର୍ଷକ ପ୍ରବନ୍ଧରେ ସଂସ୍କୃତର ବିଶେଷତ୍ୱ ଏବଂ ଯଥାର୍ଥତା ପ୍ରତିପାଦନ କରି ସେ ଲେଖିଛନ୍ତି– "ସଂସ୍କୃତର ଗୁଣକୀର୍ତ୍ତନ ଗୌରବ ନିମନ୍ତେ ଉଦ୍ଦିଷ୍ଟ। ସମୟ ଥିଲା ଯେତେବେଳେ ସଂସ୍କୃତର ଚର୍ଚ୍ଚା ସବୁବେଳେ ହେଉଥିଲା। ପରାଧୀନ ଭାରତରେ ଇଂରାଜୀ ଭାଷାର ପ୍ରାଧାନ୍ୟ ହେତୁ ସଂସ୍କୃତର ପ୍ରଚଳନ ସୀମିତ ହୋଇଗଲା। ଇଂରାଜୀ ଜାଣି ଗର୍ବ ଅନୁଭବ କରୁଥିବା ଭାରତୀୟମାନଙ୍କର ସଂସ୍କୃତ ପ୍ରତି ଅନାଦର ଜାତ ହେଲା। ତଦ୍ୱାରା ସଂସ୍କୃତର କେବଳ କ୍ଷତି ନୁହେଁ; ଆମ ଭାରତୀୟମାନଙ୍କର ମଧ୍ୟ ପ୍ରଭୂତ କ୍ଷତି ହେଲା। ସଂସ୍କୃତଦ୍ୱାରା ବିଭିନ୍ନ ପ୍ରଦେଶର ବିଭିନ୍ନତା ମଧ୍ୟରେ ଯେଉଁ ଐକ୍ୟବନ୍ଧନର ସୂତ୍ରପାତ ହୋଇଥିଲା, ତାହା ଶିଥିଳ ହୋଇଗଲା। ଅସଂହତି ହେତୁରୁ ଜାତି ଦୁର୍ବଳ ହୋଇଗଲା। ସମସ୍ତ ଭାରତୀୟ ପରମୁଖାପେକ୍ଷୀ ଏବଂ ଆତ୍ମସମ୍ମାନହୀନ ହୋଇଗଲେ। ଦେଶର ସ୍ୱାଭିମାନ ଦୂରେଇଗଲା। ଏକଦା ଭାରତ ସମଗ୍ର ପୃଥିବୀର ଗୁରୁରୂପରେ ବିବେଚିତ ହୋଇଥିଲା। ମନୁ କହିଛନ୍ତି–

**ଅସ୍ମଦ୍ଦେଶପ୍ରସୂତସ୍ୟ ସକାଶାଦଗ୍ରଜନ୍ମନଃ ।**
**ସ୍ୱଂ ସ୍ୱଂ ଚରିତ୍ରଂ ଶିକ୍ଷେରନ୍ ପୃଥିବ୍ୟାଂ ସର୍ବମାନବାଃ ॥**

(ମନୁ ୨/୨୦)

ସେହି ଭାରତବର୍ଷରେ ନିଜର ଚରିତ୍ର ହିଁ ପତନର ଅନ୍ୟତମ କାରଣ ହେଲା। ବର୍ତ୍ତମାନ ସ୍ୱାଧୀନଦେଶରେ ଏ ବିଷୟ ଆମେ ଚିନ୍ତା କରିବା ଉଚିତ। ବହୁ ଜାତୀୟ ଭାଷା ଅଛନ୍ତି। କିନ୍ତୁ ରାଷ୍ଟ୍ର ଭାଷା ଏକ। ଆମର ସମ୍ବିଧାନରେ ହିନ୍ଦୀ ରାଷ୍ଟ୍ରଭାଷା ଭାବରେ ସ୍ୱୀକୃତ ହୋଇଛି। ହିନ୍ଦୀ ଭାଷାର ପ୍ରାଧାନ୍ୟ ରହିଛି। ଓଡ଼ିଆ-ବଙ୍ଗଳା-ଆସାମୀ-ଗୁଜରାତୀ-ମରାଠୀ-ତେଲୁଗୁ-ତାମିଲ୍ ପ୍ରଭୃତି ଭାଷା ନଗଣ୍ୟ ନୁହେଁ। ଏ ସମସ୍ତ ଭାଷା ଅନ୍ୟ କୌଣସି ଭାଷାର ପ୍ରାଧାନ୍ୟକୁ

ଅଙ୍ଗୀକାର କରିବାକୁ ପ୍ରସ୍ତୁତ ନୁହେଁ। କିନ୍ତୁ ସଂସ୍କୃତଭାଷାର ଚର୍ଚ୍ଚା ସର୍ବତ୍ର ବିଦ୍ୟମାନ। ଦୀର୍ଘ ଦୁଇ ଶହ ବର୍ଷର ପରାଧୀନତା ସଂସ୍କୃତକୁ ନଷ୍ଟ କରିବାପାଇଁ ସମର୍ଥ ହୋଇପାରି ନାହିଁ। ଘୋର ଅନ୍ଧକାରରେ ପ୍ରଦୀପ ଭଳି ସଂସ୍କୃତ ଶିଖା ପ୍ରଜ୍ୱଳିତ ହୋଇରହିଛି। ବହୁ ପ୍ରାଚୀନ କାଳରୁ ସଂସ୍କୃତଭାଷା ସମସ୍ତ ଭାରତୀୟ ଭାଷାମାନଙ୍କର ଜନନୀ ଭାବରେ ସ୍ୱୀକୃତ ଏବଂ ସମାଦୃତ। ସ୍ନେହବଶତଃ ସନ୍ତାନମାନେ ଜନନୀର ପ୍ରାଧାନ୍ୟ ଅଙ୍ଗୀକାର କରିଥାନ୍ତି। ଏଣୁ ସଂସ୍କୃତ ହେଉଛି ଏକମାତ୍ର ଭାଷା; ଯିଏ ସମଗ୍ର ଦେଶକୁ ଏକ କରିବା ପାଇଁ ସମର୍ଥ। ଅତ୍ୟନ୍ତ କଷ୍ଟରେ ଭାରତର ରାଜନୀତିକ ଏବଂ ପ୍ରଶାସନିକ ଐକ୍ୟ ସମ୍ଭବ ହୋଇଛି। ଏହି ଐକ୍ୟର ସୁରକ୍ଷା ଆମ ସମସ୍ତଙ୍କର କର୍ତ୍ତବ୍ୟ।" ଏହିଭଳି ଭାବରେ ସଂସ୍କୃତଭାଷା ହିଁ ଭାରତର ଐକ୍ୟ ଏବଂ ସଂହତିପାଇଁ କାରଣ ବୋଲି ଉଲ୍ଲେଖ କରି ସେ ପୁଣି ଉଲ୍ଲେଖ କରିଛନ୍ତି ଯେ–

"ଆମ ସମ୍ବିଧାନରେ ଅନେକ କର୍ମସୂଚୀର ନିର୍ଦ୍ଦେଶ ରହିଛି। ଅନେକ ଅନୁଷ୍ଠାନର ଉଲ୍ଲେଖ ରହିଛି, ଯଥା– ପାର୍ଲାମେଣ୍ଟ, ସୁପ୍ରିମ୍‌କୋର୍ଟ, ଭାରତୀୟ ସେନା–ଇତ୍ୟାଦି। ସେହିପରି ପଞ୍ଚବାର୍ଷିକ ଯୋଜନା ହେତୁ ଦେଶର ଆର୍ଥିକ ପ୍ରଗତି ସମ୍ଭବ ହୋଇଥାଏ। ଶାସନରେ ଅଥବା ସମ୍ବିଧାନ କ୍ଷେତ୍ରରେ ଯେଉଁ ଏକତାର ପରିକଳ୍ପନା କରାଯାଇଥାଏ; ତାହା ସେତେବେଳେ ସମ୍ଭବ ହୁଏ, ଯେତେବେଳେ ସାଂସ୍କୃତିକ ଐକ୍ୟ ଦୃଢ଼ୀଭୂତ ହୋଇଥାଏ। ଆମର ପରମସୌଭାଗ୍ୟ ଯେ–ବର୍ତ୍ତମାନ ମଧ୍ୟରେ ଆମ ମଧ୍ୟ ଦେଶର ସାଂସ୍କୃତିକ ଐକ୍ୟବିଧାୟିନୀ ସଂସ୍କୃତଜନନୀ ବିରାଜମାନ। ଯେଭଳି ତା'ର ଆଦର ଦକ୍ଷିଣ-ଭାରତରେ ଅଛି; ସେହିଭଳି ଉତ୍ତରରେ। ଯେଭଳି ପ୍ରାଚ୍ୟ ଭାରତରେ ସେହିଭଳି ପଶ୍ଚିମରେ। ବିଭିନ୍ନତା ମଧ୍ୟରେ ଐକ୍ୟ ସଂପାଦନ ଆମର ବିଶେଷତ୍ୱ। 'ଏକଂ ହି ସଦ୍‌ବିପ୍ରାଃ ବହୁଧା ବଦନ୍ତି'। ଗୋଟିଏ ହିଁ ସତ୍ୟ; ଯାହାକୁ ବିଦ୍ୱାନ୍‌ମାନେ ବିଭିନ୍ନ ଭାବରେ ଉପସ୍ଥାପନା କରିଥାନ୍ତି। ଏହିଭଳି ହିଁ ସଂସ୍କୃତଭାଷା; ଯାହାର ରୂପାନ୍ତର ହେଉଛି ଅନ୍ୟାନ୍ୟ ଭାଷା। ସେହି ଭାଷାହିଁ ଆମର ଏକତ୍ୱକୁ ବଜ୍ରନିର୍ଘୋଷସ୍ୱରରେ ଉଦ୍‌ଘୋଷଣ କରୁଛି। ଦୁଇହଜାର ବର୍ଷ ଧରି ଭାରତବର୍ଷର ସାଂସ୍କୃତିକ ଐକ୍ୟ ପ୍ରତିଷ୍ଠିତ ହୋଇରହିଛି। ରାଷ୍ଟ୍ରଭାଷାରୂପରେ ହିନ୍ଦୀ ଦେଶର ବ୍ୟବହାର ଭାଷା ହେଉ–ଏହା ଆମର ଇଚ୍ଛା। କିନ୍ତୁ ଯେତେବେଳେ ସଂସ୍କୃତର ପରମ୍ପରାରୁ ଆମେ ବିଚ୍ୟୁତ ହୋଇଯିବା; ସେତେବେଳେ ଆମର ଏକତ୍ୱ ବିନଷ୍ଟ ହୋଇଥାଏ। ଗର୍ବର ସହିତ ମୁଁ କହିପାରେ–ସଂସ୍କୃତ ଜାଣିଥିବା ବ୍ୟକ୍ତି ହିଁ ଉତ୍କୃଷ୍ଟତର ଭାରତୀୟ। ଯେହେତୁ ପୃଥିବୀର ବିଭିନ୍ନ ଦେଶରେ ଯେଉଁ ଆଚାର, ପରିବେଶ ଓ ରୁଚିବୋଧ ମଙ୍ଗଳମୟ; ତାହା ସବୁକିଛି ବେଦରେ ବର୍ଣ୍ଣିତ ହୋଇଛି। ବେଦର ଜ୍ଞାନ ଭାରତର ଅଭିମାନବର୍ଦ୍ଧକ– ଏଥିରେ ସନ୍ଦେହ ନାହିଁ। ଯିଏ ସଂସ୍କୃତକୁ ଜାଣେ; ସେ ସାହିତ୍ୟ-କାବ୍ୟ-ପୁରାଣ-ଦର୍ଶନାଦି ଶାସ୍ତ୍ରରେ ରମଣ କରେ। ସେ ଭାରତବର୍ଷର ଆତ୍ମାକୁ ଜାଣେ। ସେ ବ୍ୟାସଙ୍କ ସହିତ ହିମାଳୟରୁ ଆରମ୍ଭକରି ଦେଶର ବିଭିନ୍ନ ବନ ଅରଣ୍ୟରେ ଭ୍ରମଣ କରିଥାଏ। କିଷ୍କିନ୍ଧ୍ୟା ଏବଂ ଲଙ୍କାକୁ ଦେଖିପାରେ। କାଳିଦାସଙ୍କ ସହିତ ମେଘର ପୃଷ୍ଠରେ ରହି ଭାରତର ଅପୂର୍ବ ସୌନ୍ଦର୍ଯ୍ୟକୁ ଉପଭୋଗ କରେ। ରଘୁରାଜଙ୍କର ସୈନିକଙ୍କ ସହିତ ସସାଗରାଧରାକୁ ଜୟ କରିଥାଏ। ଭର୍ତ୍ତୃହରିଙ୍କ ସହିତ ସଂସାରର ଅନିତ୍ୟତାକୁ ସେ ଅନୁଭବ କରେ। ଦଣ୍ଡୀଙ୍କ

ସହିତ କାଞ୍ଚୀପୁରର ଐଶ୍ୱର୍ଯ୍ୟ, ସୋମଦେବଙ୍କ ସହିତ ସାଗରଯାତ୍ରାର ମାଦକତା, ଶୂଦ୍ରକଙ୍କ ସହିତ ନାଗରିକମାନଙ୍କର ସୁନ୍ଦର ଜୀବନ ସେ ଅନୁଭବ କରିପାରେ। ବିଶ୍ୱନାଥକବିରାଜଙ୍କ ସହିତ ଭାଷାର ସୌନ୍ଦର୍ଯ୍ୟ ଏବଂ ମାଧୁର୍ଯ୍ୟକୁ ଉପଭୋଗ କରେ। କହ୍ଲଣଙ୍କ ସହିତ କାଶ୍ମୀରଦେଶ, ଜୟଦେବଙ୍କ ସହ ଉତ୍କଳ, ନାରାୟଣ ଭଟ୍ଟଙ୍କ ସହିତ କେରଳ ପ୍ରଭୃତି ଦେଶ ଆମର ହୃଦୟ କନ୍ଦରରେ ଉଦ୍ଭାସିତ ହୋଇଥାଏ। ଏଣୁ ସଂସ୍କୃତର ଚର୍ଚ୍ଚା ସବୁଠାରେ ଏବଂ ସବୁପ୍ରକାରରେ କରିବା ଉଚିତ।"

ଏହିଭଳି ସଂସ୍କୃତର ମାହାତ୍ମ୍ୟ ଏବଂ ସାଂପ୍ରତିକ ଯୁଗରେ ଏହାର ଯଥାର୍ଥତା ବିଷୟରେ ଅନେକ ବିଷୟ ଉଲ୍ଲେଖକରି ସେ ନିଜର ଦ୍ୱିତୀୟ ପ୍ରବନ୍ଧ 'ଆଧୁନିକ ଯୁଗରେ ବେଦର ପ୍ରାସଙ୍ଗିକତା'ରେ ବେଦର ପ୍ରାସଙ୍ଗିକତା ଖୁବ୍ ସୁନ୍ଦରଭାବରେ ପ୍ରତିପାଦନ କରିଛନ୍ତି।

ତାଙ୍କ ଭାଷାରେ– "ବର୍ତ୍ତମାନ ବିଂଶ ଶତାବ୍ଦୀର ଶେଷଭାଗ। ପ୍ରତିଦିନ ବିଜ୍ଞାନର ଜୟଯାତ୍ରା ଉଦ୍‌ଘୋଷିତ ହେବାରେ ଲାଗିଛି। ଦ୍ୟୁଲୋକ ଏବଂ ଚନ୍ଦ୍ରଲୋକ ଆଜି ଦୂରରେ ଥିବାଭଳି ଜଣାଯାଉ ନାହିଁ। ଯେତେବେଳେ ମନୁଷ୍ୟ ଆଜି ବିଶ୍ୱବିଜୟୀ ଭାବରେ ବିବେଚିତ; ସେତେବେଳେ ପ୍ରାୟ ପାଞ୍ଚ ହଜାର ବର୍ଷ ପୂର୍ବେ ବିରଚିତ ବେଦର ଆବଶ୍ୟକତା ରହିଛି ବା ନାହିଁ–ସେ ବିଷୟରେ ସନ୍ଦେହ ଜାତ ହୋଇଥାଏ। ଏହି ସନ୍ଦେହ ଖଣ୍ଡନ ନିମନ୍ତେ ଅନେକ ଯୁକ୍ତି ରହିଛି। ମାତୃଦେବୋ ଭବ, ପିତୃଦେବୋ ଭବ, ଅତିଥିଦେବୋ ଭବ; ଇତ୍ୟାଦି ଉପଦେଶ ବୈଦିକଯୁଗରେ ଯେଭଳି ପ୍ରାସଙ୍ଗିକ; ସେହିଭଳି ଆଜି ମଧ୍ୟ। ସତ୍ୟଂ ବଦ, ଧର୍ମଂ ଚର, କୁଶଳାନ୍ନ ପ୍ରମଦିତବ୍ୟଂ, ଭୂତ୍ୟୈ ନ ପ୍ରମଦିତବ୍ୟମ୍ ଇତ୍ୟାଦି ଉପଦେଶବାକ୍ୟ ବୈଦିକକାଳରେ ଯେଭଳି ଥିଲା; ବର୍ତ୍ତମାନ ମଧ୍ୟ ସେହିଭଳି। ବୈଦିକଋଷିମାନେ ବିଶ୍ୱର ଶାନ୍ତି କାମନାରେ ଯେଉଁ ପ୍ରାର୍ଥନା କରିଥିଲେ, ଯଥା–"ଦ୍ୟୌଃ ଶାନ୍ତିଃ, ଅନ୍ତରୀକ୍ଷଂ ଶାନ୍ତିଃ, ପୃଥିବୀ ଶାନ୍ତିଃ, ଆପଃ ଶାନ୍ତିଃ, ଓଷଧୟଃ ଶାନ୍ତିଃ, ବନସ୍ପତୟଃ ଶାନ୍ତିଃ, ବିଶ୍ୱଦେବାଃ ଶାନ୍ତିଃ, ବ୍ରହ୍ମ ଶାନ୍ତିଃ, ଶାନ୍ତିରେବ ଶାନ୍ତିଃ, ସାମା ଶାନ୍ତିରେଧି"–ତାହାର ବର୍ତ୍ତମାନ ଯଥାର୍ଥତା ଅଛି ବା ନାହିଁ? ସନ୍ତାନ ଯେଭଳି ମା'ର କୋଳକୁ ଚାହିଁଥାଏ ସେହିଭଳି ମନୁଷ୍ୟ ଶାନ୍ତି ଚାହେଁ। ଆମମାନଙ୍କର ନଗରୀରେ ଯନ୍ତ୍ରଚାଳିତ କଳକାରଖାନାରୁ ନିର୍ଗତ ବସ୍ତୁଦ୍ୱାରା ବାୟୁ ପ୍ରଦୂଷିତ ଏବଂ ଜଳ ମଧ୍ୟ ଦୂଷିତ ହୋଇଛି। ନଦୀମାନଙ୍କର ପଠା ଉନ୍ନତ ହୋଇଛି; ତେଣୁ ବନ୍ୟାର ପ୍ରକୋପ ଅନୁଭୂତ ହେଉଛି। ତମାଳତାଳୀବନରାଜି ନୀଳ ସାଗରବେଳା ଆଜି ଦୃଶ୍ୟମାନ ହେଉ ନାହିଁ। ତେଣୁ ବାତ୍ୟାର ପ୍ରକୋପ ଅନୁଭୂତ ହେଉଛି। ଗ୍ରହ ଉପଗ୍ରହରୁ ଯୁଦ୍ଧର ବିଭୀଷିକା ଏବଂ ଆଣବିକ ଅସ୍ତ୍ରଶସ୍ତ୍ରମାନଙ୍କର ଭୟରୁ ମଣିଷ ସର୍ବଦା ପ୍ରକମ୍ପିତ। ଏହି ସ୍ଥିତିରେ 'ଦ୍ୟୌଃ ଶାନ୍ତିଃ, ପୃଥିବୀ ଶାନ୍ତିଃ, ଆପଃ ଶାନ୍ତିଃ, ବନସ୍ପତୟଃ ଶାନ୍ତିଃ'–ଏହିଭଳି ବୈଦିକଋଷିମାନେ ଯେଉଁ ପ୍ରାର୍ଥନା କରିଛନ୍ତି ତାହାହିଁ ଆମର ଆନ୍ତରିକୀ ପ୍ରାର୍ଥନା। ଏଣୁ ବେଦର ଯଥାର୍ଥତା।"

ଅନ୍ୟାନ୍ୟ ଦୃଷ୍ଟିରୁ ମଧ୍ୟ ବେଦର ଯଥାର୍ଥତା ଉକ୍ତ ପ୍ରବନ୍ଧରେ ପ୍ରତିପାଦିତ ହୋଇଛି। ଏହିଭଳି ଅବଶିଷ୍ଟ ପ୍ରବନ୍ଧଗୁଡ଼ିକରେ ଲେଖକଙ୍କର ମୌଳିକ ଚିନ୍ତାଧାରା, ଶାସ୍ତ୍ରଗୁଡ଼ିକର ନିଗୂଢ଼ ତତ୍ତ୍ୱ ତଥା ନିଜର ଚମତ୍କାର ଉପସ୍ଥାପନା ଶୈଳୀ ଖୁବ୍ ସୁନ୍ଦରଭାବରେ ସନ୍ନିବେଶିତ ହୋଇଛି।

ଜାନକୀବଲ୍ଲଭ ସଂସ୍କୃତରେ ଜଣେ ଜଣାଶୁଣା ବିଦ୍ୱାନ୍ ଥିଲେ। ଏହା ବ୍ୟତୀତ ସେ ସଂସ୍କୃତର ଉନ୍ନତିପାଇଁ ଓଡ଼ିଶାରେ ଏବଂ ଓଡ଼ିଶା ବାହାରେ ଅନେକ କାର୍ଯ୍ୟ କରିଛନ୍ତି। ସେ ଅଖିଳ ଭାରତୀୟ ପ୍ରାଚ୍ୟ ସମ୍ମେଳନର କାଶ୍ମୀର ଅଧିବେଶନର ସାଧାରଣ ଅଧ୍ୟକ୍ଷ ଥିଲେ ଏବଂ ଭାରତରେ ପ୍ରାଚ୍ୟବିଦ୍ୟାର ପ୍ରଚାର ଓ ପ୍ରସାରପାଇଁ ଯଥେଷ୍ଟ ଉଦ୍ୟମ କରିଛନ୍ତି। ଓଡ଼ିଶାରେ ସଂସ୍କୃତର ବିକାଶପାଇଁ ତାଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ସେ ମାଧ୍ୟମିକ ସ୍ତରରେ ସଂସ୍କୃତର ଅଧ୍ୟୟନକୁ ବାଧ୍ୟତାମୂଳକ କରିଥିଲେ। ସମଗ୍ର ଓଡ଼ିଶାରେ ପାରମ୍ପରିକୀ ସଂସ୍କୃତ ଶିକ୍ଷାକୁ ସୁସଂଗଠିତ କରିବା ନିମନ୍ତେ ସେ ୧୯୮୧ ମସିହା ଜୁଲାଇ ମାସ ୭ ତାରିଖ ଦିନ ପୁରୀଠାରେ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର ସ୍ଥାପନା କରିଥିଲେ। ସଂସ୍କୃତ ବିଶ୍ୱବିଦ୍ୟାଳୟର ଉଦ୍‌ଘାଟନର ଅବ୍ୟବହିତ ପୂର୍ବରୁ ସେ ଯେଉଁ ଆବେଗଭରା ବେତାର ଭାଷଣ ଦେଇଥିଲେ ତାହା ତାଙ୍କର ସଂସ୍କୃତ ପ୍ରତି ଥିବା ଗଭୀର ଅନୁରକ୍ତିର ଏକ ନିଛକ ଅଭିବ୍ୟକ୍ତି। ଉକ୍ତ ଭାଷଣର କିୟଦଂଶ ଏଠାରେ ଉଦ୍ଧାର କରିବା ଯଥାର୍ଥ ମନେ ହେଉଛି। ସେ କହିଥିଲେ–

> "ଓଡ଼ିଶାରେ ସଂସ୍କୃତ ଶିକ୍ଷାର ପ୍ରସାରପାଇଁ ଓ ପ୍ରାଚ୍ୟ ବିଦ୍ୟାର ଅଧ୍ୟୟନ ଓ ଗବେଷଣା ପାଇଁ ଏକ ବିଶ୍ୱବିଦ୍ୟାଳୟର ଆବଶ୍ୟକତା ବହୁଦିନ ଅନୁଭୂତ ହେଉଥିଲା। ସେହି ଲକ୍ଷ୍ୟରେ ପୁରୀରେ ଏକ ସଂସ୍କୃତ ବିଶ୍ୱବିଦ୍ୟାଳୟର ଭିତ୍ତି ସ୍ଥାପନ କରାଯାଇଛି। ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ। ପୁରୀକୁ ଛାଡ଼ିଦେଲେ ଭାରତର ମାତ୍ର ଦୁଇଟି ସ୍ଥାନରେ ସଂସ୍କୃତ ବିଶ୍ୱବିଦ୍ୟାଳୟ ଅଛି। ନାନା କାରଣରୁ ଦେଶରେ ଏବଂ ଓଡ଼ିଶାରେ ସଂସ୍କୃତ ଟୋଲ ଓ ସଂସ୍କୃତ କଲେଜମାନ ଘୋର ଦୁରବସ୍ଥା ଭିତରେ ଗତି କରୁଛନ୍ତି; ସଂସ୍କୃତ ପଣ୍ଡିତମାନଙ୍କର ସଂଖ୍ୟା କମିକମି ଯାଉଛି। ସଂସ୍କୃତ ଶିକ୍ଷା ପ୍ରତି ଆଗ୍ରହ ପ୍ରକାଶ ପାଉ ନାହିଁ। ସାଧାରଣରେ ଏକ ଧାରଣା ହୋଇଛି ଯେ, ସଂସ୍କୃତ କହିଲେ ଏକ କଠିନ ବ୍ୟାକରଣ ଏବଂ ବିବାହ, ବ୍ରତ, ହୋମ, ମୃତକାଦିରେ ଉଚ୍ଚାରିତ କେତେକ ଅବୋଧ୍ୟ ଶ୍ଳୋକ। ସଂସ୍କୃତ ଭାଷା ଯେ ଭାରତର ମହାନ୍ ସଂସ୍କୃତି ଓ ପରମ୍ପରାର ବାହକ ଏବଂ ପ୍ରାୟ ସମସ୍ତ ଭାରତୀୟ ଭାଷାର ଜନନୀ ତାହା କ୍ରମେ ଏ ଦେଶ ଭୁଲିଯିବାପାଇଁ ବସିଛି। ଦିନେ ବୌଦ୍ଧ ଧର୍ମ ଭାରତବର୍ଷରେ ଜନ୍ମଗ୍ରହଣ କରି ପୃଥିବୀରେ ସର୍ବତ୍ର ପ୍ରଚାରିତ ହୋଇଥିଲା, ମାତ୍ର କ୍ରମେ ତାହା ଭାରତବର୍ଷରୁ ନିର୍ବାପିତ ହୋଇଗଲା। ସଂସ୍କୃତର ସେହି ଅବସ୍ଥା ହେବ ନାହିଁ ତ?' ତେଣୁ ଯେଉଁମାନେ ଏ ଦେଶର ମହାନ୍ ପରମ୍ପରା, ଐତିହ୍ୟ ଓ ସଂସ୍କୃତିକୁ ଶ୍ରଦ୍ଧା କରନ୍ତି, ସେମାନଙ୍କପାଇଁ ଏକ ଆହ୍ୱାନ ଆସିଛି–ଦେଶର ନବ ନିର୍ମାଣରେ ସଂସ୍କୃତକୁ ତା'ର ଯୋଗ୍ୟ ସ୍ଥାନ ଦେବା ଏବଂ ଭାରତୀୟ ପରମ୍ପରାକୁ ବଜାୟ ରଖିବା। ପୁରୀଠାରେ ଯେଉଁ ସଂସ୍କୃତ ବିଶ୍ୱବିଦ୍ୟାଳୟ ଗଢ଼ିଉଠିଚି, ତା'ର

ମୂଳଲକ୍ଷ୍ୟ ହେଉଛି ସଂସ୍କୃତର ସର୍ବାଙ୍ଗୀଣ ବିକାଶ; ଯାହା ଶ୍ରେଷ୍ଠ ଓ ଅନୁକରଣୀୟ ତାହାର ଅଭିବୃଦ୍ଧି କରିବା।"

ସଂସ୍କୃତ ସାହିତ୍ୟରେ ଜାନକୀବଲ୍ଲଭଙ୍କର ବିଦ୍ୱତ୍ତା ଓ ସଂସ୍କୃତର ଉନ୍ନତିପାଇଁ ତାଙ୍କର ଯଥେଷ୍ଟ ଅବଦାନ ଥିବାରୁ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ଓ ତିରୁପତି ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟ ତରଫରୁ ତାଙ୍କୁ ସମ୍ମାନଜନକ ଡକ୍ଟରେଟ୍ ଉପାଧିରେ ବିଭୂଷିତ କରାଯାଇଥିଲା। ପୁନଶ୍ଚ ଭର୍ତ୍ତୃହରିଙ୍କର ଶତକତ୍ରୟର ଅନୁବାଦପାଇଁ ତାଙ୍କୁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରରେ ମଧ ପୁରସ୍କୃତ କରାଯାଇଥିଲା। ପୁନଶ୍ଚ ତାଙ୍କର ସଂସ୍କୃତ ପ୍ରତି ରହିଥିବା ଯୋଗଦାନକୁ ସମ୍ମାନ ଜଣାଇ କେନ୍ଦ୍ର ସରକାରଙ୍କର ମାନବସଂବଳ ବିକାଶ ମନ୍ତ୍ରାଳୟ ୨୦୦୮ ମସିହାରେ ତାଙ୍କୁ ତିରୁପତି ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳାଧିପତି (Chancellor) ଭାବରେ ପାଞ୍ଚ ବର୍ଷ ପାଇଁ ନିଯୁକ୍ତ କରିଥିଲେ ଏବଂ ପୁନଶ୍ଚ ସେହି ପଦବୀରେ ଆଉ ପାଞ୍ଚ ବର୍ଷପାଇଁ ମଧ ନିଯୁକ୍ତି ଦେଇଥିଲେ। ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳାଧିପତି ଥିବା ସମୟରେ ପରମବୈଷ୍ଣବ କ୍ଷେତ୍ର ତିରୁପତିଠାରେ ତାଙ୍କର ୨୦୧୫ ମସିହା ଅପ୍ରେଲ ୨୧ ତାରିଖ ପବିତ୍ର ଅକ୍ଷୟତୃତୀୟାଦିନ ମହାପ୍ରୟାଣ ଘଟିଥିଲା। ନିଜର ସଂପୂର୍ଣ୍ଣ ଜୀବନ ରାଜନୀତି ଓ ଦେଶସେବାରେ ନିୟୋଜିତ କରିଥିଲେ ମଧ ସେ ଥିଲେ ଜଣେ ପଣ୍ଡିତ, ବିଦ୍ୱାନ୍, ଆଧ୍ୟାତ୍ମିକ ପୁରୁଷ ଏବଂ ପୁଣ୍ୟାତ୍ମା—ଏହା ତାଙ୍କର ମହାପ୍ରୟାଣ ମାଧ୍ୟମରେ ପ୍ରମାଣିତ କରିଦେଇ ଚାଲିଗଲେ।

ସଂସ୍କୃତ ଏବଂ ସଂସ୍କୃତି ହେଉଛି ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ। ଭାରତବର୍ଷର ପ୍ରତିଷ୍ଠା ଓ ଗୌରବ ଉଭୟ ସଂସ୍କୃତ ଓ ସଂସ୍କୃତି ଉପରେ ନିର୍ଭର କରିଥାଏ। ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଥିଲେ ଉଭୟର ଅନନ୍ୟ ଉପାସକ ଓ ପୂଜାରୀ। ଭାରତୀୟ ସଂସ୍କୃତି ହେଉଛି ମହାନତା ଓ ଉଦାରତାର ସଂସ୍କୃତି। ବିଭିନ୍ନତା ମଧ୍ୟରେ ଏକତାର ଅନୁସନ୍ଧାନ କରିବା ଭାରତୀୟ ସଂସ୍କୃତିର ମୂଳମନ୍ତ୍ର। ଭଗବତ୍‌ସତ୍ତା ସର୍ବବ୍ୟାପୀ, ତ୍ୟାଗ ମାଧ୍ୟମରେ ଭୋଗ ହିଁ ଜୀବନ, କାହାର ଧନ ପ୍ରତି ଲୋଭ କରିବା ଅନୁଚିତ—ଏହି ଉପନିଷଦୀୟ ବାଣୀ ଭାରତୀୟ ଭାବଧାରାର ଆଧାରଶିଳା। ଭାରତୀୟ ସଂସ୍କୃତି ବା ସନାତନ ହିନ୍ଦୁଧର୍ମ ବିଷୟରେ ଆଲୋକପାତ କରୁଥିବା ସମୟରେ ଶ୍ରୀ ପଟ୍ଟନାୟକ ଶ୍ରୀଜଗନ୍ନାଥ ସଂସ୍କୃତିର ଉଦାହରଣ ଦେଉଥିଲେ। ତାଙ୍କ ମତରେ ଭାରତର ସଂସ୍କୃତି ହେଉଛି ଶ୍ରୀଜଗନ୍ନାଥ ସଂସ୍କୃତି ଏବଂ ତାହାହିଁ ଓଡ଼ିଶାର ସାଂସ୍କୃତିକ ବିଶେଷତ୍ୱ। ଶ୍ରୀଜଗନ୍ନାଥ ସଂସ୍କୃତି ହେଉଛି ସମସ୍ତ ଦର୍ଶନ, ଚେତନା, ଧର୍ମ ଓ ଭାବଧାରାର ଏକ ସମନ୍ୱୟ। ଜଗନ୍ନାଥ ସଂସ୍କୃତି ଉପରେ ଆଲୋଚନା କଲାବେଳେ ସେ ସବୁବେଳେ ନିମ୍ନୋକ୍ତ ଶ୍ଳୋକଟିର ଉଦାହରଣ ଦେଉଥିଲେ, ଯଥା—

ଯଂ ଶୈବାଃ ସମୁପାସତେ ଶିବ ଇତି ବ୍ରହ୍ମେତି ବେଦାନ୍ତିନୋ ।
ବୌଦ୍ଧା ବୁଦ୍ଧ ଇତି ପ୍ରମାଣପଟବଃ କର୍ତ୍ତେତି ନୈୟାୟିକାଃ ।
ଅର୍ହନ୍ନିତ୍ୟଥ ଜୈନଶାସନରତାଃ କର୍ମେତି ମୀମାଂସକାଃ
ସୋଽୟଂ ବୋ ବିଦଧାତୁ ବାଞ୍ଛିତଫଳଂ ତ୍ରୈଲୋକ୍ୟନାଥୋ ହରିଃ ।।

ଅର୍ଥାତ୍ ଜଗନ୍ନାଥ ହେଉଛନ୍ତି–ଶୈବମାନଙ୍କର ଶିବ, ବେଦାନ୍ତୀମାନଙ୍କର ବ୍ରହ୍ମ, ବୌଦ୍ଧମାନଙ୍କର ବୁଦ୍ଧ, ନୈୟାୟିକମାନଙ୍କର କର୍ତ୍ତା, ଜୈନମାନଙ୍କର ଅର୍ହତ୍, ମୀମାଂସକମାନଙ୍କର କର୍ମ– ଏହିଭଳି ଶାକ୍ତମାନଙ୍କର ଶକ୍ତି, ଗାଣପତ୍ୟମାନଙ୍କର ଗଣପତି, ସୌରମାନଙ୍କର ସୂର୍ଯ୍ୟ, ଖ୍ରୀଷ୍ଟୀୟାନ୍‌ମାନଙ୍କର ଖ୍ରୀଷ୍ଟ ଏବଂ ମୁସଲମାନମାନଙ୍କର ମଧ୍ୟ ଇଷ୍ଟ। ଶ୍ରୀଜଗନ୍ନାଥ ସଂସ୍କୃତି ହେଉଛି ଉଦାର ଚେତନା ଓ ବିଶ୍ୱଭ୍ରାତୃଭାବର ସଂସ୍କୃତି। ଏହି ସମନ୍ୱୟ ସଂସ୍କୃତିର ଗୁଣଗାନ କରି ସେ ବିଗତ ନବକଳେବର ମହୋତ୍ସବ ସମୟରେ ଯେଉଁ ସାତ ଗୋଟି ପଦ୍ୟ ରଚନା କରିଥିଲେ ତାହା ଉଲ୍ଲେଖ କରିବା ଯଥାର୍ଥ ମନେକରୁଛି–

୧. ଧର୍ମସ୍ୟ ମୂଳଂ ଦର୍ଶନସ୍ୟ ତତ୍ତ୍ୱଂ
ସୂକ୍ଷ୍ମାତିସୂକ୍ଷ୍ମଞ୍ଚ ଯଥେଚ୍ଛରୂପିଣମ୍ ।
ଯେନାବଦ୍ଧଂ ଭାତବର୍ଷମେତତ୍
ପ୍ରେମ୍‌ଣା ବନ୍ଦେ ତଂ ନୀଳକନ୍ଦରେଶ୍ୱରମ୍ ॥

୨. ଅଦ୍ୟୈବ ଦ୍ରଷ୍ଟୁଂ ଭବତଃ ରଥୋତ୍ସବଂ
ସମାଗତାସ୍ତେ ସର୍ବ ଏବ ଭାରତାଃ ।
ନ ତତ୍ର ଜାତିବର୍ଣ୍ଣଧର୍ମଭାବନା
ନ କୋଽପି ଉଚ୍ଚଃ ନୀଚ ଏବ ଧାରଣା ॥

୩. ଅପାଣିପାଦୋ ଜବନୋ ଗ୍ରହୀତା
ଶୃଣୋତ୍ୟକର୍ଣ୍ଣଃ ସ ଆଘ୍ରାତ୍ୟନାସଃ ।
ପଶ୍ୟତି ବିଶ୍ୱଂ ସଚରାଚରଂ ଯଃ
ପ୍ରେମ୍‌ଣା ବନ୍ଦେ ତଂ ନୀଳକନ୍ଦରେଶ୍ୱରମ୍ ॥

୪. ଚିନ୍ମାତ୍ରମୂର୍ତ୍ତେ ! ଦିକ୍କାଳାତୀତ ହରେ !
ହରାସ୍ମଦୀୟଂ ଦୁରିଞ୍ଚେ ଦୁର୍ବହମ୍ ।
ଚୂର୍ଣ୍ଣୟ ଗର୍ବଞ୍ଚ ବିନାଶୟାସ୍ମିତାଂ
ତ୍ୱାମାଶ୍ରିତା ସର୍ବେ ଶରଣାଗତା ବୟମ୍ ॥

୫. ମହାହବେ ଭାରତଭାରଭୂତାଃ
ବହ୍ନୌ ପତଙ୍ଗା ଇବ ଯତ୍ର କ୍ଷତ୍ରିୟାଃ ।
ତତ୍ର ତ୍ୱୟା ଦର୍ଶନମେତଦୁକ୍ତଂ
ଦେହୀ ଚ ଗୃହ୍ଣାତି ନବଂ ନବଂ ବପୁଃ ॥

୬. ଯଥା ପରିତ୍ୟଜ୍ୟ ବାସାଂସି ଜୀର୍ଣ୍ଣା–
ନ୍ୟନ୍ୟାନି ଗୃହ୍ଣାତି ନରୋଽପରାଣି ।
ଏତତ୍ ପ୍ରମାଣଂ କୁରୁତେ କଳୌ ଭବାନ୍
ନବଂ ଗୃହୀତ୍ୱା ସୁମନୋହରଂ ବପୁଃ ॥

୭. ରଥସ୍ତ୍ୱଦୀୟୋ ଜଗନ୍ମଙ୍ଗଳଂ ବିଭୋ !
ଧ୍ୱଜା ତ୍ୱଦୀୟା ପତିତସ୍ୟ ପାବନୀ ।
ଜୟ ଜଗନ୍ନାଥ ! ପୁରୁଷୋତ୍ତମୋ ହରିଃ
ନୀଳାଦ୍ରିନାଥ ! ଜୟ ଭକ୍ତବତ୍ସଳ !

ଏହି ସାତ ଗୋଟି ଶ୍ଳୋକ ସେ ୧୯୯୭ ମସିହା ନବକଳେବର ମହୋତ୍ସବ ସମୟରେ ରଚନା କରିଥିଲେ। ଅବଶ୍ୟ କେତେକ ପଦ୍ୟରେ ଛନ୍ଦୋଗତ ନିୟମ ଯଥାର୍ଥଭାବରେ ପାଳନ ହୋଇପାରି ନ ଥାଏ; ତଥାପି ଶ୍ରୀଜଗନ୍ନାଥ ସଂସ୍କୃତିକୁ ଆଧାରକରି ଯେଉଁ ଭାବଧାରାରେ ଏହି ପଦ୍ୟଗୁଡ଼ିକ ରଚିତ ହୋଇଛି ତାହା ବାସ୍ତବରେ ଚମତ୍କାର। ନବକଳେବରର ତାତ୍ପର୍ଯ୍ୟ, ଶ୍ରୀଜଗନ୍ନାଥଙ୍କର ମହିମା ଏବଂ ନିଜର ସଂପୂର୍ଣ୍ଣ ସମର୍ପଣଭାବ–ଉକ୍ତ ପଦଗୁଡ଼ିକରେ ଖୁବ୍ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି। ଭାରତୀୟ ସଂସ୍କୃତିର ସମସ୍ତ ବିଭାବ ମଧ୍ୟ ଏଥିରେ ପ୍ରତିଫଳିତ ହୋଇଛି।

ପୁରାଣରେ ବର୍ଣ୍ଣିତ ଅଛି–ଯେତେବେଳେ ଗଙ୍ଗା ବିଲୁପ୍ତ ହୋଇଗଲେ, ସେତେବେଳେ ଭଗୀରଥ ତପସ୍ୟା କରି ଗଙ୍ଗାଙ୍କର ଅବତରଣ ଭୂପୃଷ୍ଠରେ କରାଇଥିଲେ। ଠିକ୍ ସେହିଭଳି ଯେତେବେଳେ ସଂସ୍କୃତର ଗଙ୍ଗାର ଧାରା କ୍ଷୀଣରୁ କ୍ଷୀଣତରା ହେବାରେ ଲାଗିଲା; ସେତେବେଳେ ଜାନକୀବଲ୍ଲଭ ଭଗୀରଥର ଭୂମିକା ଗ୍ରହଣ କରି ଭାରତପୃଷ୍ଠରେ ଏହାକୁ ପୁନଶ୍ଚ ସଶକ୍ତ ଓ ପ୍ରବଳରୁ ପ୍ରବଳତର କରାଇଥିଲେ। ୧୯୮୧ ମସିହାରେ ସେ ଯେତେବେଳେ ପୁରୀଠାରେ ସଂସ୍କୃତ ବିଶ୍ୱବିଦ୍ୟାଳୟର ସ୍ଥାପନା କଲେ ସେତେବେଳେ ଭାରତରେ ସଂସ୍କୃତର ସ୍ଥିତି ବହୁତ ଦୁର୍ବଳ ଥିଲା। ମାତ୍ର ସେତେବେଳେ ୨ଗୋଟି ସଂସ୍କୃତ ବିଶ୍ୱବିଦ୍ୟାଳୟ ବହୁ ପୁରାତନକାଳରୁ ପ୍ରତିଷ୍ଠିତ ହୋଇଥିଲା। ଗୋଟିଏ ବାରାଣସୀର ସଂପୂର୍ଣ୍ଣାନନ୍ଦ ସଂସ୍କୃତ ବିଶ୍ୱବିଦ୍ୟାଳୟ ଏବଂ ଅନ୍ୟଟି ବିହାରର ଦରଭଙ୍ଗା ସଂସ୍କୃତ ବିଶ୍ୱବିଦ୍ୟାଳୟ। ପୁରୀଠାରେ ତୃତୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବା ପରେ ପରେ ଆଜି ଭାରତରେ ପ୍ରାୟ ଅଧିକ ୧୨ ଗୋଟି ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହୋଇପାରିଛି। ଏହି ପ୍ରତିଷ୍ଠାର ପ୍ରେରଣାର ମୂଳ ଉତ୍ସ ହେଉଛନ୍ତି–ଜାନକୀବଲ୍ଲଭ ପଟ୍ଟନାୟକ। ଠିକ୍ ସେହିଭଳି ସାଂସ୍କୃତିକ ଜାଗରଣ କ୍ଷେତ୍ରରେ ତାଙ୍କର ଅବଦାନ ମଧ୍ୟ ଉଲ୍ଲେଖନୀୟ। ରାଜନୀତି ଓ ଦେଶସେବା ସହିତ ସଂସ୍କୃତ ଓ ସଂସ୍କୃତିର ଉପାସନା କରି ନିଜର ଏକ ଅଦ୍ୱିତୀୟ ପରିଚୟ ସୃଷ୍ଟି କରିଥିବା ଜନନାୟକ ଭାରତବର୍ଷର ପରମ୍ପରାରେ ବିରଳ। ରାଜର୍ଷି ଜନକ ଥିଲେ ଜଣେ ଏହିଭଳି ବ୍ୟକ୍ତିତ୍ୱ। ଏକପକ୍ଷରେ ରାଜଧର୍ମ ପାଳନ କରୁଥିବା ରାଜା ଏବଂ ଅନ୍ୟପକ୍ଷରେ ପରମ୍ପରା, ଐତିହ୍ୟ, ସଂସ୍କୃତି ଓ ସଂସ୍କୃତର ଉପାସକ ଋଷି। ଜାନକୀବଲ୍ଲଭ ପଟ୍ଟନାୟକଙ୍କର କୃତିତ୍ୱ ଓ ବ୍ୟକ୍ତିତ୍ୱର ଅଧ୍ୟୟନ ଓ ଅନୁସନ୍ଧାନ କଲାବେଳେ ଭାରତୀୟ ପରମ୍ପରାର ଅନ୍ୟତମ ଆଦର୍ଶ 'ରାଜର୍ଷି ଜନକ'ଙ୍କର କଥା ହିଁ ମନକୁ ଆସିଥାଏ।



# ମନେ ଅଛି ମନେ ପଡ଼େ ମନେ ଥିବ

**ରାଜେନ୍ଦ୍ର ନାରାୟଣ ଦାସ**

ଯଦି କୌଣସି ଗୁଣବାନ୍ ସଦାଶୟ ବ୍ୟକ୍ତି ପରିଣତ ବୟସରେ ଦେହତ୍ୟାଗ କରନ୍ତି, ତେବେ ତାଙ୍କର ପ୍ରିୟଜନମାନେ ଅହରହ ତାଙ୍କର ଅଭୁଲା ସ୍ମୃତିପର୍ବକୁ ଭବିଷ୍ୟତ ନିମନ୍ତେ ସମ୍ବଳ କରିରଖନ୍ତି। ମୃତବ୍ୟକ୍ତି ଜଣକ ଋଣୀ କରି ରଖିଥାନ୍ତି ଶହ ଶହ ନରନାରୀଙ୍କୁ ଯେଉଁମାନେ ତାଙ୍କ ଉପକାରର ପ୍ରତିଦାନ ଦେବାକୁ ଆଉ ଅବକାଶ ପାଆନ୍ତି ନାହିଁ। ବିଚ୍ଛେଦ ସବୁବେଳେ ଦୁଃଖପ୍ରଦ, ମାତ୍ର ବିଚ୍ଛେଦର ସ୍ମୃତି ଅଧିକ ଦୁଃଖଦାୟକ। କବିବରଙ୍କ ଭାଷାରେ– "ସ୍ମୃତିତ କଦାପି ନୁହେଁ ଫିଙ୍ଗିବାର, ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର"।

ଦେଖୁ ଦେଖୁ ଗୋଟିଏ ବର୍ଷ ବିତିଗଲା। ଜୀବନର ରଙ୍ଗମଞ୍ଚର ଅଭିନୟ ସାରି ପୂଜ୍ୟ ଜାନକୀବଲ୍ଲଭ ପଟ୍ଟନାୟକ ଗତବର୍ଷ ୨୧ ଏପ୍ରିଲରେ ବାହୁଡ଼ି ଯାଇଛନ୍ତି। ତାଙ୍କର କର୍ମମୟ ଜୀବନ ବହୁ ଜନହିତକର କାର୍ଯ୍ୟ ପାଇଁ ଉତ୍ସର୍ଗୀକୃତ ଥିଲା। ତେଣୁ ଜୀବନ ରଙ୍ଗମଞ୍ଚରେ ତାଙ୍କର ଅଭିନୟ ସମ୍ପୂର୍ଣ୍ଣ ନିଆରା, ଏଥିରେ ଦ୍ୱିମତ ନାହିଁ। ତାଙ୍କର ସୌମ୍ୟ ଚେହେରା ସାଙ୍ଗକୁ ବିଚକ୍ଷଣ ବୁଦ୍ଧିମତ୍ତା ପାଇଁ ସେ ଓଡ଼ିଆଙ୍କର ପ୍ରାଣର ମଣିଷ ହୋଇପାରିଥିଲେ। ଆଜି ପ୍ରତ୍ୟେକ ଅନୁଭବୀ ତାଙ୍କ କଥା ଭାବିଲେ ହିଁ ଅନ୍ତର ଭିତରେ ତାଙ୍କର ଦର୍ଶନ ପାଏ। ଜାତୀୟକବି ବୀରକିଶୋରଙ୍କ ଭାଷାରେ ମୋର ମନେହୁଏ ସତେ ଯେପରି ସେ ଓଡ଼ିଶାବାସୀଙ୍କୁ କହୁଛନ୍ତି– (ମୁଁ) ମରି ନାହିଁ, କେବେ ମରିବି ନାହିଁ ମୋ ପାଇଁ ଭାବନା କରିବ ନାହିଁ/ମୋ ନିଜ ସ୍ମୃତିକୁ କରି ସଂଖାଳି ଯାଉଛି ଯିବି (ମୁଁ) ମୋ ପ୍ରାଣଦୀପାଳି ଜାଳି/ଗଗନପଥରୁ ତାରକାପୁଞ୍ଜରୁ ଆକୁଳେ ତୁମକୁ ଥିବି ଅନାଇଁ। ଏଇ ଧାଡ଼ିଗୁଡ଼ିକ ମନେପଡ଼ି ଆଜି ମୋର ମନ ବିଷାଦରେ ଭରିଯାଉଛି।

ଗତବର୍ଷ ଫେବୃଆରୀ ୮ ତାରିଖର ଘଟଣା। ଏଯାବତ୍ ମୋର ମନକୁ ଆନ୍ଦୋଳିତ କରୁଛି। ମୋର ପ୍ରବନ୍ଧ ସଂକଳନ 'ମନର କଥା' ବହିର ଉନ୍ମୋଚନ ଉତ୍ସବ କଟକ ଶତାବ୍ଦୀ ଭବନରେ ହେଉଥାଏ। ମୁଖ୍ୟଅତିଥି ଥାଆନ୍ତି ଜାନକୀବାବୁ। କେଜାଣି କାହିଁକି ସଭା ଆରମ୍ଭର ପ୍ରାୟ ୨୦ ମିନିଟ୍ ଆଗରୁ ଶତାବ୍ଦୀଭବନରେ ପହଞ୍ଚିଯାଇଥାନ୍ତି। ସେ ତାଙ୍କର କର୍ମମୟ ଜୀବନରେ କେତେଥର ରାମଚନ୍ଦ୍ର ଭବନ ଓ ଶତାବ୍ଦୀଭବନ ଯାଇଥିବେ ସେ ନିଜେ ମଧ୍ୟ ଜାଣି ଥିବେ। କିନ୍ତୁ ସେଦିନ ଥିଲା ସେଠାରେ ତାଙ୍କର ଶେଷ ସଭା। ସେଦିନ ସଭାରେ ସେ ମୋ ବିଷୟରେ ଯେଉଁ ମନ୍ତବ୍ୟ ରଖିଥିଲେ ତାହା ମନେପଡ଼ିଲେ ମୋ ଦେହରେ ଶିହରଣ ଜାତ ହୁଏ। ମୋ ବହି ସମ୍ପର୍କରେ ତାଙ୍କ ଲିଖିତ ଅଭିମତ ମୋପାଇଁ ଗୋଟିଏ ମୂଲ୍ୟବାନ୍ ଦସ୍ତାବିଜ୍। ଏହି ଉତ୍ସବର ତିନି ଦିନ ପରେ ତାଙ୍କ ସହିତ ଫୋନ୍‌ରେ କଥାବାର୍ତ୍ତା ହୋଇଥିଲି।

ବହୁବାର ତାଙ୍କ ସହିତ ଜର୍ମାନୀରୁ କଥାବାର୍ତ୍ତା ହୋଇଛି। କିନ୍ତୁ ସେଦିନ ଥିଲା ମୋର ତାଙ୍କ ସହିତ ଶେଷ କଥା। ସେଦିନ ତାଙ୍କଠାରୁ କେତେକେତେ ନୀତି, ନୈତିକତା, ଶ୍ରଦ୍ଧା ଓ ପ୍ରୀତିର ଆବେଗଦୀପ୍ତ ବାଣୀ ଶୁଣିଥିଲି, ଏଯାବତ୍ ସବୁ ମୋର ଧାଡ଼ିଧାଡ଼ି ମନେ ଅଛି।

ବହୁତ ପୁରୁଣା କଥା। ୨୦୦୧ ମସିହା ମାର୍ଚ୍ଚ ୨୫ ତାରିଖ। ଦୀର୍ଘ ୧୫ବର୍ଷ ବିତିଗଲାଣି। ଉତ୍କଳ ପାଠକ ସଂସଦ ତରଫରୁ ଶ୍ରୀରାମଚନ୍ଦ୍ର ଭବନରେ ସଭା ହେଉଥାଏ। ମୁଖ୍ୟଅତିଥି ଜାନକୀବାବୁ। ସେ ମୋତେ 'ବାଇମୁଣ୍ଡି' ସମ୍ମାନରେ ସମ୍ବର୍ଦ୍ଧିତ କରିଥିଲେ। ସମ୍ବର୍ଦ୍ଧନାର ଉତ୍ତରରେ ମୁଁ ଉଲ୍ଲାସ ଭାବେ ମୁକ୍ତକଣ୍ଠରେ କହିଥିଲି– "ପୂଜ୍ୟ ଜାନକୀବାବୁଙ୍କ ଠାରୁ ସମ୍ବର୍ଦ୍ଧିତ ହୋଇଥିବାରୁ ମୁଁ ଅତ୍ୟନ୍ତ ଗର୍ବିତ। ଅନ୍ୟ କାହାରିଠାରୁ ଏ ସମ୍ବର୍ଦ୍ଧନା ମୋତେ ଏତେ ଆନନ୍ଦ ଦିଅନ୍ତା ନାହିଁ। ଏବଂ ଏହା ଥିଲା ମୋର ଅନ୍ତରର କଥା, କାରଣ ଜାନକୀବଲ୍ଲଭ ଜଣେ ପ୍ରଜ୍ଞାପୁରୁଷ।

ଆସାମର ରାଜ୍ୟପାଳ ଥିଲାବେଳେ ଫୋନ୍‌ରେ ମୋତେ ବହୁବାର ଗୌହାଟି ଯିବାପାଇଁ କହିଛନ୍ତି। ମୁଁ କିନ୍ତୁ ଯାଇପାରି ନାହିଁ। ଆସାମ ସରକାରଙ୍କ ଦ୍ୱାରା ଗୌହାଟି ରାଜଭବନ ଶୀର୍ଷକରେ ଗୋଟିଏ ସୁନ୍ଦର ବହିଟିଏ ଭିନ୍ନ ଭିନ୍ନ ଫଟୋ ସହିତ ପ୍ରକାଶ ପାଇଥିଲା। ବନ୍ଧୁ ଡକ୍ଟର ଗୋବିନ୍ଦ ଭୂୟାଁ ବହିଟିକୁ ମୋତେ ଉପହାର ଦେଇଥିଲେ। ଜାନକୀବାବୁଙ୍କ ମୃତ୍ୟୁପରେ ଅନେକ ଥର ସେ ବହିଟିକୁ ଓ ଫଟଗୁଡ଼ିକୁ ଦେଖିଛି। ଦେଖିଲାବେଳେ ଅଶ୍ରୁଳ ନୟନରେ ଜାନକୀବାବୁଙ୍କୁ ତା' ଭିତରେ ଦେଖିଛି ଓ ମନେମନେ ବାରମ୍ବାର ପ୍ରଣାମ କରିଛି। ଆଜି ଭାବୁଛି, କାହିଁକି ଗୌହାଟି ଗଲି ନାହିଁ। ଯାଇଥିଲେ ତାଙ୍କର ଅକୃତ୍ରିମ ଶ୍ରଦ୍ଧା ଲାଭ କରିଥାନ୍ତି, ଧନ୍ୟ ହୋଇଥାନ୍ତି।

ଜାନକୀବାବୁ ପରିଣତ ବୟସରେ ମଧ୍ୟ ଅନେକ ସ୍ୱପ୍ନ ଦେଖୁଥିଲେ। ସତରେ ସେ କସ୍ତୁରୀ ମୃଗଟିଏ। ନାଭିରେ କସ୍ତୁରୀ। ଓଡ଼ିଶା ସାରା ବୁଲି ଏଇ ଓଡ଼ିଶା ନାମକ ବଣରେ ମୃଗଟିଏ ପରି ସେ ଓଡ଼ିଶାର ସର୍ବବିଧ ବିକାଶ ପାଇଁ ସବୁ କିଛି ଖୋଜିଛନ୍ତି। ରାଜକୀୟ ଚେହେରାର ଅହଙ୍କାର ବହିର୍ଭୂତ ସେ ଜଣେ ସ୍ୱାଭିମାନୀ ଓ ଯଶସ୍ୱୀ ପୁରୁଷ। 'ଜେ.ବି. ସବୁବେଳେ ବିଜି' ତାଙ୍କର ଜୀବନଶୈଳୀ ପ୍ରମାଣ ଦିଏ। ଗୋଟିଏ ମୁହୂର୍ତ୍ତ ମଧ୍ୟ ସେ ଅପବ୍ୟବହାର କରନ୍ତି ନାହିଁ। ଦେଶ ଚିନ୍ତା ଅଥବା ଅଧ୍ୟୟନ ଭିତରେ ନିରନ୍ତର ଲିପ୍ତ ଥାଆନ୍ତି। ତାଙ୍କର ଜୀବନ ଏକ ସମର୍ପିତ ଜୀବନ। ସେ ଥିଲେ ସର୍ବଜ୍ଞାନର ଭଣ୍ଡାର। ତାଙ୍କ ସ୍ଥାନ ପୂରଣ କରିବା ସମ୍ଭବ ନୁହେଁ। ଜଣେ ଅନନ୍ୟ ବ୍ୟକ୍ତିତ୍ୱ, ଏକ ବିରଳ ପ୍ରତିଭା, ଏକ ବହୁପ୍ରସ୍ଥର ବର୍ଣ୍ଣାଢ଼୍ୟ ବ୍ୟକ୍ତି। ରୋମାନ ଭାଷାରେ ସେ ଥିଲେ 'ଜିନିଅସ୍'।

ଜାନକୀବାବୁଙ୍କୁ ବାଦ୍ ଦେଇ ଆଧୁନିକ ଓଡ଼ିଶାର ଇତିହାସ ରଚନା ଅସମ୍ଭବ। ସେ ଚିର ଅମର। ତାଙ୍କର ଶାଶ୍ୱତ ଆତ୍ମା ଅନିର୍ବାଣ ଶିଖା ହୋଇ ଜଳୁଥାଉ। ସେ ଓଡ଼ିଶାବାସୀଙ୍କୁ ଆଶିଷ ଦେଉଥାନ୍ତୁ। ଜର୍ମାନୀରୁ ଲୋତକପୂର୍ଣ୍ଣ ଛଳ ଛଳ ଆଖିରେ ଏଇ ପ୍ରବାଦପୁରୁଷଙ୍କର ଅମ୍ଳାନ ଆତ୍ମାକୁ ଅୟୁତ ଅୟୁତ ପ୍ରଣାମ କରୁଛି।



# ଜ୍ଞାନତପସ୍ୱୀ ଜାନକୀବଲ୍ଲଭ

**ସଦାନନ୍ଦ ଅଗ୍ରଓ୍ୱାଲ**

ଓଡ଼ିଶାର ରାଜନୀତି ଆକାଶରେ ଜାନକୀବାବୁ ଏଭଳି ଏକ ଉଜ୍ଜ୍ୱଳ ତାରକା ରୂପେ ଉଦିତ ହୋଇଥିଲେ, ଯାହା ତାଙ୍କର ଅନ୍ତିମ କାଳ ପର୍ଯ୍ୟନ୍ତ ଅସ୍ତ ହୋଇ ନ ଥିଲା। ମୋର ସମ୍ପର୍କ କିନ୍ତୁ ଜଣେ ପ୍ରଜ୍ଞାପୁରୁଷ ଜାନକୀବାବୁଙ୍କ ସହ ଯିଏକି ଜ୍ଞାନ ଏବଂ ଗୁଣର ମୂଲ୍ୟାୟନ କରିବାର ସାମର୍ଥ୍ୟ ରଖି ଉପଯୁକ୍ତ ସମ୍ମାନ ଏବଂ ପ୍ରୋତ୍ସାହନ ପ୍ରଦାନରେ ଦାନବୀର କର୍ଣ୍ଣ ରୂପେ ଅଶେଷ ଖ୍ୟାତି ଅର୍ଜନ କରିପାରିଛନ୍ତି। ଓଡ଼ିଶାର ଇତିହାସ, ସଂସ୍କୃତି ଏବଂ ସାହିତ୍ୟର ପ୍ରଚାର-ପ୍ରସାର ଦିଗରେ ତାଙ୍କର ବହୁମୂଲ୍ୟ ଅବଦାନ ଅବିସ୍ମରଣୀୟ ହୋଇ ସେ ଭୂମିପୁତ୍ରରୂପେ କାଳକାଳକୁ ରହିଥିବେ। ତାଙ୍କର ବହୁମୁଖୀ ଯଶକୀର୍ତ୍ତି ମୁଁ ପରମ ସମ୍ମାନନୀୟ ତଥା ପ୍ରଖ୍ୟାତ ବିଦ୍ୱାନ ସ୍ୱର୍ଗତ ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ପ୍ରଫେସର ନବୀନ କୁମାର ସାହୁ ଏବଂ ଭାରତର ତତ୍‌କାଳୀନ ପ୍ରଖ୍ୟାତ ଲିପିବିତ୍ ପଦ୍ମଶ୍ରୀ ଡଃ ସତ୍ୟନାରାୟଣ ରାଜଗୁରୁଙ୍କ ଠାରୁ ଶୁଣି ଜାନକୀବାବୁଙ୍କ ବ୍ୟକ୍ତିତ୍ୱ ଦ୍ୱାରା ବହୁପରିମାଣରେ ପ୍ରଭାବିତ ହୋଇସାରିଥିଲି।

ନବୀନବାବୁ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ପଦରୁ ଇସ୍ତଫା ଦେଲାପରେ ଜାନକୀବାବୁ ତାଙ୍କପାଇଁ ଏକ ସ୍ୱତନ୍ତ୍ର ପଦବୀ ସୃଷ୍ଟିକରି ଭୁବନେଶ୍ୱରରେ ଅବସ୍ଥାପିତ କରାଇ ଖାରବେଳ, ବୀର ସୁରେନ୍ଦ୍ରସାଏ ଏବଂ ଓଡ଼ିଶାର ପ୍ରତ୍ନତାତ୍ତ୍ୱିକ ମାନଚିତ୍ର (ଇଂରାଜୀରେ) ରଚନା କରିବାର ଦାୟିତ୍ୱ ଦେଇଥିଲେ। ମୁଁ ଯଦିଓ କୌଣସି କଲେଜର ପ୍ରବେଶଦ୍ୱାର ମଧ୍ୟ ସ୍ପର୍ଶ କରି ନ ଥିଲି ତେବେବି ନବୀନବାବୁଙ୍କ ଅତିପ୍ରିୟ ଥିଲି ଏବଂ ତାଙ୍କର ପରିବାରବର୍ଗ ମୋତେ ତାଙ୍କ ପୁତ୍ରବତ୍ ଜ୍ଞାନ କରୁଥିଲେ। ନବୀନବାବୁଙ୍କ ଇଚ୍ଛା ଥିଲା ଯେ ମୁଁ ଲିପିତତ୍ତ୍ୱବିତ୍ ହେବି ଏବଂ ସୋନପୁର ଇତିହାସ ପ୍ରଥମେ ରଚନା କରିବି। ଐତିହାସିକ ବିଭୂତିସମ୍ପନ୍ନ ସୋନପୁରପ୍ରତି ତାଙ୍କର ସ୍ୱତନ୍ତ୍ର ଦୁର୍ବଳତା ରହିଥିଲା, ଏହା ତାଙ୍କର ଶ୍ୱଶୁର ଘର ମଧ୍ୟ। ସେଇଭିତରେ ସେ ମୋତେ ଜାନକୀବାବୁଙ୍କ ସହ ପ୍ରଥମେ ସାକ୍ଷାତ କରାଇଥିଲେ। ସବୁ ଶୁଣି ଜାନକୀବାବୁ ଉଲ୍ଲସିତ ହେବା ସହ ମୋତେ ସଂସ୍କୃତ ଶ୍ଳୋକ ଆବୃତି ସହ ଆଶୀର୍ବାଦ ଦେଇଥିଲେ। ସେତେବେଳେ ତାହା ମୋ ଭିତରେ ଏକ ନୂତନ ଶକ୍ତି ଓ ପ୍ରେରଣା ପ୍ରଦାନ କରିଥିଲା।

ମୋର ଜନ୍ମସ୍ଥାନ ମେଣ୍ଡା ଏକ ଜନବହୁଳ ନଦୀ-ପାହାଡ଼ଘେରା ଗ୍ରାମ। ବହୁ ଦିନର ଦାବି ସତ୍ତ୍ୱେ ଏଠାରେ ହସ୍‌ପିଟାଲ୍‌ଟିଏ ହୋଇପାରୁ ନ ଥିଲା। ସେହି ସମୟରେ ମୁଁ ପ୍ରଜାତନ୍ତ୍ରର ସାମ୍ବାଦିକ ହେବା ସାଙ୍ଗକୁ ଡଃ ମହତାବଙ୍କ ଅତି ପ୍ରିୟପାତ୍ର ହୋଇପାରିଥିଲି। ସେହି ବଳରେ ଆମେ ଏହି ଅଞ୍ଚଳର ତିନିଚାରିଜଣ ମୁଖିଆବ୍ୟକ୍ତି ଭୁବନେଶ୍ୱରରେ ପହଞ୍ଚିଲୁ ଓ ଆମର ଦାବି ସମ୍ପର୍କରେ ସ୍ୱାସ୍ଥ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିଥିଲୁ।

ଏହା ୧୯୮୫ ମସିହାର କଥା । ହସ୍ପିଟାଲ ପ୍ରତିଷ୍ଠା ସମ୍ପର୍କରେ ଶୁଣି ତତ୍କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀ ଆମକୁ ଅବଜ୍ଞାସୂଚକ କଥାବାର୍ତ୍ତା କରିଥିଲେ । ମୋର ବନ୍ଧୁମାନେ ଭାଙ୍ଗିପଡ଼ିଲେ, ମୁଁ କିନ୍ତୁ ପଛଘୁଞ୍ଚା ଦେବାଲୋକ ନୁହେଁ । ଡଃ ମହତାବଙ୍କୁ ସାକ୍ଷାତ୍‌କରି ସବୁକଥା କହିଲି । ସେ ପ୍ରଜାତନ୍ତ୍ରର ଜଣେ ବ୍ୟକ୍ତିକୁ ମୋ ସଙ୍ଗରେ ଦେଇ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ଦେଖା କରିବାକୁ ନିର୍ଦ୍ଦେଶ ଦେଲେ । ପରିଶେଷରେ ମୋର ସାକ୍ଷାତ ହେଲା । ମୁଁ ମୁଣ୍ଡ ତଳକୁ କରି ପ୍ରଣାମ ଜଣାଇ ଭିକ୍ଷା ମାଗିବା ଭଙ୍ଗୀରେ ଛିଡ଼ା ହେଲି ।  ସେ ଅଳ୍ପ ହସିଲେ ଏବଂ ମୋ ଗୁହାରି ଶୁଣିଲେ । କହିଲେ "ଆପଣ ଯାଆନ୍ତୁ, ଆପଣଙ୍କ ଅଞ୍ଚଳରେ ସ୍ୱାସ୍ଥ୍ୟକେନ୍ଦ୍ର ଖୋଲିବ ।" ପୁଣି ଅଳ୍ପ ହସି ପଚାରିଲେ "ଗବେଷଣା କାମ ଚାଲିଛି ତ ?" ଅତି କଠିନ କାମ ସେଥିପାଇଁ ତପସ୍ୟା କରିବାକୁ ପଡ଼ିବ ।" ମୁଁ ନତ ମସ୍ତକ ହୋଇ ସମ୍ମତି ଜଣାଇଲି । ମୁଁ ଉଲ୍ଲସିତ ହୋଇ ଗାଁକୁ ଫେରି ସମସ୍ତଙ୍କୁ ଏ ହସ୍ପିଟାଲର ପ୍ରତିଷ୍ଠା ସଂପର୍କୀୟ ବାର୍ତ୍ତାଟି ଦେଲି, ମାତ୍ର ସେତେବେଳେ ମୋ କଥାକୁ କେହି ବିଶ୍ୱାସ କଲେ ନାହିଁ । ଏହା ସ୍ୱାଭାବିକ ମଧ, କାରଣ ଅନେକ ମନ୍ତ୍ରୀ ସଭାସମିତିରେ ଏ ଦିଗରେ ପ୍ରତିଶ୍ରୁତି ଦେଇଥିଲେ ମଧ ସେ ସବୁ ଆକାଶ କୁସୁମ ହୋଇ ରହିଥିଲା । କିଛିଦିନ ପରେ ଯେତେବେଳେ ସି.ଡି.ଏମ୍. ଓ ଅଫିସରୁ ଚିଠି ଧରି ଜଣେ ଅଧିକାରୀ ଆସିଲେ ସେହି ସମୟରେ ଗାଁଟି ହର୍ଷଉଲ୍ଲାସରେ ମାତିଉଠିଲା । ଆମ ଅଞ୍ଚଳରେ ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା ହେଲା ଓ ତାହା ହୋଇଛି ଆମ ଅଞ୍ଚଳ ପାଇଁ ଜାନକୀବାବୁଙ୍କ ମହତ୍ କାମ । ସେହି ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରକୁ ଗଲେ ଆଜି ମଧ ସେଦିନର ସେହି ଦୃଶ୍ୟ ଚଳଚ୍ଚିତ୍ରର ଚିତ୍ରସଦୃଶ ଉଦ୍‌ଭାସିତ ହୋଇଉଠେ ।

ଜାନୁଆରୀ ୧୯୯୬ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ଅଭିଲେଖ (Epigraphy) ସମ୍ବନ୍ଧରେ ଏକ ଜାତୀୟ ଆଲୋଚନାଚକ୍ର ଅନୁଷ୍ଠିତ ହେଲା । ଜାନକୀବାବୁ ଥିଲେ ଉଦ୍‌ଘାଟକ । ନିଜର ସଂଭାଷଣରେ ପ୍ରଫେସର କରୁଣାସାଗର ଏକ ସ୍ୱତନ୍ତ୍ର ପରିଚିତି ପ୍ରଦାନ କରିଥିଲେ କାରଣ ମୁଁ କୌଣସି କଲେଜରେ ନ ପଢ଼ି ମଧ ନୂତନ ତାମ୍ରଶାସନର ପାଠୋଦ୍ଧାରପୂର୍ବକ ସେହି ଆଲୋଚନା ଚକ୍ରରେ ସନ୍ଦର୍ଭ ଉପସ୍ଥାପିତ କରିବାର ଥିଲା । ଅଭିଭାଷଣ ପରେ ଜାନକୀବାବୁ ପ୍ରଫେସର ବେହେରାଙ୍କ ସହ କିଛି କଥା ହୋଇ ମୋ ଆଡ଼କୁ ଚାହିଁ ଅଳ୍ପ ହସିଲେ ଓ ଯିବା ସମୟରେ ହାତଟେକି ଆଶୀର୍ବାଦ ଦେଲେ । ମୋ ପ୍ରତି ତାଙ୍କର ଅମାପ ଶ୍ରଦ୍ଧା ଥିଲା ।

ଜାନୁଆରୀ ୧୯୯୯ ମସିହାରେ ଦିଲ୍ଲୀସ୍ଥିତ ଋଷଭଦେବ ଫାଉଣ୍ଡେସନ୍ ଏବଂ ଭୁବନେଶ୍ୱରର ଏଡ଼ଭାନ୍ସ ସେଣ୍ଟର୍ ଫର୍ ଇଣ୍ଡୋଲୋଜିକାଲ ଷ୍ଟିଡିଜର୍ ମିଳିତ ଆନୁକୂଲ୍ୟରେ କଳିଙ୍ଗର ଚକ୍ରବର୍ତ୍ତୀ ଜୈନମହାରାଜା ଖାରବେଳଙ୍କ ସମ୍ବନ୍ଧରେ ଏକ ଜାତୀୟ ଆଲୋଚନାଚକ୍ରର ଆୟୋଜନ ଚାଲିଲା । ଏହାର ମୁଖ୍ୟ ପୃଷ୍ଠପୋଷକ ତଥା ଦିଗ୍‌ଦର୍ଶକ ଥିଲେ ଜାନକୀବାବୁ । ତାଙ୍କ ନେତୃତ୍ୱରେ ମ୍ୟୁଜିଅମ୍‌ର ଅବସରପ୍ରାପ୍ତ ଅଭିଜ୍ଞ ପ୍ରାଚ୍ୟବିଦ୍ୟାବିତ୍ ଡଃ ହରିଶ୍ ଦାସ ଏବଂ ପ୍ରଫେସର କରୁଣାସାଗର ବେହେରା ପ୍ରମୁଖ ବ୍ୟାପକ ଆୟୋଜନରେ ଅକ୍ଳାନ୍ତ ପରିଶ୍ରମ କରୁଥିଲେ । ଉଲ୍ଲେଖଯୋଗ୍ୟ ଯେ ଖାରବେଳଙ୍କ ରାଜତ୍ୱକାଳ ସମଗ୍ର ଭାରତବର୍ଷର ଇତିହାସରେ ଏକ ସ୍ୱର୍ଣ୍ଣିମ ଅଧ୍ୟାୟ । ଏହି ଆଲୋଚନାଚକ୍ରରେ ଦେଶର ବିଭିନ୍ନ ପ୍ରାନ୍ତରୁ ୨୩ଜଣ ପ୍ରଖ୍ୟାତ ବିଦ୍ୱାନ୍

ଭାଗନେବାର ଥିଲା । ଡଃ ହରିଶ୍ ଦାସ ଏବଂ ପ୍ରଫେସର ବେହେରାଙ୍କ ପରାମର୍ଶକ୍ରମେ ଜାନକୀବାବୁ ହାତୀଗୁମ୍ଫା ଶିଳାଲେଖ ସମ୍ବନ୍ଧରେ ଆଲୋଚନା କରିବାପାଇଁ ମୋ ଉପରେ ଦାୟିତ୍ୱ ନ୍ୟସ୍ତ କଲେ । ଏ ଦୁହିଁଙ୍କଠାରୁ ମୁଁ ଭୁବନେଶ୍ୱରରେ ଥିବା ଜାଣି ତାଙ୍କ ଗାଡ଼ି ମୋତେ ଆସି ହୋଟେଲରୁ ନେଇଗଲା । ସେଇଠି ଜାନକୀବାବୁ ମୋତେ ଯେଉଁ ଦୁଇଟି ପରାମର୍ଶ ଦେଲେ ତାହା ଜୀବନବ୍ୟାପୀ ମୋ ପାଇଁ ମାର୍ଗଦର୍ଶିକା ରୂପେ ମନରେ ରହିଯାଇଛି । ପ୍ରଥମ ପରାମର୍ଶ– ବାରମ୍ବାର ଅଧ୍ୟୟନ, ଦ୍ୱିତୀୟରେ ଏହା ଉପରେ କେତେ ପ୍ରଶ୍ନ ହୋଇପାରେ ଏବଂ ସେସବୁର ଉତ୍ତର କେମିତି ଦିଆଯିବ । ଆଜି ମୁଁ ଭାରତବର୍ଷର ବହୁ ବିଶ୍ୱବିଦ୍ୟାଳୟକୁ ଯାଉଛି ଏବଂ ଜାନକୀବାବୁଙ୍କ ପରାମର୍ଶ ମୋପାଇଁ ଏକ ସଫଳ ମନ୍ତ୍ର ରୂପେ କାର୍ଯ୍ୟ କରୁଛି । ସେହି ସମୟରେ ସେ ମୋତେ କହିଥିଲେ ଯେ, ଓଡ଼ିଶାର ଇତିହାସର ନବଆବିଷ୍କୃତ ତଥ୍ୟମାନ ଓଡ଼ିଆରେ ସୁଖପାଠ୍ୟରୂପେ ଲେଖି ପତ୍ରପତ୍ରିକାରେ ପ୍ରକାଶ କଲେ ଆମ ଇତିହାସ ଲୋକାଭିମୁଖୀ ହୋଇପାରିବ ।

ମନ୍ତ୍ରୀ ଶେଖ୍ ମତ୍‌ଲୁବ ଅଲ୍ଲୀ ମଧ୍ୟ ଜଣେ ସୁସାହିତ୍ୟିକ । ମନ୍ତ୍ରୀ ଥିବା ସମୟରେ ସେ ତାଙ୍କ 'ଆଗାମୀ ଶତାବ୍ଦୀ'ରେ ଲେଖା ଦବାକୁ ପୋଷ୍ଟକାର୍ଡ଼ରେ ହସ୍ତଲିଖିତ ଚିଠି ଦେଉଥିଲେ । 'ସମୟ' ସାପ୍ତାହିକୀର ସମ୍ପାଦକ ପତିତପାବନ ମହାପାତ୍ର ଲେଖାପାଇଁ ଖୁବ୍ ତାଗିଦ୍ କରୁଥିଲେ ଏପରିକି ଲେଖାର 'ଶିରୋନାମ' ମଧ୍ୟ ଅନେକ ସମୟରେ ଦେଉଥିଲେ । ଆଗାମୀ ଶତାବ୍ଦୀରେ ଦୁଇଭାଗରେ ପ୍ରକାଶିତ ପ୍ରବନ୍ଧ 'ଓଡ଼ିଶା ଗଠନରେ ପଶ୍ଚିମ ଓଡ଼ିଶାର ଭୂମିକା' ଏବଂ ଖାରବେଳ ସମ୍ବନ୍ଧୀୟ ପ୍ରବନ୍ଧଗୁଡ଼ିକୁ ଜାନକୀବାବୁ ପାଠକରି ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । ଜଣେ ମୁଖ୍ୟମନ୍ତ୍ରୀ କେତେଯେ ଅଧ୍ୟୟନ କରୁଥିଲେ ଏବଂ କେତେ ଶୀଘ୍ର ତା'ର ମର୍ମକୁ ହୃଦୟଙ୍ଗମ କରୁଥିଲେ ତାହା ବିସ୍ମୟ । ବହୁ ଅନନ୍ୟ । ଆସାମ ରାଜ୍ୟପାଳ ଥିବା ସମୟରେ ମୋ ରଚିତ 'କୋଶଳ ଇତିହାସ ଏବଂ ଅନ୍ୟାନ୍ୟ ପ୍ରବନ୍ଧ' ପୁସ୍ତକକୁ ପାଠକରି ସ୍ୱୀୟ ଅଭିମତ ମଧ୍ୟ ପଠାଇଥିଲେ । ଏକ ପୃଷ୍ଠା ମଧ୍ୟରେ ଏକ ପୁସ୍ତକର ଯେଉଭଳି ତାତ୍ତ୍ୱିକ ମୂଲ୍ୟାଙ୍କନ କରିଥିଲେ ସମ୍ପ୍ରତି କୌଣସି ଇତିହାସ ବିଭାଗର ପ୍ରଫେସର ପକ୍ଷରେ ଏକାନ୍ତ ଦୁର୍ଲଭ । ଭୁବନେଶ୍ୱରରେ ଜୈନଧର୍ମ ସମ୍ବନ୍ଧରେ ଆଲୋଚନା ତଥା ସମ୍ବର୍ଦ୍ଧନା ଜ୍ଞାପନ ସମୟରେ ଆସାମରୁ ଆସିଥିବା ଜଣେ ବିଦ୍ୱାନ ଭାବବିହ୍ୱଳ ହୋଇ ପ୍ରକାଶ କରିଥିଲେ; ଆମ ମାନ୍ୟବର ରାଜ୍ୟପାଳ ଜାନକୀବାବୁ ଅହମୀୟା ଭାଷାରେ ଭାଷଣ ଦେଉଛନ୍ତି ଏବଂ ଯେଭଳି ଭାବରେ ଲୋକଙ୍କଦ୍ୱାରା ଆଦୃତ ହେଉଛନ୍ତି ତାହା ପୂର୍ବବର୍ତ୍ତୀ କୌଣସି ରାଜ୍ୟପାଳଙ୍କ ପକ୍ଷରେ ସମ୍ଭବ ହୋଇ ନ ଥିଲା । ଶାନ୍ତିନିକେତନ ଯାଇ ଜାଣିଲି, କାଳିଦାସ ଏବଂ ରବୀନ୍ଦ୍ରନାଥଙ୍କ ଏକ ତୁଳନାତ୍ମକ ଅଭିଭାଷଣ ଦୀର୍ଘ ଦେଢ଼ଘଣ୍ଟା ଧରି ପ୍ରଦାନ କରି ସମସ୍ତଙ୍କୁ ଚକିତ କରିଦେଇଥିଲେ । ତିରୁପତି ବିଶ୍ୱବିଦ୍ୟାଳୟକୁ ସେ ନୂତନ ଦିଗ୍‌ଦର୍ଶନ ଦେଇ ପାଠ୍ୟକ୍ରମରେ ଅନେକ ପରିବର୍ତ୍ତନ ସାଙ୍ଗକୁ ବିଦ୍ୟାପୀଠର ବହୁମୁଖୀ ଉନ୍ନୟନ କରାଇଛନ୍ତି । ସେ ସଂସ୍କୃତ ଭାଷାରେ ଦୀର୍ଘ ସମୟ ଧରି ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ପ୍ରଦାନ କରିବାର କ୍ଷମତା ରଖିଥିଲେ । ତାଙ୍କର ସାହିତ୍ୟିକ କୃତିର ଆଲୋଚନା କରିବା ମୋ ପକ୍ଷରେ ଧୃଷ୍ଟତା ହେବ । ସ୍ଥୂଳତଃ କହିବାକୁ ଗଲେ ସେ ଥିଲେ ଜ୍ଞାନତପସ୍ୱୀ, ଜ୍ଞାନକୁ ପରଖିବାର ଏବଂ ବିନିଯୋଗ କରାଇବାର ସୁଦକ୍ଷ ବିନ୍ଧାଣି ।

ମୋର ତାଙ୍କ ସହ ଯେତେବେଳେ ମଧ୍ୟ ସାକ୍ଷାତ ହୋଇଛି କେବଳ ନୂତନ ଐତିହାସିକ ଆବିଷ୍କାର ଏବଂ ସେସବୁର ବିଶଦ ଆଲୋଚନା ପାଇଁ ବିଭିନ୍ନ ପରାମର୍ଶ ଦେଉଥିଲେ, କେବେ ମଧ୍ୟ କୌଣସି ରାଜନୈତିକ ଆଲୋଚନା କରି ନାହାନ୍ତି ।

ସଂପ୍ରତି ବିରୋଧୀଦଳର ନେତା ନରସିଂହ ବାବୁ ମଧ୍ୟ ମୋର ଲେଖାର ଜଣେ ବିଦ୍‌ଗ୍ଧ ପାଠକ, ପ୍ରଶଂସକ ତଥା ପୃଷ୍ଟପୋଷକ । ଦିନେ ମୋତେ ରାତିରେ ଫୋନ୍ କରି କହିଲେ "ଆଜି ଜାନକୀବାବୁଙ୍କ ସହ ତୁମ ବିଷୟରେ ଆଲୋଚନା ହେଲା, ସେ ତୁମକୁ ତିରୁପତି ବିଶ୍ୱବିଦ୍ୟାଳୟ ପକ୍ଷରୁ ଡି.ଲିଟ୍. ଦେବେ ।" ତାଙ୍କର ସ୍ନେହମିଶ୍ରିତ ଭାବବିହ୍ୱଳ ଅଭିବ୍ୟକ୍ତି ମୋତେ ଆତ୍ମହରା କରିଦେଲା । ଆଖିରୁ ଲୁହ ଝରି ପଡ଼ିଲା । ମୋର ପରିବାରବର୍ଗ ଜାଣି ଅତ୍ୟନ୍ତ ଖୁସିହେଲେ । ସ୍ତ୍ରୀ, ପୁଅ ଏବଂ ବୋହୂଙ୍କ ପାଇଁ ଏହାଥିଲା ଅପ୍ରତ୍ୟାଶିତ ତଥା ଗୌରବମୟ କୀର୍ତ୍ତି । ସମସ୍ତେ ନାଚି ପଡ଼ିଲେ । ମୋ ବୋହୂ ମୁଁ ମନା କରିବା ସତ୍ତ୍ୱେ ବିଭିନ୍ନ ସ୍ଥାନକୁ ଫୋନ୍ କରିଦେଲା । ମୋ ସ୍ତ୍ରୀ ତାରା କହିଲା– "ନରସିଂହଦାଦା ଯେତେବେଳେ କହୁଛନ୍ତି ଏଥିରେ ବ୍ୟତିକ୍ରମ ହେବ ନାହିଁ ।" ମୁଁ ପରେ ରାଜ୍ୟପାଳଙ୍କର ଓ.ଏସ୍.ଡି ଡକ୍ଟର ଗୋବିନ୍ଦ ଭୂୟାଁଙ୍କ ସହ ଆଲୋଚନା କଲି, ସେ ମଧ୍ୟ କହିଲେ ଯେ ମୋତେ ଯଥା ସମୟରେ ଅଭିନନ୍ଦନ ଜଣାଇବେ ।

ମୋ ଜାଣିବାରେ ଏହି ଭାରତବର୍ଷର ଗୌରବଶାଳୀ ବିଶ୍ୱବିଦ୍ୟାଳୟରୁ ଏହାପୂର୍ବରୁ ଓଡ଼ିଶାର ପ୍ରଖ୍ୟାତ ବେଦଜ୍ଞ ପ୍ରିୟବ୍ରତ ଦାସ, କିଟ୍‌ର ପ୍ରତିଷ୍ଠାତା ଅଚ୍ୟୁତ ସାମନ୍ତ ଏବଂ ପଦ୍ମବିଭୂଷଣ ଡଃ ସୀତାକାନ୍ତ ମହାପାତ୍ର ଡି.ଲିଟ୍. ପାଇଥିଲେ । ସେହି କ୍ରମରେ ମୋ ନାଁ ମଧ୍ୟ ଯୋଡ଼ାଯିବ, ଏହା ମୋତେ କିଭଳି ଭାବରେ ଉଦ୍‌ବୁଦ୍ଧ କରିଛି ଏବଂ ଏହାର କୁଳାଧିପତି ପ୍ରଜ୍ଞାବାଚସ୍ପତି ଜାନକୀବଲ୍ଲଭ ପଟ୍ଟନାୟକଙ୍କ ପ୍ରତି କିଭଳି ସମ୍ମାନବୋଧ ଜାଗ୍ରତ ହୋଇଛି ତାହା ଭାଷାରେ ବ୍ୟକ୍ତ କରିବାର ଜ୍ଞାନ ମୋର ନାହିଁ । ଓଡ଼ିଶାର ଦୁଇଗୋଟି ବିଶ୍ୱବିଦ୍ୟାଳୟ ମୋର ଲିଖିତ ପୁସ୍ତକଟିକୁ ପାଠ୍ୟକ୍ରମରେ ଗ୍ରହଣ କରିଛନ୍ତି; ଅନେକ ବିଶ୍ୱବିଦ୍ୟାଳୟକୁ ଅଭିଭାଷଣ ଦେବାପାଇଁ ଯାଇଛି, କିନ୍ତୁ କେହି ଗାମୁଛାଟିଏ ଦେଇ ସମ୍ବର୍ଦ୍ଧନା ମଧ୍ୟ ଜ୍ଞାପନ କରି ନାହାନ୍ତି ।

ଏହାର ଅନେକ ମାସ ପରେ ଦିନେ ରାତି ପ୍ରାୟ ୧୦ଟା ସମୟରେ ସୋନପୁର ସମ୍ବାଦ ପ୍ରତିନିଧି ଶ୍ରଦ୍ଧେୟ ରତନ ପଟ୍ଟନାୟକ ଫୋନ୍ କରି କହିଲେ ଯେ ଜାନକୀବାବୁ ଆପଣଙ୍କ ଫୋନ୍ ନମ୍ବର ମଗାଇଛନ୍ତି ଆପଣଙ୍କ ସହ କଥାହେବେ । ଏତେ ବଡ଼ ଲୋକ ଏତେ ରାତିରେ କଥା ହେବେ, ଆମ ପରିବାରର ସମସ୍ତଙ୍କ ଉତ୍କଣ୍ଠା ବଢ଼ିଗଲା । ପୁଅ, ବୋହୂ, ସ୍ତ୍ରୀ ଫୋନ୍ ପାଖକୁ ଦୌଡ଼ି ଆସିଲେ । କିଛି ସମୟ ପରେ ଫୋନ୍ ବାଜିଉଠିଲା । ଜାନକୀବାବୁ ତାଙ୍କ ସ୍ୱଭାବସୁଲଭ ମମତାଭରା ଭଙ୍ଗୀରେ କହିଲେ– "ସଦାନନ୍ଦବାବୁ, ଆପଣଙ୍କୁ ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟ ପକ୍ଷରୁ ଡି.ଲିଟ୍. ପ୍ରଦାନ କରାଯିବ । କୁଳପତି ହରେକୃଷ୍ଣ ଶତପଥୀ ଆପଣଙ୍କୁ ଫୋନ କରିବେ ଓ ଆପଣ ବାୟୋଡାଟା ପଠାଇଦେବେ ।" ମୁଁ ଡି.ଲିଟ୍. ପାଇବି ପୁଣି ବିଶ୍ୱବିଦ୍ୟାଳୟର ସ୍ୱୟଂ କୁଳାଧିପତି ଫୋନ୍ କରିଛନ୍ତି । ଗୁରୁବ୍ରହ୍ମ ଅଲେଖ ମହିମା ଏବଂ ଜଗନ୍ନାଥଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ ଜଣାଇଲି । ପରଦିନ କୁଳପତି ପ୍ରଫେସର ହରେକୃଷ୍ଣ ଶତପଥୀ ନିଜେ ଏହି ସମ୍ବାଦଟି ଜଣାଇ ବାୟୋଡାଟା ପଠାଇବାକୁ ଅନୁରୋଧ କଲେ । ଉଲ୍ଲେଖ କରିବାର ତାତ୍ପର୍ଯ୍ୟ

ଯେ ସମ୍ପ୍ରତି ଓଡ଼ିଶାର ବିଶ୍ୱବିଦ୍ୟାଳୟମାନଙ୍କର କୁଳପତି ତଥା ପ୍ରଫେସରବୃନ୍ଦ ଏଥିରୁ କିଛି ଗ୍ରହଣ କଲେ ଆମେ ବହୁପରିମାଣରେ ଉପକୃତ ହୋଇପାରିବା। ତିରୁପତି ଯାଇ ଯେଉଁଭଳି ଆତିଥ୍ୟ ପାଇଲୁ ସେଥିରେ ଅଭିଭୂତ ହୋଇଗଲୁ ଏବଂ ଦୁର୍ଭାଗ୍ୟର ବିଷୟ ଆମ ରାଜ୍ୟରେ ତାହା ଏକାନ୍ତ ଦୁର୍ଲଭ।

୨୧ତାରିଖ ଏପ୍ରିଲ ସକାଳ ୧୦ଟାରେ ସମାବର୍ତ୍ତନ ଉତ୍ସବପାଇଁ ବ୍ୟାପକ ପ୍ରସ୍ତୁତି ଚାଲିଥାଏ। ଜାନକୀବାବୁ ପହଞ୍ଚି ପ୍ରଥମେ ପ୍ରସ୍ତୁତି ବୈଠକ କରି ତିରୁପତି ବାଲାଜୀଙ୍କ ଦର୍ଶନ ପାଇଁ ବାହାରିଲେ। ୮୯ବର୍ଷର ବୃଦ୍ଧ ଯୁବସୁଲଭ ଭଙ୍ଗୀରେ ପାଦରେ ଚାଲୁଥିଲେ ଶୁଦ୍ଧ ସଂସ୍କୃତ ଆବୃତି ମାଧ୍ୟମରେ ତାଙ୍କ ମୁଖନିଃସୃତ ଗୋପାଳ ସହସ୍ରନାମ ସମସ୍ତଙ୍କୁ ବିମୋହିତ କରୁଥିଲା। ସମସ୍ତ ପୂଜକ ଆଶୀର୍ବାଦ ଦେଲେ। ପ୍ରଭୁଙ୍କ ଆଶ୍ରି (ଅଙ୍ଗବସ୍ତ୍ର) ଜାନକୀବାବୁଙ୍କ କାନ୍ଧରେ ପକାଇଲେ। ସେ ବିଶ୍ୱବିଦ୍ୟାଳୟରେ ଅତିଥିଶାଳାକୁ ଫେରିଆସିବାପରେ ରାତି ସାଢ଼େ ନଅଟାରେ ମୋର ସାକ୍ଷାତ ହେଲା। ସେଇ ସାହିତ୍ୟ, ସଂସ୍କୃତି ଓ ଇତିହାସ ଗବେଷଣା ସମ୍ପର୍କରେ ତାଙ୍କର ପରାମର୍ଶ। ସେଇଦିନ ସମ୍ବଲପୁରରୁ ସମ୍ବାଦର ବିଶେଷ ସଂଖ୍ୟା ଜୁଗାଇଛେ ମୋର ସାକ୍ଷାତକାର ପ୍ରକାଶ ହୋଇଥିଲା। ତାଙ୍କୁ ଦେଲି ସେ ପଢ଼ିବା ପାଇଁ କହିଲେ। ମୋ ମୁଣ୍ଡ ଉପରେ ହାତରଖି ଆଶୀର୍ବାଦ ଦେଲେ, ମୁଁ ଜଣେ ତପସ୍ୱୀଙ୍କ ଏତାଦୃଶ ଆଶୀର୍ବାଦରେ ମୋ ଶରୀର ତଥା ମନରେ ଅସାଧାରଣ ଶକ୍ତି ସଞ୍ଚରିଯିବାର ମୁଁ ଅନୁଭବ କରିପାରିଲି। ସମ୍ଭବତଃ ତାଙ୍କଠାରୁ ଆଶୀର୍ବାଦ ପାଇବାରେ ମୁଁ ଥିଲି ସର୍ବଶେଷ ବ୍ୟକ୍ତି; ଏହା ଗୁରୁବ୍ରହ୍ମ ଅଲେଖ ମହିମାଙ୍କ ଅପାର କରୁଣା। ମୋ ସଙ୍ଗରେ ଥିବା ସାମ୍ବାଦିକ ପୂର୍ଣ୍ଣଚନ୍ଦ୍ର ପଣ୍ଡା ଆମ ସାକ୍ଷାତ ଆଲୋଚନାର ଦୁଇଟି ଫଟୋ ଉଠାଇଥିଲେ, ଯାହାକି ତାଙ୍କ ଜୀବନର ଶେଷ ଫଟୋଗ୍ରାଫ୍।

ଶୋଇଥିବା ସମୟରେ ୨୧ ତାରିଖ ସକାଳେ ଘନଘନ ଫୋନ୍ ରିଙ୍ଗ୍ ହେବାରୁ ନିଦ ଭାଙ୍ଗିଗଲା। ଗୋଟିଏ ଧାଡ଼ି "ଜାନକୀବାବୁ ଇହଧାମ ତ୍ୟାଗ କରିଗଲେ।" ମୁଁ ଆଉ ପୂର୍ଣ୍ଣ ସଙ୍ଗେ ସଙ୍ଗେ ହସ୍ପିଟାଲ୍‌କୁ ଗଲୁ। ବାହାରେ ସମସ୍ତେ ସ୍ତବ୍ଧ; ଆଖି ଛଳଛଳ ଏହାଥିଲା ହୃଦୟର ଶ୍ରଦ୍ଧାଞ୍ଜଳି। ମୁଁ ବି ଥରିଉଠିଲି। କୁଳପତି ହାତଠାରି କହିଲେ, ମୁହଁରେ ଭାଷା ନ ଥିଲା। ହଜାର ହଜାର ଛାତ୍ରଛାତ୍ରୀଙ୍କ କୋହରେ ସମଗ୍ର ବିଶ୍ୱବିଦ୍ୟାଳୟ ପରିସର ସତେ ଯେଉଁଭଳି ମ୍ରିୟମାଣ ହୋଇପଡ଼ିଥିଲା।

ଓଡ଼ିଶାର ରାଜନୀତି ଆକାଶବୁକୁରେ ବହୁ ମୁଖ୍ୟମନ୍ତ୍ରୀ ଉଦୟ-ଅସ୍ତ ହେବେ। ତେବେ ଜାନକୀବାବୁ ପରି ମୁରବିଙ୍କ ଆଗମନ କଳ୍ପନାନୀତ।

ତାଙ୍କର ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରିବାର ଆବଶ୍ୟକତା ନାହିଁ। ସ୍ୱୟଂ ବିଷ୍ଣୁ ତାଙ୍କ ଭକ୍ତକୁ ଡାକି ନେଇଛନ୍ତି। ଆସନ୍ତୁ ସମସ୍ୱରରେ ପ୍ରାର୍ଥନା କରିବା ସେଇ ଅନନ୍ତପଥର ଯାତ୍ରୀ ଅମର ଆତ୍ମା ପୁନର୍ବାର ଆମ ମାଟିରେ ଅବତରଣ କରି ଆମକୁ ଧନ୍ୟ କରିଦେଉ।



# ଏକ ବର୍ଣ୍ଣାଢ୍ୟ ବ୍ୟକ୍ତିତ୍ୱର ଚିତ୍ରଲିପି

ଅଧ୍ୟାପକ ବିଶ୍ୱରଂଜନ

ମୋର ଯାତ୍ରାପଥ
ଦୀର୍ଘ କଙ୍କରିତ
କେତେ ଢିପ କେତେ ଖାଲ
କ୍ୱଚିତ୍ ମିଳଇ ସମତଳ
ଖାଲି କଣ୍ଟା ମାଇଲ ମାଇଲ
ମୁଁ ନିଶ୍ଚୟ କରିଅଛି ଯିବି ଏଇ ବାଟେ
ଥାଉ କଣ୍ଟା, ଖାଲ ଢିପ
ମୁଁ ଚାଲିବି
ମୋଟେ ନ ଓହରି
ମୋର ଲକ୍ଷ୍ୟପଥେ।....
xxxxxxxxxxxx

(କବିତାଗ୍ରନ୍ଥ 'ସିନ୍ଧୁ ଉପତ୍ୟକା' କବିତା 'ଅସୂୟା')

କବିତାର ପଦ-ପଦରେ ଏହା ହେଉଛି ଏଭଳି ଜଣେ ବ୍ୟକ୍ତି ଜୀବନର କଥା, ଯିଏ କବିତାରେ ନୁହେଁ, କ୍ଷମତା-ରାଜନୀତିରେ ହିଁ ସର୍ବଭାରତୀୟ ପରିଚିତି ଓ ପ୍ରତିଷ୍ଠା ଅର୍ଜନ କରିଥିଲେ। ମାତ୍ର ଏହି ବ୍ୟକ୍ତିତ୍ୱର ବିଶେଷତ୍ୱ ହେଲା, କ୍ଷମତାରେ ଅଧିଷ୍ଠିତ ହୋଇ ମଧ୍ୟ ସେ କବିତାକୁ କେବେ କରଛଡ଼ା ଦେଇ ନ ଥିଲେ। କ୍ଷମତା ସହିତ କବିତାର ଆଶ୍ଚର୍ଯ୍ୟ, ସୁନ୍ଦର ସମନ୍ୱୟରେ ତାଙ୍କର ଜୀବନଯାତ୍ରା ଜାରି ରହିଥିଲା। ହାତରେ ଅବଶ୍ୟ ଗୋଟିଏ ମାତ୍ର କବିତା ଗ୍ରନ୍ଥ; ହୃଦୟ ଗ୍ରନ୍ଥିରେ କିନ୍ତୁ କବିତାର ଅଦୃଶ୍ୟ ଭାବବନ୍ଧନ। ସ୍ୱଭାବସିଦ୍ଧ ସେଇ ଭାବ ନେଇ ନାନା ଅଭାବ-ଅଘଟନ ଭିତରେ ସେ ନିଜ ଜୀବନକୁ ସମୃଦ୍ଧ କରିଥିଲେ। କ'ଣ ଥିଲା ସେ ଜୀବନର ଲକ୍ଷ୍ୟ? ଲକ୍ଷ୍ୟ କେବଳ–ଯାତ୍ରା ଜାରି ରଖିବା। କୌଣସି ସ୍ଥାନରେ ସେ ନିଜକୁ ସୀମାବଦ୍ଧ କରି ରଖି ନ ଥିଲେ। ସାମ୍ବାଦିକତା ହେଉ ବା ରାଜନୀତି। କୌଣସି କ୍ଷେତ୍ରରେ ବିଶେଷ ପଦ-ପଦବୀ ପ୍ରାପ୍ତିରେ ସେ ଉଲ୍ଲସିତ ହୋଇ ପଡୁ ନଥିଲେ କିମ୍ବା ହାତରୁ ପ୍ରାପ୍ୟ ସବୁ ଖସି ପଡ଼ିଲାବେଳେ ଆଦୌ ବିବ୍ରତ ଓ ବିଚଳିତ ହୋଇପଡୁ ନ ଥିଲେ। କଙ୍କରିତ ଯାତ୍ରାପଥରେ ଚାଲିଲାବେଳେ ପାଦରେ କ୍ଷତ ଚିହ୍ନ ଯେ ନ ଲାଗିଛି ତାହା ନୁହେଁ, ମାତ୍ର ଜୀବନର ସେଇ କ୍ଷତ ଓ କ୍ଷତିକୁ ଭରଣା କରିବାପାଇଁ ସାରସ୍ୱତ ସାଧନା ଓ ସର୍ଜନଶୀଳତା ହିଁ ତାଙ୍କୁ ଯୋଗେଇ ଦେଇଛି ଶକ୍ତି–ଅବାରିତ ଗତିରେ ଚାଲିବାର ସାହସ ଓ ସାମର୍ଥ୍ୟ।

ପୃଷ୍ଠଭୂମିରେ ଥିଲା କବିତ୍ୱର ସୁମହତ୍ ପରମ୍ପରା। ପିତା ଥିଲେ 'ଜାନକୀବଲ୍ଲଭ ବିଳାସ' କାବ୍ୟଗ୍ରନ୍ଥର ସ୍ରଷ୍ଟା ଶିକ୍ଷକ ଗୋକୁଳାନନ୍ଦ ପଟ୍ଟନାୟକ। ହାଇସ୍କୁଲର ଛାତ୍ର ଥିଲାବେଳେ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ, ମାୟାଧର ମାନସିଂହ ଓ ସଚ୍ଚିରାଉତରାୟ ପ୍ରମୁଖ କବିମାନେ ଥିଲେ ତାଙ୍କର ପୂର୍ବସୂରୀ। ପୁଣି ରେଭେନ୍ସା କଲେଜର ପ୍ରାତଃସ୍ମରଣୀୟ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଭଳି ପ୍ରଜ୍ଞାପୁରୁଷମାନଙ୍କ ସାନ୍ନିଧ୍ୟ। କାବ୍ୟିକ ପରମ୍ପରାରେ ପରିପୁଷ୍ଟ, ପୁଣି ନିଜସ୍ୱ ପ୍ରତିଭାରେ ପ୍ରଦୀପ୍ତ ଓ ପୁରୋଦୃଷ୍ଟିସଂପନ୍ନ। କାରଣ ରେଭେନ୍ସାରୁ ସଂସ୍କୃତ ଅନର୍ସରେ ଗ୍ରାଜୁଏସନ ପରେ ବନାରସ ହିନ୍ଦୁବିଶ୍ୱବିଦ୍ୟାଳୟ ଭଳି ପ୍ରଖ୍ୟାତ ବାଣୀପୀଠରୁ ରାଜନୀତିବିଜ୍ଞାନରେ ପୋଷ୍ଟ ଗ୍ରାଜୁଏସନ। ପୃଷ୍ଠଭୂମିରୁ ସାର ସଂଗ୍ରହ କରି ପ୍ରଚଣ୍ଡ ପ୍ରତିଭା ଓ ପ୍ରତ୍ୟୟ ବଳରେ ସମାଜରେ ନିଜର ଯଥାଯୋଗ୍ୟ ଭୂମିକା ନିର୍ବାହ କରିବାରେ ଥିଲା ଏହି ବ୍ୟକ୍ତିବିଶେଷଙ୍କ ଜୀବନର ସାର୍ଥକତା।

ପାଠକମାନେ ଜାଣିସାରିବେଣି ଯେ, ଯେଉଁ ବ୍ୟକ୍ତିଚିତ୍ରଟିକୁ ମୁଁ ସେମାନଙ୍କ ସମ୍ମୁଖରେ ଉତ୍ତୋଳିତ କରିବାର ପ୍ରୟାସ କରୁଛି, ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବ୍ୟତୀତ ସେ ଅନ୍ୟ କେହି ନୁହନ୍ତି। ହଁ, ଜାନକୀବଲ୍ଲଭ, ଶ୍ରୀରାମଙ୍କୁ ଉପାସନା କରି ଯାହାଙ୍କୁ ପୁତ୍ର ରୂପେ ଲାଭ କରିଥିଲେ ରାମେଶ୍ୱର ଗାଁର କବି ଗୋକୁଳାନନ୍ଦ। ଜାମାତା ରୂପେ ବରଣ କରିଥିଲେ ଓଡ଼ିଶା ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ମହାନ୍ ରଥୀ ନିରଞ୍ଜନ ପଟ୍ଟନାୟକ, ଏବଂ ଶିକ୍ଷା ସମାପ୍ତି ପରେ ପରେ 'ଇଷ୍ଟର୍ଣ୍ଣ ଟାଇମସ୍' ଏବଂ 'ପ୍ରଜାତନ୍ତ୍ର'ର ସଂପାଦକ ଦାୟିତ୍ୱ ଅର୍ପଣ କରିଥିଲେ ଡକ୍ଟର ହରେକୃଷ୍ଣ ମହତାବ। ପ୍ରଜାତନ୍ତ୍ର ପ୍ରଚାର ସମିତି ଥିଲା–ଓଡ଼ିଶାର ପ୍ରମୁଖ ସଂଗ୍ରାମୀ, ସାହିତ୍ୟିକ, ସାମ୍ବାଦିକ, ବୁଦ୍ଧିଜୀବୀମାନଙ୍କର ମିଳନ ମଣ୍ଡପ। ଦେଶ-ସମାଜ ଓ ସାହିତ୍ୟକୁ ନେଇ ଚାଲୁଥିଲା ବିଚାର-ବିମର୍ଶ। ଅନ୍ତହୀନ ଆଲୋଚନା। ସମସ୍ୟା ସାଂଗକୁ ସମାଧାନର ପନ୍ଥା ମଧ୍ୟ ନିର୍ଣ୍ଣୟ କରାଯାଉଥିଲା। ମହତାବୀ ରାଜନୀତିର କଳାକୌଶଳ ସାଂଗକୁ ଶୁଭୁଥିଲା ସେଠି ସାହିତ୍ୟର ସୁମଧୁର ଝଙ୍କାର। ସାମ୍ବାଦିକତା, ସାହିତ୍ୟ ଓ ରାଜନୀତିର ସେଇ ମିଶ୍ରରାଗରେ ଝଙ୍କୃତ ହେଲା ଜାନକୀବଲ୍ଲଭଙ୍କ ଜୀବନ। ଧୀରେଧୀରେ ବାଟ ଫିଟି ଯାଉଥିଲା, ସ୍ୱତଃ ଉନ୍ମୋଚିତ ହେଉଥିଲା ତାଙ୍କ ଜୀବନ-ପୁସ୍ତକର ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ସବୁ। ପ୍ରତ୍ୟେକ ଅଧ୍ୟାୟରେ ଥିଲା ପ୍ରତିଭା ଓ ପାରଦର୍ଶିତାର ସ୍ୱାକ୍ଷର।

ବନାରସ ବିଶ୍ୱବିଦ୍ୟାଳୟରୁ କୃତିତ୍ୱର ସହ ଉତ୍ତୀର୍ଣ୍ଣ ତରୁଣ ପ୍ରତିଭା ସେତେବେଳେ ପ୍ରାଶାସନିକ କିମ୍ବା ଅନ୍ୟ କୌଣସି ଅର୍ଥକରୀ ବୃତ୍ତି ପ୍ରତି ଆକର୍ଷିତ ନ ହୋଇ ସାମ୍ବାଦିକତାକୁ ଆଦରି ନେବାର ଆଗ୍ରହ କିଛି କମ୍ ସାହସର କଥା ନ ଥିଲା। ପୁଣି ତରୁଣ ବୟସରେ ଓଡ଼ିଆ ଓ ଇଂରାଜୀ ଦୁଇଟି ସମ୍ବାଦପତ୍ରର ସଂପାଦନା ଦାୟିତ୍ୱ ନିର୍ବାହରେ ଆବଶ୍ୟକ ଥିଲା ବିଶେଷ ଦକ୍ଷତା। ସମାଜ ଓ ଶାସନ ବ୍ୟବସ୍ଥାର ଗଭୀର ଅନୁଶୀଳନ, ସଂପାଦକୀୟ ଅଭିବ୍ୟକ୍ତିରେ ସ୍ୱଚ୍ଛତା ଏବଂ ଭାଷା ବ୍ୟବହାରରେ ସାହିତ୍ୟିକ ଶୁଦ୍ଧତା ଓ ସରଳତା ଜାନକୀବଲ୍ଲଭଙ୍କୁ ପରିଚିତ କରେଇଥିଲା ଜଣେ ଉଚ୍ଚମାନର ସଂପାଦକ ଭାବରେ। ଅଳ୍ପ କଥାରେ କୌଣସି ପ୍ରସଂଗର ଗଭୀରତାକୁ ସ୍ପର୍ଶ କରି ପ୍ରକାଶ କରିବାର ସାମର୍ଥ୍ୟ ହେଉଛି ଜଣେ ସଂପାଦକର ବିଶେଷତ୍ୱ। ଉଲ୍ଲେଖ କରିବା ନିଷ୍ପ୍ରୟୋଜନ ଯେ, ଏ କ୍ଷେତ୍ରରେ ଜାନକୀବଲ୍ଲଭଙ୍କ ସ୍ୱାତନ୍ତ୍ର୍ୟ ବାରି ହୋଇପଡ଼େ। 'ପ୍ରଜାତନ୍ତ୍ର'ଓ

'ଇଷ୍ଟର୍ଣ୍ଣ ଟାଇମସ୍'ରେ ପ୍ରକାଶିତ ତାଙ୍କ ସଂପାଦକୀୟଗୁଡ଼ିକର ଏକ ସଂକଳିତ ପୁସ୍ତକ ପ୍ରକାଶ ପାଇଲେ ଜାନକୀବଲ୍ଲଭଙ୍କ ଦୂରଦୃଷ୍ଟି ଓ ସର୍ଜନଶୀଳତାର ସ୍ୱତନ୍ତ୍ର ପରିଚୟ ମିଳିପାରିବ। ତାଙ୍କର ଏଭଳି କିଛି ସଂପାଦକୀୟ ଲେଖା ଏହି ଲେଖକର ଦୃଷ୍ଟିରେ ପଡ଼ିଛି, ଯାହାର ପ୍ରାସଂଗିକତା ଏବେ ମଧ୍ୟ ରହିଛି। ଯଦିଓ ଏହା ତତ୍‌କାଳୀନ ଘଟଣା ବା ସମସ୍ୟାକୁ ନେଇ ଲେଖା ଯାଇଥିଲା। ଉଦାହରଣସ୍ୱରୂପ, କଟକ ସହରର ପରିମଳ ବ୍ୟବସ୍ଥାକୁ ନିଆଯାଇପାରେ। ୧୯୫୨ ମସିହାରେ (୧୧.୯.୫୨–ଇଷ୍ଟର୍ଣ୍ଣ ଟାଇମ୍‌ସ) 'Cleaner Cuttack' ଶୀର୍ଷକରେ ସେ କଟକକୁ ସ୍ୱଚ୍ଛ, ଆବର୍ଜନାମୁକ୍ତ ରଖିବା ଲାଗି ଯେଉଁ ପରାମର୍ଶ ଦେଇଥିଲେ, ୨୦୧୬ ମସିହାରେ ଏବେ ମଧ୍ୟ ତାହା କ'ଣ ପ୍ରାସଂଗିକ ନୁହେଁ? ଏବେ ଯେତେବେଳେ ଦୂଷିତ ଜଳ ପାନ କରି କଟକବାସୀ ଜଣ୍ଡିସ୍‌ରେ ଆକ୍ରାନ୍ତ ହେଉଛନ୍ତି, ସ୍ୱେରେଜ୍ ବ୍ୟବସ୍ଥାରେ କୌଣସି ଉନ୍ନତି ପରିଲକ୍ଷିତ ହେଉ ନାହିଁ, ସେତେବେଳେ ସେ ସ୍ୱଚ୍ଛ ଭାରତ ଅଭିଯାନ ପରିପ୍ରେକ୍ଷୀରେ 'କଟକ' ପ୍ରସଂଗ ଉତ୍‌ଥାପନ କରି ଲେଖିଲେ 'An unclean Cuttack is a disgrace to the State' ବର୍ତ୍ତମାନ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ଯେଉଁ 'ସ୍ୱଚ୍ଛ ଭାରତ'ର ଅଭିଯାନ ଆରମ୍ଭ କରିଛନ୍ତି, ତା'ର ବହୁ ପୂର୍ବରୁ ଆଚାର୍ଯ୍ୟ ବିନୋବା ବାଭେ ଏହି ଆନ୍ଦୋଳନ ଯେ ଆରମ୍ଭ କରିଥିଲେ ଏକଥା ବୋଧହୁଏ ମୋ ଭଳି ଅନେକେ ମଧ୍ୟ ଜାଣି ନ ଥିବେ।

ସ୍ଥାନୀୟ ତଥା ଆଞ୍ଚଳିକ ଘଟଣାରୁ ଆରମ୍ଭକରି ଆନ୍ତର୍ଜାତିକ ସମସ୍ୟାର ସମୀକ୍ଷା ଯାଏଁ ଜାନକୀବଲ୍ଲଭଙ୍କ ସଂପାଦକୀୟଗୁଡ଼ିକ କେବଳ ତଥ୍ୟଭିତ୍ତିକ ନ ଥିଲା, ଏହା ଥିଲା ତାଙ୍କର ସ୍ୱତନ୍ତ୍ର ସାହିତ୍ୟଶୁଦ୍ଧ ଶୈଳୀରେ ଚିତ୍ତଗ୍ରାହୀ ଓ ଚେତନାଉଦ୍ରେକକାରୀ। ସଂପାଦକୀୟ ଶିରୋନାମ ଥିଲା କାବ୍ୟିକ ଏବଂ ପ୍ରତୀକାତ୍ମକ, ଯଥା–'ବିପୁଳ ବିଜୟ, ଅଟଳ ଆତ୍ମବିଶ୍ୱାସ' "ଚିଲି-କଳା ଇଗଲ ଓ ଧଳା ରାଜହଂସ' 'ଗୋଆ' ଚନ୍ଦ୍ରମା–ମାର୍କାର ଉପାଖ୍ୟାନ! 'ତପେ ବର ନା କୋପେ ବର', 'କ୍ୟୁଏଟ୍-ସିଂହ-ମୂଷିକର ମିତ୍ରତା' ଇତ୍ୟାଦି।

'ପ୍ରଜାତନ୍ତ୍ର'ରୁ ବିଦାୟ ନେବା ପରେ 'ପୌରୁଷ' ର ପ୍ରକାଶନ। ଓଡ଼ିଆ ପତ୍ରିକା ଜଗତରେ 'ପୌରୁଷ' ଥିଲା ପୂରାପୂରି ସ୍ୱତନ୍ତ୍ର ଅଭିରୁଚିର ପତ୍ରିକା। ଭାରତୀୟ ବିଦ୍ୟାଭବନ ପ୍ରକାଶିତ 'ଭବନସ୍ ଜର୍ଣ୍ଣାଲ' ଭଳି ଏହା ଥିଲା ସାହିତ୍ୟ, ସଂସ୍କୃତି, ରାଜନୀତି, ଅର୍ଥନୀତି, ଇତିହାସ, ଇତ୍ୟାଦି ବହୁବିଧ ରଚନାବଳୀର ଏକ ଡାଇଜେଷ୍ଟ। ପ୍ରକାଶ ପାଇବାମାତ୍ରେ ଏହା ଓଡ଼ିଶାର ପାଠକସମାଜରେ ସର୍ବାଦୃତ ପତ୍ରିକାରେ ପରିଣତ ହୋଇଥିଲା। ପତ୍ରିକାର ସଂପାଦନା ସହିତ ପତ୍ନୀ ଜୟନ୍ତୀ ପଟ୍ଟନାୟକ ନିଜକୁ ସଂପୃକ୍ତ ରଖିଥିଲେ। ଆନନ୍ଦର କଥା, ଜାନକୀବଲ୍ଲଭଙ୍କ ସାହିତ୍ୟିକ ସ୍ୱପ୍ନସିଦ୍ଧ 'ପୌରୁଷ' ପ୍ରକାଶନ ଏବେ ମଧ୍ୟ ଅବ୍ୟାହତ ରହିଛି ତାଙ୍କର କନ୍ୟା ସୁଦତ୍ତା, ଜାମାତା ସୌମ୍ୟରଂଜନଙ୍କ ସହଯୋଗରେ। ସଂପାଦନା ଦାୟିତ୍ୱରେ ଅଛନ୍ତି ସାହିତ୍ୟ ସମାଲୋଚକ ଅସିତ୍ ମହାନ୍ତି।

ସାମ୍ବାଦିକତାରୁ ପ୍ରତ୍ୟକ୍ଷ ରାଜନୀତି। 'ପ୍ରଜାତନ୍ତ୍ର'ରୁ 'ପ୍ରଜାମୁଖ୍ୟ' ହେବାର ବିରଳ ଅନୁଭୂତି। ଶ୍ରୀରାମଚନ୍ଦ୍ରଙ୍କୁ ରାଜପଦରେ ଅଭିଷିକ୍ତ ହେବା ପୂର୍ବରୁ ମିଳିଥିଲା ୧୪ବର୍ଷର ବନବାସ। ମାତ୍ର ଶ୍ରୀରାମଙ୍କ ଉପାସନା କରି ପିତା ଗୋକୁଳାନନ୍ଦ ଲାଭ କରିଥିବା ପୁତ୍ର ଜାନକୀବଲ୍ଲଭଙ୍କୁ

ମିଳିଥିଲା ଦୀର୍ଘ ୧୪ବର୍ଷ କାଳ ଶାସନମୁଖ୍ୟ ହେବାର ସୌଭାଗ୍ୟବାସ । ରାଜ୍ୟରୁ କେନ୍ଦ୍ର କ୍ୟାବିନେଟ୍ ଏବଂ ଜୀବନର ସାୟାହ୍ନରେ ଆସାମର ରାଜ୍ୟପାଳ । ଜାନକୀବଲ୍ଲଭଙ୍କ ଏହି ସୁଦୀର୍ଘ ରାଜନୈତିକ ଯାତ୍ରାପଥରେ ଅନେକ ବାଧାବିଘ୍ନ ଉପୁଜିଛି । ଅନେକ ବାଦ-ବିବାଦ ଭିତରେ ସେ ଛନ୍ଦି ହୋଇପଡ଼ିଛନ୍ତି । ମାତ୍ର ସକଳ ଦୁଃସ୍ଥିତିକୁ ସେ ଆତ୍ମଶକ୍ତି ବଳରେ ସାମ୍ନା କରିଛନ୍ତି ଏବଂ ଜୀବନର ସଂଘର୍ଷକୁ ବଦଳେଇ ଦେଇଛନ୍ତି ସର୍ଜନଶୀଳତାରେ । ଶାସନ କ୍ଷମତାରେ ଥିଲାବେଳେ ଓ ନ ଥିଲାବେଳେ କେବେହେଲେ ସେ ନିଜକୁ ସାହିତ୍ୟସାଧନା ଓ ଜ୍ଞାନଗବେଷଣାରୁ ଦୂରେଇ ରଖି ନାହାନ୍ତି । ଫଳରେ ଏହି ସାହିତ୍ୟ ହିଁ ତାଙ୍କୁ ରାଜନୀତିକ୍ଷେତ୍ରରେ ଶକ୍ତିମାନ୍ କରି ଗଢ଼ି ତୋଳିବାରେ ସହାୟକ ହୋଇଥିଲା । ଫଳରେ ରାଜନୈତିକ ଜୀବନର ସଫଳତା ଓ ବିଫଳତା ସତ୍ତ୍ୱେ ଭାରତୀୟ ରାଜନୀତିରେ ଜଣେ ଜ୍ଞାନୀ ପଣ୍ଡିତ ତଥା ପ୍ରଜ୍ଞାପୁରୁଷ ଭାବରେ ସେ ଦଳମତ ନିର୍ବିଶେଷରେ ସମସ୍ତଙ୍କର ଆଦର ଓ ମାନ୍ୟତା ଲାଭ କରିପାରିଥିଲେ ।

ଜାନକୀବଲ୍ଲଭଙ୍କ ଦୀର୍ଘକାଳର ମୁଖ୍ୟମନ୍ତ୍ରିତ୍ୱ ଭିତରେ ଓଡ଼ିଶାର ବିକାଶ କ୍ଷେତ୍ରରେ କି କି କାର୍ଯ୍ୟ ହୋଇଛି ବା ନ ହୋଇଛି, ତା'ର ଆଲୋଚନା ଏହି କ୍ଷୁଦ୍ର ଆଲେଖ୍ୟରେ କରିବାର ଅଭିପ୍ରାୟ ମୋର ନାହିଁ । ଏ ସମ୍ପର୍କରେ ଉଭୟ ଓଡ଼ିଆ ଓ ଇଂରାଜୀରେ ତଥ୍ୟଭିତ୍ତିକ ଦୁଇଟି ଗ୍ରନ୍ଥ ପ୍ରକାଶ ପାଇସାରିଛି । ମାତ୍ର ଓଡ଼ିଶାର କଂଗ୍ରେସ ଦଳକୁ ସୁଦୃଢ଼ କରି ଗଢ଼ି ତୋଳିବାରେ ତାଙ୍କ ନେତୃତ୍ୱକୁ ଅବଶ୍ୟ ସ୍ୱୀକାର କରିବାକୁ ହେବ । କାରଣ ଏହି ଦଳର ନେତୃତ୍ୱରୁ ସେ ଅପସରିଯିବା ପରେ କଂଗ୍ରେସ ନିଜକୁ ସମର୍ଥ କରି ଗଢ଼ି ତୋଳିବାରେ ବିଫଳ ହୋଇଛି । ବିଫଳତାକୁ ସତେ ଯେମିତି ଏହି ଦଳ ବରଣ କରିନେଇଛି । ନବୀନଙ୍କ ଷୋଳବର୍ଷର ନିରଙ୍କୁଶ ଶାସନର ପାହାଡ଼ ପ୍ରମାଣ ଦୋଷ-ଦୁର୍ବଳତା-ଦୁଷ୍କୃତିକୁ ପୁଞ୍ଜିକରି ନିଜ ପ୍ରାଣଶକ୍ତି ସଂଗ୍ରହ କରିବାରେ ଓଡ଼ିଶାରେ କଂଗ୍ରେସଦଳ ବ୍ୟର୍ଥ ହୋଇଛି । ଜାନକୀବାବୁଙ୍କ ଦୃଢ଼ ନେତୃତ୍ୱ କେବଳ କଂଗ୍ରେସ ଦଳରେ ଶକ୍ତି ସଂଚର କରି ନ ଥିଲା, ଏହି ଶକ୍ତି ଶାସନ କ୍ଷେତ୍ରକୁ ସଂଚରିତ ହୋଇ ଓଡ଼ିଶାକୁ ଏକ ସ୍ଥିର ସରକାର ପ୍ରଦାନ କରିଥିଲା ।

ଜାନକୀବଲ୍ଲଭଙ୍କ ଭାଷାପ୍ରୀତିର ପ୍ରଭାବ ଦେଖିବାକୁ ମିଳିଥିଲା ଯେତେବେଳେ ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ୧୯୮୫ ମସିହା ଏପ୍ରିଲ୍ ପହିଲା ଦିନ ଓଡ଼ିଆ ଭାଷାକୁ ସରକାରୀ ଭାଷା ଭାବରେ ବ୍ୟବହାର କରାଯିବ ବୋଲି ନିର୍ଦ୍ଦେଶନାମା ପ୍ରକାଶ ପାଇଲା । ନବକୃଷ୍ଣଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲାବେଳେ ୧୯୫୪ ମସିହାରେ ଓଡ଼ିଆ ଭାଷାକୁ ସରକାରୀ ଭାଷା ରୂପେ ବ୍ୟବହାର କରିବାର ଆଇନ୍ ପ୍ରଣୀତ ହୋଇଥିଲେ ହେଁ, ତାଙ୍କପରେ ଏଥିପ୍ରତି ଆଉ କେହି ଗୁରୁତ୍ୱ ପ୍ରଦାନ କଲେ ନାହିଁ । ଜାନକୀବାବୁ ପୁନର୍ବାର ଏହି ଆଇନ୍‌କୁ ଜୀବନ୍ୟାସ ଦେଲେ । ଏବେ ଓଡ଼ିଆ ଭାଷା ଜାତୀୟ ସ୍ତରରେ ଶାସ୍ତ୍ରୀୟ ଭାଷାର ମାନ୍ୟତା ଲାଭକରିଛି । ମାତ୍ର ଏହାର ବ୍ୟବହାରିତା ? ଓଡ଼ିଶାବାସୀ ଅଙ୍ଗେ ନିଭଉଛନ୍ତି । ଓଡ଼ିଆ ଭାଷା ଓ ସଂସ୍କୃତି ପ୍ରତି ଯେଭଳି ଗଭୀର ପ୍ରୀତି ଓ ପ୍ରତିବଦ୍ଧତା,ସେହିଭଳି ଓଡ଼ିଶାର ଗଣଦେବତା ଶ୍ରୀଜଗନ୍ନାଥଙ୍କ ପ୍ରତି ଜାନକୀବଲ୍ଲଭଙ୍କ ଭକ୍ତି, ପ୍ରୀତି ତଥା ସମର୍ପଣ ଭାବର କୌଣସି ତୁଳନା ନାହିଁ । 'ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ, ଉତ୍କଳର ନେତା ନିଜେ ନାରାୟଣ' । ଉତ୍କଳମଣି ଗୋପବନ୍ଧୁଙ୍କ ଏହି କାବ୍ୟିକ ଅଭିବ୍ୟକ୍ତି ପ୍ରତି

ଥିଲା ଜାନକୀବଲ୍ଲଭଙ୍କ ହାର୍ଦ୍ଦିକ ସ୍ୱୀକୃତି ଓ ସମର୍ଥନ । ଫଳରେ ଶ୍ରୀମନ୍ଦିରର ରକ୍ଷଣାବେକ୍ଷଣ ପାଇଁ ତାଙ୍କ ଉଦ୍ୟମରେ ସେ କେନ୍ଦ୍ର ସରକାରରେ ମନ୍ତ୍ରୀ ଥିବା ସମୟରେ ଏହାକୁ centrally protected monument ଭାବରେ ଘୋଷଣା କରାଯାଇଥିଲା । ନବୀନଙ୍କ ଶାସନରେ ଏକବିଂଶ ଶତାବ୍ଦୀର ପ୍ରଥମ ନବକଳେବର ଅନୁଷ୍ଠାନ କାଳରେ ଦେଖାଦେଇଥିବା ନାହିଁ ନ ଥିବା ବିଭ୍ରାଟ ଏବଂ ଲୋକବିଶ୍ୱାସରେ ଲାଗିଥିବା ପ୍ରଚଣ୍ଡ ଆଘାତ ସମୟରେ ସ୍ମରଣକୁ ଆସୁଥିଲେ ଜାନକୀବଲ୍ଲଭ । ସେ ମୁଖ୍ୟମନ୍ତ୍ରୀ ଥିଲାବେଳେ ୧୯୯୬ରେ ଅନୁଷ୍ଠିତ ଶତାବ୍ଦୀର ଶେଷ ନବକଳେବରକୁ ସେ ନିଜ ପାଇଁ ଜଗନ୍ନାଥଙ୍କର ଏକ ଆର୍ଶୀବାଦ ଭାବରେ ଗ୍ରହଣ କରିଥିଲେ । ଶାସକର ଆଧିପତ୍ୟ ବଳରେ ନୁହେଁ,ଜଣେ ଭକ୍ତର ଆବେଗସିକ୍ତ ହୃଦୟରେ ସେ ଏହି ରାଷ୍ଟ୍ରପର୍ବକୁ ଶୃଙ୍ଖଳିତ ତଥା ସୁଚାରୁରୂପେ ସଂପନ୍ନ କରିବାରେ ସଫଳ ହୋଇଥିଲେ । ତାଙ୍କରି ଉଦ୍ୟମରେ ପୁଣି ପୁରୀରେ ସ୍ଥାପିତ ହେଲା ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ । ଯାହାଥିଲା ସମଗ୍ର ଭାରତରେ ତୃତୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟ । ନିଜର ଶାସନକୁ ସାହିତ୍ୟ, ସଂସ୍କୃତି ସହିତ ଯୋଡ଼ିବାରେ, ନୃତ୍ୟ ସଂଗୀତ, କଳା, ଚଳଚ୍ଚିତ୍ରର ବିକାଶ ଦିଗରେ କାର୍ଯ୍ୟ କରିବାରେ ଜାନକୀବଲ୍ଲଭ ନିଜର ଅବିସ୍ମରଣୀୟ ନେତୃତ୍ୱ ପ୍ରଦାନ କରିଆସିଛନ୍ତି । ଶାସନମୁଖ୍ୟ ଭାବରେ ପ୍ରତିବର୍ଷ ଲେଖକମାନଙ୍କ ସହିତ ମିଶିବାପାଇଁ ତାଙ୍କ ସହଯୋଗରେ ଗଠିତ 'ଲେଖକ ସାମ୍ମୁଖ୍ୟ' ଏଯାବତ୍ ନିଜର ବାର୍ଷିକ ସମାବେଶ ସମ୍ମିଳନୀର ଆୟୋଜନ କରିଆସୁଛି ।

ଗଣତାନ୍ତ୍ରିକ ରାଜନୀତିରେ ଶାସକ ଦଳର ନେତୃତ୍ୱ ନେବା ଯେତିକି ଗୁରୁତ୍ୱପୂର୍ଣ୍ଣ, ତତୋଽଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ବିରୋଧୀଦଳର ନେତା ଭାବରେ ନିଜର ଭୂମିକା ନିର୍ବାହ କରିବା । ଜାନକୀବଲ୍ଲଭ ଉଭୟ କ୍ଷେତ୍ରରେ ନିଜ ପାରଦର୍ଶିତାର ପରିଚୟ ଦେଇଛନ୍ତି । ତିନିଥର ମୁଖ୍ୟମନ୍ତ୍ରୀ ଏବଂ ଥରେ (୨୦୦୪ ରୁ ୨୦୦୯) ପାଞ୍ଚବର୍ଷ କାଳ ବିଧାନସଭାରେ ବିରୋଧୀଦଳର ନେତା । ଉଭୟ ଶାସକ ଓ ବିରୋଧୀ ଦଳ–ମଧ୍ୟରେ ସହଯୋଗ ଓ ସଦ୍‌ଭାବରେ ଯେ ଗଣତନ୍ତ୍ରର ସଫଳତା ନିହିତ, ଏକଥା ପ୍ରବୀଣ ରାଜନୀତିଜ୍ଞ ଜାନକୀବଲ୍ଲଭ ହୃଦୟଙ୍ଗମ କରିଥିଲେ । ତେଣୁ ଶାସନ କ୍ଷେତ୍ରରେ ଥିବା ନିଜର ଅନୁଭବ ଓ ଅଭିଜ୍ଞତା ଆଧାରରେ ସେ ସରକାରଙ୍କୁ ଗଠନମୂଳକ ପରାମର୍ଶ ଦେଇ ସକ୍ରିୟ କରିବାରେ ନିଜର ଯଥୋଚିତ ଭୂମିକାରୁ କେବେ ଓହରିଯାଇ ନାହାନ୍ତି । ବିଧାନସଭାରେ, ତାଙ୍କର ଆଲୋଚନା ଥିଲା ଅତ୍ୟନ୍ତ ସାରଗର୍ଭକ ଏବଂ ତଥ୍ୟ ଆଧାରିତ । 'ବାଚସ୍ପତି ମହୋଦୟ'ଶୀର୍ଷକରେ ସଂକଳିତ ତାଙ୍କର ବିଧାନସଭା ଭାଷଣକୁ ଅନୁଧ୍ୟାନ କଲେ ସେଥିରୁ ଜାନକୀବଲ୍ଲଭଙ୍କ ବିଷୟପ୍ରବେଶ, ବିଦ୍‌ବତ୍ତା ତଥା ପ୍ରକାଶଭଂଗୀର ସାବଲୀଳତା ସଂପର୍କରେ ସ୍ପଷ୍ଟ ଚିତ୍ର ମିଳିପାରିବ । ତତ୍‌କାଳୀନ ଓଡ଼ିଶାର ସମସ୍ୟାକୁ ଜାଣିବାରେ ଏହା ରାଜନୀତିର ଗବେଷକ ଓ ବିଶ୍ଳେଷକମାନଙ୍କ ପାଇଁ ବିଶେଷ ସହାୟକ ମଧ୍ୟ ହେବ ।

ଜୀବନର ଅନ୍ତିମପର୍ଯ୍ୟାୟରେ ଜାନକୀବଲ୍ଲଭଙ୍କ ଯାତ୍ରା ଓଡ଼ିଶାରୁ ଆସାମକୁ, ଆସାମର ରାଜ୍ୟପାଳ ଭାବରେ । ସାଧାରଣତଃ ରାଜଭବନକୁ ବାର୍ଦ୍ଧକ୍ୟର ବିଶ୍ରାମସ୍ଥଳ ଏବଂ ରାଜ୍ୟପାଳ ପଦବୀକୁ ହତାଶ ରାଜନେତାଙ୍କପାଇଁ ସାନ୍ତ୍ୱନା ପୁରସ୍କାର ଭାବରେ ବିବେଚନା କରାଯାଉଥିଲାବେଳେ ଜାନକୀବଲ୍ଲଭ ଏହି ପଦର ମହିମା ଓ ଗରିମା ପ୍ରଦର୍ଶିତ କରିପାରିଲେ

ନିଜର ସାଂସ୍କୃତିକ ବ୍ୟକ୍ତିତ୍ୱର ପ୍ରଭାବ ଓ ପ୍ରତିଷ୍ଠା ବଳରେ । ରାଜ୍ୟପାଳ ଯେ କେବଳ ନାମକୁମାତ୍ର ଶାସନମୁଖ୍ୟ ନୁହନ୍ତି, ଏବଂ ରାଜ୍ୟ ଶାସନରେ ଅନାବଶ୍ୟକ ହସ୍ତକ୍ଷେପ ନ କରି ରାଜ୍ୟର ଜନଜୀବନରେ ଜଣେ ରାଜ୍ୟପାଳ ଯେ ନବଜାଗରଣ ସୃଷ୍ଟି କରିପାରନ୍ତି, ତା'ର ଉଜ୍ଜ୍ୱଳ ଦୃଷ୍ଟାନ୍ତ ରଖି ଦେଇଗଲେ ଜାନକୀବଲ୍ଲଭ । ଆସାମର ରାଜ୍ୟପାଳ ଦାୟିତ୍ୱ ଗ୍ରହଣ କରିବାପରେ ତାଙ୍କର ପ୍ରଥମ ଆଗ୍ରହ ହେଲା ଅହମୀୟା ଭାଷା ଶିକ୍ଷା । କାରଣ ଭାଷା ହିଁ ବ୍ୟକ୍ତିକୁ ବ୍ୟକ୍ତି ସହିତ ଯୋଡ଼ିବାର କାର୍ଯ୍ୟ କରେ । ଆସାମବାସୀଙ୍କ ସହିତ ଭାବବନ୍ଧନରେ ରହିବାକୁ ହେଲେ ତାଙ୍କ ଭାଷାକୁ ଆୟତ୍ତ କରିବାକୁ ହେବ । ଭାଷା ଓ ସଂସ୍କୃତିପ୍ରେମୀ ଜାନକୀବଲ୍ଲଭଙ୍କ ପକ୍ଷରେ ଏହା ଅସାଧ ନ ଥିଲା । (ଆହା ! ଆମ ଓଡ଼ିଶାର ଭାଗ୍ୟ ଦେଖ । ତଥାକଥିତ ଲୋକପ୍ରିୟତାର ଶିଖରରେ ଥିବା ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ତାଙ୍କର ଦୀର୍ଘ ଷୋହଳ ବର୍ଷର ଶାସନରେ ଭାଷାକୁ ଆୟତ୍ତ କରିବା ତ ଦୂରର କଥା ତାକୁ ଶିଖିବାପାଇଁ ସାମାନ୍ୟ ଆଗ୍ରହ ମଧ୍ୟ ପ୍ରକାଶ କଲେ ନାହିଁ ।) ଆସାମର ରାଜ୍ୟପାଳ ଭାବରେ କେବଳ ଅହମୀୟା ଭାଷାକୁ ଆପଣାର କରି ଜାନକୀବାବୁ ଯେ ଓଡ଼ିଶା-ଆସାମ ମଧ୍ୟରେ ସାଂସ୍କୃତିକ ଦୂତ ଭାବରେ କାର୍ଯ୍ୟକଲେ ତାହା ନୁହେଁ, ଆସାମର ସତ୍ରମାନଙ୍କରେ, ମସ୍‌ଜିଦ୍‌ମାନଙ୍କରେ ମହିଳାମାନଙ୍କୁ ପ୍ରବେଶର ଅଧିକାର ଦେଇ ଏକ ନୂତନ ସଂସ୍କାର ଆଣିବାରେ ସଫଳ ହୋଇଥିଲେ । ଆସାମର ସମ୍ବାଦପତ୍ର ତଥା 'ଟାଇମସ୍ ଅଫ୍ ଇଣ୍ଡିଆ' ଭଳି ଦୈନିକ ଇଂରାଜୀ ସମ୍ବାଦପତ୍ରମାନଙ୍କରେ ରାଜ୍ୟପାଳଙ୍କର ଏ ପ୍ରକାର ସଂସ୍କାରମୂଳକ ପଦକ୍ଷେପର ଉଚ୍ଚପ୍ରଶଂସା କରାଯାଇ ସଂପାଦକୀୟ ପ୍ରକାଶ ପାଇଥିଲା । ରାଜ୍ୟପାଳ ଭାବରେ ଜାନକୀବଲ୍ଲଭ ନିଜକୁ ରାଜଭବନର ସୀମିତ ପରିସର ତଥା ସଂକୀର୍ଣ୍ଣ ଦଳୀୟ ରାଜନୀତିରୁ ଊର୍ଦ୍ଧ୍ୱରେ ରଖି ଜଣେ ସମାଜ-ସଂସ୍କାରକ ତଥା ସଂସ୍କୃତିପୁରୁଷ ଭାବରେ ଆସାମବାସୀଙ୍କ ହୃଦୟରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । (Ever since J.B Patnaik took over the mantle as Governor, he's been ushering in winds of change—ଦି ଟାଇମସ୍ ଅଫ ଇଣ୍ଡିଆ') ଆସାମର ଶ୍ରୀମନ୍ତ ଶଙ୍କରଦେବ ନିଜର ଶ୍ରୀକ୍ଷେତ୍ରରେ ଅବସ୍ଥାନ ଏବଂ ଓଡ଼ିଶା ସହିତ ସଂପର୍କକୁ ନେଇ ଯେଉଁ 'ଉରେଶାବର୍ଣ୍ଣନ' ଛାନ୍ଦ ରଚନା କରିଥିଲେ ତା'ର ଓଡ଼ିଆ ଅନୁବାଦ କାର୍ଯ୍ୟ (କବି ଅରକ୍ଷିତ ପ୍ରଧାନଙ୍କ ମାଧ୍ୟମରେ) ସଂପନ୍ନ କରିବା ସହିତ ଆସାମର ଜନଜୀବନ, ସାହିତ୍ୟ, ସଂସ୍କୃତି, ଧର୍ମ-ପରମ୍ପରା ସଂପର୍କରେ ନିଜେ ବହୁ ତଥ୍ୟଭିତ୍ତିକ ଆଲୋଚନା ପ୍ରକାଶ କରିଥିଲେ 'ପୌରୁଷ' ମାସିକରେ । ଏହାର ଏକ ସଂକଳନ ଅସିତ୍ ମହାନ୍ତିଙ୍କ ସଂପାଦନାରେ ଏବେ ପ୍ରକାଶ ପାଇଛି 'ଆମ ଓଡ଼ିଶା' ପକ୍ଷରୁ । ନିଜର ସର୍ବଶେଷ ରାଜନୈତିକ ପଦବୀକୁ ସାଂବିଧାନିକ ବ୍ୟବସ୍ଥା ଦୃଷ୍ଟିରୁ କେବଳ 'ନାମକୁ ମାତ୍ର ମୁଖ୍ୟ' ଭାବରେ ବିବେଚନା ନ କରି ଜାନକୀବାବୁ ନିଜର ଅଭିଜ୍ଞତା ଉପଯୋଗର ସୁଯୋଗ ଭାବରେ କେବଳ ଗ୍ରହଣ କରି ନାହାନ୍ତି, ନିଜର ଜନ୍ମଭୂମି ସହିତ ଏହି କର୍ମଭୂମିକୁ ସାଂସ୍କୃତିକ ଭାବବନ୍ଧନରେ ଯୋଡ଼ିବାରେ ବେଶ୍ ସଫଳ ହୋଇଛନ୍ତି । ସବୁଠାରୁ ଉଲ୍ଲେଖଯୋଗ୍ୟ କଥାଟି ହେଲା, ଜାନକୀବାବୁଙ୍କ ରଚିତ ପ୍ରବନ୍ଧ ସଂକଳନଟି ଗୌହାଟି ବିଶ୍ୱବିଦ୍ୟାଳୟରେ ପାଠ୍ୟପୁସ୍ତକ ଭାବରେ ପାଠ୍ୟଖସଡ଼ା ଅନ୍ତର୍ଭୁକ୍ତ ହୋଇ ଆସାମର ଶିକ୍ଷା ସମାଜରେ ତାଙ୍କର ଏକ ସ୍ୱତନ୍ତ୍ର ପରିଚୟ ପ୍ରତିଷ୍ଠା କରିଛି । ଏହା ବ୍ୟତୀତ

ତାଙ୍କର ଅନ୍ୟାନ୍ୟ ପୁସ୍ତକ ମଧ୍ୟ ଅହମୀୟା ଭାଷାରେ ଅନୂଦିତ ହୋଇ ସେଠାର ପାଠକମହଲରେ ଲୋକପ୍ରିୟତା ଅର୍ଜନ କରିଛି ।

ଜଣେ ବ୍ୟକ୍ତି ନିଜର କାର୍ଯ୍ୟକୁଶଳତାରେ ଜୀବନରେ ହାସଲ କରିଥିବା ପଦ-ପଦବୀକୁ ସବୁଦିନେ ତା' ହାତରେ ଧରି ରଖିପାରେ ନାହିଁ । ନିର୍ଦ୍ଦିଷ୍ଟ କାର୍ଯ୍ୟକାଳ ଭିତରେ ଶେଷ ହୋଇଯାଏ ପଦପଦବୀର ପରମାୟୁ । ସେହିଭଳି ତା'ର ଶରୀରକୁ ମଧ୍ୟ କବଳିତ କରିନିଏ କାଳ । ମାତ୍ର ସେ ରଖିଦେଇଯାଇଥିବା ତା'ର ସୃଷ୍ଟି ସମ୍ଭାର ? ନିଜର ମନ, ମସ୍ତିଷ୍କ, ହୃଦୟର ଆବେଗ ଓ ଅର୍ଜିତ ଜ୍ଞାନର ଆଧାରରେ ଛାଡ଼ିଦେଇଯାଇଥିବା ହସ୍ତାକ୍ଷର ? ସେ ଅକ୍ଷରର କ୍ଷୟ କାହିଁ ? ଅକ୍ଷୟ ଅକ୍ଷରର କୀର୍ତ୍ତିମାନ୍ ସ୍ରଷ୍ଟା ଭାବରେ ଜାନକୀବଲ୍ଲଭ ସଦା ସ୍ମରଣୀୟ ରହିବେ ସୁଧୀ ପାଠକ ସମାଜରେ । ମାତ୍ର ଜାନକୀବଲ୍ଲଭ କେବଳ ପଣ୍ଡିତ ନ ଥିଲେ । ଏହି ଲେଖକ ଦୃଷ୍ଟିରେ ସେ ଥିଲେ ଜଣେ ଅବିଶ୍ରାନ୍ତ ପଥିକ ।

ଆମେ ସମସ୍ତେ ଏ ସଂସାରକୁ ଆସିଥାଉ ଜଣେ ଜଣେ ପଥିକ ଭାବରେ । ବାଟଚଲା ବି ଆରମ୍ଭ ହୋଇଯାଏ । ମାତ୍ର କ'ଣ ହୁଏ କେଜାଣି ମଝିରେ ଆମର ବାଟଚଲା ବନ୍ଦ ହୋଇଯାଏ । ନିଜର ପଦ-ପଦବୀଜନିତ ପ୍ରାପ୍ତି ଓ ପ୍ରତିଷ୍ଠା ଭିତରେ ଧୀରେ ନିଜକୁ ଆବଦ୍ଧ କରିଦେଉ । ନିର୍ଦ୍ଦିଷ୍ଟ ଖୋପ ଭିତରେ ମୁଣ୍ଡ ଗୁଞ୍ଜି ରହିଯାଉ । ଜାନକୀବଲ୍ଲଭଙ୍କ ସ୍ମରଣରେ କିଂତୁ ସର୍ବଦା ରହିଥିଲା ଇଂରେଜ କବି ରବର୍ଟ୍ ଫ୍ରଷ୍ଟଙ୍କର ସେହି ଉକ୍ତି— ଯାହା ଥିଲା ଜବାହରଲାଲ ନେହରୁଙ୍କର ଅତ୍ୟନ୍ତ ପ୍ରିୟ - ××× "ଆଇ ହ୍ୟାଭ୍ ପ୍ରମିସେସ୍ ଟୁ କିପ୍, ଆଣ୍ଡ ମାଇଲସ୍ ଆଣ୍ଡ ମାଇଲସ୍ ଟୁ ଗୋ, ବିଫୋର୍ ଆଇ ସ୍ଲିପ୍ ।" 'ମୋତେ ଯାତ୍ରା ଜାରି ରଖିବାକୁ ହେବ । ଥକି ନ ପଡ଼ିବି କେବେ ମୁଦିବା ଆଗରୁ ଆଖି' । ଜାନକୀବଲ୍ଲଭଙ୍କ ଯାତ୍ରା ପଥ କେବେ ସରଳ ଓ ସମତଳ ନ ଥିଲା । ମାତ୍ର ସରଳ ହେଉ ବା ଜଟିଳ ବା ବଂଧୁର, ରାମେଶ୍ୱର ମାଟିରୁ ଉଠି ରାଜସିଂହାସନ ପ୍ରାପ୍ତିଯାଏଁ ଦୀର୍ଘ ପଥ ପରିକ୍ରମା ଭିତରେ କେବେ ସେ ଥକି ପଡ଼ି ନ ଥିଲେ ।

ପଲ୍ଲୀରୁ ଦିଲ୍ଲୀ । ମହାନଦୀର ତଟଦେଶରୁ ଯମୁନାର କୂଳ । ଶେଷରେ ପୁଣି ବ୍ରହ୍ମପୁତ୍ର ସହ ମିଳନର ସେତୁ ବାନ୍ଧି ମହୋଦଧିକୂଳରେ ଅନ୍ତିମ ବିଶ୍ରାମ । କ୍ଲାନ୍ତିହୀନ ଅବିରାମ ସେ ଯାତ୍ରା । ବୟସ କେବେ ବାଧକ ସାଜି ନ ଥିଲା ସେ ଯାତ୍ରା ପଥରେ । ବରଂ ବୋଲ ମାନିଥିଲା ତାଙ୍କର ଶୃଙ୍ଖଳିତ ଜୀବନଚର୍ଯ୍ୟାରେ । ତେଣୁ ଜୀବନର ଶେଷ ମୁହୂର୍ତ୍ତ ଯାଏଁ ସୁସ୍ଥ ଶରୀର, ସୁସ୍ଥ ମନନେଇ ସେ ଈଶ୍ୱର ଆରାଧନା ଓ ବିଦ୍ୟାଚର୍ଚ୍ଚାରେ ମଗ୍ନ ରହିଥିଲେ । ତିରୁପତିରେ ରାଷ୍ଟ୍ରୀୟ ସଂସ୍କୃତ ସଂସ୍ଥାନର କୁଳାଧିପତି ଭାବରେ ସମାବର୍ତ୍ତନ ଉତ୍ସବରେ ଯୋଗ ଦେବାକୁ ଯାଇ ଶ୍ରୀ ବାଲାଜୀଙ୍କ ଦର୍ଶନ କରି ନିଜକୁ ସେ ପ୍ରସ୍ତୁତ କରୁଥିଲେ, ତା' ପରଦିନ ନିଜର ଅଭିଭାଷଣ ପାଇଁ । ବାସ୍, ପ୍ରସ୍ତୁତି ଶେଷ ହୋଇଥିଲା । ବିଷ୍ଣୁସହସ୍ରନାମ ଜପକରି ଜୀବନଯାତ୍ରା ଶେଷକରି ବାହୁଡ଼ି ଆସିଲେ ପ୍ରିୟ ଶ୍ରୀଜଗନ୍ନାଥ ଧାମକୁ । ଏଭଳି ସାର୍ଥକ ଜୀବନଯାପନ କ୍ୱଚିତ୍ ବ୍ୟକ୍ତିଙ୍କ ଭାଗ୍ୟରେ ସମ୍ଭବ ହୋଇଥାଏ । ସେ ଦୃଷ୍ଟିରୁ ଜାନକୀବଲ୍ଲଭ ଥିଲେ ଜଣେ ସୌଭାଗ୍ୟବନ୍ତ ପୁରୁଷ । କ୍ଷମତାର ରାଜପଦ ତାଙ୍କୁ କେବେ ଅହଂକାରୀ, ଅବିନୀତ କରି ନ ଥିଲା । କାରଣ ତାଙ୍କ ହୃଦୟରେ ପ୍ରବାହିତ ହେଉଥିଲା କବିତାର ସ୍ୱଚ୍ଛ ସଲିଳା ସରସ୍ୱତୀ ।



# ରାଜନୀତି, ସାହିତ୍ୟ ଓ ସାମ୍ବାଦିକତାର ତ୍ରିବେଣୀ ସଂଗମ

**ଗୌରହରି ଦାସ**

୨୦୧୫ ଏପ୍ରିଲ୍ ୨୧ ତାରିଖ ସକାଳେ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ପରଲୋକ ଏଭଳି ଆକସ୍ମିକ ଥିଲା ଯେ ଇତିମଧ୍ୟରେ ବର୍ଷଟାଏ ବିତି ଯାଇଥିଲେ ସୁଦ୍ଧା ତାହାକୁ ବିଶ୍ୱାସ କରିହେଉ ନାହିଁ। ଆଧୁନିକ ମଣିଷ ଯୋଗଭୋଗ କଥାରେ ବିଶ୍ୱାସ କରେ ନାହିଁ। ମାତ୍ର ଜାନକୀବଲ୍ଲଭଙ୍କ ପରଲୋକ ସେପ୍ରକାର ଏକ ଧାରଣାକୁ ଦୃଢ଼ୀଭୂତ କରିଛି। ସିଏ ଯେ ଭେଙ୍କଟେଶ୍ୱରଙ୍କ ତୀର୍ଥରେ ଶେଷନିଃଶ୍ୱାସ ତ୍ୟାଗ କରିବେ, ଏହା ଥିଲା ବିଧିନିର୍ଦ୍ଦିଷ୍ଟ। ନ ହେଲେ ସେ ଭୁବନେଶ୍ୱରରୁ ଉଡ଼ି ସେଠାକୁ ଯାଇ ନ ଥାଆନ୍ତେ। ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ ଜାନକୀବଲ୍ଲଭ କାମାକ୍ଷାପୀଠ ଗୌହାଟୀରେ ପାଞ୍ଚବର୍ଷ କାଳ ବିତେଇଲେ। ମାତ୍ର ତାଙ୍କର ପରଲୋକ ହେଲା ଭୁବନେଶ୍ୱର କି ଗୌହାଟୀରେ ନୁହେଁ, ତିରୁପତିରେ, ଯେଉଁଠିକୁ ମାତ୍ର କିଛି ଘଣ୍ଟା ପାଇଁ ସେ ଯାଇଥିଲେ। ଦେବଦର୍ଶନ ସାରି ଧର୍ମଚର୍ଚ୍ଚା ଓ ତାହାପରେ ନିଦ୍ରା ଏବଂ ସେହି ନିଦ୍ରା ପାଲଟିଗଲା ମହାନିଦ୍ରା।

ଏକାଦିକ୍ରମେ ଦୁଇଟି କାର୍ଯ୍ୟକାଳ ସମ୍ପୂର୍ଣ୍ଣ କରି ସେଇ ସେଇ ସେ ମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଅବ୍ୟାହିତ ନେଇଥାଆନ୍ତି। ତାଙ୍କର ବିଶେଷତ୍ୱ, ଜୟ-ପରାଜୟ କି ସଫଳତା-ବିଫଳତାକୁ ନେଇ ସେ ଅଧିକ ସମୟ ଆହ୍ଲାଦ କି ବିଷାଦରେ ବ୍ୟୟ କରନ୍ତି ନାହିଁ। ସାଙ୍ଗେସାଙ୍ଗେ ନୂଆ କାମରେ ଲାଗିଯାଆନ୍ତି। ସଚିବାଳୟ ପଛ ମୁଖ୍ୟମନ୍ତ୍ରୀଙ୍କ ସରକାରୀ ବାସଭବନରୁ ଚାଲିଆସି ସେ ପାଖାପାଖି ଗୋଟିଏ କ୍ୱାର୍ଟର୍ସରେ ରହୁଥାଆନ୍ତି। 'ରାମାୟଣ'ର ଓଡ଼ିଆ ଗଦ୍ୟରୂପ ରଚନା କରିବାରେ ମନୋନିବେଶ କରିଥାଆନ୍ତି ସେ। ସେଇ କାମରେ ତାଙ୍କୁ ସହଯୋଗ କରିବାପାଇଁ ମୁଁ ମଝିରେ ମଝିରେ ଯାଉଥାଏ। ଜାନକୀବଲ୍ଲଭ ପଟ୍ଟନାୟକ ଖୁବ୍ ପରିଶ୍ରମୀ। ଅନେକ ରାତି ପର୍ଯ୍ୟନ୍ତ ସେ ଲେଖାପଢ଼ା କରନ୍ତି। ପାଣ୍ଡୁଲିପି ଏବଂ ଚାରୁଲିପି ସଂଶୋଧନ କାମ ମନଦେଇ କରିଥାଆନ୍ତି। ସେଦିନ ଲେଖାପଢ଼ା କାମ ସରିବାବେଳକୁ ରାତି ସାଢ଼େ ଦଶଟାରୁ ବେଶି ହୋଇଗଲାଣି। ମୋତେ ବିଦାୟ ଦେବାଲାଗି ଦୁଆର ପାଖକୁ ଆସିଲେ। ସେତିକିବେଳେ ସେ ଦେଖିଲେ, ରାସ୍ତାର କଲଭର୍ଟ ଉପରେ ଜଣେ କିଏ ବସିଛନ୍ତି। ତାଙ୍କୁ ଘରକୁ ଡାକିବାଲାଗି ସେ ମୋତେ ନିର୍ଦ୍ଦେଶ ଦେଲେ। ମୁଁ ଭଦ୍ରଲୋକଙ୍କୁ ଡାକିଆଣିବାରୁ ଜାନକୀବଲ୍ଲଭ ପଟ୍ଟନାୟକ ଦେଖିଲେ ଯେ ସେ ଜଣକ ସନ୍ଧ୍ୟାବେଳେ ତାଙ୍କ ପାଖକୁ ଆସିଥିଲେ। ଭେଟିସାରି ଘରକୁ ଫେରିବା କଥା, ମାତ୍ର ତାଙ୍କର ଗାଡ଼ି ସକାଳକୁ ଅଛି ଏଣେ ରାତିରେ ରହିବାଲାଗି ଭୁବନେଶ୍ୱରରେ ତାଙ୍କର କିଛି ଠିକଣା ନାହିଁ। ଏକଥା ଶୁଣି ସାଙ୍ଗେସାଙ୍ଗେ ଜାନକୀବଲ୍ଲଭ

ପଟ୍ଟନାୟକ ତାଙ୍କୁ ନିଜର ମେଲାଘରକୁ ଡାକିଆଣିଲେ। ଗୋଟିଏ ସୋଫାର ଭାଙ୍ଗ ଖୋଲି ତାକୁ ଖଟ ପରି ସଜାଡ଼ି ଦେଲେ ଓ ନିଜେ ଘର ଭିତରକୁ ଯାଇ ବିଛଣା ଚାଦର ଏବଂ ତକିଆ ନେଇ ଆସି ବିଛଣା ପାରିଦେଲେ। ଭଦ୍ରଲୋକଙ୍କ ଶୋଇବାର ବ୍ୟବସ୍ଥା କରିସାରି ସେ ନିଜେ ଶୋଇବାକୁ ଗଲେ।

ଦ୍ୱିତୀୟ ଘଟଣା, ତାଙ୍କ ଅନୂଦିତ 'ବଙ୍କିମ ରଚନାବଳୀ'ର ଉନ୍ମୋଚନ ସମୟର କଥା। ସେଇଟି ୧୯୯୯ ମସିହାର କଥା। ପ୍ରାୟ ଦୁଇହଜାର ପୃଷ୍ଠା ବିଶିଷ୍ଟ ଏହି ଗ୍ରନ୍ଥାବଳୀ ଦୁଇଟି ଖଣ୍ଡରେ ପ୍ରକାଶ ପାଇଥାଏ। ଜାନକୀବଲ୍ଲଭବାବୁ ଏବର ରାଷ୍ଟ୍ରପତି ଓ ତତ୍କାଳୀନ କଂଗ୍ରେସ ସାଧାରଣ ସମ୍ପାଦକ ଶ୍ରୀଯୁକ୍ତ ପ୍ରଣବ ମୁଖାର୍ଜୀଙ୍କୁ ଏହାର ଉନ୍ମୋଚନ ପାଇଁ ଡାକିଥାନ୍ତି। ସେତେବେଳକୁ ଜାନକୀବାବୁ ମୁଖ୍ୟମନ୍ତ୍ରୀ ନ ଥାଆନ୍ତି, ଗିରିଧର ଗମାଙ୍ଗ ହୋଇଥାଆନ୍ତି ମୁଖ୍ୟମନ୍ତ୍ରୀ। ଏକଦା ତାଙ୍କର ଘନିଷ୍ଠ ସହଯୋଗୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ସେତେବେଳେ ଖୁବ୍ କ୍ଷମତାଶୀଳ ଉପମୁଖ୍ୟମନ୍ତ୍ରୀ। ତାଙ୍କର ଜାନକୀବାବୁଙ୍କ ସହ ସମ୍ପର୍କ ସେତେବେଳେ ଖରାପ ହୋଇଥାଏ। ସନ୍ଧ୍ୟାରେ ଜୟଦେବ ଭବନରେ ଉନ୍ମୋଚନ ସଭା ଆୟୋଜିତ ହୋଇଥାଏ। ପ୍ରଣବ ମୁଖାର୍ଜୀ ମଧ୍ୟାହ୍ନ ଉଡ଼ାଣରେ ଦିଲ୍ଲୀରୁ ଆସିବା କଥା। ସେତେବେଳେ ଦିଲ୍ଲୀରୁ ଆସୁଥିବା ବିମାନ ରାୟପୁର ଦେଇ ଆସୁଥାଏ। ଜାନକୀବାବୁ ନିଜେ ଭୁବନେଶ୍ୱର ବିମାନ ବନ୍ଦରକୁ ଯାଇଥାଆନ୍ତି, ପ୍ରଣବ ମୁଖାର୍ଜୀଙ୍କୁ ପାଛୋଟି ଆଣିବେ। ସଭା ଆୟୋଜନରେ ମୋର କିଛି ଭୂମିକା ଥିବାରୁ ମୁଁ ମଧ ବିମାନ ବନ୍ଦରକୁ ଯାଇଥିଲି। କୌଣସି କାରଣରୁ ସେଦିନ ସେ ବିମାନ ଭୁବନେଶ୍ୱର ଆସିଲା ନାହିଁ। ଜାନକୀବାବୁ ଚିନ୍ତିତ ହୋଇପଡ଼ିଲେ। ତାଙ୍କ ଉତ୍ସବକୁ ପ୍ରଣବ ମୁଖାର୍ଜୀ ଆସି ନ ପାରିବା ବା ନ ଆସିବାର ଗୋଟେ ରାଜନୈତିକ ତାତ୍ପର୍ଯ୍ୟ ରହୁଥିଲା। ଏହାଛଡ଼ା ସନ୍ଧ୍ୟାରେ ଉତ୍ସବ ମଧ ପାଣିଚିଆ ହୋଇଯାଉଥିଲା। ବିମାନ ବନ୍ଦରରେ ମୋତେ ଦେଖି ସେ ତାଙ୍କ ପାଖକୁ ଡକେଇ ପଠେଇଲେ ଏବଂ କହିଲେ, 'ଟିକେ ଘରକୁ ଆସ।' ମୁଁ ତାଙ୍କ ଛଅନମ୍ବର ୟୁନିଟ୍‌ର ତାଙ୍କ ସରକାରୀ ବାସଭବନକୁ ଗଲି। ସେତେବେଳକୁ କଂଗ୍ରେସରେ ଥିବା ତାଙ୍କ ବିରୋଧୀ ମହଲରେ ପ୍ରଚାର ହେଇଗଲାଣି ଜାନକୀବାବୁଙ୍କ ସଭାକୁ ପ୍ରଣବ ମୁଖାର୍ଜୀ ଆସିଲେ ନାହିଁ। ଏ ପ୍ରଚାର ଶୁଣି ତାଙ୍କ ସମର୍ଥକମାନେ ଯାଇ ଭିଡ଼ କରୁଥାଆନ୍ତି। ମୁଁ ଭାବୁଥାଏ, କୌଣସି କାରଣରୁ ଯଦି ସର୍ଭିସ୍ ବିମାନ ଆସିପାରିଲା ନାହିଁ, ତାହାହେଲେ ଓଡ଼ିଶା ସରକାରଙ୍କ ବିମାନ ପଠେଇ ସରକାର ପ୍ରଣବ ମୁଖାର୍ଜୀଙ୍କ ଆଣିବା ବ୍ୟବସ୍ଥା କରିପାରନ୍ତେ। କାରଣ ସେଦିନ ପିପିଲିରେ ତାଙ୍କର ଏକ ଦଳୀୟ କାର୍ଯ୍ୟକ୍ରମ ମଧ ରଖାଯାଇଥାଏ। ମାତ୍ର ସେମିତି ହେଲା ନାହିଁ। ତେବେ ଜାନକୀବଲ୍ଲଭ ପଟ୍ଟନାୟକ ପ୍ରଣବ ମୁଖାର୍ଜୀଙ୍କ ସହ ଯୋଗାଯୋଗ କଲେ ଏବଂ ଶ୍ରୀ ମୁଖାର୍ଜୀ ହେଉପଛେ ଅନ୍ୟ ବିମାନ ଧରି ବିଳମ୍ବରେ ଭୁବନେଶ୍ୱରରେ ଆସି ପହଞ୍ଚିଲେ। ଜୟଦେବ ଭବନରେ ସେ ସନ୍ଧ୍ୟାର ସଭା ଅତ୍ୟନ୍ତ ସଫଳତାର ସହ ସଂପନ୍ନ ହେଲା। ଜାନକୀବଲ୍ଲଭବାବୁ ତାଙ୍କ ବାସଭବନରେ ପ୍ରଣବ ମୁଖାର୍ଜୀଙ୍କ ସମ୍ମାନାର୍ଥେ ଏକ ନୈଶ ଭୋଜିର ଆୟୋଜନ କରିଥିଲେ। ପ୍ରଣବ ମୁଖାର୍ଜୀ କ୍ଲାନ୍ତ ହୋଇପଡ଼ିଥିବାରୁ ସେ ରାତିଟା ରହି ସକାଳେ ଫେରିବେ ବୋଲି ଆମେ ଖବର ପାଇଥିଲୁ।

ମାତ୍ର କଅଣ ହେଲା କେଜାଣି ସେତେବେଳର ଜଣେ ମନ୍ତ୍ରୀ (ଏବେ ସେ ବିଜେଡି ସାଂସଦ) ଓଡ଼ିଶା ସରକାରଙ୍କ ବିମାନରେ ଶ୍ରୀ ମୁଖାର୍ଜୀଙ୍କୁ ନେଇ ସେଇ ରାତିରେ ଦିଲ୍ଲୀ ଗଲେ ଏବଂ ତାଙ୍କୁ ଦିଲ୍ଲୀରେ ଛାଡ଼ି ବାହୁଡ଼ିଆସିଲେ। ରାଜନୈତିକ ଲୋକେ କହିଲେ, ଏତେ ଦୀର୍ଘ ସମୟ ଜାନକୀବାବୁଙ୍କ ଆତିଥେୟତାରେ ପ୍ରଣବ ମୁଖାର୍ଜୀ ରହିଥିଲେ ତାଙ୍କର ଗୁରୁତ୍ୱ ବହୁତ ବଢ଼ିଯାଇଥାଆନ୍ତା ଯାହା ସେତେବେଳକାର ଗମାଙ୍ଗ ସରକାର ଚାହୁ ନ ଥିଲେ। ତେଣୁ ତାଙ୍କୁ ଶୀଘ୍ର ପଠେଇ ଦେବାକୁ ଏ ବ୍ୟବସ୍ଥା ହେଲା। ସେହିଦିନ ଜାଣିଲି, ରାଜନୈତିକ ନେତାମାନଙ୍କର ପ୍ରକୃତ ଶତ୍ରୁ ବିରୋଧୀ ଦଳରେ ନ ଥାଆନ୍ତି, ତାଙ୍କ ନିଜ ଦଳରେ ଥାଆନ୍ତି। ତେବେ ଏହି ସମୁଦାୟ ଘଟଣାକ୍ରମରେ ଜାନକୀବଲ୍ଲଭ ବାବୁ ଯେଉଁ ଧୈର୍ଯ୍ୟ ଏବଂ ବିଚକ୍ଷଣ ବୁଦ୍ଧିର ପରିଚୟ ଦେଇଥିଲେ ତାହା ଦେଖି ମୁଁ ବିସ୍ମିତ ହୋଇଥିଲି।

ତୃତୀୟ ଘଟଣା ସେହି ସମୟର କଥା। ଜାନକୀବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବାବେଳେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଦାୟିତ୍ୱ ଗ୍ରହଣ କରିଥିଲେ। ତାହାର ମଧ୍ୟ ଏକ କାରଣ ଅଛି। ସେ ବିପ୍ଳବୀ କବି ରବି ସିଂହଙ୍କୁ ଉପସଭାପତି ଭାବେ ନିଯୁକ୍ତି ଦେଇଥିଲେ, ଏବଂ ଅନ୍ୟ ଜଣେ ବିଶିଷ୍ଟ ଲେଖକଙ୍କୁ ସଭାପତି ପଦରେ ବରଣ କରିବାକୁ ଚାହୁଁଥିଲେ। ମାତ୍ର ରବି ସିଂହ ଅନ୍ୟ କାହାରି ତଳେ ଉପସଭାପତି ହେବାକୁ ଆଦୌ ରାଜି ନ ଥିଲେ। ସେଥିପାଇଁ ମୁଖ୍ୟମନ୍ତ୍ରୀ ନିଜେ ସଭାପତି ହେଲେ ଏବଂ ରବି ସିଂହଙ୍କ ଲାଗି ସେ ବ୍ୟବସ୍ଥା ଗ୍ରହଣୀୟ ହୋଇଥିଲା। ଜାନକୀବାବୁ ମୁଖ୍ୟମନ୍ତ୍ରୀ ପଦରୁ ଯିବା ପରେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଥାଆନ୍ତି। ସେହି ଦାୟିତ୍ୱରେ ସେ ବିଭିନ୍ନ ଅଞ୍ଚଳକୁ ଯାଇ ସାହିତ୍ୟ ସଭାରେ ଯୋଗ ଦିଅନ୍ତି। ତାଙ୍କ ସଭାରେ ଅନେକ ଲୋକ ହୁଅନ୍ତି। ଏକଥା କଂଗ୍ରେସ ଦଳର ନୂଆ ମୁଖ୍ୟମନ୍ତ୍ରୀଙ୍କୁ ଗ୍ରହଣୀୟ ହେଲା ନାହିଁ। ମୁଖ୍ୟମନ୍ତ୍ରୀ ଭାବିଲେ, ସଭାପତି ଥିବାରୁ ଜାନକୀବାବୁ ସଭାସମିତି କରି ଫାଇଦା ଉଠଉଛନ୍ତି। ତେଣୁ ନିର୍ଦ୍ଦେଶ ବାହାରିଲା, ସଭାପତି ପଦରୁ ଜାନକୀବଲ୍ଲଭ ପଟ୍ଟନାୟକ ଅପସାରିତ। ଆଜି ଭାବିଲେ ଦୁଃଖ ଲାଗୁଛି, ରାଜନେତାମାନେ କେତେ ତଳକୁ ଓହ୍ଲେଇ ପାରନ୍ତି! ଜାନକୀବଲ୍ଲଭ ପଟ୍ଟନାୟକଙ୍କ ପରି ପଣ୍ଡିତ, ବିଦ୍ୱାନ୍ ଓ ସାହିତ୍ୟିକ, ଜନନେତା ସମଗ୍ର ଦେଶରେ ମଧ୍ୟ ଦ୍ୱିତୀୟ ନ ଥିବେ। ତାଙ୍କ ପାଇଁ ସାହିତ୍ୟ ଏକାଡେମୀ ସଭାପତି ପଦ କେତେ ତୁଚ୍ଛ! ଅଥଚ ନିଜ ଦଳର ନେତାଏ ସେତିକି ସୌଜନ୍ୟ ରଖିଲେ ନାହିଁ। ଏ ଘଟଣାରେ ଜାନକୀବାବୁ ନିଶ୍ଚୟ କ୍ଷୁବ୍ଧ ହୋଇଥିବେ। ତେବେ କେତେ କ୍ଷୁବ୍ଧ, ତାହା ଜାଣିବାର ଅବକାଶ ନ ଥିଲା।

ଜାନକୀବାବୁ ନମ୍ର କିନ୍ତୁ ଦୁର୍ବଳ ନୁହନ୍ତି। ପ୍ରୟୋଜନ ବେଳେ ସେ ଲୁହାଠାରୁ ମଧ୍ୟ ଦୃଢ଼ ହୋଇପାରନ୍ତି। ମାସେ ପାଖାପାଖି ବିତିଗଲା। ଦିନେ ଖବର ପାଇଲି, ତାଙ୍କୁ ପୁଣି ଥରେ ସଭାପତି ପଦରେ ନିଯୁକ୍ତି ଦେଇ ତାଙ୍କର ସମ୍ମାନ ଫେରାଇବାକୁ ହାଇକମାଣ୍ଡ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କୁ ନିର୍ଦ୍ଦେଶ ଦେଇଛନ୍ତି। ଏ ଖବର ପାଇ ମୁଁ ଶ୍ରୀ ପଟ୍ଟନାୟକଙ୍କୁ ଫୋନ୍ କରି ପଚାରିଲି, 'ସାର୍, ଆପଣଙ୍କୁ ଆଉ ଥରେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି' କରାଗଲେ ଆପଣ କ'ଣ ତାକୁ ଗ୍ରହଣ କରିବେ? ସେ ମୋ ପ୍ରଶ୍ନ ଶୁଣି ଟିକିଏ ନିରବ ରହିଲେ।

ତା'ପରେ କହିଲେ, 'ସାପଟିଏ ଚୋଟ ମାରିବାକୁ ଉଦ୍ୟତ ହେଲେ ତା' ଫଣାରେ ଆଘାତ ଦେବା ପ୍ରୟୋଜନ।' ମୁଁ ସେତିକିବେଳେ ଜାଣିଲି ସେ ସେତେବେଳର ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କ ଠିକଣା ଜାଗା ଦେଖାଇବା ଲାଗି ଏମିତି ଖେଳ ଖେଳିଥିଲେ, ନ ହେଲେ ସଭାପତି ହେବାଲାଗି ତାଙ୍କର ଲୋଭ ନ ଥିଲା। ସେଇଆ ହେଲା। ଓଡ଼ିଶା ସରକାର ନିର୍ଦ୍ଦେଶନାମା ବାହାର କଲେ ଯେ ଜାନକୀବାବୁ ପୁଣିଥରେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ହେଲେ; ମାତ୍ର ଗୋଟାଏ ଦିନ ପରେ ଜାନକୀବାବୁ ତାଙ୍କ ପାଖେ ସମୟ ନାହିଁ କହି ଏଇ ପଦକୁ ପ୍ରତ୍ୟାଖ୍ୟାନ କରିଦେଲେ।

ଚତୁର୍ଥ ଘଟଣା ସେ ଆସାମର ରାଜ୍ୟପାଳ ଥିବା ସମୟର କଥା। ବୋଧହୁଏ ୨୦୧୦ କି ୨୦୧୧ର କଥା। କେନ୍ଦ୍ର ସାହିତ୍ୟ ଏକାଡେମୀର ପକ୍ଷରୁ ଗୌହାଟୀରେ ଭୀମଭୋଇ ଜାତୀୟ ସେମିନାର ଆୟୋଜନ ପାଇଁ ସ୍ଥିର ହେଲା। ତତ୍କାଳୀନ ଆବାହକ ଶ୍ରୀ ବିଭୂତି ପଟ୍ଟନାୟକ ଏବଂ ସାଧାରଣ ପରିଷଦ ସଭ୍ୟ ଶ୍ରୀ ସାତକଡ଼ି ହୋତା ମୋତେ କହିଲେ, ଜାନକୀବାବୁ ଓଡ଼ିଶା ଆସିଛନ୍ତି, ତାଙ୍କ ସହ ଆମର ଟିକେ ସାକ୍ଷାତ ବ୍ୟବସ୍ଥା କରାଅ। ଆମେ ତାଙ୍କୁ ଭୀମଭୋଇ ଜାତୀୟ ସେମିନାର୍ ଉଦ୍‌ଘାଟନ ପାଇଁ ଆମନ୍ତ୍ରଣ କରିବୁ। ସାକ୍ଷାତ ହେଲା ଏବଂ ଜାନକୀବାବୁ ଖୁସିରେ ରାଜି ହେଲେ। ଗୌହାଟିର ବିବେକାନନ୍ଦ ସ୍ମାରକୀ ପ୍ରେକ୍ଷାଳୟରେ ସଭା ଆୟୋଜିତ ହେଲା। ଉତ୍ସବର ସଭାପତି କେନ୍ଦ୍ର ସାହିତ୍ୟ ଏକାଡେମୀର ଅଧ୍ୟକ୍ଷ, ସୁନୀଲ କୁମାର ଗଙ୍ଗୋପାଧ୍ୟାୟ, ମୁଖ୍ୟବକ୍ତା ପଦ୍ମବିଭୂଷଣ ସୀତାକାନ୍ତ ମହାପାତ୍ର। ମଞ୍ଚ ଉପରେ ସଭିଙ୍କପାଇଁ ଏକାପ୍ରକାର ଚଉକି ପଡ଼ିଥାଏ, କେବଳ ରାଜ୍ୟପାଳଙ୍କ ପାଇଁ ଗୋଟେ ସିଂହାସନ ସମ ବଡ଼ ଚଉକି ପକାଯାଇଥାଏ। ମୋତେ ଲାଗିଲା, ସାହିତ୍ୟ ସଭାରେ ରାଜ୍ୟପାଳଙ୍କ ଲାଗି ବଡ଼ ଚଉକି ପଡ଼ିବା ଅସୁନ୍ଦର କଥା। ମୁଁ ଏକାଡେମୀର କର୍ମକର୍ତ୍ତାଙ୍କୁ ଏକଥା କହିଲି। ସେମାନେ ଉତ୍ତର ଦେଲେ, ରାଜଭବନରୁ ଯାହା ନିର୍ଦ୍ଦେଶ ଆସିଛି, ସେମାନେ ବଦଳେଇ ପାରିବେ ନାହିଁ। ମୋ ପରି ଜଣେ ଲେଖକର ଆପତ୍ତି ବା କିଏ କାହିଁକି ଶୁଣିବ? ମାତ୍ର ମୋର ମନ କହୁଥାଏ, ଏ ବ୍ୟବସ୍ଥା ଭୁଲ୍। ଏଥିରେ ଜାନକୀବାବୁଙ୍କର ସମ୍ମାନ ବଢ଼ିବ ନାହିଁ, କମିବ। ସେତେବେଳକୁ ରାଜ୍ୟପାଳ ଜାନକୀବଲ୍ଲଭ ଆସି ତଳ ମହଲାରେ ଲିଫ୍‌ଟ ପାଖରେ ପହଞ୍ଚିଗଲେଣି। ମୁଁ ଶିଡ଼ିରେ ଓହ୍ଲେଇ ଯାଇ ତାଙ୍କ କାନ ପାଖେ ଏକଥା କହିଲି। ସେ କହିଲେ, "ତୁମେ ଯାଇ ସେ ଚଉକିକୁ ହଟାଅ। ମୁଁ ସୁନୀଲ ଗଙ୍ଗୋପାଧ୍ୟାୟଙ୍କର ଜଣେ ମୁଗ୍ଧ ପାଠକ। ସୀତାକାନ୍ତବାବୁ ମୋ ଭାଷାର ବଡ଼ କବି। ସେମାନଙ୍କଠାରୁ ଉଚ୍ଚ ଆସନରେ ମୁଁ ବସିବି କିଭଳି? ତାଙ୍କ ନିର୍ଦ୍ଦେଶ ଶୁଣିବାମାତ୍ରେ ମୁଁ ପ୍ରେକ୍ଷାଳୟକୁ ଫେରିଆସି ବଡ଼ ଚଉକିଟି ହଟେଇ ଅନ୍ୟ ଗୋଟିଏ ସାଧାରଣ ଚଉକି ପକେଇବା ବ୍ୟବସ୍ଥା କଲି। ରାଜ୍ୟପାଳଙ୍କ ଅଫିସ୍‌ର ଅଧିକାରୀମାନେ ବିରକ୍ତ ହୋଇ ଅନେଇଥାଆନ୍ତି – ଇଏ କିଏ ଶେଷ ମୁହୂର୍ତ୍ତରେ ମଞ୍ଚର ବ୍ୟବସ୍ଥା ଅଦଳବଦଳ କରୁଛି! ରାଜ୍ୟପାଳ ପ୍ରବେଶ କରି ବ୍ୟବସ୍ଥା ଦେଖିଲେ। ମୋ ଆଡ଼କୁ ଅନେଇ ପ୍ରଶଂସାସୂଚକ ସ୍ମିତ ହସଟିଏ ହସିଲେ। ସେଦିନ ତାଙ୍କର ଏହି ବିଚାର ମୋତେ କେବଳ ମୁଗ୍ଧ କରି ନ ଥିଲା, ପ୍ରେକ୍ଷାଳୟରେ ଉପସ୍ଥିତ ଅନେକଙ୍କୁ ପ୍ରଭାବିତ କରିଥିଲା।

ଜାନକୀବଲ୍ଲଭ ପଟ୍ଟନାୟକ ଜଣେ ସାଧାରଣ ପ୍ରାଥମିକ ବିଦ୍ୟାଳୟ ଶିକ୍ଷକଙ୍କର ସନ୍ତାନ ଭାବରେ ଜନ୍ମଗ୍ରହଣ କରିଥିଲେ। ସେ ସମୟ ଓଡ଼ିଶାର ଏଭଳି ଜଣେ ସାଧାରଣ ପିତା ବା କଅଣ କରିପାରିଥିବେ? ତାହା ସତ୍ତ୍ୱେ ଶେଷ ପର୍ଯ୍ୟନ୍ତ ଜାନକୀବଲ୍ଲଭ ପଟ୍ଟନାୟକ କହୁଥିଲେ, ସେ ଯାହା କିଛି ହୋଇଛନ୍ତି ସେସବୁ ପିତା ଗୋକୁଳାନନ୍ଦଙ୍କ ଆଶୀର୍ବାଦ ଯୋଗୁଁ ହୋଇପାରିଛନ୍ତି। ନିଜ ପିତାମାତାଙ୍କ ପ୍ରତି ଅଚଳାଚଳ ଭକ୍ତି ଏବଂ ଓଡ଼ିଶାର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କ ଉପରେ ଅଖଣ୍ଡ ବିଶ୍ୱାସ ତାଙ୍କର ଜୀବନର ବଡ଼ ଶକ୍ତି ଥିଲା। ସେ ସବୁବେଳେ କହୁଥିଲେ, ଜଗନ୍ନାଥଙ୍କ ନିର୍ଦ୍ଦେଶ ବିନା ଘାସଟିଏ ମଧ୍ୟ ହଲେ ନାହିଁ।

ଜାନକୀବଲ୍ଲଭ ନିଜ ଜୀବନରେ ପ୍ରତିଷ୍ଠାଲାଭ ପାଇଁ କାହାରି ଆଶ୍ରୟ ଲୋଡ଼ି ନାହାନ୍ତି। ମାତ୍ର ତାଙ୍କର ସାହାଯ୍ୟ-ଆଶୀର୍ବାଦ ଓଡ଼ିଶାର ବହୁ ବ୍ୟକ୍ତିଙ୍କୁ ରାଜନୀତି ଓ ସାଧାରଣ ଜୀବନରେ ପ୍ରତିଷ୍ଠା ଆଣିଦେଇଛି। ତାଙ୍କ ସହ ଯିଏ ମିଶିଛି ସେ ଅନୁଭବ କରିଛି ଯେ ସେ କିଭଳି ଥିଲେ ଧୈର୍ଯ୍ୟର ଯୁଧିଷ୍ଠିର। କୌଣସି ଝଡ଼ତୋଫାନରେ ସେ ବିଚଳିତ ହୋଇପଡୁ ନ ଥିଲେ। ଆଦ୍ୟ ଜୀବନରୁ ସଂଗ୍ରାମ ଓ ସଂଘର୍ଷ ସହ ଘନିଷ୍ଠ ପରିଚୟ ତାଙ୍କୁ ଧୈର୍ଯ୍ୟ ଓ ସହନଶୀଳତାକୁ ଶାଣିତ କରିଥିଲା। ଅଧ୍ୟୟନ, ଅଧ୍ୟବସାୟ ଏବଂ ଅନୁଶାସନକୁ ସେ ଆଜୀବନ ଗୁରୁତ୍ୱ ଦେଇ ସଫଳତାର ଶିଖର ଆରୋହଣ କରିପାରିଥିଲେ। ଓଡ଼ିଶାର ରାଜନୀତିରେ ସେ ଆଣିଥିଲେ ସ୍ଥିରତା ଏବଂ ସମୃଦ୍ଧି। ମୁଖ୍ୟମନ୍ତ୍ରୀ ଭାବେ ୧୯୮୦ରେ ସେ ଓଡ଼ିଶାର ଦାୟିତ୍ୱ ଗ୍ରହଣ ପୂର୍ବରୁ ଓଡ଼ିଶାର ରାଜନୀତି ଅସ୍ଥିରତାପୂର୍ଣ୍ଣ ଥିଲା। ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ଭାଷା ପ୍ରତି ତାଙ୍କର ଐକାନ୍ତିକ ଅନୁରାଗ ଥିଲା। ସେଥିପାଇଁ ସେ ସବୁବେଳେ କହୁଥିଲେ, ଓଡ଼ିଶାକୁ ତାହାର ସମ୍ମାନ ମିଳିବା ଦରକାର। ତାଙ୍କର ସ୍ୱପ୍ନର ଦିଗ୍‌ବଳୟରେ ସବୁବେଳେ ଏକ ସମୃଦ୍ଧ ଓଡ଼ିଶାର ଛବି ଉଙ୍କି ମାରୁଥିଲା। ସେ ବିଶ୍ୱାସ କରୁଥିଲେ, ଆଜି ନ ହେଲେ ବି କାଲି ଓଡ଼ିଶା ଦିନେ ଭାରତବର୍ଷର ଶ୍ରେଷ୍ଠ ରାଜ୍ୟ ରୂପେ ପରିଗଣିତ ହେବ।

ଶ୍ରୀଯୁକ୍ତ ପଟ୍ଟନାୟକ ଖୁବ୍ କମ୍ ବୟସରେ ଦୁଇ ଦୁଇଟି ସମ୍ବାଦପତ୍ରର ସଂପାଦକ ହୋଇଥିଲେ। ଗୋଟିଏ 'ଇଷ୍ଟର୍ଣ୍ଣ ଟାଇମ୍‌ସ' ଏବଂ ଆରଟି 'ପ୍ରଜାତନ୍ତ୍ର'। ସେହି ସମୟରୁ ସେ ଏଭଳି ଏକ ଗଦ୍ୟ ଶୈଳୀର ପ୍ରୟୋଗ ଆରମ୍ଭ କରିଥିଲେ ଯାହା ସାଧାରଣରୁ ସାଧାରଣ ମଣିଷ ପାଖେ ଯାଇ ପହଞ୍ଚିପାରୁଥିଲା। ଯେତେବେଳେ ତାଙ୍କୁ କୌଣସି କାରଣରୁ 'ପ୍ରଜାତନ୍ତ୍ର'ରୁ ବିଦାୟ ନେବାକୁ ପଡ଼ିଲା ସେତେବେଳେ ସେ ଯାଇ ନିଜେ ଖଣ୍ଡିଏ ପତ୍ରିକା ପ୍ରକାଶ କରିଥିଲେ। ସେହି 'ପୌରୁଷ' ପତ୍ରିକାର ପ୍ରଥମ ପୃଷ୍ଠାରେ ସେ 'କର୍ଣ୍ଣବେଣୀ ସଂହାରମ୍'ର ଶ୍ଳୋକଟିଏ ଉଦ୍ଧାର କରୁଥିଲେ, ଯାହାର ଅର୍ଥ ହେଉଛି– ଉଚ୍ଚ କୁଳରେ ଜନ୍ମ ହେବା ଦୈବର ଅଧୀନ, ପୁରୁଷକାର ମୋହର ଅଧୀନ। ଏହି ବାକ୍ୟ ଦୁଇଟି ଭିତରେ ଯେଉଁ ପ୍ରଚଣ୍ଡ ଆତ୍ମବିଶ୍ୱାସ, ଯେଉଁ ସଂକଳ୍ପ ଏବଂ ଯେଉଁ ଦୃଢ଼ ଇଚ୍ଛାଶକ୍ତି ତାହା ସେଦିନ କଟକ ସହରର ଜଣେ ସାଧାରଣ ଯୁବକଙ୍କୁ ଓଡ଼ିଶା ଇତିହାସର ଅସାଧାରଣ ରାଷ୍ଟ୍ରନେତାରେ ପରିଣତ କରିଥିଲା।

ସାହିତ୍ୟ କ୍ଷେତ୍ରରେ ଜାନକୀବଲ୍ଲଭଙ୍କ ଅବଦାନ ଅତ୍ୟନ୍ତ ଉଲ୍ଲେଖନୀୟ। ଭାରତୀୟ ସାହିତ୍ୟର ତିନି ମହାଗ୍ରନ୍ଥ ରାମାୟଣ, ମହାଭାରତ ଏବଂ ଶ୍ରୀମଦ୍ ଭାଗବତର ଗଦ୍ୟରୂପ

ରଚନା କରି ସେ ଓଡ଼ିଶାର ବାଣୀଭଣ୍ଡାରକୁ ସମୃଦ୍ଧ କରିଯାଇଛନ୍ତି। ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ, ଓଡ଼ିଆ ଅକ୍ଷର ଏବଂ ଓଡ଼ିଶାର ଆଧ୍ୟାତ୍ମିକ ପରମ୍ପରା ବଞ୍ଚି ରହିଥିବ, ସେତେଦିନ ପର୍ଯ୍ୟନ୍ତ ଜାନକୀବଲ୍ଲଭଙ୍କ ଏହି କୃତିତ୍ରୟ ଗାଁ ଗାଁରେ ପଠିତ ଓ ଆଲୋଚିତ ହେଉଥିବ।

ଜାନକୀବଲ୍ଲଭ ଏଭଳି ଜଣେ ବିରଳ ରାଜନେତା ଥିଲେ ଯାହାଙ୍କର ସଂସ୍କୃତ ଭାଷାରେ ଅସାଧାରଣ ପାଣ୍ଡିତ୍ୟ ପାଇଁ ତାଙ୍କୁ ରାଷ୍ଟ୍ରିୟ ସଂସ୍କୃତ ବିଶ୍ୱବିଦ୍ୟାଳୟ (ତିରୁପତି)ର କୁଳାଧିପତି ନିଯୁକ୍ତ କରାଯାଇଥିଲା। ସେତେବେଳେ ସେ ଆସାମର ରାଜ୍ୟପାଳ ନ ଥିଲେ। ସଂସ୍କୃତରେ ତାଙ୍କର ଅଦ୍ଭୁତ ପାରଦର୍ଶିତା ଯୋଗୁଁ ତାଙ୍କୁ ଏହି ସମ୍ମାନ ମିଳିଥିଲା। କ୍ୱଚିତ୍ କୌଣସି ରାଜନେତା ଆଉ ଓଡ଼ିଶାରେ ଆସିବେ, ଯିଏ ଏକ ସମୟରେ ସାହିତ୍ୟ, ସାମ୍ବାଦିକତା ଓ ରାଜନୀତିର ତ୍ରିବେଣୀ ସଂଗମ ପାଲଟିବାର ସାଧ-ସାମର୍ଥ୍ୟ ରଖୁଥିବେ।

ଆସାମ ରାଜ୍ୟପାଳ ଦାୟିତ୍ୱରୁ ମୁକ୍ତ ହେବା ପରେ ସେ ନିଜର ଆତ୍ମଜୀବନୀ ଲେଖିବେ ବୋଲି ସ୍ଥିର କରିଥିଲେ। ମାତ୍ର ସେ କାମ ଅସମ୍ପୂର୍ଣ୍ଣ ରଖି ସେ ବାହୁଡ଼ିଗଲେ। କୁହାଯାଏ, ପ୍ରାଣୀର ଭଲମନ୍ଦ ବାଣୀ, ମରଣକାଳେ ତାହା ଜାଣି। ଜାନକୀବଲ୍ଲଭ କିଭଳି ବ୍ୟକ୍ତି ଥିଲେ ତାହା ତାଙ୍କ ମୃତ୍ୟୁରୁ ଜଣାପଡ଼ିଛି।

ଆଜି ତାଙ୍କ ଅବର୍ତ୍ତମାନରେ ବହୁ କଥା ମନେପଡୁଛି। କି ବିରାଟ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ ସେ! କି ଜ୍ଞାନ, କି ବାଗ୍ମିତା ଏବଂ କି ସାଧନା! ସେ ଯଦି ହାଇକମାଣ୍ଡ-କୈନ୍ଦ୍ରିକ କଂଗ୍ରେସ ରାଜନୀତିରେ ନ ଥାଇ ଆଞ୍ଚଳିକ ଦଳର ମୁଖିଆ ହୋଇଥାଆନ୍ତେ, ତାହାହେଲେ ଓଡ଼ିଶାପାଇଁ ଆହୁରି ଅନେକ କାମ କରିଯାଇପାରିଥାଆନ୍ତେ।

ଜାନକୀବଲ୍ଲଭ ପୃଥିବୀକୁ ଆସିଲାବେଳେ ସାଧାରଣ ମଣିଷର ପରିଚୟ ନେଇ ଆସିଥିଲେ, ଅଥଚ ବିଦାୟ ନେଇଗଲାବେଳକୁ ସେ ଅସାଧାରଣ ପାଲଟି ଯାଇଥିଲେ। କବି ଗୋଦାବରୀଶ ମହାପାତ୍ରଙ୍କ କବିତାର ଏଇ କିଛି ଧାଡ଼ିରେ ତାଙ୍କୁ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି–

"ତୁମେ ତ ଜାଣିଲ ନାହିଁ କିଏ ଦେଲା ଗଳେ ଫୁଲମାଳା,
ତୁମେ ତ ଦେଖିଲ ନାହିଁ କିଏ ତୁମ ପଛେ ପଛେ ଗଲା।
ଚରଣ ପରଶି କିଏ ମଥା ନୋଇଁ ଦେଲା ଅଶ୍ରୁ ଢାଳି,
କେ କରିଲା ସଂକୀର୍ତ୍ତନ ତୁମ ନାମେ ଦେଇ କରତାଳି।
ତୁମେ ତ ଚାହିଁଲ ନାହିଁ ଆଖି ମେଲି କିଏ ହେଲେ ଉଭା,
ତୁମ ଶୁଭ୍ରତନୁ ପାଖେ କରଯୋଡ଼ି ବାଳ ବୃଦ୍ଧ ଯୁବା।
ତୁମେ ତ ହସିଲ ନାହିଁ, ତୁମ ଯିବା ପଥ ଧାରେ ଧାରେ
କାତରେ ଡାକିଲା ଜାତି ନିରାଶାର ଘୋର ଅନ୍ଧକାରେ।"



# ଅନୁପମ ସାହିତ୍ୟ ସାଧକ ଜାନକୀବଲ୍ଲଭ

**ପ୍ରଭାକର ସ୍ୱାଇଁ**

ଭାରତୀୟ ରାଜନୀତିକ ଆକାଶରେ ଯେପରି ଦୀପ୍ତିମନ୍ତ, ଆଧୁନିକ ଭାରତୀୟ ସାହିତ୍ୟ ଜଗତରେ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସ୍ଥାନ ସେହିପରି ଅନୁପମ ଓ ଅତୁଳନୀୟ । ଶୈଶବରେ ନିଜ ପିତା ଗୋକୁଳାନନ୍ଦ ପଟ୍ଟନାୟକଙ୍କ ଠାରୁ ଜାନକୀବଲ୍ଲଭ ଭାରତୀୟ ସଂସ୍କୃତି, ପରମ୍ପରା ସମ୍ପର୍କିତ ପ୍ରାପ୍ତ ନୀତି ଉପଦେଶଗୁଡ଼ିକ ନିଜ ଜୀବନଚର୍ଯ୍ୟାରେ ପ୍ରୟୋଗ କରିଥିଲେ । ଜାନକୀବଲ୍ଲଭ ଥିଲେ ପ୍ରବୀଣ ପ୍ରାଚ୍ୟ ଶାସ୍ତ୍ରବିତ୍, ସୁଯୋଗ୍ୟ ସମ୍ପାଦକ, ବିଶିଷ୍ଟ କବି, ଚିନ୍ତାଶୀଳ ପ୍ରାବନ୍ଧିକ, ସଫଳ ଅନୁବାଦକ, ମନନଶୀଳ ଦାର୍ଶନିକ, ସରସ ଚରିତ ଲେଖକ, ସର୍ବୋପରି ଜଣେ ବଳିଷ୍ଠ ସ୍ତମ୍ଭକାର । ଗୋଟିଏ ଜାତି ଓ ତା'ର ସ୍ୱରୂପକୁ ସଫଳ ଭାବରେ ପ୍ରକଟିତ କରିବାକୁ ହେଲେ ସେହି ଜାତିର ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶ ଦିଗରେ ଗୁରୁତ୍ୱାରୋପ ଏକାନ୍ତ ଜରୁରୀ । ଜାନକୀବଲ୍ଲଭଙ୍କ ଭାଷାରେ– "ସାହିତ୍ୟ ହେଉଛି ଗୋଟିଏ ଜାତିର ପ୍ରାଣ ଏବଂ ଆଶା, ଆକାଂକ୍ଷା, ସୁଖ, ଦୁଃଖ, ଆନନ୍ଦ, ସ୍ୱପ୍ନ, ସାଫଲ୍ୟ, ଗର୍ବ ଓ ଗୌରବର ସ୍ୱରଲିପି । ସାହିତ୍ୟ ବିନା କୌଣସି ଜାତି ଅଗ୍ରଗତି କରିପାରିବ ନାହିଁ । ସାହିତ୍ୟ ବ୍ୟତିରେକେ ସଭ୍ୟତା ନାହିଁ କି ଭାଷା ନାହିଁ । ଭାଷା ନ ଥିଲେ ସାହିତ୍ୟ ନାହିଁ କି ସଭ୍ୟତା ନାହିଁ । ସଭ୍ୟତା ନ ଥିଲେ କୌଣସି ଜାତିର ବଞ୍ଚିବାର ଅଧିକାର ନାହିଁ ।" ନିଜ ଜାତି, ଜାତୀୟତା, ଭାଷା ଏବଂ ସାହିତ୍ୟକୁ ନେଇ ସ୍ୱପ୍ନ ଦେଖୁଥିବା ଏହି ମନସ୍ୱୀ ସ୍ରଷ୍ଟା ଜାନକୀବଲ୍ଲଭଙ୍କର ସାହିତ୍ୟିକ ଦିଗନ୍ତର ଆଦ୍ୟ ଉନ୍ମେଷ ଘଟିଥିଲା ତାଙ୍କର 'ଅଶୋକ' ଶୀର୍ଷକ କବିତା ମଧ୍ୟରେ । ସେତେବେଳକୁ ସେ ବୀରମାଟି ଖୋର୍ଦ୍ଧାର ସ୍କୁଲ ଛାତ୍ର । ତାଙ୍କ ଭିତରେ ଜାତି ଓ ଦେଶକୁ ନେଇ ଅନେକ ସ୍ୱପ୍ନ । ଜାନକୀବଲ୍ଲଭଙ୍କର ଶୈଶବର ସେହି ସ୍ୱପ୍ନର ସଫଳ ବାଣୀରୂପ ହେଉଛି 'ଇନ୍ଦ୍ରଜିତ୍ ବଧ' ନାଟକ ସହିତ 'ଗରିଲା ଯୁଦ୍ଧ' ପ୍ରବନ୍ଧ ଏବଂ 'ବୀରବାଳା' କବିତା । ଖୋରଧା ମାଟିର ଜାତୀୟ ଆହ୍ୱାନ ସହିତ ନିଜ ପିତା ଗୋକୁଳାନନ୍ଦଙ୍କର ସାଂସ୍କୃତିକ ପ୍ରଭାବ ପରବର୍ତ୍ତୀକାଳରେ ଜାନକୀବଲ୍ଲଭଙ୍କୁ ଜଣେ ସଫଳ ସାହିତ୍ୟିକ ହେବାର ସୌଭାଗ୍ୟ ଆଣିଦେଇଥିଲା ।

ସହସ୍ର ବର୍ଷର ସାଂସ୍କୃତିକ ନଗରୀ କଟକ ସମେତ ରେଭେନ୍ସା କଲେଜ ଏବଂ ପ୍ରଜାତନ୍ତ୍ର ପ୍ରଚାର ସମିତି ଜାନକୀବଲ୍ଲଭଙ୍କ ତାରୁଣ୍ୟରେ ମାଦକତା ଭରିଦେବା ସହିତ ତାଙ୍କ ସାହିତ୍ୟିକ ଜୀବନର ଦୃଷ୍ଟି ଓ ଦିଗ୍‌ବଳୟକୁ ବ୍ୟାପକ ଏବଂ ସୁଦୂରପ୍ରସାରୀ କରିଥିଲା ।

ପ୍ରଜାତନ୍ତ୍ର ପ୍ରଚାର ସମିତିର ତତ୍କାଳୀନ ଅଧ୍ୟକ୍ଷ ଡଃ ହରେକୃଷ୍ଣ ମହତାବଙ୍କର ପ୍ରେରଣା ଯୁବକ ଜାନକୀବଲ୍ଲଭଙ୍କ ପ୍ରାଣରେ ଗଭୀର ଆତ୍ମପ୍ରତ୍ୟୟ ସୃଷ୍ଟି କରିଥିଲା। ଜାନକୀବଲ୍ଲଭଙ୍କର ବିଚକ୍ଷଣ ଧୀଶକ୍ତି, ସାରସ୍ୱତ ଦିଗନ୍ତ ଓ ଅଙ୍ଗୀକାରବଦ୍ଧତାକୁ ଉପଲବ୍ଧି କରି ଗୁଣୀ ଡଃ ମହତାବ ତାଙ୍କୁ 'ପ୍ରଜାତନ୍ତ୍ର' ସହିତ 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର ସମ୍ପାଦକର ଗୁରୁଦାୟିତ୍ୱ ଦେଇଥିଲେ। ସେହି ସୁଯୋଗରେ ଜାନକୀବଲ୍ଲଭଙ୍କର ଓଡ଼ିଶାର ସମଧର୍ମୀ ସାହିତ୍ୟ ସାଧକଙ୍କ ସହିତ ଅନାବିଳ ସମ୍ପର୍କ ଗଢ଼ିଉଠିଥିଲା। 'ପ୍ରଜାତନ୍ତ୍ର' ଥିଲା ସେକାଳରେ ତାଙ୍କ ପ୍ରଜ୍ଞା ଓ ପାରଦର୍ଶିତାକୁ ସଫଳତାର ସହିତ ପ୍ରକାଶ କରିବାର ମୂଳଭିତ୍ତି। ସେଥିରେ ସଫଳତାର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ ଜାନକୀବଲ୍ଲଭ। ସେ 'ପ୍ରଜାତନ୍ତ୍ର'ର ସମ୍ପାଦକ ଦାୟିତ୍ୱ ଗ୍ରହଣ କରିବାପରେ ତାହା ସମଗ୍ର ଓଡ଼ିଶାରେ ଏକ ପ୍ରମୁଖ ଦୈନିକ ସମ୍ବାଦପତ୍ର ଭାବରେ ଆତ୍ମପ୍ରକାଶ କରିଥିଲା। ବିଶେଷକରି ଏହାର ସମ୍ପାଦକୀୟ ଓ ସାହିତ୍ୟ ପୃଷ୍ଠାର ଗୌରବ ବୃଦ୍ଧି ପାଇଥିଲା। ପ୍ରଜାତନ୍ତ୍ରରେ ତା୨୭.୧୨.୧୯୫୨ରିଖରେ 'ଭାଷା ସମସ୍ୟା' ଶିରୋନାମରେ ସେ ଯେଉଁ ସମ୍ପାଦକୀୟ ପ୍ରକାଶ କରିଥିଲେ ତାହା ଆମର ମାତୃଭାଷା ଓଡ଼ିଆ ସହିତ ହିନ୍ଦୀ ଓ ଇଂରେଜୀକୁ ଏକସୂତ୍ରରେ ଆବଦ୍ଧ କରି ଜାତୀୟ ସଂହତି ପ୍ରତିଷ୍ଠା କରିବାରେ ସହାୟକ ହୋଇଥିଲା। 'ପ୍ରଜାତନ୍ତ୍ର'ର ତା୧୯.୧୧.୧୯୫୨ରିଖର ଅନ୍ୟ ଏକ ସମ୍ପାଦକୀୟ 'ସଂସ୍କୃତ ଓ ସଂସ୍କୃତି' ଶିରୋନାମରେ ସେ ଉଲ୍ଲେଖ କରିଥିଲେ– "ଭାରତର ପ୍ରାଚୀନ ସାହିତ୍ୟ, ଇତିହାସ, ଧର୍ମ, ସାମାଜିକ ବ୍ୟବସ୍ଥା ଯାହାକୁ ନେଇ ଏ ଦେଶର ସଂସ୍କୃତି ଗଢ଼ାଯାଇଛି, ସଂସ୍କୃତ ଭାଷା ମାଧ୍ୟମରେ କେବଳ ତାହାର ପ୍ରତ୍ୟକ୍ଷ ପରିଚୟ ମିଳେ। ଏ ଦେଶର ସଂସ୍କୃତିକୁ ଅନାଦର କରି ନୂଆ ଭାରତ ଯେ ଗଢ଼ାଯାଇପାରିବ ନାହିଁ, ଏ କଥା ଆମେ କହୁ ନାହୁଁ। କିନ୍ତୁ ଶରୀରର ଆତ୍ମା ପରି ବୈଷୟିକ ଉନ୍ନତିର ଆତ୍ମା ହେଉଛି ଆଧ୍ୟାତ୍ମିକ ବିକାଶ। ତେଣୁ ନୂଆ ଭାରତ ଗଠନ କରିବାକୁ ହେଲେ ଭାରତର ଆତ୍ମାକୁ ଯୁଗେ ଯୁଗେ ଚିହ୍ନିବାକୁ ହେବ ଏବଂ କୌଣସି ଭାଷା ତାହାର ଅମୂଲ୍ୟ ଶାସ୍ତ୍ରୀୟ ବିଭବ ମଧ୍ୟରେ ଯଦି ସେ ଆତ୍ମାର ପରିଚୟ ଦେଉଥାଏ, ତା' ହେଲା ସଂସ୍କୃତ।" ଭାରତକୁ ଏବଂ ତାହାର ଆତ୍ମାକୁ ଚିହ୍ନିବାକୁ ହେଲେ ସଂସ୍କୃତ ଭାଷା ପରି ତାହାର ଶାସ୍ତ୍ରୀୟ ସମ୍ପଦକୁ ଚିହ୍ନିବାକୁ ହେବ ବୋଲି ସେ ସେଦିନ ତାଙ୍କର ସମ୍ପାଦକୀୟ ପୃଷ୍ଠାରେ ଦୃଢ଼ ଭାବରେ ମତବ୍ୟକ୍ତ କରିଥିଲେ।

କବିତା ଥିଲା ଜାନକୀବଲ୍ଲଭଙ୍କର ହୃଦୟର ସ୍ୱତଃ ପରିପ୍ରକାଶ। ତାଙ୍କ ଜୀବନପଥ ଖୁବ୍ କଣ୍ଟକିତ ଓ ବନ୍ଧୁର। ପ୍ରତ୍ୟେକ ପଦପାତରେ ବାଧା ଓ ବିଘ୍ନ। ଛାତ୍ରଜୀବନରୁ ଜୀବନର ଅପରାହ୍ଣ ପର୍ଯ୍ୟନ୍ତ ସେ ଖୁବ୍ ଝଡ଼ଝଞ୍ଜାର ସମ୍ମୁଖୀନ ହୋଇଛନ୍ତି। ସେହିକଥାକୁ ସ୍ରଷ୍ଟା ତାଙ୍କର 'ସିନ୍ଧୁ ଉପତ୍ୟକା' କବିତା ସଙ୍କଳନ ଅନ୍ତର୍ଗତ "ଯେ ଜୀବନ ହାରିବାପାଇଁ ନୁହେଁ, ଉଠିପଡ଼ି ନିଜର ପ୍ରାପ୍ୟ ଲାଭ କରିବାପାଇଁ ପ୍ରଭୃତି ମଧ୍ୟରେ ଯଥାର୍ଥରେ ପ୍ରକାଶ କରିଛନ୍ତି। ରାଜ୍ୟରୁ କେନ୍ଦ୍ର ପର୍ଯ୍ୟନ୍ତ ଦୀର୍ଘ ୫୦ ବର୍ଷରୁ ଉର୍ଦ୍ଧ୍ୱକାଳ ଧରି ପ୍ରତ୍ୟକ୍ଷ ରାଜନୀତିର ସର୍ବୋଚ୍ଚ ଶିଖରରେ ରହିଥିଲେ ହେଁ ଜାନକୀବଲ୍ଲଭଙ୍କର ବ୍ୟକ୍ତିତ୍ୱର ଯଥାର୍ଥ ବିକାଶ ଘଟିଛି ତାଙ୍କର ସାହିତ୍ୟ ସୃଷ୍ଟିର

ନାନା ଦିଗନ୍ତ ମଧ୍ୟରେ। ତାଙ୍କ ରଚିତ କବିତାଗୁଡ଼ିକ ହୋଇଛି ତାଙ୍କ ଜୀବନ ଓ ଜୀବିକାର ନିଚ୍ଛକ ପ୍ରତିଛବି। ସିନ୍ଧୁ ଉପତ୍ୟକାର ଉର୍ବର ଭୂମି ହେଉଛି ଭାରତବର୍ଷ। ମହେଞ୍ଜୋଦାରୋ ଓ ହରପ୍ପା ହେଉଛି ଭାରତୀୟ ସଭ୍ୟତାର ପ୍ରାଚୀନତମ ନିଦର୍ଶନ। ପୁଣି ଗଙ୍ଗା, ଯମୁନା, ସରସ୍ୱତୀଠାରୁ ଆରମ୍ଭ କରି ଅନେକ ଗ୍ରାମ୍ୟ ନଦୀ ଏହି ଆର୍ଯ୍ୟଭୂମିକୁ କରିଛି ମହାନ୍ ଓ ପବିତ୍ର। ନାନା ଦିଗରୁ ବିଦେଶୀ ଶାସକଙ୍କ ଦୌରାତ୍ମ୍ୟରୁ ପବିତ୍ର ଭାରତବର୍ଷ ନାନା ଆବର୍ଜନାରେ ପରିପୂର୍ଣ୍ଣ ହୋଇଛି। ମାତ୍ର ଭାରତବର୍ଷରେ ବସବାସ କରୁଥିବା ହିନ୍ଦୁ, ମୁସଲମାନ, ଜୈନ, ଖ୍ରୀଷ୍ଟିୟାନ, ବୌଦ୍ଧ ବା ଅନ୍ୟାନ୍ୟ ଧର୍ମ ସମ୍ପ୍ରଦାୟର ନାନା ମତ ସତ୍ତ୍ୱେ ଏହି ଭୂମି ତାହାର ସ୍ୱାତନ୍ତ୍ର୍ୟ ନେଇ ସମଗ୍ର ବିଶ୍ୱରେ ନିଜସ୍ୱ ରୂପକୁ ପ୍ରକଟିତ କରିଛି। ଭାରତୀୟ ଅଖଣ୍ଡତା, ସାର୍ବଭୌମତା ଓ ସଂହତି ହିଁ ଏହି ଭୂମିକୁ ସମଗ୍ର ବିଶ୍ୱରେ କରିଛି ପବିତ୍ର-ବିଶ୍ୱ ମିଳନଭୂମିର ମୁକ୍ତିତୀର୍ଥ। ସଙ୍କଳନ 'ସିନ୍ଧୁ ଉପତ୍ୟକା' କବିତା ମଧ୍ୟରେ ସ୍ରଷ୍ଟା ଜାନକୀବଲ୍ଲଭ ଏହି କଥାକୁ ପ୍ରକାଶ କରିଛନ୍ତି।

"ସିନ୍ଧୁର ଉର୍ବର ଉପତ୍ୟକା
ପଛେ ତା'ର ଆକୁମାରୀ କାଶ୍ମୀରର ଭୂମି
ଆଗେ ପର୍ବତ ବଳୟ
ତୁଷାରାଚ୍ଛାଦିତ ନଭଶ୍ଚୁମ୍ବୀ।" (ସିନ୍ଧୁ ଉପତ୍ୟକା)

କଣ୍ଟକିତ ପଥ କବିର ପ୍ରିୟ ପଥ। କଣ୍ଟା ଥିଲେ ଫୁଲ ଅଛି। କଣ୍ଟା ଥିଲେ ସ୍ୱାଦ ଅଛି। ସୁତରାଂ ଶ୍ରମ ସହିତ ସ୍ୱେଦ, କଣ୍ଟା ସହିତ ଶୋଣିତ ଧାରାଭିତରେ ଆତଯାତ ହୋଇ ଜୀବନବ୍ୟାପୀ ଚାଲିଛନ୍ତି ଜାନକୀବଲ୍ଲଭ। ଲକ୍ଷ୍ୟପଥରୁ ତିଳେ ହେଲେ ବି ସେ ବିଚ୍ୟୁତ ହୋଇ ନାହାନ୍ତି, ବରଂ ପ୍ରକାଶ କରିଛନ୍ତି–

"ମୋର ଯାତ୍ରାପଥ/ଦୀର୍ଘ କଙ୍କରିତ
କେତେ ଢିପ କେତେ ଖାଲ କ୍ୱଚିତ ମିଳଇ ସମତଳ
ଖାଲି କଣ୍ଟା ମାଇଲ ମାଇଲ
ମୁଁ ନିଶ୍ଚୟ କରିଅଛି ଯିବି ଏଇ ବାଟେ
ଥାଉ କଣ୍ଟା ଖାଲ ଢିପ/ମୁଁ ଚାଲିବି
ମୋତେ ନ ଓହରି/ମୋର ଲକ୍ଷ୍ୟ ପଥେ।" (ଅସୂୟା)

ଜାନକୀବଲ୍ଲଭଙ୍କ ସ୍ରଷ୍ଟାମାନସର ପରବର୍ତ୍ତୀ ପର୍ଯ୍ୟାୟର ସଫଳ ରଚନା ହେଉଛି ତାଙ୍କର ପ୍ରବନ୍ଧ ସଙ୍କଳନ 'ସ୍ୱପ୍ନ ଓ ସଙ୍କଳ୍ପ'। ଏହି ଗ୍ରନ୍ଥଟି 'ଯୁଗେ ଯୁଗେ ଓଡ଼ିଶା', 'ଭାରତୀୟ ଯୁଗପୁରୁଷ', 'ଏ ମାଟିର କୃତୀ ସନ୍ତାନ', 'ପରିବେଶ', 'ସାହିତ୍ୟ, ରାଜନୀତି ଓ ସଂସ୍କୃତି' ଓ 'ସ୍ୱପ୍ନ ଓ ସଂକଳ୍ପ' ଭାବେ ଛଅ ଭାଗରେ ବିଭକ୍ତ ହୋଇଛି। ପ୍ରଥମ ଭାଗରେ 'ଶ୍ରୀଜଗନ୍ନାଥ ଓ ଓଡ଼ିଶା', 'ଇତିହାସ ଓ ଓଡ଼ିଶା', 'ଓଡ଼ିଶା, ଭାରତ ପଦ୍ମଫୁଲର ପାଖୁଡ଼ା' ପ୍ରଭୃତି ନିବନ୍ଧ ରହିଥିବା ବେଳେ 'ଭାରତୀୟ ଯୁଗପୁରୁଷ' ଶିରୋନାମରେ ଗୌତମବୁଦ୍ଧଙ୍କ

ଠାରୁ ଆରମ୍ଭ କରି ଶ୍ରୀଚୈତନ୍ୟ, ରାମକୃଷ୍ଣ, ବିବେକାନନ୍ଦଙ୍କ ସମ୍ପର୍କରେ ତାତ୍ତ୍ୱିକ ଆଲୋଚନା ହୋଇଛି। 'ଏ ମାଟିର କୃତୀ ସନ୍ତାନ' ପର୍ଯ୍ୟାୟରେ ଜାନକୀବଲ୍ଲଭ ଆଦିକବି ସାରଳା ଦାସଙ୍କ ଠାରୁ ଉତ୍କଳକେଶରୀ ମହତାବଙ୍କ କୃତି ଓ କୃତିତ୍ୱର ଚର୍ଚ୍ଚା କରିଛନ୍ତି। ଏହି ପର୍ଯ୍ୟାୟରେ ରହିଛି 'ଆମ ଭାଷା ଓ ସାହିତ୍ୟର ଭବିଷ୍ୟତ', 'ପରିବର୍ତ୍ତିତ ସମାଜରେ ସାହିତ୍ୟିକର ଭୂମିକା' ପ୍ରଭୃତି ପ୍ରସଙ୍ଗ। ଓଡ଼ିଶା, ଓଡ଼ିଆ ଜାତି ସର୍ବୋପରି ଉତ୍କଳୀୟ ସାହିତ୍ୟ ସଂସ୍କୃତିର ଭୂୟୋବିକାଶପାଇଁ ପ୍ରୟାସୀ ହୋଇ ସେ ଯେଉଁ ସ୍ୱପ୍ନ ଦେଖିଛନ୍ତି ତାହାର ସଂକଳ୍ପ ରହିଛି ଆଲୋଚ୍ୟ ଗ୍ରନ୍ଥର ପ୍ରାୟ ପ୍ରତ୍ୟେକ ପୃଷ୍ଠାରେ। ଉତ୍କଳକୁ ପ୍ରାଚ୍ୟ ଭୂଖଣ୍ଡର ରୂପସୀ ଭାବରେ ବର୍ଣ୍ଣନା କରି ଏକ ଶିଳ୍ପସମୃଦ୍ଧ ସୁନାର ଓଡ଼ିଶା ଗଠନ ପାଇଁ ଦେଖିଥିବା ସ୍ୱପ୍ନକୁ ବାଣୀରୂପ ଦେଇଛନ୍ତି ଜାନକୀବଲ୍ଲଭ ଆଲୋଚ୍ୟ ଗ୍ରନ୍ଥ ମଧ୍ୟରେ। ମୂଳ ରାମାୟଣକୁ ନେଇ ପିତା ଗୋକୁଳାନନ୍ଦ ଲେଖିଥିବା 'ଜାନକୀବଲ୍ଲଭ ବିଳାସ' ଦ୍ୱାରା ପ୍ରଭାବିତ ଜାନକୀବଲ୍ଲଭ ଗଦ୍ୟ ଭାଷାରେ ରାମାୟଣର ସାରକଥା ଲେଖିଛନ୍ତି। ତାଙ୍କର ଏହି ଗ୍ରନ୍ଥ ମଧ୍ୟରେ ରହିଛି ସ୍ରଷ୍ଟା ମାନସର ମୌଳିକତା, ପ୍ରଜ୍ଞା ଓ ପାଣ୍ଡିତ୍ୟର ନିଦର୍ଶନ। ଅନୁରୂପଭାବେ ସେ ବ୍ୟାସକୃତ ମହାଭାରତର ସାରକଥା କାହାଣୀକୁ ସଂକ୍ଷିପ୍ତରେ ଗଦ୍ୟାକାରରେ ଉପସ୍ଥାପନ କରି ଆମ ଭାଷାସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି। ଡକ୍ଟର ଗୋବିନ୍ଦ ଭୂୟାଁ ଲେଖିଛନ୍ତି– "ଜାନକୀବଲ୍ଲଭ ପଟ୍ଟନାୟକ ଜଣେ କର୍ମଯୋଗୀ। ଜାନକୀବଲ୍ଲଭଙ୍କ ସାରସ୍ୱତ ପ୍ରତିଭା ସମ୍ପର୍କରେ ଉଲ୍ଲେଖ କରି ପ୍ରତ୍ୟେକଟି ମୁହୂର୍ତ୍ତକୁ ଯଥାଯଥ ଭାବରେ ବିନିଯୋଗ କରିବାରେ ସେ ସଚେତନ, ସଚେଷ୍ଟ ଓ ସଫଳ। ରାଜନୀତିର ଘନଘଟା ଭିତରେ ଥାଇ ବି ସାହିତ୍ୟନିମଗ୍ନ। ସାଧାରଣ କବିତା ବା ପ୍ରବନ୍ଧ ଭିତରେ ସେ ସୀମିତ ନୁହନ୍ତି। ସେ ସଂସ୍କୃତଜ୍ଞ ପଣ୍ଡିତ। ସେ ସଂସ୍କୃତିପ୍ରାଣ। ଆଧ୍ୟାତ୍ମିକତାବାଦୀ। ଶୁଦ୍ଧଚେତା। ତାଙ୍କର ଭକ୍ତି, ତାଙ୍କର ଈଶ୍ୱରପ୍ରୀତି ହେଉଛି ମାନବିକତା ଓ ଉଚ୍ଚମୂଲ୍ୟବୋଧର ଉଜ୍ଜ୍ୱଳ ଉତ୍ତରଣ। ସେହି ମହତ୍ତର ଅବବୋଧକୁ ଆଧାର କରି ସେ ଲେଖିଛନ୍ତି ବ୍ୟାସକୃତ ମହାଭାରତ ଓ ବାଲ୍ମୀକିକୃତ ରାମାୟଣ ଗ୍ରନ୍ଥ ଦୁଇଟିର ସାରସଂଗ୍ରହ।" (ସାର୍ଥକ ସାରଥି ଜାନକୀବଲ୍ଲଭ, ପୃ.୨୭୫) ଜଣେ ସଫଳ ଓ ଶ୍ରେଷ୍ଠ ଅନୁବାଦକ ଭାବରେ ଜାନକୀବଲ୍ଲଭଙ୍କ ସ୍ଥାନ ଆମ ସାହିତ୍ୟରେ ଅଦ୍ୱିତୀୟ। ସଂସ୍କୃତର ଶୃଙ୍ଗାରଶତକ, ନୀତିଶତକ, ବୈରାଗ୍ୟଶତକ, ବ୍ୟାସ ବିରଚିତ ଭାଗବତ ଠାରୁ ବଙ୍କିମ ଉପନ୍ୟାସମାଳା ଏବଂ ପ୍ରାଣକୃଷ୍ଣ ପରିଜାଙ୍କ ଇଂରାଜୀରେ ଲିଖିତ ଆତ୍ମଜୀବନୀ 'Autobiography of Nobody'ର ଓଡ଼ିଆ ଅନୁବାଦ 'ଅକିଞ୍ଚନର ଜୀବନସ୍ମୃତି' ପର୍ଯ୍ୟନ୍ତ ସବୁକ୍ଷେତ୍ରରେ ଜାନକୀବଲ୍ଲଭଙ୍କ ମୌଳିକତା ସ୍ୱଚ୍ଛ ଓ ଭାସ୍ୱର।

ଗୌତମବୁଦ୍ଧଙ୍କ ଜୀବନଚରିତଦ୍ୱାରା ଜାନକୀବଲ୍ଲଭ ବହୁଭାବରେ ପ୍ରଭାବିତ ହୋଇଥିଲେ। ଫଳତଃ 'ଗୌତମବୁଦ୍ଧ' ନାମରେ ସେ ଏକ ଚରିତ ଗ୍ରନ୍ଥ ରଚନା କରି ତାହାର ପ୍ରାରମ୍ଭରେ ଉଲ୍ଲେଖ କରିଥିଲେ– "ବୁଦ୍ଧ କୌଣସି ଲୋକର ନାଁ ନୁହେଁ। ଯେ ନିଜେ ମୁକ୍ତିର ଜ୍ଞାନଲାଭ କରି ଅନ୍ୟମାନଙ୍କୁ ମୁକ୍ତିର ବାଟ ଦେଖାଇପାରେ ସେ ହିଁ କେବଳ ବୁଦ୍ଧ।'

ଭାରତବର୍ଷର ଏହିପରି ଜଣେ ଯୋଗଜନ୍ମା ପୁରୁଷ ଗୌତମ ବୁଦ୍ଧଙ୍କର ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ଜୀବନର ପରମ ସାର୍ଥକତା ନିମିତ୍ତ ବୁଦ୍ଧଙ୍କୁ ଆଦର୍ଶ ଭାବରେ ଗ୍ରହଣ କରିବାକୁ ମାନବ ସମାଜକୁ ଆହ୍ୱାନ ଦେଇ କହିଥିଲେ– "ବୁଦ୍ଧ ହେଉଛି ପ୍ରଜ୍ଞା। ବୁଦ୍ଧ ହେଉଛି ଜାଗତିକ ମୋହଭଙ୍ଗ। ବୁଦ୍ଧ ହେଉଛି ଆସକ୍ତିଶୂନ୍ୟତା।"

ଶୁଦ୍ଧପୂତ ସୁନ୍ଦର ଏବଂ ଉପାଦେୟ ଚରିତ ଗ୍ରନ୍ଥଗୁଡ଼ିକୁ ନେଇ ସାହିତ୍ୟ ରଚନାରେ ପ୍ରୟାସୀ ଜାନକୀବଲ୍ଲଭ ମହାପୁରୁଷମାନଙ୍କ କଥା, କାହାଣୀ, ଭାରତୀୟ ସଂସ୍କୃତି ଓ ପରମ୍ପରା ସହିତ ସାମ୍ପ୍ରତିକ କାଳର ଘଟଣାକୁ ନେଇ ପୌରୁଷ ସମେତ ବିଭିନ୍ନ ପତ୍ରପତ୍ରିକାରେ ବିଭିନ୍ନ କାଳରେ ଯେଉଁ ଗଳ୍ପମାନ ପ୍ରକାଶ କରିଥିଲେ ତାହାର ଗ୍ରନ୍ଥ ରୂପ ହେଉଛି 'ମାଲୁଣୀର ଫୁଲ ଓ ଅନ୍ୟାନ୍ୟ ଗଳ୍ପ'। ବିଶ୍ୱମାନବର ଉତ୍‌ଥାନ ଓ ପାରସ୍ପରିକ ସହାବସ୍ଥାନ ନିମିତ୍ତ ମାନବର ଚିନ୍ତା ଓ ଚେତନା ଏକ ସଙ୍କୀର୍ଣ୍ଣ ପରିସରରୁ କିପରି ଊର୍ଦ୍ଧ୍ୱକୁ ଉଠିପାରେ ତାହା ସ୍ରଷ୍ଟା ଆଲୋଚ୍ୟ ଗଳ୍ପଗୁଡ଼ିକର ବହୁ ଉଦାହରଣ, ପ୍ରତୀକ ଓ ଉପମା ଛଳରେ ପ୍ରକାଶ କରି ପାଠକମାନଙ୍କୁ ସଚେତନ କରିବାକୁ ଯତ୍ନଶୀଳ ହୋଇଛନ୍ତି। ସେଥିପାଇଁ ତାଙ୍କ ଗଳ୍ପମାନଙ୍କରେ ସେ ଯେଉଁ ଭାଷାର ସ୍ୱରୂପ ଅଙ୍କନ କରିଛନ୍ତି, ତାହା ତାଙ୍କର ଗଳ୍ପରଚନାର ମୌଳିକତାର ପରିଚୟ ଦିଏ। ଆମ ସାହିତ୍ୟରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଅବଦାନ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ସହିତ କେନ୍ଦ୍ରସାହିତ୍ୟ ଏକାଡେମୀ ପକ୍ଷରୁ ଅନୁବାଦ ସାହିତ୍ୟ ପୁରସ୍କାର ଲାଭ କରିଛନ୍ତି।

ସୁତରାଂ ଜାନକୀବଲ୍ଲଭ ଭାରତୀୟ ରାଜନୀତିରେ ଯେପରି, ପ୍ରାଚ୍ୟ ବିଦ୍ୟା ସମେତ ସଂସ୍କୃତ ସାହିତ୍ୟ, ଅନୁବାଦ, କବିତା, ପ୍ରବନ୍ଧ, ଜୀବନୀକାର, ବିଶେଷକରି ଜଣେ ଦୈନିକ ସମ୍ବାଦପତ୍ରର ନିୟମିତ ସ୍ତମ୍ଭକାର ଭାବରେ ସେପରି ବହୁ ଯଶ ଓ ଖ୍ୟାତିର ଅଧିକାରୀ। ଏହି ମହାନାୟକ ଭାରତୀୟ ରାଜନୀତିକ ଆକାଶରେ ଯେପରି ଅମଳିନ, ଆମ ଭାଷା, ସାହିତ୍ୟ ଓ ସଂସ୍କୃତିର ଜଣେ ସଫଳ ରୂପକାର ଭାବେ ସେହିପରି ଅନୁପମ ଓ ଅନନ୍ୟ।



# ଏକ ବିରଳ ବ୍ୟକ୍ତିତ୍ୱ

ଗୋବିନ୍ଦ ଚନ୍ଦ୍ର ସାହୁ

"ମଣିଷ ମରିବ ଦିନେ, ଦେବତା ବି ଜନ୍ମ ହେଲେ ମରେ,
ସାର୍ଥକ ଜନମ ତା'ର, ଯାହା ପାଇଁ ଜନ୍ମମାଟି ଝୁରେ।"

ଧରଣୀ ବକ୍ଷରେ ନିତିପ୍ରତି ଅନେକ ଲୋକ ଜନ୍ମଗ୍ରହଣ କରନ୍ତି। ଦୁନିଆ ରଙ୍ଗମଞ୍ଚରେ ନିଜ ନିଜର ଅଭିନୟ ସାରି ଶେଷରେ ସଂସାର ତ୍ୟାଗ କରନ୍ତି। ସଂସାରରେ ଏହା ଏକ ଗତାନୁଗତିକ ଧାରା। ଏଥିରେ କିଛି ନୂତନତା ନାହିଁ। କିନ୍ତୁ ଅଳ୍ପ କେତେକଙ୍କ ତିରୋଧାନ ପରେ ଲୋକେ କାହିଁକି ତାଙ୍କ କର୍ମମୟ ଜୀବନକୁ ମନେପକାଇ ଅନେକ କଥା କୁହନ୍ତି ? ଯେପରିକି ତାଙ୍କର ଅଭାବ ଦୀର୍ଘକାଳ ଧରି ଗଭୀରଭାବେ ଅନୁଭୂତ ହେବ। ତାଙ୍କ ବିୟୋଗରେ ଏକ ଯୁଗର ଅବସାନ ଘଟିଲା। ଦେଶ ଓ ଜାତି ପାଇଁ ଏହା ଏକ ଅପୂରଣୀୟ କ୍ଷତି ଇତ୍ୟାଦି...।" କାରଣ ଭବ ରଙ୍ଗମଞ୍ଚରେ ସେହି ପ୍ରତିଭାଧର ବ୍ୟକ୍ତିଗଣ ପ୍ରଭାବଶାଳୀ ଅଭିନୟ କରି ଜନସାଧାରଣଙ୍କ ମନରେ ଗଭୀର ରେଖାପାତ କରିଥାନ୍ତି। ସେହିପରି ଜଣେ ନିଆରା ନାୟକ ଥିଲେ ଜେ.ବି. ବା ଜାନକୀବଲ୍ଲଭ।

ସେ ଥିଲେ ଏକାଧାରରେ ରାଜନେତା, ଲୋକପ୍ରିୟ ଜନନାୟକ, ସାମ୍ବାଦିକ, ବିଦ୍ୱାନ୍, ସଂସ୍କୃତିବିତ୍, ବାଗ୍ମୀ, ପ୍ରବୀଣ ସାହିତ୍ୟିକ ତଥା ସମ୍ପାଦକ। ସେ ଅଜାତଶତ୍ରୁ ନ ଥିଲେ କିମ୍ବା ଅପ୍ରତିଦ୍ୱନ୍ଦ୍ୱୀ ମଧ୍ୟ ନ ଥିଲେ ଅଥଚ ଥିଲେ ଅପରାଜେୟ। ତାଙ୍କର ବିଫଳତା ଯେ ନ ଥିଲା ତାହା ନୁହେଁ; ଏସବୁ ସତ୍ତ୍ୱେ ସେ ଥିଲେ ବିଜୟୀ ବୀର। ସେ ପରାଜୟରେ ଭାଙ୍ଗି ପଡୁ ନ ଥିଲେ କିମ୍ବା ବିଜୟରେ ଆତ୍ମବିଭୋର ହେଉ ନ ଥିଲେ। ତାଙ୍କ ବିଚାରରେ ଜୀବନରେ ଜୟ-ପରାଜୟ ଓ ସଫଳତା-ବିଫଳତା ହେଉଛି ଏକ ମୁଦ୍ରାର ଦୁଇ ପାର୍ଶ୍ୱ ସଦୃଶ ଯାହାର ପ୍ରତିଫଳନ ତାଙ୍କ ରଚିତ 'ସିନ୍ଧୁ ଉପତ୍ୟକା' କବିତା ସଙ୍କଳନରେ ପ୍ରତିବିମ୍ବିତ ହୋଇଛି। କବି ଜାନକୀବଲ୍ଲଭ ଲେଖିଛନ୍ତି—

"ମୋର ଯାତ୍ରା ପଥ ଦୀର୍ଘ କଙ୍କରିତ
କେବେ ଖାଲ କେବେ ଢିପ, କ୍ୱଚିତ ମିଳଇ ସମତଳ
ଖାଲି କଣ୍ଟା ମାଇଲ ମାଇଲ
ମୁଁ ନିଶ୍ଚୟ କରିଅଛି ଯିବି ଏଇ ବାଟେ
ଥାଉ କଣ୍ଟା ଖାଲ, ଢିପ ମୁଁ ଚାଲିବି
ମୋଟେ ନ ଓହରି ମୋର ଲକ୍ଷ୍ୟ ପଥେ।"

ହିମାଳୟ ପରି ସ୍ଥିତପ୍ରଜ୍ଞ ରହି ସକଳ ଆହ୍ୱାନର ସଫଳ ମୁକାବିଲା କରିବା ହେଉଛି ଜାନକୀବଲ୍ଲଭଙ୍କ ଜୀବନ ଦର୍ଶନ। ସେଥିପାଇଁ ସେ ଦୀର୍ଘ ଚାଳିଶ ବର୍ଷ ଧରି ରାଜନୀତିକ ଜୀବନରେ ବହୁ ଉତ୍‌ଥାନ ପତନ ମଧ୍ୟରେ କେବେ ଅପ୍ରାସଙ୍ଗିକ ହୋଇ ନାହାନ୍ତି। ଡକ୍ଟର ମହତାବଙ୍କ ପରେ ସେ ଦ୍ୱିତୀୟ ଓଡ଼ିଆ ଯିଏ ରାଜ୍ୟର ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ଓ ରାଜ୍ୟପାଳ ପଦବୀ ମଣ୍ଡନ କରିବାର ସୌଭାଗ୍ୟ ଲାଭ କରିଛନ୍ତି। ଉଚ୍ଚଶିକ୍ଷା ଲାଭ ପରେ ଜେ.ବି.ସାମ୍ବାଦିକତାକୁ ବୃତ୍ତି ଭାବେ ଗ୍ରହଣ କରି ୧୯୪୯ ମସିହାରେ ଦୈନିକ 'ପ୍ରଜାତନ୍ତ୍ର'ର ସାମ୍ବାଦିକ ଭାବେ ଯୋଗ ଦେଇଥିଲେ। ମାତ୍ର ପଚିଶ ବର୍ଷ ବୟସରେ ଦୁଇ ଦୁଇଟି ଦୈନିକ ସମ୍ବାଦପତ୍ର 'ପ୍ରଜାତନ୍ତ୍ର' ଓ 'ଇଷ୍ଟର୍ଣ୍ଣ ଟାଇମ୍‌ସ' (Eastern Times) ର ସମ୍ପାଦନା ଦାୟିତ୍ୱ ତୁଲାଇ ସ୍ୱକୀୟ ପ୍ରତିଭାର ପରିଚୟ ଦେଇଥିଲେ। ୧୯୬୭ ମସିହାରେ 'ପୌରୁଷ' ଭଳି ଏକ ସମ୍ଭ୍ରାନ୍ତ ପତ୍ରିକାର ସମ୍ପାଦନା ଓ ପ୍ରକାଶନ କରି ଓଡ଼ିଆ ପତ୍ରିକା ଜଗତରେ ଏକ ସ୍ୱତନ୍ତ୍ର ପରିଚୟ ତିଆରି କରିଥିଲେ ଯାହା ଆଜି ପର୍ଯ୍ୟନ୍ତ ତିଷ୍ଠି ରହିଛି।

ଜଣେ ଯୁବ ସମ୍ପାଦକଙ୍କର ପ୍ରଥମ ଦିନ 'ପ୍ରଜାତନ୍ତ୍ର'ରେ ପ୍ରକାଶିତ (ତା. ୨୧.୮.୧୯୫୧) ସମ୍ପାଦକୀୟରୁ କେତୋଟି ଧାଡ଼ି ଏଠାରେ ଉଦ୍ଧାର କରୁଛି ଯେଉଁଥିରୁ ତାଙ୍କର ବିଦ୍‌ବତ୍ତା, ପାଣ୍ଡିତ୍ୟ, ପ୍ରତିଭା ଓ ପରିପକ୍ୱତାର ଆଭାସ ମିଳେ। ଶିରୋନାମ 'ଛାତ୍ରସମାଜରେ ଶୃଙ୍ଖଳା ରକ୍ଷା'। ସେ ଲେଖିଥିଲେ "ଛାତ୍ରମାନଙ୍କ ମଧ୍ୟରେ ଶୃଙ୍ଖଳାର ଅଭାବ ଦେଖାଦେଇଛି ବୋଲି ଆମ ଦେଶରେ ଗୋଟାଏ ଦୁଆ ହୋଇଗଲାଣି। ରାଜନୀତିକ ନେତା, ଶିକ୍ଷକ, ଅଭିଭାବକ, ସମସ୍ତେ କହୁଛନ୍ତି ସ୍କୁଲ କଲେଜରେ ଶୃଙ୍ଖଳା ରହୁ ନାହିଁ। ବିଶୃଙ୍ଖଳାର ପ୍ରକୃତ କାରଣ ହେଉଛି ଯେ ଅନେକ ଶିକ୍ଷାନୁଷ୍ଠାନ ଛାତ୍ରମାନଙ୍କର ରହିବାପାଇଁ, ଖେଳିବାପାଇଁ, ଏବଂ ସଂଗଠିତ ଜୀବନଯାପନପାଇଁ ଭଲ ବ୍ୟବସ୍ଥା କରି ନାହାନ୍ତି। ଅଭିଭାବକମାନେ ସ୍କୁଲ-କଲେଜର କର୍ତ୍ତୃପକ୍ଷଙ୍କ ସହିତ ସହଯୋଗ କରୁ ନାହାନ୍ତି। ଶିକ୍ଷକମାନେ ପରିବର୍ତ୍ତିତ ପରିସ୍ଥିତି ସହିତ ପାଦ ମିଳାଇ ଚାଲିପାରୁ ନାହାନ୍ତି। ××× ସେଥିପାଇଁ ଏମାନଙ୍କୁ ଗୋଟିଏ ବଳିଷ୍ଠ ସାଂସ୍କୃତିକ ଜୀବନର ସମସ୍ତ ସୁଯୋଗ ଯୋଗାଇଦେବାକୁ ପଡ଼ିବ। ସେମାନଙ୍କ ମନରେ ଶାରୀରିକ ଶ୍ରମ ପ୍ରତି ସମ୍ମାନ ଆଣିବାକୁ ହେବ, ××× ଯେପରିକି ସେମାନେ ରାଜନୀତିର କ୍ଷୁଦ୍ର ଦଳାଦଳି ପ୍ରତି ଆକୃଷ୍ଟ ହେବେ ନାହିଁ। ××× ଆମେ ଏପରି ଗୋଟିଏ ବ୍ୟବସ୍ଥା ଚାହୁଁ ଯେ, ଛାତ୍ରମାନଙ୍କ ମଧ୍ୟରେ ଆତ୍ମସମ୍ମାନ ଓ ଆତ୍ମବିଶ୍ୱାସର ଭାବ ଜାଗ୍ରତ ହେବ ସୌହାର୍ଦ୍ଦ୍ୟର ଭିତ୍ତିରେ, ଭୟରେ ନୁହେଁ।" ଦୀର୍ଘ ପାଞ୍ଚଦଶନ୍ଧି ଅତିବାହିତ ହେବା ପରେ ମଧ୍ୟ ଏହି ସମ୍ପାଦକୀୟ ସମୟୋପଯୋଗୀ ଓ ତାତ୍ପର୍ଯ୍ୟପୂର୍ଣ୍ଣ।

ଦ୍ୱିତୀୟ ଦିନର ସମ୍ପାଦକୀୟ 'ତାସ୍‌ଖେଳର ରାଜା'ର ମନ୍ତବ୍ୟକୁ ଲକ୍ଷ୍ୟ କରନ୍ତୁ– "ଆମେ ବାରମ୍ବାର ଦାବି କରିଆସିଛୁ ଯେ କେବଳ ରାଜପ୍ରମୁଖ ପଦ ନୁହେଁ, ପୂର୍ବତନ ରାଜାମାନଙ୍କର ପଦବୀ, ଭତ୍ତା ଆଦି ସମସ୍ତ ପ୍ରକାର ସୁବିଧା ଜନସାଧାରଣଙ୍କ ଅଗ୍ରଗତିର ପରିପନ୍ଥୀ। ସାମନ୍ତବାଦ ଏ ଦେଶରୁ ସମୂଳେ ନିଶ୍ଚିହ୍ନ ନ ହେବା ପର୍ଯ୍ୟନ୍ତ ଭାରତୀୟ ଭବିଷ୍ୟତ

ସ୍ୱପ୍ନରେ ହିଁ ରହିଯିବ। ସେ ରାଜା ହୁଅନ୍ତୁ, ରାଜାଧିରାଜ ହୁଅନ୍ତୁ, ଜନସାଧାରଣଙ୍କ ସ୍ୱାର୍ଥ ଓ ହିତ ଦୃଷ୍ଟିରୁ ସେମାନଙ୍କୁ ଅତୀତର ସୁଯୋଗ ଓ ଆଭିଜାତ୍ୟରୁ ବଞ୍ଚିତ ହେବାକୁ ହେବ।" ଜାନକୀବଲ୍ଲଭ ଥିଲେ ଦିବ୍ୟଦ୍ରଷ୍ଟା ଓ ଦୂରଦ୍ରଷ୍ଟା। ଇନ୍ଦିରାଗାନ୍ଧୀଙ୍କ ଶାସନ କାଳରେ ରାଜାମହାରାଜାଙ୍କ ହାତପାଣ୍ଠି ଉଚ୍ଛେଦ ହୋଇ ତାଙ୍କ ଭବିଷ୍ୟଦ୍‌ବାଣୀ ସତ୍ୟରେ ପରିଣତ ହେଲା। ପ୍ରଜାତନ୍ତ୍ର, ଇଷ୍ଟର୍ଣ୍ଣ ଟାଇମ୍‌ସ ଓ ପୌରୁଷରେ ପ୍ରକାଶିତ ପ୍ରତ୍ୟେକ ସମ୍ପାଦକୀୟ ସାରଗର୍ଭକ ଓ ପ୍ରାସଙ୍ଗିକ। ସେ ନିଜେ ଜଣେ ପ୍ରଖ୍ୟାତ ସମ୍ପାଦକ ହୋଇଥିବାରୁ 'ମହାନଦୀ' (ବର୍ତ୍ତମାନ 'ଚିରସ୍ରୋତା ମହାନଦୀ') ର କେତୋଟି ସମ୍ପାଦକୀୟ, ଯଥା- 'ସାହିତ୍ୟରେ ଚୌର୍ଯ୍ୟବୃତ୍ତି', 'ନିଷିଦ୍ଧ ପୁସ୍ତକ', 'ଇଣ୍ଡିଆନ ବନାମ ଭାରତୀୟ : ବ୍ୟବଧାନ କେତେ ଯୋଜନ' ଆଦି ପଢ଼ି ପ୍ରଶଂସା କରିବା ସହ ଉତ୍ସାହିତ ମଧ୍ୟ କରିଛନ୍ତି। ଏହା ଥିଲା ତାଙ୍କ ମହାନୁଭବତାର ପରିଚୟ।

ତାଙ୍କ ଜୀବନରେ ସାହିତ୍ୟ, ସାମ୍ବାଦିକତା ଓ ରାଜନୀତିର ତ୍ରିବେଣୀ ସଙ୍ଗମ ଘଟିଥିଲା। ତାଙ୍କ ସାରସ୍ୱତ କୃତି ମଧ୍ୟରେ ପ୍ରମୁଖ ହେଲା ଭର୍ତ୍ତୃହରିଙ୍କ ସଂସ୍କୃତ କାବ୍ୟ ଶତକ ତ୍ରୟୀ (ନୀତିଶତକ, ଶୃଙ୍ଗାର ଶତକ ଓ ବୈରାଗ୍ୟ ଶତକ)ର ପଦ୍ୟାନୁବାଦ, ବାଲ୍ମୀକିକୃତ ରାମାୟଣର ସଂକ୍ଷିପ୍ତସାର, ବ୍ୟାସକୃତ ମହାଭାରତର ସଂକ୍ଷିପ୍ତସାର, ଶ୍ରୀମଦ୍ ଭାଗବତ (ସଂସ୍କୃତ ଭାଗବତ ଗ୍ରନ୍ଥର ଗଦ୍ୟାନୁବାଦ), ବଙ୍କିମଚନ୍ଦ୍ର ଉପନ୍ୟାସମାଳା (ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସର ଅନୁବାଦ) ଆଦି। ଏହି ପୁସ୍ତକଗୁଡ଼ିକ ଓଡ଼ିଶା ସାହିତ୍ୟକୁ ବିଶେଷଭାବେ ଋଦ୍ଧିମନ୍ତ କରିଛି। ଓଡ଼ିଆ ଭାଷା ପ୍ରତି ତାଙ୍କର ପ୍ରୀତି ଓ ଅବଦାନ ଅବିସ୍ମରଣୀୟ। ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ୧୯୮୫ ମସିହାରେ ରାଜ୍ୟର ସମସ୍ତ କାର୍ଯ୍ୟାଳୟରେ ଓଡ଼ିଆ ଭାଷାରେ କାର୍ଯ୍ୟ କରିବାର ସେ ନିଷ୍ପତ୍ତି ନେଇଥିଲେ। କ୍ଷୋଭର ବିଷୟ ଆମେ ଅଦ୍ୟାବଧି ତାହା କରିପାରିଲୁ ନାହିଁ। ଏହାହିଁ ବିଡ଼ମ୍ବନା।

ସେ ମୁଖ୍ୟମନ୍ତ୍ରୀ ଥିବା ସମୟରେ ମୁଁ 'ଗୃହ ନିର୍ମାଣ' ପୁସ୍ତକ ପାଇଁ 'ଓଡ଼ିଶା ବିଜ୍ଞାନ ଏକାଡେମୀ' ପୁରସ୍କାର ତାଙ୍କ ଶ୍ରୀହସ୍ତରୁ ଗ୍ରହଣ କରିଥିଲି। ଏହା ଥିଲା ମୋ ପାଇଁ ପରମ ସୌଭାଗ୍ୟ। ୧୯୯୮ ମସିହାରେ ମୁଁ ଉପର ଇନ୍ଦ୍ରାବତୀ ପ୍ରକଳ୍ପର ମୁଖ୍ୟଯନ୍ତ୍ରୀ ଥିବା ସମୟରେ ଭବାନୀପାଟଣାରେ ମୁଖ୍ୟମନ୍ତ୍ରୀ ପ୍ରକଳ୍ପର ସମୀକ୍ଷା କରୁଥାନ୍ତି। ଆଲୋଚନା ଶେଷ ହେବା ପରେ ସେ ମୋତେ ନିକଟକୁ ଡାକି ଧୀରେ ପଚାରିଲେ, 'କେନ୍ଦ୍ର ସାହିତ୍ୟ ଏକାଡେମୀ' ପ୍ରକାଶିତ 'ପଦ୍ମାନଦୀର ମାଝି' ପୁସ୍ତକର ଲେଖକ କ'ଣ ଆପଣ? ଅନୁବାଦ ବେଶ୍ ହୃଦୟଗ୍ରାହୀ ହୋଇଛି। ଏତେ ବଡ଼ ପ୍ରକଳ୍ପର ଦାୟିତ୍ୱ ସମ୍ଭାଳିବା ପରେ ଲେଖିବାକୁ ସମୟ କେଉଁଠୁ ପାଉଛନ୍ତି।" ମୁଁ ବିନମ୍ରତାର ସହ ଉତ୍ତର ଦେଲି, "ରାଜ୍ୟର ଭାର ସମ୍ଭାଳିବା ପରେ ମୁଖ୍ୟମନ୍ତ୍ରୀ ମହୋଦୟ ଲେଖିବାକୁ ସମୟ ପାଉଛନ୍ତି। ରାଜ୍ୟର ଗୁରୁ ଦାୟିତ୍ୱ ତୁଳନାରେ ପ୍ରକଳ୍ପର ବୋଝ ନିତାନ୍ତ ନଗଣ୍ୟ।" ସେ ମୃଦୁମନ୍ଦ ହସି କହିଲେ, "ଲେଖି ଚାଲନ୍ତୁ। ସାରସ୍ୱତ କୃତିର ବିଲୟ ନାହିଁ।" ଏହା ପରେ ଯେତେଥର ଦେଖା ହୋଇଛି, ସେ ମହାନଦୀରେ ଦ୍ୱିତୀୟ ବନ୍ଧ ନିର୍ମାଣ କରି ଉପକୂଳ ଅଞ୍ଚଳକୁ ବନ୍ୟା ଦାଉରୁ ରକ୍ଷା କରିବା ସମ୍ବନ୍ଧରେ

ଆଲୋଚନା କରିଛନ୍ତି। ଅନ୍ୟ ବିଶେଷଜ୍ଞଙ୍କ ମତ ସମ୍ବନ୍ଧରେ ମୋତେ କହିଛନ୍ତି। ମୁଁ ସେ ପ୍ରସ୍ତାବ ସଂପର୍କରେ ସହମତ ନ ହେବାରୁ ମୋତେ ତାହାର ବିକଳ୍ପ କଥା ଚିନ୍ତା କରିବାକୁ ପରାମର୍ଶ ଦେଇଛନ୍ତି। ମୋର ଦୁଃଖ ଯେ ତାଙ୍କ ଜୀବଦ୍ଦଶାରେ ମୁଁ ଅଦ୍ୟାବଧି ବନ୍ୟା ପ୍ରକୋପ ସମାଧାନର କୌଣସି ସ୍ଥାୟୀ ପନ୍ଥା ନିର୍ଣ୍ଣୟ କରିପାରି ନାହିଁ।

ସେହି ଚିନ୍ତାନାୟକ, ମିଷ୍ଟଭାଷୀ, ବିଚକ୍ଷଣ ରାଜନୀତିଜ୍ଞ, ସାରସ୍ୱତ ସାଧକ ତଥା ପ୍ରଜ୍ଞାପୁରୁଷ ଜାନକୀବଲ୍ଲଭଙ୍କର ମହାପ୍ରୟାଣ ହୁଏ ୨୧ ଏପ୍ରିଲ୍ ୨୦୧୫ ପୁଣ୍ୟ ଅକ୍ଷୟତୃତୀୟା ତିଥିରେ ତିରୁପତି ରାଷ୍ଟ୍ରୀୟ ସଂସ୍କୃତ ବିଦ୍ୟାପୀଠରେ। ବିଧିର ବିଡ଼ମ୍ବନା ଏହି ଯେ ପ୍ରଭୁ ବାଲାଜୀଙ୍କ ଦର୍ଶନ ସାରି ବିଷ୍ଣୁ ସହସ୍ର ନାମ ଜପ କରି ନୈଶଭୋଜନ ପରେ ବିଶ୍ରାମ ନେଲେ ଓ ସେହି ବିଶ୍ରାମ ହେଲା ପୁଣ୍ୟାତ୍ମା ଜାନକୀବଲ୍ଲଭଙ୍କର ଚିର ବିଶ୍ରାମ। ଦେବଭାଷା ସଂସ୍କୃତ ତାଙ୍କର ଅତ୍ୟନ୍ତ ପ୍ରିୟ ହୋଇଥିବାରୁ ଓ ମହାପ୍ରଭୁଙ୍କର ଜଣେ ପରମଭକ୍ତ ହୋଇଥିବାରୁ ସେ ବାଲାଜୀ ଭଗବାନ୍‌ଙ୍କ ପୀଠ ତିରୁପତିଠାରେ, ସଂସ୍କୃତ ବିଦ୍ୟାପୀଠରେ ଶେଷ ନିଶ୍ୱାସ ତ୍ୟାଗ କଲେ। କର୍ମମୟ ଜୀବନରେ ସେ ଯେଉଁ ସଫଳତାର ମାଇଲଖୁଣ୍ଟ ସ୍ଥାପନ କରିଯାଇଛନ୍ତି ତାହା ଅନତିକ୍ରମଣୀୟ। ସାହିତ୍ୟ, ସଂସ୍କୃତି, ସାମ୍ବାଦିକତା ଓ ରାଜନୀତି କ୍ଷେତ୍ରରେ ତାଙ୍କର ବିୟୋଗରେ ସୃଷ୍ଟି ହୋଇଛି ଅପୂରଣୀୟ ସ୍ଥାନ। ଜନସାଧାରଣ ହୁଏତ କାଳକ୍ରମେ ତାଙ୍କୁ ଜଣେ ରାଜନେତା ଭାବରେ ଭୁଲିଯାଇପାରନ୍ତି କିନ୍ତୁ ସାହିତ୍ୟିକ, ସମ୍ପାଦକ ଓ ସଂସ୍କୃତିପ୍ରେମୀ ଜାନକୀବଲ୍ଲଭ ଓଡ଼ିଆ ଭାଷା ଓ ସାହିତ୍ୟ ବଞ୍ଚିଥିବା ପର୍ଯ୍ୟନ୍ତ ଅମର ହୋଇ ରହିବେ–ଏହା ନିଃସନ୍ଦେହ। ହେ ପୁଣ୍ୟପୁରୁଷ, ବିନମ୍ର ପ୍ରଣାମ।



# ନେତା ଓ ଭଦ୍ରଲୋକ

ରବି କାନୁନ୍‌ଗୋ

"ଉତ୍‌ପସ୍ୟତେ ମମକୋଽପି ସମାନଧର୍ମା
କାଳହ୍ୟୋୟଂ ନିରବଧି ବିପୁଳା ଚ ପୃଥ୍ୱୀ ।।"

କାଳ ଅସରନ୍ତି, ପୃଥ୍ୱୀ ବିପୁଳା। ଆଜି ଯାହା ସର୍ଜନା ହୋଇଛି ତାହା ଠିକ୍ ବୁଝିବାପାଇଁ କେହି କେବେ ନିଶ୍ଚୟ ଜନ୍ମ ହୋଇପାରେ। (ଭବଭୂତି)

ସତଠୁଁ ସତ କେତେ ଦୂର? ଏହା ଏକ ସାଂଘାତିକ ଦାର୍ଶନିକ ପ୍ରଶ୍ନ। ପାଗଳଙ୍କ ଛଡ଼ା ତାହା ଖୋଜିବାକୁ କେହି ଇଚ୍ଛା କରନ୍ତିନି। ମୋର ଆଦର୍ଶ ଏବଂ ସ୍ମରଣୀୟ ପୂଜ୍ୟ ପୁରୁଷ ଡକ୍ଟର ହରେକୃଷ୍ଣ ମହତାବଙ୍କର ଗୋଟିଏ ଉକ୍ତି ଏହି ଅବକାଶରେ ମନେ ପଡ଼େ। ମୁଁ 'ପ୍ରଜାତନ୍ତ୍ର'ରେ ସ୍ତମ୍ଭ ଲେଖୁଥାଏ। ସଂପାଦକ ଡକ୍ଟର ମହତାବ। ତାଙ୍କ ସହିତ ବେଳେବେଳେ ଭେଟୁଥିଲି। ଥରେ ସେ କହିଥିଲେ, "ଭୁଲ ଲେଖୁନା, ଭଲ ଲେଖୁଚ। ମାତ୍ର ଗୋଟିଏ କଥା ମନେ ରଖିଥିବ। ଲେଖିବା ଆଗରୁ ଭାବି ନେଇଥିବ–କ'ଣ ଲେଖିବ ନାହିଁ। ଏଥିରେ ଲେଖକର ମନ ସହିତ କଲମ (ସରସ୍ୱତୀ) ଇଜ୍ଜତ ପାଏ।"

ମୁଁ ଜାଣେ, ଡକ୍ଟର୍ ଗୋବିନ୍ଦ ଭୂୟାଁ ଜାନକୀବାବୁଙ୍କର କେତେ ଘନିଷ୍ଠ। ସେ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ୧ମ ବାର୍ଷିକୀ ଶ୍ରାଦ୍ଧ ଉପଲକ୍ଷେ ତାଙ୍କ ସମ୍ପର୍କରେ କିଛି ଲେଖିବାକୁ ମତେ କହିଲେ, ମୁଁ ଢେର୍ କୁନ୍ଥେଇଲି। କିନ୍ତୁ ଗୋବିନ୍ଦବାବୁ ନଛୋଡ଼ବନ୍ଧା। ସେତେବେଳେ ମୋର ମହତାବ ମନେପଡ଼ିଲେ।

ସେଥିଯୋଗୁଁ ଅସମ୍ପୃକ୍ତ ଏବଂ ଅଙ୍ଗେ ନିଭେଇଥିବା କଥାଟିଏ କହିବି। ବିଶ୍ୱାସ ରଖିଚି ଯେ ମୂଳ ଲେଖା ସହିତ ଏ ଗପର ମର୍ମ ପାଠକେ ସହଜରେ ହେଜି ପାରିବେ।

୧୯୬୧ର ରାଉରକେଲା। ଜୋର୍‌ସୋର୍ କାରଖାନା, ସହର ଓ ରାସ୍ତାଘାଟ ତିଆରି ଚାଲିଥାଏ। ୧୮ କିଲୋମିଟର ଲମ୍ବ ରିଙ୍ଗ୍‌ରୋଡ୍‌ରୁ ପିଚୁ ହୋଇଥାଏ କାରଖାନା ମେନ୍‌ଗେଟ୍‌ଠାରୁ ହିଲ୍‌ପାସ୍ ଏବଂ ଇନ୍ଦିରା ଗାନ୍ଧି ପାର୍କ ଦେଇ ତତ୍କାଳୀନ 'ଆମ୍‌ବାଗାନ' (ଆଜି ଲୋପ) ଯାଏ। ରେଲ୍ ଓଭରବ୍ରିଜ୍ ଥାଏ ଯେ–ସିଙ୍ଗ୍‌ଲ ଟ୍ରାକ୍।

କ୍ୱଚିତ୍ ଭାଗ୍ୟବାନ୍‌ଙ୍କର ସାଇକଲ ଥିଲା। ମୋର ଖଣ୍ଡିଏ ଥାଏ। ଟ୍ରେନିଂ ନେଉଥାଉ। ସମୟ – ସକାଳ ୯ରୁ ୧୨ ଏବଂ ଅପରାହ୍ନ ୩ରୁ ୫। ଆମେ ହଷ୍ଟେଲରେ ରହୁ, ମେସ୍‌ରେ ଖାଉ। ବୟସ ୧୬-୧୭। ଜଣେ ସାଙ୍ଗ ଭାଗୀରଥି ସାହୁ ଥିଲା ଗୀତ ସଉକିଆ

ଓ ଭାରି ଚେହେଲିଆ। ମଜା କରୁଥିବ, ନିଜେ ଟିକେ ବି ହସିବନି । ଠାକୁରେ ଏବେ ତାକୁ ପାଖକୁ ନେଇଯାଇଛନ୍ତି ।

ସାଇକଲ ଓଭରବ୍ରିଜ୍ ଉପରେ ପହଞ୍ଚିବା ପରେ ସେ ଗୋଟେ ଆଇଡିଆ ଦେଲା। ତିନି ବନ୍ଧୁ ସାଇକଲ ରଖିଲୁ। ତଳ ବମ୍ବେ-ହାଓଡ଼ା ରେଲ୍‌ଲାଇନ୍‌କୁ ଅକାରଣଟାରେ ଅନେଇଲୁ। କାରଖାନାର ସମସ୍ତଙ୍କ ଲଞ୍ଚ୍-ଆୱାର । ଆମକୁ ଦେଖି ପରେପରେ ପାଦଚଲା ଲୋକେ ସେଠି ଜମା ହେଲେ। ସେମାନଙ୍କ ଖାଇବା ସମୟ ୧୨ରୁ ୧ । ଆମ ପରି ସେମାନଙ୍କ ହାଜିରା ହୁଗୁଳା ବି ନୁହେଁ । ଯୋଗାଡ଼ କରି ଆମେ ତ ମ୍ୟାଟିନ୍-ସୋ' ଦେଖି ପାରୁଥିଲୁ।

ଯାହାହେଉ, ଏତେ ନିର୍ନିମେଷ ଦୃଷ୍ଟିରେ ଆମେ ତଳକୁ ଅନେଇଥିଲୁ ଯେ କ୍ରମେ ସେଠି ଦେଖଣାହାରିଙ୍କ ସଂଖ୍ୟା ବଢ଼ିଲା ଏବଂ ଆମେ ଜାଗା ଛାଡ଼ିଲୁ । ୩ଟା ପାଖାପାଖି ଫେରିଲୁ । ଦୂରରୁ ଦେଖୁଥାଉ, ଏବେ ବ୍ରିଜ୍ ଉପରେ ଦେହ ଘଷାଘଷି ହେଲା ପରି ଭିଡ଼। ସମସ୍ତେ ପୋଲ ଉପରୁ କି ରାସ୍ତା କଡ଼ରୁ ତଳ ରେଲ୍-ଲାଇନ୍‌କି ଅନୋଉଥା'ନ୍ତି । ଜଣେ ମାତ୍ର କୁକୁଡ଼ା-ଚୂଳପ୍ରାୟ ଟୋପି ପରିହିତ କନେଷ୍ଟବ୍‌ଲ ସେଠୁ ଭିଡ଼ କମେଇବାକୁ ଚେଷ୍ଟା କରି ସୁଦ୍ଧା ସଫଳ ହୋଇପାରୁ ନ ଥିଲେ। ସେ ନିଜେ ବି ବେଳେବେଳେ ତଳ ଆଡ଼େ ଅନେଇ ଦେଉଥିଲେ।

କହିବା ଅନାବଶ୍ୟକ ଯେ ଆମେ ଅକାରଣରେ ତଳକୁ ଅନେଇଥିବା ଘଟଣା ଛଡ଼ା ନୂଆ ଆଉ କିଛି ସେଠି ଘଟି ନ ଥିଲା।

ଭିଡ଼ କାହିଁକି ? କଥା କ'ଣ ? କାହାରିକୁ ପଚାରିନୁ, କିନ୍ତୁ ଶୁଣିଲୁ – କୁଆଡ଼େ ସେଠି ଜଣେ ରେଜା (ମହିଳା ଶ୍ରମିକ)କୁ ଜଣେ ପଟେଇଥିଲା, କିନ୍ତୁ ସାତ ଜଣ ରେପ୍ କଲେ। ସେ ମରିଗଲା। ପାପିଷ୍ଠମାନେ ତାକୁ ଆଣି ରେଲ୍-ଲାଇନ୍‌ରେ ଫୋପାଡ଼ି ଦେଲେ। ରାତିରେ ବମ୍ବେ ମେଲ୍ ଚଢ଼ିଗଲା।

ଡେଡ୍ ବଡ଼ି ?

ପୁଲିସ ନେଇ ଯାଇଛି।

ରକ୍ତ-ଫକ୍ତ କୋଉଠି ଦେଖା ଯାଉନି ତ ?

ବିଲୁଆ କୁକୁର ଚାଟି ସଫା କରି ଦେଇଥେବେ ନା !

ସେତେବେଳେ 'ରେପ୍'ର ଠିକ୍ ଅର୍ଥ ଜାଣି ନ ଥିଲି। କିଛି ବର୍ଷ ପରେ ପ୍ରକାଶଯୋଗ୍ୟ ଲେଖକ ହେଲି । ଏହି ଘଟଣାଟିକୁ ବାରମ୍ବାର ଉଲ୍ଲେଖ କରି ରାଉରକେଲା ସହରର ଅନ୍ୟ ନାଁ ଦେଇଥିଲି–ରିଉମରକେଲା।

## ॥ ଦୁଇ ॥

ଜାନକୀବଲ୍ଲଭ ପଟ୍ଟନାୟକ (୩.୧.୧୯୨୭-୨୧.୪.୨୦୧୫)। ଏ ଆଲେଖ୍ୟ ନିଜ ଅବବୋଧର ଭରସାପୂର୍ଣ୍ଣ କିଛି ସ୍ମରଣ ମାତ୍ର। କାରଣ ସେ ମୋତେ କ୍ରମେକ୍ରମେ

ଚିହ୍ନିଛନ୍ତି ଓ ମୁଁ କ୍ରମେକ୍ରମେ ତାଙ୍କଠାରୁ ଦୂରଛଡ଼ା ହୋଇଛି। ଅନୁରୋଧ ଯେ ରାଜନୀତିର ରଙ୍ଗ-ଚଷମା ପିନ୍ଧି କେହି ଏହା ବୁଝିବାକୁ ଚେଷ୍ଟା ନ କଲେ ଖୁସି ହେବି। ଜାନକୀବାବୁ ଏବେ ସ୍ୱର୍ଗପୁରରେ ଓ ଦଳୀୟ ରାଜନୀତି ସହିତ ମୋର କୌଣସି ସମ୍ପର୍କ ନାହିଁ। ପୁନଶ୍ଚ, ତାଙ୍କ ବିଶାଳ ବ୍ୟକ୍ତିତ୍ୱକୁ ଆକଳନ କରିବା ଯୋଗ୍ୟତା କି ପାରଦର୍ଶିତା ବି ମୋର ନାହିଁ।

ବଡ଼ପୁରୁଷେ କହିଛନ୍ତି ଯେ ଅଳପ ହସିବା ଏବଂ ଚୁପ୍ ରହିବା–ଦୁଇଟି ଗୁଣ ମଣିଷକୁ କୁଆଡ଼େ ଜଗତଜିତା କରାଇପାରେ। ମାତ୍ର ଯା'ର ବିପଦ କେତେ, ସେକଥା କହି ନାହାନ୍ତି।

ଜାନକୀବାବୁଙ୍କ ସହିତ ମୋର ସ୍ୱଳ୍ପ ସଂପର୍କ। ମାତ୍ର ତାହା ମୋତେ ଅନ୍ତରଙ୍ଗ ଲାଗୁଥିଲା। କାହିଁକି ବୋଲି ପଚାରିଲେ, ହୁଏତ ଠିକ୍ କାରଣ କହିପାରିବିନି। ଆଗେ ମଜାରେ ଯାହା କହୁଥିଲି, ଏବେବି ସେମିତି କହିବି। ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ଅନେକ ତାଙ୍କୁ ଭେଟିବାକୁ ଅପେକ୍ଷା କରିଥିବେ, ହେଲେ ମୋ କପାଳରେ ସେ 'ଓଏଟିଙ୍ଗ୍' ଦୁର୍ଯୋଗ କେବେ ଘଟିନି–ଅଫିସ୍, ଘର ବା କ୍ୟାମ୍ପ୍ ଯେଉଁଠି ହେଉ। ରାଉରକେଲା ସହରପାଇଁ ଏହାର ବହୁ ବିଶେଷତ୍ୱ ଥିଲା।

ସୁଦ୍ଧୁ ତୁଣ୍ଡବାଇଦରେ ତେଣୁ ମୁଁ କୁଆଡ଼େ ଜଣେ 'ପାୱାରଫୁଲ୍' ଲୋକ ହୋଇପଡ଼ିଲି !

ଦୃଶ୍ୟପଟ୍ଟ ପଛର ଅନ୍ଧାରରେ ଏ 'ପାୱାର୍' ମାନେ ଥିଲା–ଭାଇ, ମୋର ଟିକେ ଅମୁକ କାମ ଟିକେ କରେଇ ଦିଅନ୍ତନି ?

ଏ ଧର୍ମ-ଜଞ୍ଜାଳକୁ ପ୍ରତିହତ କରିବାକୁ ମୋ ପାଖରେ ଷ୍ଟକ୍-ରିପ୍ଲାଏଟେ ରେଡ଼ି ଥାଏ : ବଳଦକୁ ଦୁହିଁ ଦୁଧ ହାସଲ କରିବା ଯାହା ତାଙ୍କଠାରୁ କାମ ହାସଲ କରି ତୁମକୁ ଧରେଇବା ମୋ ପାଇଁ ସେଇଆ। ସେଥିପାଇଁ ଅଧିକ ପରାକ୍ରମଶାଳୀ ଗୁଆଲା ଖୋଜ; ମୋ ଦେଇ ହବନି।

ସତେ ବି ଆଜି ଦୂର ସମୟ ହେଜି ମନେ ପକାଉଚି, କେତୋଟି ସଭାସମିତିରେ ଯୋଗଦାନ ପାଇଁ ତାଙ୍କଠାରୁ ସମ୍ମତି ହାସଲ କରିବା ବା ଯା' ତା' ଲାଗି ଲେଖା କି ବାର୍ତ୍ତା ଯୋଗାଡ଼ କରିବା ଛଡ଼ା ମୁଁ ତାଙ୍କଠୁଁ ଅଧିକ କିଛି ହାସଲ କରି ନାହିଁ। ତେଣୁ, ବନ୍ଧୁମାନଙ୍କର ଏପରି ଫ୍ୟାଣ୍ଟାସି ପାଇଁ ମୁଁ ଦାୟୀ ନୁହେଁ।

ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ନାଁରେ ଚିହ୍ନିଥିଲି 'ପ୍ରଜାତନ୍ତ୍ର' ଓ 'ପୌରୁଷ'ର ସମ୍ପାଦକ ଭାବେ। ବହୁ ପରେ ସେ କେନ୍ଦ୍ରରେ ମନ୍ତ୍ରୀ ହେଲେ। କଂଗ୍ରେସ ଜମାନା ଓ ଓଡ଼ିଶାରୁ ଜଣେ କେନ୍ଦ୍ର ମନ୍ତ୍ରୀ ! ଢେର୍ କଥାଟିଏ ଥିଲା। ସେ ମୋ ପାଇଁ ଥିଲେ ଜଣେ ଦୂରର ଲୋକ। ତାଙ୍କୁ ଚିହ୍ନିବାକୁ ମୋର ସୁଯୋଗ କି ଆବଶ୍ୟକତା ନ ଥିଲା।

ସର୍ବଭାରତୀୟ ଶ୍ରମିକ ନେତା ଓ ହିନ୍ଦ ମଜଦୁର ସଭା ସଭାପତି ରାଜକିଶୋର ସାମନ୍ତରାୟ ଥା'ନ୍ତି ଇସ୍ପାତ କାରଖାନା ସ୍ୱୀକୃତିପ୍ରାପ୍ତ ୟୁନିଅନର ସାଧାରଣ ସଂପାଦକ। ମୁଁ ଥାଏ ସେ ୟୁନିଅନର ଜଣେ କର୍ମକର୍ତ୍ତା। ନିଜ ଦାୟିତ୍ୱ ଛଡ଼ା ରାଜୁବାବୁଙ୍କୁ ଲେଖାଲେଖି କାମରେ ସାହାଯ୍ୟ କରୁଥାଏ। ଆଗରୁ ଆମ ଭିତରେ କଥା ହୋଇଥିଲା। କେନ୍ଦ୍ର ପର୍ଯ୍ୟଟନ,

ବେସାମରିକ ଉଡ୍ଡୟନ ଓ ଶ୍ରମ ମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଅମୁକ ଦିନ ରାଉରକେଲା ଆସିବେ। ସେ ରହିବେ ବନ୍ଧମୁଣ୍ଡା ରେଲ୍‌ୱେ ଗେଷ୍ଟ-ହାଉସ୍‌ରେ। ଦୁହେଁ ପ୍ରାଇମେରିରୁ ପିଜି ପର୍ଯ୍ୟନ୍ତ ସାଙ୍ଗ। ସେ ତାଙ୍କୁ ସେଠି ଭେଟିବେ ଓ ଆଶା କଲେ ଯେ ମୁଁ ବି ରହିବି।

କାହିଁକି ?

କେତେଗୁଡ଼ାଏ ନୋଟିଂ ଅଛି।

ଦିନ ବାର ମନେ ନାହିଁ। ୧୯୭୯ ଡିସେମ୍ବର ରାଉରକେଲା ଶୀତ। ସେକ୍ଟର-୩ ଘରୁ ମତେ ନେଇ ରାଜୁବାବୁ ଚାଲିଲେ ବନ୍ଧମୁଣ୍ଡା। ଘନ କୁହୁଡ଼ି। ନାଇଟ୍ ସିଫ୍ଟ କର୍ମଚାରୀ ରିଙ୍ଗ୍‌ରୋଡ୍ ଆର ପଟେ ଘରକୁ ଫେରୁଥା'ନ୍ତି। ସୂର୍ଯ୍ୟଦେବ ଦେଖାଯାଉ ନାହାନ୍ତି। ବିସ୍ରାଛକରେ ସି.ଆଇ.ଏସ୍.ଏଫ୍. ବାରାକ୍ ତିଆରି ହୋଇ ନ ଥିଲା। ବନ୍ଧମୁଣ୍ଡା ରାସ୍ତା ସିଧା ଥିଲା। କୁହୁଡ଼ି ଯୋଗୁଁ ଡ୍ରାଇଭର୍ କୋଡ଼ିଏ ଫୁଟ ଦୂର ବି ଦେଖିପାରୁ ନ ଥିଲା।

ସେଦିନ ମୁଁ ଜାନକୀବାବୁଙ୍କୁ ପ୍ରଥମ ଦେଖିଲି। ଦୁଇ ନେତାଙ୍କ ତିନି ଘଣ୍ଟା ଗପସପର ନିର୍ଯ୍ୟାସ ଥିଲା–୧୯୮୦ ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀଙ୍କ ପାଇଁ ମଜଦୁର ସଭାର ସହଯୋଗ।

ଏଥିରେ ଅଖଙ୍ଗାଟେ ଥିଲା। 'ଏମରଜେନ୍ସି' ପର ୧୯୭୭ ନିର୍ବାଚନରେ ଇନ୍ଦିରାଙ୍କ କଂଗ୍ରେସ ଦଳ ପ୍ରାୟ ସାରା ଦେଶରୁ ମୂଳପୋଛ ହୋଇଥିଲା। ସେତେବେଳେ ରାଉରକେଲାରେ ଜନତା ଦଳ ବିଧାୟକ ଭାବେ ବ୍ରଜକିଶୋର ମହାନ୍ତି ନିର୍ବାଚିତ ହେଲେ। ତାଙ୍କ ୟୁନିଅନ–ରାଉରକେଲା ଷ୍ଟିଲ୍‌ପ୍ଲାଣ୍ଟ୍ ଏମ୍ପ୍ଲୟିଜ୍ ଆସୋସିଏସନ୍–ମଜଦୁର ସଭା ପରି ଲୋକପ୍ରିୟ ନ ଥିଲେ ମଧ୍ୟ, ଯା'ର ସୁରୁଖୁରୁ କାମରେ ସବୁବେଳେ ହଇରାଣ କରୁଥିଲା। ତେଣୁ ଆଗାମୀ ନିର୍ବାଚନରେ ଅନ୍ତତଃ ରାଉରକେଲା ଆସନରୁ ଜନତା ଦଳର ପରାଜୟ ହେଉ, ଏହା ଥିଲା ରାଜୁବାବୁଙ୍କ ଇଚ୍ଛା। ମଜଦୁର ସଭା କହିବ ଓ ପ୍ରାର୍ଥୀ ଜିତିବନି–ସେତେବେଳେ ଏହା ଅସମ୍ଭବପ୍ରାୟ ଥିଲା।

ମାତ୍ର ସେଥିରେ ଗୋଟିଏ ଅସୁବିଧା ଥିଲା। ମଜଦୁର ସଭା (ଆର୍.ଏମ୍.ଏସ୍.) ସର୍ବଭାରତୀୟ ହିନ୍ଦ୍ ମଜଦୁର ସଭା (ଏଚ୍.ଏମ୍.ଏସ୍.) ସହିତ ସହବନ୍ଧିତ। ଏଚ୍.ଏମ୍.ଏସ୍.ର ସବୁ ନେତା ଜନତା ଦଳର। କଂଗ୍ରେସ ସହିତ ରାଜନୀତିକ ଭାବେ ଆର୍.ଏମ୍.ଏସ୍. କେବେ ବି ଯୋଡ଼ି ହୋଇପାରିବନି। କଂଗ୍ରେସର ନିଜ ୟୁନିଅନ ଆଇ.ଏନ୍.ଟି.ୟୁ.ସି. ସହବନ୍ଧିତ 'ହିନ୍ଦୁସ୍ତାନ୍ ଷ୍ଟିଲ୍ ୱାର୍କର୍ସ ଆସୋସିଏସନ୍'ର ନେତା ଥିଲେ ବଟକୃଷ୍ଣ ପଣ୍ଡା ଓ ସେ ୧୯୭୭ ନିର୍ବାଚନରେ ବ୍ରଜବାବୁଙ୍କଠାରୁ ହାରିଥିଲେ। ତେଣୁ ଆଗାମୀ ନିର୍ବାଚନରେ ସେ କଂଗ୍ରେସ ଟିକେଟ୍ ପାଇଁ ଦାବିଦାର ହେବା ସ୍ୱାଭାବିକ ଥିଲା। ଇନ୍ଦିରାଙ୍କ ସହିତ ତାଙ୍କର ସିଧା ଯୋଗାଯୋଗ ଥିଲା।

ଦୁଇ ନେତାଙ୍କ ଭିତରେ ଶେଷରେ କଥା ଛିଣ୍ଡିଲା। ବଟ ବାବୁ କଥା ନୁହେଁ। ସେ ଟିକେଟ୍ ପାଇବେନି। ରାଉରକେଲାକୁ ଜଣେ 'ବ୍ରାଣ୍ଡ-ନିଉ' ନେତା ଦିଆଯିବ। ଗୁରୁପଦ ନନ୍ଦ। ତାଙ୍କୁ ଜିତେଇବା ଦାୟିତ୍ୱ ଆର୍.ଏମ୍.ଏସ୍. ନେଉ।

ରାଜୁବାବୁଙ୍କ ମତ ଥିଲା–ନା ନା, ମୁଁ ତୁମକୁ ସାହଯ୍ୟ କରିବି ପଛେ, ୟୁନିଅନ ସେଥିରେ ପଶିବନି। ଗୁରୁପଦକୁ କହିବ–ସେ ଜିତିଲେ ଜିତୁ, ଏଠି ୟୁନିଅନ ଫିଉନିଅନ କରିବନି।

ଉତ୍ତରରେ ଜାନକୀବାବୁ ମହାଭାରତ ଯୁଦ୍ଧର ନାରାୟଣ ଓ ନାରାୟଣୀ-ସେନା ଗପ କହିଲେ।

ଗୁରୁପଦ ନନ୍ଦ ରାଉରକେଲା ପାଇଁ ଅଜଣା। ସେ ପ୍ରାର୍ଥୀ ହେବେ। ରାଜୁବାବୁଙ୍କୁ ପଚାରିଲି–ଯଦି ବଟବାବୁ ବିଦ୍ରୋହ କରନ୍ତି ତା'ହେଲେ ନିର୍ବାଚନ ତୁଲେଇବାକୁ କଂଗ୍ରେସ କର୍ମୀ ପାଇବ କେଉଁଠୁ ?

ମୋ କଥା କାଟୁ କଲାନି। ମାତ୍ର ଭବିତବ୍ୟ ଥିଲା ଯେ ବଟବାବୁ ବିଦ୍ରୋହ କରି ସ୍ୱାଧୀନ ପ୍ରାର୍ଥୀ ଭାବେ ଲଢ଼ି ଅମାନତ ହରେଇଲେ। ତାଙ୍କ ସମେତ ଆଉ ଏଗାର ଜଣ ନେତାଙ୍କୁ ଶୃଙ୍ଖଳାଭଙ୍ଗ କାରଣରୁ ଦଳରୁ ନିଲମ୍ବନ କରାଗଲା।

ଭୋଟର୍ ଚୌକସ ରେଡ୍ଡି ଥିଲେ ସୁଦ୍ଧା ନିର୍ବାଚନ ଆଗରୁ ଦଳ ସଫା !

ଜାନକୀବାବୁଙ୍କ 'ନାରାୟଣ' ଠିକ୍ କାମରେ ଲାଗିଲେ। ନିର୍ବାଚନ ସରିଗଲା। ନାରାୟଣୀ-ସେନାରୁ କେତେକ କଂଗ୍ରେସର କର୍ମକର୍ତ୍ତା ହୋଇଗଲେ। ମୁଁ ବି ସେଥିରୁ ଜଣେ।

ସୁଯୋଗ ଥିଲା ଯେ ରାଜନୀତିକ କର୍ମକର୍ତ୍ତା ଭାବେ ମୁଁ ତାଙ୍କ ସଂସ୍ପର୍ଶରେ ବାରମ୍ବାର ଆସିଛି। ତାଙ୍କ ବରାଦରେ ମୁଁ କେତେ କଥା ଲେଖିଥିବି, ହେଲେ ତାଙ୍କ ବାବଦରେ ଧାଡ଼ିଟିଏ ବି ଲେଖି ନାହିଁ। ୧୯୮୨ରେ ଥରେ ମାତ୍ର ସେ କାମ କରିଛି। ଗୁରୁପଦବାବୁ ଥା'ନ୍ତି ରାଉରକେଲାର ବିଧାୟକ ଓ ମୁଁ ଥାଏ ଜିଲ୍ଲା କଂଗ୍ରେସର ସାଧାରଣ ସଂପାଦକ। ବିଧିପୂର୍ବକ ଆୟୋଜନ କରାଗଲା ଯେ ଜାନକୀବାବୁଙ୍କୁ ରାଉରକେଲାରେ ଏକ (ଭବ୍ୟ) ନାଗରିକ ସମ୍ବର୍ଦ୍ଧନା ଦିଆଯିବ। ହେଲା। ସେଦିନ ତାଙ୍କୁ ଅର୍ପଣ କରାଯାଇଥିବା ମାନପତ୍ର ଖଣ୍ଡିକ ମୁଁ ଲେଖିଥିଲି।

ସମ୍ବର୍ଦ୍ଧନା ସନ୍ଧ୍ୟାରେ। ଦିନସାରା ମୁଖ୍ୟମନ୍ତ୍ରୀ ବ୍ୟସ୍ତ ଥିଲେ। କଳୁଙ୍ଗା ଶିଳ୍ପାଞ୍ଚଳ, କୁଚିଣ୍ଡା ଓ ବୀରମିତ୍ରପୁରଠାରେ ତାଙ୍କର କାର୍ଯ୍ୟକ୍ରମ ଥାଏ। ଶେଷ ଜାଗାରେ ଗୋଟିଏ ମନ୍ଦ ଖବର ପାଇଲି। କଂଗ୍ରେସରୁ ବହିଷ୍କୃତ କେତେକ ନେତା ହଲ୍‌ରେ କଳାପତାକା ଦେଖାଇବା ଚକ୍ରାନ୍ତ କରିଛନ୍ତି। ପୁଲିସ ସାହାଯ୍ୟ ଛଡ଼ା ଆଉ କିଛି ଉପାୟ ନ ଥାଏ। ତାହା ପୁଣି ଚୁପ୍‌ଚାପ୍। ନ ହେଲେ କଥା ରାଷ୍ଟ୍ର ହୋଇଯିବ। ବୀରମିତ୍ରପୁର କାର୍ଯ୍ୟକ୍ରମ ମଝିରୁ ସାରଙ୍କଠାରୁ ଅନୁମତି ନେଇ ସିଧା ଆସିଲି ସମ୍ବର୍ଦ୍ଧନା ସଭାସ୍ଥଳକୁ। ପୁଲିସ ଚିହ୍ନଟ କରି ଛଅ ଜଣଙ୍କୁ ଭଗେଇ ଦେଲା। ତେବେ ବି ତିନି ଜଣ ପକେଟରେ କଳା କନା ଲୁଚେଇ ରହିଗଲେ। ସେମାନଙ୍କ ଟାଇମିଂ ଷ୍ଟ୍ରାଟେଜି ଟିକେ ଭୁଲ ହୋଇଗଲା। ହଲ୍‌ର ପ୍ରବେଶ ପଥରେ ମୁଖ୍ୟମନ୍ତ୍ରୀଙ୍କୁ ଶଙ୍ଖ, ଧୂପ, ଦୀପ, ମୁରୁଜରେ ଆବାହନ କରାଯାଉଥିବାବେଳେ, ସେମାନେ କନା ହଲେଇ ଚିତ୍କାର କଲେ। ତା'ପରେ ଯାହା ଧାର୍ଯ୍ୟ ତାହା ହେଲା।

ଇସ୍ପାତ କାରଖାନା ସହାୟତାରେ ସିଭିକ୍-ସେଣ୍ଟର ସୁନା କନିଆ ପରି ଦାଉଦାଉ ଝଲସୁଥାଏ। କଲିକତାରୁ ଗୋଟିଏ ଟ୍ରକ ଫୁଲ ଅଣା ଯାଇଥାଏ। ସମୁଦାୟ ମଞ୍ଚ ରଜନୀଗନ୍ଧାରେ ସଜା ହୋଇଥାଏ। ସଭା ପରିଚାଳନା ଦାୟିତ୍ୱ ଥିଲା ମୋର।

ବିଧାୟକ ଗୁରୁପଦ ନନ୍ଦଙ୍କ ଦ୍ୱାରା ସ୍ୱାଗତ ଭାଷଣ। ତାହା ଛପା ହୋଇ ବଣ୍ଟା ହୋଇଥିଲା। ଭାଷଣ ଶେଷ କରି ବିଧାୟକ ନିଜ ସିଟ୍‌ରେ ବସିଲେ। ତାଙ୍କୁ ମୁଖ୍ୟମନ୍ତ୍ରୀ ଫୁସ୍ ଫୁସ୍ ସ୍ୱରରେ କହିଲେ–ବଢ଼ିଆ ଭାଷଣଟେ ଦେଲୁ। ସତ କହିଲୁ, ଯାକୁ ତୁ ଲେଖିଚୁ? ଗୁରୁପଦବାବୁ ଆଦୌ ଛୋଟଲୋକୀ ନ କରି ମୋ ନାଁ କହିଲେ।

ବନ୍ଧମୁଣ୍ଡା ସାକ୍ଷାତ ପରେ, ସେଦିନ ରାତିରେ 'ରାଉରକେଲା ହାଉସ୍' ତାଙ୍କ ସହିତ ଭେଟ ମୋର ଦ୍ୱିତୀୟ ଅଭିଜ୍ଞତା। ତା'ପରେ ଅନେକ ଥର ଭେଟିଥିବି ସେ ମୁଖ୍ୟମନ୍ତ୍ରୀ ଥିବା ବେଳେ ଏବଂ ନ ଥିବା ବେଳେ ବି।

ଇଚ୍ଛା ଓ ଆଦର୍ଶ ଭିତରେ ଲଢ଼େଇ ହେଲେ ଇଚ୍ଛା ପ୍ରାୟ ଜିତେ। ଜାନକୀବାବୁଙ୍କ ଶାସନ କାଳକୁ ଓଡ଼ିଶାର ସ୍ୱର୍ଣ୍ଣଯୁଗ ବୋଲି ମୁଁ ବାରମ୍ବାର କହିଛି ଓ ଆଜି ବି କହୁଛି। ଯଦି ସେ କ୍ଳେଶ ଭୋଗିଥା'ନ୍ତି ତାହା କେବଳ ଗୁଜବ ଯୋଗୁଁ। ସେଗୁଡ଼ିକୁ କହି ବସିଲେ ଅଯଥା ଦୀର୍ଘ ହେବ ଏବଂ ଏ ଲେଖାରେ ତାହା ମୋର ଅଭିମୁଖ୍ୟ ବି ନୁହେଁ।

ଗୁଜବ। ମଣିଷ ବୁଦ୍ଧିର ଶ୍ରେଷ୍ଠ ପ୍ରେତାବତାର। ଧର୍ମଠାରୁ ଧର୍ଷଣ, ପ୍ରୀତିଠାରୁ ପ୍ରଳୟ– ସବୁ ସେଥିରେ ଜାଗା ଧରେ। ତା' ପାଇଁ ଗ୍ରାମାର୍ ନ ଥାଏ। ଯେଉଁଠି ଯେଉଁଟା ବି ଫିଟ୍ ହୋଇପାରେ। ରାଜାଠୁଁ ରଙ୍କ ଯାଏ ସଭିଁଙ୍କୁ ସମାନ ଆଦରରେ ଗ୍ରାସ କରିପାରେ। ମାଗଣାରେ ମିଳେ ଏବଂ ସମସ୍ତଙ୍କ କାନ୍ଧରେ ଚଢ଼ି ସିଏ ଆଗକୁ ଚାଲେ। ଯେତେ ଜିଭ ଛୁଏଁ ସେତେ ବଳୁଆ ହୁଏ। ଉଲ୍ଲାସ, ଭୟ ଏବଂ ଭ୍ରାନ୍ତି ଏହାର ଜୀବନ-ରସ।

କେବଳ ସୁଖର କଥା ଏତିକି ଯେ ଏହା ଦୀର୍ଘାୟୁ ହୋଇପାରେନି।

ଶୂନ୍ୟତାକୁ ପ୍ରକୃତି ସହିପାରେନି। ତେଣୁ ତା' ଭିତରେ କଚ୍ଛା-କଚଡ଼ା ଯାହା ହେଲେ ବି ପୂରେଇ ଦିଏ। ଯେତେ ଅଧିକ ଆବର୍ଜନା ହୁଏ, ଆଶ୍ଚର୍ଯ୍ୟ ଯେ ତାହା ସୁତୁରା ମଣିଷମାନଙ୍କୁ ଦେଖିବାକୁ ସେତେ ଭଲ ଲାଗେ।

ଜାନକୀବାବୁଙ୍କ ରାଜନୈତିକ ବିଚକ୍ଷଣତା ଓ ସମାଜର ବିଭିନ୍ନ କ୍ଷେତ୍ରରେ ତାଙ୍କ ଅବଦାନଙ୍କୁ ଇତିହାସ ପାଇଁ 'ନିରବଧି କାଳ' ହିଁ ଆକଳନ କରିବ। ସେ ପ୍ରୟାସ ମୁଁ କଦାପି କରିବି ନାହିଁ।



# ରାଜନୀତିରେ କୌଟିଲ୍ୟ ଜାନକୀବଲ୍ଲଭ

ଅରୁଣ କୁମାର ପଣ୍ଡା

ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଅବର୍ତ୍ତମାନରେ ଓଡ଼ିଶାର ସାମାଜିକ ଏବଂ ରାଜନୈତିକ ଜୀବନରେ ଏକ ଶୂନ୍ୟତା ଅନୁଭୂତ ହେଉଛି–ଏହି କଥାକୁ କେହି ଅତିଶୟୋକ୍ତି ମନେ କରୁଥାଇପାରନ୍ତି; ପରନ୍ତୁ ଏହା ନିଛକ ସତ୍ୟ। ଜାନକୀବାବୁ ଥିଲାବେଳେ ଓଡ଼ିଶାଟା ପୂରି ଉଠୁଥିଲା। କ୍ଷମତାରେ ଥାନ୍ତୁ କି ନ ଥା'ନ୍ତୁ ସେ ଚର୍ଚ୍ଚାର ପରିଧି ଭିତରେ ସବୁବେଳେ ରହୁଥିଲେ। ଦେଶର ଜଣେ ଆଗଧାଡ଼ିର ସାମ୍ବାଦିକ ଓ ସଂପାଦକ ଭାବେ ପ୍ରସିଦ୍ଧିଲାଭ କରିଥିବା ଏହି ବ୍ୟକ୍ତିତ୍ୱ ଜଣକ କ୍ଷମତା ରାଜନୀତିରେ ମଧ ତତୋଽଧିକ ପ୍ରସିଦ୍ଧି (ସୁନାମ-ଦୁର୍ନାମ) ହାସଲରେ ସକ୍ଷମ ହୋଇପାରିଥିଲେ। ବେଳେବେଳେ ଆଖି ବନ୍ଦ କରି ଜାନକୀବାବୁଙ୍କ କଥା ଭାବିଲେ ତାଙ୍କ ସୌମ୍ୟ, ଶାନ୍ତ ଅଥଚ ଗାମ୍ଭୀର୍ଯ୍ୟପୂର୍ଣ୍ଣ ମୁଖମଣ୍ଡଳଟି ଆଖି ସାମ୍ନାକୁ ଭାସିଆସେ। ତାଙ୍କର ସ୍ୱାଗତୋକ୍ତି, ତାଙ୍କର ଚାଲି, ଚାହାଣି, ରହିବା, ଖାଇବା, ଭାବଭଙ୍ଗୀ ଅନନ୍ୟ ଓ ଅସାଧାରଣ। ଦୀର୍ଘ ଚଉଦବର୍ଷ ପାଖାପାଖି ମୁଖ୍ୟମନ୍ତ୍ରୀ ଏବଂ କେନ୍ଦ୍ର ମନ୍ତ୍ରୀ ପଦରେ ଆସୀନ ହୋଇଥିଲେ ମଧ ତାଙ୍କ ବ୍ୟବହାର ଓ ଆଚରଣରେ ଅହଂକାରର ଲେଶମାତ୍ର ପ୍ରକଟିତ ହେଉ ନ ଥିଲା–ଏହାହିଁ ତାଙ୍କର ବିଶେଷତା।

ମୁଁ ଜାନକୀବାବୁଙ୍କୁ ଜଣେ ନିରୋଳା ସାମ୍ବାଦିକ ଓ ସଂପାଦକ ଭାବେ ଦେଖିଛି। ସେତେବେଳେ ସେ 'ପ୍ରଜାତନ୍ତ୍ର'ର ସଂପାଦକ। 'ସମାଜ' ପରେ 'ପ୍ରଜାତନ୍ତ୍ର' ଓଡ଼ିଶାର ଦୁଇ ନମ୍ବର ସମୃଦ୍ଧ ସମ୍ବାଦପତ୍ର। ସେ ରହୁଥାନ୍ତି ପ୍ରଜାତନ୍ତ୍ର ପରିସର ମଧରେ ଜଣେ ସାଧାରଣ ମଣିଷ ଭାବରେ। ଐତିହାସିକ କଟକ ସହରରେ ବିଭିନ୍ନ ସଭାସମିତିରେ ଏବଂ ବେଳେବେଳେ ତାଙ୍କ ସହ ଭେଟ ହୁଏ ବିନୋଦବିହାରୀର ପୁସ୍ତକ ଦୋକାନ ଗଳିରେ। ଜଣେ ସଂସ୍କୃତିସମ୍ପନ୍ନ ପ୍ରାଜ୍ଞ ବିବେକଶୀଳ ବୁଦ୍ଧିମାନ୍ ମଣିଷ ଥିଲେ ସେ। ତାଙ୍କର ଭାଷଣ, ଲେଖା, ସଂପାଦକୀୟ, ରାଜନୈତିକ ଓ ସାମାଜିକ ଅନୁଶୀଳନ ସବୁଥିରେ ସ୍ୱତନ୍ତ୍ରତା। ତାଙ୍କୁ ଦେଖିବା, ତାଙ୍କସହ କଥା ହେବା ଏବଂ ତାଙ୍କ ଭାଷଣ ଶୁଣିବା ସହିତ ତାଙ୍କ ଲେଖା ପଢ଼ିବାପାଇଁ ଭଲ ଲାଗେ। ତାଙ୍କ ବ୍ୟକ୍ତିତ୍ୱରେ ଥିଲା ଆକର୍ଷଣର ମହକ ଏବଂ ପାଣ୍ଡିତ୍ୟର ସୁଗନ୍ଧ।

ଏହି ମହାଶୟଙ୍କୁ ମୁଁ ଆବିଷ୍କାର କରିଥିଲି ପ୍ରାୟ ପଚଶ ବର୍ଷ ତଳେ ଗୋପାଳଜୀ ମଠ (କଟକ)ରେ ଏକ ବୁଦ୍ଧିଜୀବୀ ସମାବେଶରେ। ସେତେବେଳେ ଆର୍‌ଏସ୍‌ଏସ୍‌ର ସରସଙ୍ଘ ଚାଳକ (ମୁଖ୍ୟ) ସ୍ୱର୍ଗତ ଗୁରୁଜୀ ଗୋଲଓ୍ୱାଲଙ୍କ କଟକ ଆସିଥିବା ଉପଲକ୍ଷ୍ୟରେ ସେଠାରେ ବୁଦ୍ଧିଜୀବୀମାନଙ୍କର ଏକ ସଭା ଆୟୋଜିତ ହୋଇଥିଲା। 'ପ୍ରଜାତନ୍ତ୍ର'ର ତତ୍କାଳୀନ ବରିଷ୍ଠ

ସହକାରୀ ସଂପାଦକ ସ୍ୱର୍ଗତ ଦେବେନ୍ଦ୍ରନାଥ ମହାନ୍ତି ଜାନକୀବାବୁଙ୍କୁ ସଙ୍ଗରେ ନେଇ ଆସିଥା'ନ୍ତି ସଭାକୁ। ସେ ସେତେବେଳେ ଏହି ଦୈନିକ ଖବରକାଗଜର ସମ୍ପାଦକ ଥିଲେ। ଜାନକୀବାବୁ ବିଚାର ସହ ବୋଧହୁଏ ଏକମତ ନ ହୋଇ କେତୋଟି ପ୍ରଶ୍ନ ପଚାରି ବସିଲେ। ଗୁରୁଜୀ ଅତି ଚତୁରତା ଓ ଶାଣିତ ବୌଦ୍ଧିକତାର ସହିତ ପ୍ରଶ୍ନ ସବୁର ଉତ୍ତର ଦେଲେ। ଗୁରୁଜୀଙ୍କ ଭିତରେ ଗୋଟିଏ ବିଶେଷ ପ୍ରକାରର 'ଚାର୍ମିଙ୍ଗ ପର୍ସନାଲିଟି' ଥିଲା। ନିଜ ବିଚାରଧାରାର ବିରୋଧୀମାନଙ୍କୁ ମଧ୍ୟ ସେ ଅକ୍ଳେଶରେ କାବୁ କରିଦେଉଥିଲେ। କିନ୍ତୁ ଜାନକୀବାବୁଙ୍କୁ ସମ୍ଭାଳିବାକୁ ତାଙ୍କୁ ଟିକେ ଅଧିକ ପରିଶ୍ରମ କରିବାକୁ ପଡ଼ିଥିଲା। ମୁଁ ସେଦିନ ଅନୁଭବ କରିଥିଲି ଏହି ସରଳ, ଶାଣିତ, ପତଳା ମଣିଷଟି ନିଶ୍ଚୟ ଦିନେ ଓଡ଼ିଶାକୁ ନେତୃତ୍ୱ ଦେବାର ସୁଯୋଗ ପାଇବେ।

ପରିସ୍ଥିତିର କାଳଚକ୍ରରେ ଜାନକୀବାବୁ 'ପ୍ରଜାତନ୍ତ୍ର' ଛାଡ଼ି ରାଜନୀତିରେ ଯୋଗଦେଲେ। ପ୍ରଥମ ପର୍ଯ୍ୟାୟରେ ବିଫଳତାର ବିଷାକ୍ତ ଦଂଶନରେ ସେ ଗଭୀରଭାବେ ଆହତ ହେଲେ ମଧ୍ୟ ନିଜର ସାଧନା, ଅଧ୍ୟବସାୟ ଏବଂ ଆଗକୁ ମାଡ଼ିଯିବାର ଅଦମ୍ୟ ଉତ୍ସାହରୁ ସେ କେବେ କ୍ଷାନ୍ତ ହୋଇ ନ ଥିଲେ। ସମସ୍ତେ ଜାଣନ୍ତି ଓଡ଼ିଶାର ରାଜନୀତି ସିଂହ ଡକ୍ଟର ହରେକୃଷ୍ଣ ମହତାବଙ୍କର ସେ ଥିଲେ ଅତ୍ୟନ୍ତ ଘନିଷ୍ଠ ଏବଂ ପ୍ରିୟପାତ୍ର। ଜଣେ ଚିହ୍ନରାଗ୍ରାହକ ଭାବେ ମହତାବ ତାଙ୍କ ରାଜନୀତି ପାଠଶାଳାରେ ଜାନକୀବଲ୍ଲଭଙ୍କୁ ପ୍ରବେଶ ଦେଲେ। କାରଣ ରେଭେନ୍‌ସା କଲେଜର ପଶ୍ଚିମ ଛାତ୍ରାବାସକୁ ସାଧାରଣତନ୍ତ୍ର ବା ରିପବ୍ଲିକ୍ ଘୋଷଣା କରି ସେଠାରେ ୟୁନିୟନ ଜାକ୍ ପତାକା ଓହ୍ଲାଇ ତ୍ରିରଙ୍ଗା ଉଡ଼ାଇବାରେ ଯେଉଁ ଯୁବକ ଜଣକ ଅଗ୍ରସାରଥିର ଭୂମିକା ଗ୍ରହଣ କରିଥିଲା ସେ ହେଉଛନ୍ତି ଜାନକୀବଲ୍ଲଭ, ଏକଥା ମହତାବଙ୍କ ଦୃଷ୍ଟି ଆକର୍ଷଣ କରିଥିଲା। ମହତାବ ଏହି ଉଚ୍ଚଶିକ୍ଷିତ ଯୁବକଙ୍କୁ ସାମ୍ବାଦିକତାପରି ଏକ ମହାନ୍ ପେସାରେ ଯୋଗଦେବାପାଇଁ ଅନୁପ୍ରେରିତ କରିଥିଲେ। ତରୁଣ ବିପ୍ଳବୀ ଜାନକୀବଲ୍ଲଭ ଓଡ଼ିଆ ସାମ୍ବାଦିକତାର ଏହି ଅନିଶ୍ଚିତତା କାଳରେ ଏହାକୁ ଏକ ମିଶନ ବା ଦେଶସେବାର ଉତ୍କୃଷ୍ଟ ଓ ପ୍ରଭାବଶାଳୀ ମାଧ୍ୟମ ଭାବେ ଗ୍ରହଣ କରି ସେଥିରେ ଯୋଗଦେଲେ। ସାମ୍ବାଦିକତା କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରି ଜାନକୀବାବୁ ପରବର୍ତ୍ତୀ ସମୟରେ 'ପ୍ରଜାତନ୍ତ୍ର' ଓ ଇଂରାଜୀ ଦୈନିକ 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର ମୁଖ୍ୟ ସମ୍ପାଦକ, ପ୍ରଜାତନ୍ତ୍ର ପ୍ରଚାର ସମିତିର ସମ୍ପାଦକ ଭାବେ ଦାୟିତ୍ୱ ଗ୍ରହଣ କଲେ। ନିଜର ଯୋଗ୍ୟତା ବଳରେ ସେ ନିଖିଳ ଭାରତ ସମ୍ବାଦପତ୍ର ସମ୍ପାଦକ ସମ୍ମେଳନର କାଉନ୍‌ସିଲ୍ ସଦସ୍ୟ ହୋଇଥିଲେ ଏବଂ ଅନେକଥର ବିଦେଶଗସ୍ତର ସୁଯୋଗ ପାଇଥିଲେ।

କେବଳ ମହତାବଜୀ ତାଙ୍କର ଗୁରୁ କିମ୍ବା ପ୍ରେରଣାଦାତା ନ ଥିଲେ। ଓଡ଼ିଶାର ଅନ୍ୟ ଜଣେ ମହାନ୍ ବରପୁତ୍ର, ରାଜର୍ଷି ଭାବେ ପରିଚିତ ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କର ସେ ଥିଲେ ଅତ୍ୟନ୍ତ ଘନିଷ୍ଠ ଏବଂ ସହଯୋଗୀ। ଏହି ମହାତ୍ମାଙ୍କର ସରଳ ତ୍ୟାଗପୂତ ଜୀବନ ଜାନକୀବାବୁଙ୍କୁ ଆକର୍ଷିତ କରିଥିଲା। ରାଜନୈତିକ କ୍ଷମତାର ଶୀର୍ଷରେ ଥାଇ ନବବାବୁ ଯେଭଳି ନିରଳସ ଓ ନିର୍ବିକାର ଜୀବନଯାପନ କରୁଥିଲେ ତାହା ପ୍ରତ୍ୟକ୍ଷ କରିଥିଲେ ଜାନକୀବାବୁ। ସେ ଥିଲେ ନବବାବୁଙ୍କ ଏକାନ୍ତ ଅନ୍ତରଙ୍ଗ ଓ ବିଶ୍ୱାସୀ। ଏହି ତରୁଣ ବିପ୍ଳବୀ ଜାନକୀ ଥିଲେ ସେତେବେଳର ମୁଖ୍ୟମନ୍ତ୍ରୀ ନବବାବୁଙ୍କ ରାଜନୈତିକ ପରାମର୍ଶଦାତା।

ନବବାବୁଙ୍କ ସାହଚର୍ଯ୍ୟରେ ଜାନକୀବାବୁ ଚାହିଁଥିଲେ ସେତେବେଳେ ଏମ୍.ଏଲ୍.ଏ., ମନ୍ତ୍ରୀ ହୋଇପାରିଥାନ୍ତେ; କିନ୍ତୁ ସାହିତ୍ୟ, ସାମ୍ବାଦିକତା ପେସା ଛାଡ଼ି ରାଜନୀତିରେ ଯୋଗଦେବାକୁ ସେ ନାପସନ୍ଦ କରିଥିଲେ। ଏକଥା ଅନେକ ଜାଣନ୍ତି ଯେ ହୀନଚକ୍ରାନ୍ତର ଶିକାର ହୋଇ ଜାନକୀବାବୁଙ୍କୁ ପ୍ରଜାତନ୍ତ୍ରରୁ ବିଦାୟ ନେବାକୁ ହେଲା ଏବଂ ଅନେକ ଅପମାନଜନକ ସ୍ଥିତିରେ ସେ ସେଠାରୁ ଆସିଲେ। କିନ୍ତୁ 'ଓଳିଆରୁ ପଡ଼ି ଗଜା' ଗୁଣର ଅଧିକାରୀ ଜାନକୀବାବୁ ପ୍ରଜାତନ୍ତ୍ରରୁ ଆସି 'ପୌରୁଷ' ନାମକ ଏକ ସମ୍ଭ୍ରାନ୍ତ ସାରସ୍ୱତ ପତ୍ରିକା ପ୍ରକାଶ କଲେ। ପ୍ରଜାତନ୍ତ୍ରରୁ ବାହାରି ନ ଥିଲେ କିମ୍ବା ଆଘାତ ପାଇ ନ ଥିଲେ, ଆମେ ତାଙ୍କୁ ପରବର୍ତ୍ତୀକାଳରେ ମୁଖ୍ୟମନ୍ତ୍ରୀ ଭାବେ ଦେଖି ନ ଥାନ୍ତେ।

ମୋର କାଲିପରି ମନେପଡୁଛି, କଟକ କିଲା ପଡ଼ିଆରେ କଂଗ୍ରେସର ଏକ ବିରାଟ ସଭାରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ନିର୍ବାଚନୀ ଭାଷଣ କାର୍ଯ୍ୟକ୍ରମ। ମଞ୍ଚ ଉପରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ଏବଂ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ପ୍ରାର୍ଥୀମାନେ। ଶ୍ରୀମତୀ ଗାନ୍ଧୀ ଏବଂ ଶ୍ରୀମତୀ ଶତପଥୀ ମଞ୍ଚ ଉପରେ ଦୁଇଟି ଚେୟାରରେ ବସିଥାନ୍ତି ଏବଂ କଟକ ଜିଲ୍ଲାର ଲୋକସଭା ପ୍ରାର୍ଥୀମାନେ ଏହି ଦୁଇଜଣଙ୍କ ପଛରେ ଛିଡ଼ା ହୋଇ ରହିଥାନ୍ତି ବୋଲକରା ଶିଶୁପରି। ଶ୍ରୀମତୀ ଶତପଥୀ ଜଣ ଜଣ କରି ପ୍ରାର୍ଥୀମାନଙ୍କୁ ଜନତାଙ୍କ ସହ ପରିଚିତ କରାଇଦେଉଥିଲେ। ପ୍ରାର୍ଥୀମାନେ ଆଗକୁ ଆସି ଉପସ୍ଥିତ ଜନତାଙ୍କୁ ଅଭିବାଦନ କରୁଥିଲେ। ଅବଶ୍ୟ ସେତେବେଳେ ମୋ ମନରେ ଟିକେ ପ୍ରତିକ୍ରିୟା ପ୍ରକାଶ ପାଇଲା। ମୁଁ ଭାବିଲି ସତରେ ରାଜନୀତି ସିଧାସଳଖ ବେଶ୍ୟାବୃତ୍ତି, ନ ହେଲେ ଏକ ବଡ଼ ସମ୍ବାଦପତ୍ରର ଲୋକପ୍ରିୟ ସଂପାଦକ ଥିବା ବ୍ୟକ୍ତିଟି କିଭଳି ଢଙ୍ଗରେ ନନ୍ଦିନୀଙ୍କ ପଛରେ ଛିଡ଼ା ହୋଇଛି। ସତରେ ଏହି ରାଜନୀତିବାଲାଙ୍କର କି ଦୟନୀୟ ଅବସ୍ଥା ! ସେତେବେଳେ ଅବଶ୍ୟ ମୋ ମନରେ ଜାନକୀବାବୁଙ୍କ ପ୍ରତି ଟିକେ ଅଶ୍ରଦ୍ଧା ସୃଷ୍ଟି ହୋଇଥିଲା। କିନ୍ତୁ ପରେ ବୁଝିଲି, ରାଜନୀତିରେ ଶିଡ଼ି ଚଢ଼ିବାପାଇଁ ହେଲେ ଏହାଛଡ଼ା ଅନ୍ୟ ଉପାୟ ନାହିଁ।

ଜାନକୀବାବୁ ତାଙ୍କ ରାଜନୈତିକ ଜୀବନ ଭିତରେ ଖୁବ୍ ବିବାଦୀୟ ହୋଇପଡ଼ିଥିଲେ। ଓଡ଼ିଶାର ଆଉ କୌଣସି ରାଜନେତା ଏଭଳି ବିବଦମାନ ହୋଇଥିବା କଥା ମୁଁ ଜାଣେନା। ରାଜନୈତିକ ଗୁରୁ ଡକ୍ଟର ମହତାବଙ୍କ ବିହାରୀବାଗ ରାଜନୀତି ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଉପାଧି ଏବଂ ପରେ ପିଏଚ୍.ଡି. ଓ ଡି.ଲିଟ୍. କରିଥିବା ଜାନକୀବଲ୍ଲଭ ସମାଲୋଚନାର ସଙ୍କଟ ଭିତରେ କେବେ ଶଙ୍କିଯାଇ ନାହାନ୍ତି। ସେ ଦୀର୍ଘକାଳ ଅର୍ଥାତ୍ ଚଉଦ ବର୍ଷ ମୁଖ୍ୟମନ୍ତ୍ରୀ ରହି ସେ ଦେଶରେ ଏକ ରେକର୍ଡ ସ୍ଥାପନ କରିଥିଲେ। ପୂର୍ବରୁ କେନ୍ଦ୍ର ପ୍ରତିରକ୍ଷା ଉପମନ୍ତ୍ରୀ, ରାଷ୍ଟ୍ରମନ୍ତ୍ରୀ ଏବଂ ଅଳ୍ପ ସମୟ ପାଇଁ କେନ୍ଦ୍ର ବେସାମରିକ ବିମାନ ଚଳାଚଳ କ୍ୟାବିନେଟ୍ ମନ୍ତ୍ରୀ ଭାବରେ ମଧ୍ୟ ସେ ନିଜ ଦକ୍ଷତାର ପରିଚୟ ଦେଇଥିଲେ। ମୁଖ୍ୟମନ୍ତିତ୍ୱର ଦ୍ୱିତୀୟ ପଞ୍ଚକରେ ତାଙ୍କ ରାଜନୈତିକ ଜୀବନରେ କଳଙ୍କର ପ୍ରଲେପ ଲେପନ ପାଇଁ ରୀତିମତ ଷଡ଼୍‌ଯନ୍ତ୍ର ହେଲା। ସାମ୍ବାଦିକମାନଙ୍କ ମଧ୍ୟରୁ ଅଧିକାଂଶ (ମୁଁ ମଧ୍ୟ) ତାଙ୍କ ବିରୋଧରେ ବିଷୋଦ୍‌ଗାର କରୁଥିଲୁ। ପ୍ରତିଦିନ ମୁଖ୍ୟମନ୍ତ୍ରୀଙ୍କ ବିରୋଧରେ କିଛି ନା କିଛି ମସଲାଯୁକ୍ତ ସମ୍ବାଦ ପୃଷ୍ଠାମଣ୍ଡନ

ନ କଲେ କାଗଜ ପଢ଼ିବାପାଇଁ ଫିକା ଲାଗୁଥିଲା। ଯୋଗାଡ଼ଯନ୍ତ୍ର କରି ଜାନକୀବାବୁଙ୍କ ବିରୋଧରେ ସମ୍ବାଦ ଛାପିବା ଆମର ଦୈନନ୍ଦିନ ଅଭ୍ୟାସରେ ପରିଣତ ହୋଇଯାଇଥିଲା। ବିଶେଷକରି 'ସମାଜ' ଖବରକାଗଜ ବିରୋଧୀ ଦଳ କାଗଜରେ ପରିଣତ ହୋଇଥିଲା। ସେତେବେଳେ 'ସମାଜ'ର ଭ୍ରାମ୍ୟମାଣ ପ୍ରତିନିଧି ଥିଲି ଏବଂ ଆମର ପୂଜ୍ୟ ସଂପାଦକ ରାଧାନାଥବାବୁ ମୋତେ ଖଣ୍ଡିଏ ଝୁଲା ବ୍ୟାଗରେ ଟେପ୍‌ରେକର୍ଡଟିଏ ଦେଇ କହିଥିଲେ– ଜାନକୀ ଓ ବସନ୍ତ ବିରୋଧରେ ସମ୍ବାଦ ଛାପ। ଜାନକୀବାବୁ ମୁଖ୍ୟମନ୍ତ୍ରୀ ହେବାର ଦୁଇ ବର୍ଷ ପରେ ରାଧାନାଥବାବୁଙ୍କୁ କୃଷି ବିଶ୍ୱବିଦ୍ୟାଳୟର ପ୍ରୋ-ଚାନ୍‌ସେଲର ପଦରୁ ଏବଂ ଶୈଳବାଳା ମହିଳା ମହାବିଦ୍ୟାଳୟର ପରିଚାଳନା ସମିତିର ସଭାପତି ପଦରୁ ବାହାର କରିଥିଲେ। ଏହାକୁ ରାଧାନାଥବାବୁ ନିଜର ଅପମାନ ବୋଲି ଭାବି ଜାନକୀବାବୁଙ୍କ ଶତ୍ରୁ ହୋଇପଡ଼ିଥିଲେ। ତା' ସାଙ୍ଗକୁ ତତ୍କାଳୀନ ମନ୍ତ୍ରୀ ତଥା ଜାନକୀବାବୁଙ୍କ ଘନିଷ୍ଠ ସହଯୋଗୀ ବସନ୍ତ କୁମାର ବିଶ୍ୱାଳ ସଭାମାନଙ୍କରେ ରାଧାନାଥବାବୁଙ୍କୁ ପ୍ରତ୍ୟକ୍ଷଭାବରେ ଗାଳିଗୁଲଜ କରିବା ଘଟଣାରେ ରାଧାନାଥବାବୁ କ୍ଷୁବ୍ଧ ଥିଲେ। ତଥାପି ଜଣେ ସାମ୍ବାଦିକ ମୁଖ୍ୟମନ୍ତ୍ରୀ ଆସନ ମଣ୍ଡନ କରିଛନ୍ତି, ଏହା ମୋ ପାଇଁ ଏକ ଗର୍ବର ବିଷୟ ଥିଲା। ମୁଁ ତାଙ୍କ ବିରୋଧରେ ଲେଖୁଥିଲେ ମଧ୍ୟ ତାଙ୍କୁ ଆନ୍ତରିକତାର ସହିତ ଶ୍ରଦ୍ଧା କରୁଥିଲି।

ସେତେବେଳେ ଜାନକୀବାବୁଙ୍କ ଅବସ୍ଥା ମୁଁ ଲକ୍ଷ୍ୟ କରିଛି। ଗୀତାର ଶ୍ଳୋକ 'ତୁଲ୍ୟ ନିନ୍ଦାସ୍ତୁତି...' ପରି ଜାନକୀବାବୁ ସ୍ଥିତପ୍ରଜ୍ଞ ଥିଲେ। ସତେଯେପରି କୌଣସି ନିନ୍ଦା, ସ୍ତୁତି ତାଙ୍କୁ ସ୍ପର୍ଶ କରୁ ନାହିଁ। ଏହି ଅବସ୍ଥାର ଚରମ ସ୍ଥିତି ଦେଖିବାକୁ ମିଳିଲା ଯୌନ ବ୍ୟଭିଚାର ସଂପର୍କୀୟ ସମ୍ବାଦ, ବହୁଳ ପ୍ରସାରିତ ଇଂରାଜୀ ସାପ୍ତାହିକ 'ଇଲଷ୍ଟ୍ରେଟେଡ୍ ଉଇକ୍ଲି'ରେ ପ୍ରକାଶ ପରେ। ବୋଧହୁଏ ଏତେ ଖୋଲାଖୋଲି ଭାବରେ ଦେଶର କୌଣସି ରାଜନେତାଙ୍କୁ ନିନ୍ଦିତ କରାଯିବାର ଏହା ପ୍ରଥମ ଘଟଣା। ପରେ କୋଟିଏ ଟଙ୍କାର ମାନହାନି ମକଦ୍ଦମା ଏବଂ 'ଉଇକ୍ଲି'ରେ କ୍ଷମାପ୍ରାର୍ଥନା। ଏସବୁକୁ ମୁଁ ଲକ୍ଷ୍ୟ କରୁଥିଲି ଜାନକୀବାବୁଙ୍କ ମାନସିକ ଅବସ୍ଥାରୁ। ଏତେ ପରେ ସେ 'ସୁଖେଷୁ ଉଦ୍‌ବିଗ୍ନମନା, ଦୁଃଖେଷୁ ବିଗତସ୍ପୃହା' ପରି ଜଣାପଡୁଥିଲେ। ସଭାସମିତିରେ ଦେଖାହୁଏ। ଭାବୁଥିଲି ହୃଦୟକୁ କିଭଳି କଠୋର କରି, ବିଷକୁ ଆକଣ୍ଠ ପାନ କରି ଏହି ମଣିଷଟି ନିଜର ଗନ୍ତବ୍ୟ ପଥରେ ଆଗେଇ ଚାଲିଛି। ଆଉ କୌଣସି ରାଜନେତା ହୋଇଥିଲେ ବୋଧହୁଏ ଆଉ ଉଠିପାରି ନ ଥାନ୍ତା।

ଅନେକ ଘଟଣାର ସତ୍ୟତା ପ୍ରମାଣିତ ହେଲା ନାହିଁ। ପ୍ରଚାର କାରଣରୁ ଜାନକୀବାବୁଙ୍କ ସଂପର୍କରେ ଲୋକଙ୍କ ମନରେ ଅନେକ ଭ୍ରାନ୍ତଧାରଣା। ଯେଉଁମାନେ ସେତେବେଳେ ତାଙ୍କର ରାଜନୈତିକ ବିରୋଧୀ ସେମାନଙ୍କ ଭିତରୁ ଅଧିକାଂଶ ଯୌନଦୋଷୀ ପ୍ରମାଣିତ। ମୁଁ ଜାନକୀବାବୁଙ୍କ ପ୍ରଶଂସକ କିମ୍ବା ନିନ୍ଦୁକ ନୁହେଁ। ତାଙ୍କ ସଂପର୍କରେ ମୁଁ ବି ସ୍ଥିତପ୍ରଜ୍ଞ। ପରନ୍ତୁ ବିଜ୍ଞ ରାଜନେତା, ସାମ୍ବାଦିକ ଓ ସାରସ୍ୱତ ସାଧକ ଭାବରେ ମୁଁ ତାଙ୍କ ପାଇଁ ଗର୍ବ କରେ।

ବିଜୁବାବୁ ମୁଖ୍ୟମନ୍ତ୍ରୀ ଥିବାବେଳେ (୧୯୯୦ ସମୟ) ଜାନକୀବାବୁ କ୍ଷମତା ବଳୟର ବାହାରେ ଥିଲେ। ସେତେବେଳେ ଥରେ ମୋତେ ସେ ଫୋନ୍ କରି ତାଙ୍କ ସେଲ୍‌ଟର ଛକ

ଘରକୁ ଡାକିଲେ। ମୁଁ ଗଲି। ସେ ଅଭିଯୋଗ କଲେ, ମୋ ଭଳି ଜଣେ ନିର୍ଭୀକ, ନିରପେକ୍ଷ ସାମ୍ବାଦିକ 'ଆଠଗଡ଼ରେ ଜାନକୀବାବୁଙ୍କ ପଦଯାତ୍ରା ଅନ୍ତରାଳେ' ଶୀର୍ଷକ ସମ୍ବାଦରେ କିଭଳି ଏକତରଫା ବିବରଣୀ ପ୍ରଦାନ କଲା। ମୁଁ କହିଲି, ଆପଣ ସବୁ ଜାଣନ୍ତି, ମୁଁ ନାଚାର। ଜାନକୀବାବୁ ମୋତେ ଚା' କପେ ପିଆଇ ପାଖରେ ବସିଥିବା ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକଙ୍କୁ କହିଲେ– 'ଅରୁଣବାବୁଙ୍କ ସମ୍ବାଦ ପରିବେଷଣଶୈଳୀ ଖୁବ୍ ଚମତ୍କାର। ଜୟନ୍ତୀ ମ୍ୟାଡାମ୍ ତୁରନ୍ତ ପ୍ରତିବାଦ କରି କହିଲେ, 'ତୁମ ବିରୋଧରେ ସେ ଇଆଡୁ ସିଆଡୁ ଲେଖିଛନ୍ତି, ତୁମେ କହୁଛ ଶୈଳୀ ଭଲ।" ଜାନକୀବାବୁ ବିରକ୍ତିମିଶା ସ୍ୱରରେ କହିଲେ– 'ହଇ ହେ! ମୁଁ ସାମ୍ବାଦିକ, ମୁଁ ଜାଣେ ସମ୍ବାଦ କ'ଣ ? ତୁମେ କୁଆଡୁ ବୁଝିବ ସେ କଥା। ଅରୁଣବାବୁ ଏତେ ଚମତ୍କାର ଲେଖନ୍ତି ଯେ ସତକୁ ମିଛ ଏବଂ ମିଛକୁ ସତରେ ପରିଣତ କରିଦିଅନ୍ତି। ଆଠଗଡ଼ ଘଟଣାରେ ଠିକ୍ ତାହାହିଁ ହୋଇଛି।'

ଜାନକୀବାବୁଙ୍କ ଏହି ଲଘୁ ପରିହାସ ଶୁଣି ଆମେ ସମସ୍ତେ ନ ହସି ରହିପାରିଲୁ ନାହିଁ। ଜାନକୀବାବୁ ଓଡ଼ିଶା ରାଜନୀତିର ଜଣେ ବିବାଦୀୟ, ଅଦମନିତ ବ୍ୟକ୍ତିତ୍ୱ। ଥରେ ନୂତନ ବର୍ଷରେ ମୁଁ ତାଙ୍କ ଦସ୍ତଖତ ସମ୍ବଳିତ ଏକ ଉପହାରଟିଏ ପାଇଲି। ଖୋଲି ଦେଖିଲି, ଦୁଇଟି ବିଶାଳ ଗ୍ରନ୍ଥ ତାଙ୍କ ସଂକଳିତ ରାମାୟଣ ଓ ମହାଭାରତ। ସାରସ୍ୱତ ସାଧକ, ସଂସ୍କୃତ ବିଦ୍ୱାନ୍ ପଣ୍ଡିତ ଜାନକୀବଲ୍ଲଭଙ୍କ ପ୍ରବଚନ ଶୁଣିଲେ ମନେହୁଏ ତାଙ୍କର ଅଧ୍ୟୟନ କେତେ ଗଭୀର। ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ରାଜନୀତି ବିଜ୍ଞାନରେ ଏମ୍.ଏ. ପଢୁଥିଲେ। ସେଇଠାରେ ସେ ସଂସ୍କୃତ ଅଧ୍ୟୟନରେ ରତ ହେଲେ ଏବଂ ମନସ୍ଥ କଲେ ପୁରୀରେ ଏକ ସଂସ୍କୃତ ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ। ଜାନକୀବାବୁ ଘଣ୍ଟା ଘଣ୍ଟା ଧରି ସଂସ୍କୃତରେ ଅନର୍ଗଳ ଭାଷଣ ଦେଇପାରନ୍ତି, ଏକଥା ବୋଧହୁଏ ଅନେକେ ଜାଣନ୍ତି ନାହିଁ। ସଂସ୍କୃତ ଭାଷା ପ୍ରତି ସମ୍ମାନ ଓ ଓଡ଼ିଆ ଭାଷା ପ୍ରତି ଶ୍ରଦ୍ଧା କାରଣରୁ ରାଜ୍ୟରେ ଏହି ଦୁଇ ଭାଷାର ବିକାଶପାଇଁ ସେ ସଂଗ୍ରାମ କରିଥିଲେ। ଓଡ଼ିଆକୁ ସରକାରୀ ଭାଷା ଘୋଷଣା କରି ଓଡ଼ିଆରେ ଫାଇଲ୍ କାମ କଲେ। ଓଡ଼ିଆ ଟାଇପ୍ ରାଇଟର ଆଣିଲେ। ଆସାମରେ ରାଜ୍ୟପାଳ ଥିବାବେଳେ ଅସମୀୟା ଭାଷାରେ ଭାଷଣ ଦେଲେ। ଅଥଚ ଆମର ଏବର ମୁଖ୍ୟମନ୍ତ୍ରୀ ଷୋହଳ ବର୍ଷ ପରେ ବି କାଗଜ ନ ଦେଖି ଧାଡ଼ିଏ ଓଡ଼ିଆ କହିପାରୁ ନାହାନ୍ତି।

ବହୁଚର୍ଚ୍ଚିତ ଏହି ବ୍ୟକ୍ତିଙ୍କ ସଂପର୍କରେ ଅନେକ କିଛି ଲେଖିବାର ଥିଲେ ମଧ୍ୟ ଅତି ଦୀର୍ଘ ଦୋଷରୁ ତ୍ରାହି ପାଇବାପାଇଁ କଲମକୁ ଏହିଠାରେ ହିଁ ବନ୍ଦ କରିବାପାଇଁ ବାଧ୍ୟ ହେଉଛି। ଏହି ମହାନ୍ ସୁପୁତ୍ରଙ୍କୁ ଉପଯୁକ୍ତ ସମ୍ମାନ ଦେବାପାଇଁ ରାଜ୍ୟ ସରକାର ଉଦ୍ୟମ କରିବା ଉଚିତ। ରାଜନୀତିର ପଶାପାଲିରେ ନିର୍ଭୁଲ ଗୋଟିଚାଳନା କରିବାରେ ସେ ଥିଲେ ସିଦ୍ଧହସ୍ତ, କୌଟିଲ୍ୟଙ୍କ ତୁଲ୍ୟ ବୁଦ୍ଧିମାନ।



# ଓଡ଼ିଶାର କୃଷିବିକାଶ ଓ ଜାନକୀବଲ୍ଲଭ

ନଟବର ଖୁଣ୍ଟିଆ

ଓଡ଼ିଶା ଏକ ଗ୍ରାମବହୁଳ, କୃଷିପ୍ରଧାନ ରାଜ୍ୟ। ରାଜ୍ୟର ଦୁଇ-ତୃତୀୟାଂଶ ଲୋକ କୃଷି ଓ କୃଷି ଆନୁଷଙ୍ଗିକ ବୃତ୍ତି ଉପରେ ନିର୍ଭର କରି ଜୀବିକା ନିର୍ବାହ କରନ୍ତି। ଦେଶ ସ୍ୱାଧୀନ ହେବାର ପ୍ରାୟ ସାତ ଦଶନ୍ଧି ବିତିବାକୁ ଯାଉଥିଲେ ବି ଆଜିପର୍ଯ୍ୟନ୍ତ କୃଷି ଉପରେ ନିର୍ଭର କରୁଥିବା ଲୋକଙ୍କ ଅନୁପାତ ବିଶେଷଭାବରେ ହ୍ରାସ ପାଇ ନାହିଁ। କିନ୍ତୁ ଆମ ରାଜ୍ୟର ମୋଟ ଘରୋଇ ଉତ୍ପାଦନ (ଜିଡ଼ିପି)ରେ କୃଷିର ଭାଗ ବର୍ଷ ପରେ ବର୍ଷ ହ୍ରାସ ପାଇବାରେ ଲାଗିଛି, ଯାହା ସ୍ୱାଧୀନତାବେଳେ ୭୦ ପ୍ରତିଶତ ଥିଲା ଏବେ ଆସି ୧୫ ପ୍ରତିଶତରେ ପହଞ୍ଚିଲାଣି। ଏହା ସୂଚାଏ ଯେ, କୃଷକର ଆୟ କ୍ରମାଗତ ଭାବରେ ହ୍ରାସ ପାଉଛି। ଦିନକୁଦିନ ସେ ଦରିଦ୍ରରୁ ଦରିଦ୍ରତର ହେବାରେ ଲାଗିଛି। କାରଣ କୃଷି ପ୍ରତି ଆମେ ଯେତିକି ଗୁରୁତ୍ୱ ଦେବା କଥା ସେତିକି ଗୁରୁତ୍ୱ ଦେଉ ନାହୁଁ।

ଗୋଟିଏ ରାଷ୍ଟ୍ର ବା ରାଜ୍ୟର କୌଣସି କ୍ଷେତ୍ରରେ ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ ହେଲେ ସେଥିପାଇଁ ସୁଚିନ୍ତିତ ଓ ଦୂରଦୃଷ୍ଟି ଥିବା ନୀତି ପ୍ରଣୟନ କରି ସେହି ନୀତି ଆଧାରରେ ଦୀର୍ଘମିଆଦୀ ଯୋଜନା ପ୍ରସ୍ତୁତ କରି ପ୍ରତିବଦ୍ଧତା ସହ କାର୍ଯ୍ୟ କରିବାକୁ ହୋଇଥାଏ। କିନ୍ତୁ ଦୁଃଖର କଥା, ଦେଶ ସ୍ୱାଧୀନ ହେବାର ଅର୍ଦ୍ଧଶତାବ୍ଦୀ ବିତିଯିବା ପରେ ମଧ୍ୟ କୃଷିପ୍ରଧାନ ରାଜ୍ୟ ଓଡ଼ିଶାରେ କୃଷିନୀତିଟିଏ ପ୍ରଣୟନ ହୋଇପାରି ନ ଥିଲା। ୧୯୯୫ ମସିହାରେ ଜାନକୀବାବୁ ତୃତୀୟ ଥର ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାପରେ, ଅନୁଭବ କଲେ ଯେ, କୃଷିର ଦୀର୍ଘସ୍ଥାୟୀ ବିକାଶ ପାଇଁ ବିକ୍ଷିପ୍ତ ଓ ଅସ୍ଥାୟୀ ନୀତି ବଦଳରେ ଏକ ସୁଚିନ୍ତିତ କୃଷିନୀତି ପ୍ରଣୟନ କରି ଆନ୍ତରିକତାର ସହ ତାହାକୁ କାର୍ଯ୍ୟକାରୀ କରିବାକୁ ହେବ। ସେ ପୂର୍ବରୁ ୧୯୮୦ ରୁ ୧୯୮୫ ଏବଂ ୧୯୮୫ରୁ ୧୯୯୦ରେ ଦୁଇ ଦୁଇଥର ମୁଖ୍ୟମନ୍ତ୍ରୀ ଭାବରେ ରାଜ୍ୟର ଶାସନଭାର ନେଇଥିବାବେଳେ କୃଷି ବିକାଶ ପ୍ରତି ଗୁରୁତ୍ୱ ଦେଇ ଜଳସେଚନ ବ୍ୟବସ୍ଥାର ସଂପ୍ରସାରଣ, ହେକ୍ଟର ପ୍ରତି ଶସ୍ୟ ଉତ୍ପାଦନ ବୃଦ୍ଧି, ଦୁଗ୍ଧ ଉତ୍ପାଦନ ବୃଦ୍ଧି ପ୍ରତି ଗୁରୁତ୍ୱ ଦେବା ସହିତ କୃଷକ ଓ କୃଷି ଶ୍ରମିକଙ୍କର ଅର୍ଥନୈତିକ ପ୍ରଗତିପାଇଁ Economic Rehabilitation of Rural Poor (ERRP) ଆଦି କାର୍ଯ୍ୟକ୍ରମ ପ୍ରଚଳନ କରିଥିଲେ। ୧୯୮୦ରୁ ୧୯୮୫ ମଧ୍ୟରେ ଅଧିକ ୨ ଲକ୍ଷ ୭୨ ହଜାର ୨୦୮ ହେକ୍ଟର ଜମିକୁ ଜଳ ଯୋଗାଇ ଦିଆଯାଇଥିବାବେଳେ ୧୯୮୫ରୁ ୧୯୯୦ ମଧ୍ୟରେ ୧ ଲକ୍ଷ ୮୨ ହଜାର ୯୫ ହେକ୍ଟର ଅଧିକ ଜମିକୁ ଜଳସେଚିତ କରିଥିଲେ। ପୂର୍ବରୁ ଏପରି ସଫଳତା ଆଉ କେଉଁ ମୁଖ୍ୟମନ୍ତ୍ରୀ ହାସଲ କରି ନ ଥିଲେ। ତୃତୀୟ ଥର ପାଇଁ

୧୯୯୫ରେ ମୁଖ୍ୟମନ୍ତ୍ରୀ ହେବାପରେ୧୯୯୬ ମସିହାରେ କୃଷିର ଦୀର୍ଘମିଆଦୀ ଓ ନିରନ୍ତର ବିକାଶପାଇଁ ଏକ ସ୍ୱୟଂସଂପୂର୍ଣ୍ଣ, ଦୂରଦୃଷ୍ଟିସମ୍ପନ୍ନ ଆଦର୍ଶ କୃଷିନୀତି ପ୍ରଣୟନ କରି ତାହାକୁ ନିଷ୍ଠାର ସହ କାର୍ଯ୍ୟକାରୀ କରିବାକୁ ଆନ୍ତରିକ ଉଦ୍ୟମ କଲେ। ଏହାଥିଲା ରାଜ୍ୟର ପ୍ରଥମ କୃଷିନୀତି। ଏଥିରେ କୁହାଗଲା ଯେ, ଓଡ଼ିଶାର ମୃତ୍ତିକା, ବୃଷ୍ଟିପାତ ଏବଂ ଜଳବାୟୁ ଚାଷ ପାଇଁ ଅତ୍ୟନ୍ତ ଉପଯୋଗୀ ହୋଇଥିଲେ ହେଁ, ଏହାର ପୂର୍ଣ୍ଣ ବିନିଯୋଗ ଏପର୍ଯ୍ୟନ୍ତ କରାଯାଇ ନାହିଁ। ଓଡ଼ିଶାର ଜନସଂଖ୍ୟାର ଶତକଡ଼ା ୭୦ ଭାଗ କୃଷି ଉପରେ ନିର୍ଭର କରନ୍ତି। ଯେଉଁ ପର୍ଯ୍ୟନ୍ତ କୃଷିର ଆଶାନୁରୂପ ଉନ୍ନତି ହୋଇ ନାହିଁ, ସେପର୍ଯ୍ୟନ୍ତ ଓଡ଼ିଶାର ସର୍ବାଙ୍ଗୀଣ ଉନ୍ନତି ହେବା ଅସମ୍ଭବ। ସେଥିପାଇଁ ତାଙ୍କ ସରକାର କୃଷିକୁ ଅଗ୍ରାଧିକାର ଦେଇ ଓଡ଼ିଶାର ପ୍ରଥମ କୃଷିନୀତି ପ୍ରଣୟନ କଲେ। ଏହି କୃଷିନୀତିରେ କୃଷିକୁ ପ୍ରଥମଥରପାଇଁ ଶିଳ୍ପର ମାନ୍ୟତା ଦିଆଗଲା। ଏହି ନୀତିକୁ ଅନୁଧ୍ୟାନ କଲେ ଯେ କେହି ଅନୁଭବ କରିବ ଯେ ଏହା କୃଷିର ସମନ୍ୱିତ ବିକାଶକୁ ତ୍ୱରାନ୍ୱିତ କରିବା ସହିତ ଯୁବପିଢ଼ିକୁ କୃଷି କ୍ଷେତ୍ରରେ ଆତ୍ମନିଯୁକ୍ତି ପାଇଁ ଆକୃଷ୍ଟ କରିବ। ଏଥିରେ କେବଳ ଖାଦ୍ୟଶସ୍ୟ ଓ ପନିପରିବା ଉତ୍ପାଦନ ପ୍ରତି ଗୁରୁତ୍ୱ ଦିଆ ନ ଯାଇ ଫୁଲ, ଫଳ ଅର୍ଥକରୀ ଫସଲର ଉତ୍ପାଦନ ବୃଦ୍ଧି ସାଙ୍ଗକୁ କିପରି ଆନୁଷଙ୍ଗିକ ବୃତ୍ତି ପଶୁପାଳନ, ଦୁଗ୍ଧ ଉତ୍ପାଦନ, କୁକୁଡ଼ା ଚାଷ, ଅଣ୍ଡା ଉତ୍ପାଦନ, ମତ୍ସ୍ୟ ଚାଷ ଆଦି ପ୍ରତି ସମଗୁରୁତ୍ୱ ଦିଆଯାଉଥିଲା। କୃଷି ଉତ୍ପାଦଭିତ୍ତିକ ଶିଳ୍ପ ସ୍ଥାପନ ପାଇଁ କୃଷିନୀତିରେ ସ୍ପଷ୍ଟ ବ୍ୟବସ୍ଥା ରହିଥିଲା। କୃଷିକୁ କେବଳ ଜୀବନଧାରଣର ଏକ ପନ୍ଥା ରୂପେ ଗ୍ରହଣ ନ କରି ଏକ ଲାଭଜନକ ବ୍ୟବସାୟରେ ପରିଣତ କରିବାପାଇଁ ଯେପରି ଯୁବ ସଂପ୍ରଦାୟ କୃଷିକୁ ଆତ୍ମନିର୍ଭରଶୀଳତାର ଏକ ପନ୍ଥା ରୂପେ ଗ୍ରହଣ କରିବେ ସେଥିପାଇଁ ବିଭିନ୍ନ ବ୍ୟବସ୍ଥା ହେଲା। କୃଷିଭିତ୍ତିକ ଶିଳ୍ପ ଓ ବାଣିଜ୍ୟ ବ୍ୟବସାୟର ପ୍ରସାର ପାଇଁ ସୃଷ୍ଟି କରାଗଲା ଆପିକଲ (Agricultural Promotion and Investment Corporation Ltd) (APICOL)। ଏହା ଇପିକଲ (IPICOL–Industrial Promotion and Investment Corporation Ltd) ଢାଞ୍ଚାରେ ଗଠିତ ହେଲା। ଇପିକଲ ଯେପରି ଶିଳ୍ପର ବହୁବିଧ ବିକାଶପାଇଁ କାର୍ଯ୍ୟ କରୁଛି ସେହିପରି ଆପିକଲ କୃଷି କ୍ଷେତ୍ରରେ ଉଦ୍ୟୋଗୀକରଣ, କୃଷି ସମ୍ବନ୍ଧୀୟ ବ୍ୟବସାୟ, ଉତ୍ପାଦନ, ରପ୍ତାନି କ୍ଷେତ୍ରରେ ଓଡ଼ିଶାରେ କି କି ସୁବିଧା ଅଛି, କିପରି ଅର୍ଥ ବିନିଯୋଗ ହୋଇପାରିବ ସେ ସମ୍ବନ୍ଧରେ ଯୋଜନା ପ୍ରସ୍ତୁତ କରି ଆଗ୍ରହୀ ଉଦ୍ୟୋଗୀମାନଙ୍କୁ ବୈଜ୍ଞାନିକ ପରାମର୍ଶ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟବସ୍ଥା ସମ୍ବନ୍ଧରେ ତଥ୍ୟ, ସହଯୋଗ ଓ ସୁବିଧା ଦେବାପାଇଁ ନୀତି ଧାର୍ଯ୍ୟ ହେଲା। ବ୍ୟାଙ୍କ ଋଣଭିତ୍ତିକ ଯୋଜନା ପ୍ରସ୍ତୁତ କରି ଉଦ୍ୟୋଗୀ ଚିହ୍ନଟ କରି ଏବଂ ଉଦ୍ୟୋଗ ସ୍ଥାପନ ପାଇଁ ଆବଶ୍ୟକ ତାଲିକା ବ୍ୟବସ୍ଥା କରିବା ଆପିକଲ କାମ ହେବ ବୋଲି କୁହାଗଲା। ଆପିକଲ ଭାରତ ସରକାରଙ୍କ ଖାଦ୍ୟ ପ୍ରକ୍ରିୟାକରଣ ବିଭାଗ ଓ କୃଷିଜାତ ଦ୍ରବ୍ୟର ରପ୍ତାନି ସଂସ୍ଥା ଆଦିରୁ ମିଳୁଥିବା ବିଭିନ୍ନ ସାହାଯ୍ୟ ଆଣି ଓଡ଼ିଶାର ଉଦ୍ୟୋଗମାନଙ୍କ ନିକଟରେ ପହଞ୍ଚାଇବ ବୋଲି ନୀତି ନିର୍ଦ୍ଧାରଣ ହେଲା। ଆପିକଲ ସ୍ଥାପନ ପରେ ଓଡ଼ିଶାରେ କୃଷି ସମ୍ବନ୍ଧୀୟ ଶିଳ୍ପ, ବାଣିଜ୍ୟ, ବ୍ୟବସାୟର ପ୍ରଗତି ତ୍ୱରାନ୍ୱିତ ହେଲା। ବହୁ ଯୁବକଯୁବତୀ ଆତ୍ମନିଯୁକ୍ତି ପାଇଲେ।

କେବଳ ନୀତି-ନିର୍ଦ୍ଧାରଣ କରି ଅଟକି ଯାଇ ନ ଥିଲେ। ନୀତିକୁ କାର୍ଯ୍ୟକାରୀ କରିବାପାଇଁ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ବିଭିନ୍ନ ପ୍ରକାର ଉଦ୍ୟମ କଲେ। ରାଜ୍ୟର ଆର୍ଥିକ ସ୍ଥିତି ସେତେବେଳେ ବିଶେଷ ଅନୁକୂଳ ନ ଥିଲା। ସୀମିତ ସମ୍ବଳ ମଧ୍ୟରେ କିଭଳି ବିଭିନ୍ନ ସୂତ୍ରରୁ ଅର୍ଥ ଆସି କୃଷିନୀତିକୁ ସଫଳ କରାଯିବ ସେଥିପାଇଁ ମୁଖ୍ୟମନ୍ତ୍ରୀ ଆର୍ଥନୀତିକ ଓ ବିଶେଷଜ୍ଞମାନଙ୍କ ସହ ବିଚାର ଆଲୋଚନା କରି ବିଭିନ୍ନ ପଦକ୍ଷେପ ନେଲେ। କୃଷିର ନିରନ୍ତର ବିକାଶପାଇଁ ଜଳସେଚନର ଆବଶ୍ୟକତା ସର୍ବାଦୌ, ସେ କଥା ସେ ମର୍ମେ ମର୍ମେ ଅନୁଭବ କରିଥିଲେ। ରାଜ୍ୟ ରାଜକୋଷରେ ଯଥେଷ୍ଟ ଅର୍ଥ ନ ଥିବାରୁ ସେ ଏକ ପ୍ରତିନିଧି ଦଳ ନେଇ ନ୍ୟୁୟର୍କରେ ଥିବା ବିଶ୍ୱବ୍ୟାଙ୍କର ମୁଖ୍ୟ କାର୍ଯ୍ୟାଳୟକୁ ଗଲେ। ସେଠି ବିଶ୍ୱବ୍ୟାଙ୍କର କର୍ମକର୍ତ୍ତାଙ୍କୁ ବୁଝାଇ ଜଳସେଚନ ପାଇଁ ଅର୍ଥର ବ୍ୟବସ୍ଥା କରିବା ସହିତ ଜାପାନ ଯାଇ ସେଠାକାର Overseas Economic Consolidate Fund (OECF)ରୁ ଅର୍ଥ ଯୋଗାଡ଼ କଲେ। ଏହାଛଡ଼ା ନାବାର୍ଡରୁ ରିହାତି ସୁଧରେ ଜଳସେଚନ ପ୍ରକଳ୍ପପାଇଁ ଋଣର ବ୍ୟବସ୍ଥା କରିବା ସାଙ୍ଗକୁ ଭାରତ ସରକାରଙ୍କ ତ୍ୱରିତ ଜଳସେଚନ କାର୍ଯ୍ୟକ୍ରମରୁ କିପରି ପର୍ଯ୍ୟାପ୍ତ ଅର୍ଥ ମିଳିବ ତା'ର ବ୍ୟବସ୍ଥା କଲେ। ଏହିସବୁ ବଜେଟ୍ ବାହାରର ସାହାଯ୍ୟ ସହିତ ରାଜ୍ୟ ବଜେଟ୍‌ରେ ବ୍ୟୟବରାଦ ହୋଇଥିବା ଅର୍ଥକୁ ନେଇ ଅଧା ହୋଇପଡ଼ିଥିବା ୭ଟି ବୃହତ୍, ୧୮ଟି ମଧ୍ୟମ ଓ ୧୬୦ଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପକୁ ସଂପୂର୍ଣ୍ଣ କଲେ। ୧୯୯୫-୨୦୦୦ ମଧ୍ୟରେ ରାଜ୍ୟରେ ଅଧିକ ୨ ଲକ୍ଷ ୭୪ ହଜାର ୧୨୬ ହେକ୍ଟର ଜମିକୁ ଜଳ ଯୋଗାଇ ଦିଆଯାଇପାରିଲା। ପୂର୍ବବର୍ତ୍ତୀ ପାଞ୍ଚବର୍ଷରେ ଅର୍ଥାତ୍ ୧୯୯୦ରୁ ୧୯୯୫ ମଧ୍ୟରେ ଥିବା ସରକାରଙ୍କ ଶାସନକାଳରେ ନୂଆକରି ଜଳଯୋଗାଣ ଦିଆଯାଇଥିଲା ୧ ଲକ୍ଷ ୪୩ ହଜାର ୨୫୯ ହେକ୍ଟର ଜମିକୁ।

ମହାନଦୀରେ କଟକର ଯୋବ୍ରାଠାରେ ଓ ଜଗତପୁରରେ ବିରୂପା ନଦୀରେ ବ୍ରିଟିଶ୍ ସରକାର ୧୮୬୬ ନଅଙ୍କ ଦୁର୍ଭିକ୍ଷ ପରେ ବ୍ୟାରେଜ୍ ନିର୍ମାଣ କରି ମହାନଦୀର ତ୍ରିକୋଣଭୂମି ଅଞ୍ଚଳକୁ ଜଳସେଚିତ କରିଥିଲେ। ସେଇ ବ୍ୟାରେଜର ଜୀବନକାଳ ଥିଲା ଶହେବର୍ଷ। ଶହେ ବର୍ଷ ପୂରିଗଲା ପରେ ଏହି ବ୍ୟାରେଜ୍ ଦୁଇଟିର ସଂପୂର୍ଣ୍ଣ ନବୀକରଣ ଆବଶ୍ୟକତା ପଡ଼ିଲା। ନବୀକରଣ ନ ହେଲେ ମହାନଦୀ ତ୍ରିକୋଣଭୂମି ଅଞ୍ଚଳରେ ଯେଉଁ ଜଳସେଚନ ହେଉଥିଲା ତାହା ଆଉ ହୋଇପାରିବ ନାହିଁ ବୋଲି ଆଶଙ୍କା ଜାତ ହେଲା। ଜାନକୀବାବୁ ମୁଖ୍ୟମନ୍ତ୍ରିତ୍ୱ କାଳରେ ମହାନଦୀ ବ୍ୟାରେଜ ଓ ବିରୂପା ବ୍ୟାରେଜର ସଂପୂର୍ଣ୍ଣ ନବୀକରଣ କରାଯାଇ ଅଧିକ ଜଳରେ ଜଳସେଚନର ବ୍ୟବସ୍ଥା ହେଲା। ଏହି ବ୍ୟାରେଜ ଦୁଇଟିକୁ ଏପରି ଭାବରେ ନିର୍ମାଣ କରାଗଲା ଯେ, ଏହା ଉପରେ କଟକ ଓ ଚୌଦ୍ୱାରକୁ ସଂଯୋଗ କରିବାପାଇଁ ଏକ ପୋଲ ନିର୍ମାଣ କରାଗଲା। କଟକ ଓ ଚୌଦ୍ୱାର ମଧ୍ୟରେ ଆଠ କିଲୋମିଟର ଦୂରତ୍ୱ ହ୍ରାସ ପାଇଲା।

ଜାନକୀବାବୁ ମୁଖ୍ୟମନ୍ତ୍ରୀ ଥିବାବେଳେ ରାଜ୍ୟର ବିକାଶକୁ ତ୍ୱରାନ୍ୱିତ କରିବାପାଇଁ କୃଷିବିକାଶ ଓ ଜଳସେଚନ ପ୍ରତି କେବଳ ଗୁରୁତ୍ୱ ଦେଉ ନ ଥିଲେ, ସେ ପରବର୍ତ୍ତୀ ସମୟରେ ଯେତେବେଳେ ବିରୋଧୀ ଦଳର ନେତା ହେଲେ ସେତେବେଳେ ମଧ୍ୟ କୃଷି ବିକାଶ ଓ ଜଳସେଚନର ସଂପ୍ରସାରଣ ପାଇଁ ସରକାରଙ୍କୁ ବାରମ୍ବାର ପରାମର୍ଶ ଦେଉଥିଲେ। ସେ ରାଜ୍ୟ

ବିଧାନସଭାରେ ବିରୋଧୀ ଦଳର ନେତା ଥିବାବେଳେ ୨୦୦୭ ମସିହା ଜୁଲାଇ ମାସ ୭ ତାରିଖରେ ରାଜ୍ୟ ବିଧାନସଭାରେ ଜଳସେଚନ ଖର୍ଚ୍ଚ ଦାବି ଉପରେ ଆଲୋଚନା କରି ସରକାରଙ୍କୁ ପରାମର୍ଶ ଦେଇ କହିଥିଲେ, "ସବୁଠାରୁ ଗରିବ ରାଜ୍ୟ କହିଲେ ଓଡ଼ିଶା ଓ ସବୁଠାରୁ ପଛୁଆ ରାଜ୍ୟ ଓଡ଼ିଶା। ଏହାର କାରଣ ହେଉଛି ଓଡ଼ିଶାର ଅଧିକାଂଶ ଲୋକ ଚାଷ ଉପରେ ନିର୍ଭର କରନ୍ତି। ପ୍ରାୟ ଶତକଡ଼ା ୭୦ରୁ ୭.୫ ଭାଗ। ଯଦି ଚାଷର ପରିବର୍ତ୍ତନ ନ ହୁଏ ଯଦି ଚାଷୀର ଅବସ୍ଥାର ପରିବର୍ତ୍ତନ ନ ଘଟେ, ତାହାହେଲେ ଓଡ଼ିଶାର କେବେହେଲେ ପରିବର୍ତ୍ତନ ହେବ ନାହିଁ। ଅର୍ଥନୀତିର ପରିବର୍ତ୍ତନ ହେବ ନାହିଁ। ପଞ୍ଜାବ ଓ ହରିଆନା ଷ୍ଟିଲ୍ ପ୍ଲାଣ୍ଟ୍ ପାଇଁ ଆଜି ଭାରତବର୍ଷର ପ୍ରଧାନ ପ୍ରଗତିଶୀଳ ରାଜ୍ୟ ହୋଇ ନାହାନ୍ତି, ହୋଇଛନ୍ତି ଜଳସେଚନ କ୍ଷେତ୍ରରେ ପ୍ରଗତି ଯୋଗୁଁ, ଚାଷ କ୍ଷେତ୍ରରେ ପ୍ରଗତି ଯୋଗୁଁ। ଯେଉଁ ସବୁଜ ବିପ୍ଳବ କଥା କୁହାଯାଉଛି, ତାହା ପଞ୍ଜାବ ଓ ହରିଆନାରୁ ହିଁ ଆରମ୍ଭ। ତା'ର ଏକମାତ୍ର କାରଣ ହେଉଛି ଜଳସେଚନ ଉପରେ ସେମାନେ ସବୁଠାରୁ ଗୁରୁତ୍ୱ ଦେଉଛନ୍ତି। ଆପଣ ଜାଣନ୍ତି, ପଞ୍ଜାବରେ ଶତକଡ଼ା ୯୭ ଭାଗ ଚାଷଜମି ଜଳସେଚିତ ଏବଂ ହରିଆଣାରେ ୮୯ ଭାଗ ଚାଷଜମି ଜଳସେଚିତ। ତେଣୁ ପଞ୍ଜାବ ଓ ହରିଆନା ଆଜି ଭାରତବର୍ଷର ଅର୍ଥନୀତି କ୍ଷେତ୍ରରେ ପ୍ରଥମ ଓ ଦ୍ୱିତୀୟ ହୋଇଛନ୍ତି। ଏକମାତ୍ର ବାଟ, କୃଷିପ୍ରଧାନ ଓଡ଼ିଶାକୁ ଯଦି ଅର୍ଥନୀତି କ୍ଷେତ୍ରରେ ପରିବର୍ତ୍ତନ କରିପାରିବା, ତାହାହେଲେ ଓଡ଼ିଶାରୁ ଦାରିଦ୍ର୍ୟ ଦୂରୀଭୂତ ହେବ ଏବଂ ଓଡ଼ିଶା ଆଗଧାଡ଼ିର ରାଜ୍ୟ ହୋଇ ରହିବ।"

ଜାନକୀବଲ୍ଲଭଙ୍କ ଏହି ଭାଷଣରୁ ସ୍ପଷ୍ଟ ଜଣାଯାଏ ଯେ, କୃଷି ବିକାଶ ପ୍ରତି ତାଙ୍କର ପ୍ରତିବଦ୍ଧତା।

ଜାନକୀବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ଅର୍ଥକରୀ ଫସଲ କପା, ଆଖୁ, କଫି, ଚା, ରବର ଆଦିର ପ୍ରସାର ପାଇଁ ବିଭିନ୍ନ ପ୍ରୋତ୍ସାହନ ଦିଆଯାଇ ସଂପ୍ରସାରଣ ପାଇଁ ଉଦ୍ୟମ ହୋଇଥିଲା। କପା ଚାଷକୁ ଭିତ୍ତିକରି ରାଜ୍ୟରେ ୮ଟି ସୂତାକଳ ସ୍ଥାପନ ହୋଇଥିଲେ ତାଙ୍କରି ସମୟରେ ଏବଂ ଆଖୁଚାଷକୁ ଉତ୍ସାହିତ କରିବାପାଇଁ କଟକ, ବରଗଡ଼, ବଲାଙ୍ଗୀର, ଢେଙ୍କାନାଳ ଆଦି ଜିଲ୍ଲାମାନଙ୍କରେ ଚିନିକଳ ସ୍ଥାପନ କରାଯାଇଥିଲା। ପରବର୍ତ୍ତୀ ସମୟରେ ଇଚ୍ଛାଶକ୍ତିର ଅଭାବ, ପ୍ରତିବଦ୍ଧତାର ଅଭାବ ଯୋଗୁଁ ସୂତାକଳ ଓ ଚିନିକଳ ସବୁ ରୁଗ୍ଣ ହୋଇଯାଇଛି, ଯାହାଫଳରେ ଚାଷୀକୁଳ ହତାଶ ହୋଇଯିବା ସ୍ୱାଭାବିକ। ତାଙ୍କରି ସମୟରେ ଫଳ ଚାଷର ପ୍ରସାର ପାଇଁ Compact Area Fruit Plantation ପ୍ରକଳ୍ପ ଆରମ୍ଭ ହେବା ଫଳରେ ଫଳଚାଷର ସଫଳ ସଂପ୍ରସାରଣ ହୋଇଥିଲା। ବିଶେଷକରି ଆମ୍ବବଗିଚା ସଂଖ୍ୟା ବୃଦ୍ଧି ପାଇଛି ଆଜି ଓଡ଼ିଶାରେ। ଆମ୍ରପଲ୍ଲୀ ଆମ୍ବକୁ ରାଜ୍ୟରେ ଲୋକପ୍ରିୟ କରାଯାଇପାରିଥିଲା। ଆଜି ଯେଉଁ ଆମ୍ରପଲ୍ଲୀ ଆମ୍ବ ଓଡ଼ିଶାରୁ ବିଦେଶକୁ ଓ ବାହାର ରାଜ୍ୟକୁ ରପ୍ତାନି ହେଉଛି ତାହା ମୂଳରେ ଜାନକୀବାବୁଙ୍କର ଅବଦାନକୁ ନ୍ୟୂନ କରାଯାଇ ନ ପାରେ।

ଦୁଗ୍ଧ ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା ଆଜି ଯେଉଁ ପ୍ରଗତି ହାସଲ କରିଛି ତା'ର ଶ୍ରେୟ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ନିଃସନ୍ଦେହରେ ଦିଆଯାଇପାରେ। ୧୯୮୦ ପୂର୍ବରୁ ଭାରତର ୧୪ଟି ରାଜ୍ୟରେ ଶ୍ୱେତବିପ୍ଳବ କାର୍ଯ୍ୟକ୍ରମ କାର୍ଯ୍ୟ କରୁଥିବାବେଳେ ଓଡ଼ିଶାରେ ଏହା କାର୍ଯ୍ୟକାରୀ

ହେଉ ନ ଥିଲା। ଜାନକୀବଲ୍ଲଭ ୧୯୮୦ରେ ମୁଖ୍ୟମନ୍ତ୍ରୀ ହେବାପରେ ଚିନ୍ତାକଲେ ଯେ ଓଡ଼ିଶାର ଦୁର୍ବଳ ଶ୍ରେଣୀର ଲୋକମାନଙ୍କର ଅର୍ଥନୈତିକ ବିକାଶପାଇଁ ଦୁଗ୍ଧ ଉତ୍ପାଦନ, ଦୁଗ୍ଧ ସଂଗ୍ରହ ଓ ପ୍ରକ୍ରିୟାକରଣ କରି ଖାଉଟିମାନଙ୍କ ମଧ୍ୟରେ ସୁବଣ୍ଟନ କରିବା ଅପରିହାର୍ଯ୍ୟ। ଓଡ଼ିଶା ଶ୍ୱେତବିପ୍ଳବରେ ଭାଗ ନେଉ ନ ଥିବାରୁ ଭାରତୀୟ ଡାଏରି କର୍ପୋରେସନ୍ (IDC) ଓ ଜାତୀୟ ଡାଏରି ଉନ୍ନୟନ ବୋର୍ଡ଼ (NDDB) ଠାରୁ ଏ ସଂପର୍କୀୟ ପ୍ରାପ୍ୟରୁ ବଞ୍ଚିତ ହେଉଥିଲା। ୧୯୮୦ ରେ ସେ ଓଡ଼ିଶା ରାଜ୍ୟ ସମବାୟ ଦୁଗ୍ଧ (OMFED) ସଂଘ ସ୍ଥାପନ କଲେ। ଓମ୍‌ଫେଡ୍ ସ୍ଥାପନ ପାଇଁ ମୁଖ୍ୟମନ୍ତ୍ରୀ ଜାନକୀବାବୁଙ୍କର ଅଙ୍ଗୀକାରବଦ୍ଧତାକୁ ଯେ କେହି ପ୍ରଶଂସା ନ କରି ରହିପାରିବ ନାହିଁ। ସେ ନିଜେ ଏକ ପ୍ରତିନିଧି ଦଳ ସହ ଗୁଜୁରାଟ ଯାଇ ଭାରତର ଦୁଗ୍ଧ ପୁରୁଷ ଡକ୍ଟର ଭର୍ଗିଜ କୁରିଆନାଙ୍କୁ ଭେଟି ସେଠାରେ ଆନନ୍ଦ ଢାଞ୍ଚାରେ ଦୁଗ୍ଧ ସମବାୟ ସମିତିମାନ କିପରି କାର୍ଯ୍ୟ କରୁଛି ତାହା ଅଧ୍ୟୟନ କଲାପରେ ନିଷ୍ପତ୍ତି ନେଲେ ଓମ୍‌ଫେଡ୍ ଓଡ଼ିଶାରେ ସ୍ଥାପନ କରିବାପାଇଁ। ସେ ଗୁଜୁରାଟର ଗ୍ରାମରୁ ଆରମ୍ଭ କରି ଜିଲ୍ଲା ଓ ରାଜ୍ୟସ୍ତରୀୟ ଦୁଗ୍ଧ ଉତ୍ପାଦନକାରୀଙ୍କ ସହ ଆଳାପ ଆଲୋଚନା କରିଥିଲେ। ତତ୍କାଳୀନ ଏନ୍‌ଡିଡିବିର ଅଧ୍ୟକ୍ଷ ଡକ୍ଟର ଭର୍ଗିଜ କୁରିଏନଙ୍କ ସହ ପୁଙ୍ଖାନୁପୁଙ୍ଖ ଆଲୋଚନା ପରେ ତାଙ୍କୁ ନିମନ୍ତ୍ରଣ କରିଥିଲେ ଭୁବନେଶ୍ୱରରେ ଡାଏରି ଭିତ୍ତିସ୍ଥାପନ କରିବାକୁ। ଡକ୍ଟର କୁରିଏନ୍‌ଙ୍କ ଦ୍ୱାରା ଡାଏରିର ଭିତ୍ତିସ୍ଥାପନ ହେଲା। ଓଡ଼ିଶା ଜାନକୀବାବୁଙ୍କ ନେତୃତ୍ୱରେ ଜାତୀୟ ଡାଇରି ଉନ୍ନୟନ ସ୍ରୋତରେ ସାମିଲ ହେଲା। ଓମ୍‌ଫେଡ୍ ଆଜି ଓଡ଼ିଶାର ଖାଉଟିମାନଙ୍କୁ କେବଳ ଦୁଗ୍ଧ ଯୋଗାଇ ନାହିଁ ସେ ଲକ୍ଷ ଲକ୍ଷ କ୍ଷୁଦ୍ର ଓ ନାମମାତ୍ର ଦୁଗ୍ଧ ଚାଷୀଙ୍କୁ ରୋଜଗାର ଯୋଗାଉଛି। ଆଜି ଓମ୍‌ଫେଡ୍ ଦୈନିକ ପ୍ରାୟ ୫ ଲକ୍ଷ ଲିଟର ଦୁଗ୍ଧ ସଂଗ୍ରହ କରିବାରେ ସଫଳ ହୋଇଛି। ଓମ୍‌ଫେଡ୍‌ର ସଫଳତା ଦେଖି କେତେକ ଘରୋଇ ଉଦ୍ୟୋଗୀ ଓମ୍‌ଫେଡ୍ ଢାଞ୍ଚାର ଓଡ଼ିଶାରେ ବର୍ତ୍ତମାନ ଦୁଗ୍ଧ ସଂଗ୍ରହ, ପ୍ରକ୍ରିୟାକରଣ, ପ୍ୟାକେଜିଂ କରି ଖାଉଟିମାନଙ୍କୁ ବିକ୍ରୟ କରୁଛନ୍ତି। ଦୁଗ୍ଧ ଉତ୍ପାଦନ କ୍ଷେତ୍ରରେ ପ୍ରତିଯୋଗିତା ଆରମ୍ଭ ହୋଇଛି– ଏହା ସମ୍ଭବ ହୋଇଛି ଜାନକୀବଲ୍ଲଭଙ୍କ ଦୂରଦୃଷ୍ଟି ଓ ଅଙ୍ଗୀକାରବଦ୍ଧତା ଯୋଗୁଁ।

ଏକଦା କଳାହାଣ୍ଡି ଥିଲା ଦାରିଦ୍ର୍ୟର ଅନ୍ୟନାମ। ଅନାହାର ମୃତ୍ୟୁ ଠାରୁ ଆରମ୍ଭ କରି ଅନାହାର ସହି ନ ପାରି ଶିଶୁ ବିକ୍ରି କରିବା ଅଭିଯୋଗ କଳାହାଣ୍ଡିକୁ ସାରା ଭାରତରେ କାହିଁକି ବିଶ୍ୱରେ କୁଖ୍ୟାତି ଆଣିଦେଇଥାଏ। ବାରମ୍ବାର ମରୁଡ଼ି ପଡ଼ି ଦ୍ୱିତୀୟ ନଅଙ୍କ ଦୁର୍ଭିକ୍ଷ ସ୍ଥିତି ସୃଷ୍ଟି କରିଥାଏ ୧୯୬୦ ଦଶକ ଓ ୧୯୭୦ ଦଶକରେ। ଇନ୍ଦ୍ରାବତୀ ନଦୀରେ ଜଳସେଚନ ପ୍ରକଳ୍ପ ଅନେକଦିନରୁ ଇନ୍ଦ୍ରାବତୀ ଜଳସେଚନ ପ୍ରକଳ୍ପ ନାମରେ ମଞ୍ଜୁର ପାଇଥିଲେ ମଧ୍ୟ ଅର୍ଥାଭାବରୁ କାର୍ଯ୍ୟକାରୀ ହୋଇପାରୁ ନ ଥିଲା। କିନ୍ତୁ ବିଶ୍ୱବ୍ୟାଙ୍କ ସହାୟତାରେ ଜାନକୀବଲ୍ଲଭ ପଟ୍ଟନାୟକ ଏହି ଇନ୍ଦ୍ରାବତୀ ଯୋଜନାର ସଫଳ ରୂପାୟନ ୧୯୮୦ ଦଶକରେ ପ୍ରଥମେ ମୁଖ୍ୟମନ୍ତ୍ରୀ ହେବାପରେ ଆରମ୍ଭ କରି ଶେଷ କରିବା ପରେ କଳାହାଣ୍ଡିରେ ଏବେ ୧ ଲକ୍ଷ ହେକ୍ଟରରୁ ଅଧିକ ଜଳସେଚିତ ହୋଇପାରୁଛି। ମିଶରକୁ ଯେପରି ନୀଳନଦୀର ଦାନ ବୋଲି କୁହାଯାଏ, କଳାହାଣ୍ଡି ଜିଲ୍ଲାକୁ ଆଜି ସେହିପରି ଇନ୍ଦ୍ରାବୀତର ଦାନ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ଇନ୍ଦ୍ରାବତୀ ପ୍ରକଳ୍ପ ଯୋଗୁଁ କଳାହାଣ୍ଡିର ପୂର୍ବ କାଳିମା ଲିଭିଯାଇଛି। କଳାହାଣ୍ଡି ଆଜି ରାଜ୍ୟର ଭାତହାଣ୍ଡିରେ

ପରିଣତ ହୋଇଛି । ଏଥିପାଇଁ ଜାନକୀବାବୁଙ୍କର ମୁଖ୍ୟମନ୍ତ୍ରୀ ହିସାବରେ ଅବଦାନକୁ ଇତିହାସ ନିଶ୍ଚିତ ସ୍ୱୀକାର କରିବ ।

ଜାନକୀବାବୁ ଏକଦର୍ଶୀ ବ୍ୟକ୍ତିତ୍ୱ ନ ଥିଲେ । ଯେଉଁ ଜାନକୀବାବୁ କୃଷିର ବିକାଶ ପ୍ରତି ଗୁରୁତ୍ୱ ଦେଉଥିଲେ ସେ ଶିଳ୍ପ ବିକାଶକୁ ମଧ୍ୟ ନ୍ୟୂନ ଦୃଷ୍ଟିରେ ଦେଖୁ ନ ଥିଲେ । ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କଲାପରେ ସେ ଯେଉଁ ହଜାର ଦିନରେ ହଜାର କୋଟିରେ ହଜାର ଶିଳ୍ପ ପ୍ରତିଷ୍ଠାପାଇଁ ଆହ୍ୱାନ ଦେଇଥିଲେ ତାହା ଓଡ଼ିଶାରେ ଶିଳ୍ପ ବିକାଶ ପାଇଁ ଏକ ସକାରାତ୍ମକ ପରିବେଶ ସୃଷ୍ଟି କରିଥିଲା । ବହୁ ଓଡ଼ିଶା ଶିଳ୍ପୋଦ୍ୟୋଗୀ ଶିଳ୍ପ ସ୍ଥାପନ ପାଇଁ ଆଗଭର ହୋଇଥିଲେ । ଶିଳ୍ପ ବିକାଶ ସାଙ୍ଗକୁ କୃଷି ବିକାଶର ସମନ୍ୱୟ ଆଣିଥିଲେ ତାହା ତାଙ୍କର ସମନ୍ୱୟୀ ବ୍ୟକ୍ତିତ୍ୱର ପ୍ରତୀକ । ଜାନକୀବାବୁ ସଂସ୍କୃତ ଅନର୍ସ ରଖି ବି.ଏ. ପାସ୍ କଲାପରେ ଏମ୍.ଏ. ପଢ଼ିଥିଲେ ରାଜନୀତି ବିଜ୍ଞାନରେ । ସଂସ୍କୃତ ଅଧ୍ୟୟନ ତାଙ୍କୁ ଭାରତୀୟ ସଂସ୍କୃତି, ପରମ୍ପରାକୁ ହୃଦୟଙ୍ଗମ କରିବାରେ ସାହାଯ୍ୟ କଲାବେଳେ ଆଧୁନିକ ରାଜନୀତି ବିଜ୍ଞାନ ତାଙ୍କୁ ବିଜ୍ଞାନଭିତ୍ତିକ ଶାସନ ପ୍ରଣାଳୀ ସମ୍ବନ୍ଧରେ ଶିକ୍ଷା ଦେଇଥିଲା । ଏହାଛଡ଼ା ଜାନକୀବାବୁଙ୍କର ଗାନ୍ଧିଜୀଙ୍କର ଗ୍ରାମସ୍ୱରାଜ ଓ ଗ୍ରାମ ବିକାଶ ପ୍ରତି ଅତୁଟ ବିଶ୍ୱାସ ଥିବାବେଳେ ପଣ୍ଡିତ ଜବାହରଲାଲ ନେହରୁଙ୍କ ବିଜ୍ଞାନଭିତ୍ତିକ ସମାଜବାଦ ପ୍ରତି ଥିଲା ଅହେତୁକ ସମ୍ମାନ । ସୁତରାଂ ଜାନକୀବାବୁ କୌଣସି ଗୋଟିଏ ବିଷୟଭିତ୍ତିକ ଶାସନପ୍ରଣାଳୀ, ଗାନ୍ଧିଜୀଙ୍କ ଗ୍ରାମସ୍ୱରାଜ ଏବଂ ନେହରୁଙ୍କ ବିଜ୍ଞାନଭିତ୍ତିକ ସମାଜବାଦ ମଧ୍ୟରେ ଏକ ଅପୂର୍ବ ସମନ୍ୱୟ ଆଣି ଏକ ସମନ୍ୱୟୀ ବ୍ୟକ୍ତିତ୍ୱ ରୂପେ ଉଭା ହୋଇଥିଲେ । ତାଙ୍କର ବହୁଦର୍ଶୀ ବ୍ୟକ୍ତିତ୍ୱ ଯୋଗୁଁ ସେ ଓଡ଼ିଶାର ବିକାଶ ପାଇଁ ଶିଳ୍ପ ବିକାଶର ଭୂମିକାକୁ ଯେତିକି ଗୁରୁତ୍ୱ ଦେଉଥିଲେ କୃଷି ଓ ଗ୍ରାମାଞ୍ଚଳ ବିକାଶ ପ୍ରତି ସେତିକି ଗୁରୁତ୍ୱ ଦେଉଥିଲେ । ଜାନକୀବାବୁଙ୍କ ପରି ସମନ୍ୱୟୀ ବ୍ୟକ୍ତିତ୍ୱ ଓଡ଼ିଶାରେ ତିନି ତିନି ଥର ମୁଖ୍ୟମନ୍ତ୍ରୀ ହୋଇ କୃଷି ଓ ଶିଳ୍ପ ବିକାଶ ମଧ୍ୟରେ ଅପୂର୍ବ ସମନ୍ୱୟ ଆଣିଥିଲେ ।

ଦେଶ ସ୍ୱାଧୀନ ହେବାଠାରୁ ଆଜିପର୍ଯ୍ୟନ୍ତ ରାଜ୍ୟରେ ଯେତେ ସରକାର ଆସିଛି, କୃଷି ଓ ଗ୍ରାମାଞ୍ଚଳ ବିକାଶକୁ ଜାନକୀବାବୁ ମୁଖ୍ୟମନ୍ତ୍ରୀ ଥିବାବେଳେ ଯେତିକି ଗୁରୁତ୍ୱ ଦିଆଯାଇ ସକାରାତ୍ମକ ପଦକ୍ଷେପ ନିଆଯାଇଛି ଅନ୍ୟ କୌଣସି ସରକାର ସମୟରେ ସେତିକି ଗୁରୁତ୍ୱ ଦିଆଯାଇ ନାହିଁ ନା ପ୍ରତିବଦ୍ଧତା ପ୍ରକାଶ କରାଯାଇ ନାହିଁ । ତାଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ କୃଷି ଓ କୃଷି ଯୋଜନା ପ୍ରସ୍ତୁତ ହେଉଥିଲା ତାହା ସେ ସଂପୃକ୍ତ ମନ୍ତ୍ରୀ କିମ୍ବା ଅମଲାତନ୍ତ୍ର ଉପରେ ଛାଡ଼ି ନ ଦେଇ ନିଜେ ମଧ୍ୟ ତଦାରଖ କରୁଥିଲେ । ମନ୍ତ୍ରୀ ଓ ଅମଲାତନ୍ତ୍ର ମଧ୍ୟରେ ସହମତି ଆଣି ଘୋଷିତ ବିକାଶଧାରାକୁ ତ୍ୱରାନ୍ୱିତ କରାଇବାରେ ସେ ପ୍ରମୁଖ ଭୂମିକା ତୁଲାଉଥିଲେ । ଜାନକୀବଲ୍ଲଭଙ୍କ ମୁଖମନ୍ତ୍ରିତ୍ୱ ସମୟରେ ପ୍ରସ୍ତୁତ ହୋଇଥିବା ରାଜ୍ୟର ପ୍ରଥମ କୃଷିନୀତିକୁ ଯଦି ପରବର୍ତ୍ତୀ ସରକାରଗୁଡ଼ିକ ଆଧାର କରି ଓଡ଼ିଶାର କୃଷି ଓ କୃଷି ଆନୁଷଙ୍ଗିକ ବୃତ୍ତିର ବିକାଶପାଇଁ ପ୍ରତିବଦ୍ଧତାର ସହ କାର୍ଯ୍ୟ କରିଥା'ନ୍ତେ, ତେବେ ଆଜି କୃଷିର ବିକାଶ ସାଧନ ହୋଇ ରାଜ୍ୟରୁ ବେକାରୀ ଓ ଦାରିଦ୍ର୍ୟ ଦୂର ହୋଇପାରିଥା'ନ୍ତା । ଓଡ଼ିଶା ଆଜି ଦେଶର ସବୁଠାରୁ ଦରିଦ୍ର ରାଜ୍ୟ ରୂପେ ପରିଚିତ ହୋଇ ନ ଥାନ୍ତା ।



# ଶାଶ୍ୱତ ଓ ସାମୟିକତା ମଧ୍ୟରେ ସମର୍ଥ ସେତୁ

ତୁଳସୀ ଜୈନ

କଠୋପନିଷଦର ଦୁଇଟି ଶବ୍ଦ ପ୍ରେୟ ଓ ଶ୍ରେୟ। ଅର୍ଥାତ୍ ପ୍ରିୟଙ୍କର ଓ ଶୁଭଙ୍କର। ଅଜ୍ଞାନ ଓ ବାଲ୍ୟକାଳରେ ମନ ସାଧାରଣତଃ ପ୍ରେୟ ଆଡ଼କୁ ଧାଇଁଥାଏ। ପଦାର୍ଥ ଜଗତ୍ ପ୍ରତି ମୋହ ଓ ରାଗ ବଢ଼ିଚାଲେ। କିନ୍ତୁ ଧୀର, ବୀର, ଗମ୍ଭୀର ବ୍ୟକ୍ତି ବିବେକ ଅନୁସାରେ ଯୋଗ-କ୍ଷେମ କରିଥାନ୍ତି ଏବଂ ଶ୍ରେୟର ବରଣ କରିବା ସକାଶେ ବ୍ୟାକୁଳ ଥା'ନ୍ତି। ଜାନକୀବଲ୍ଲଭ ପଟ୍ଟନାୟକ ନିରଳସ ଶ୍ରେୟର ସାଧନା କରିଯାଇଛନ୍ତି। ମଣିଷ ଆସିଥାଏ, ଚାଲିଯାଇଥାଏ– ଏହା ସାର୍ବଭୌମ ସତ୍ୟ। 'ଜାତସ୍ୟ ହିଁ ଧ୍ରୁବୋ ମୃତ୍ୟୁ, ଧ୍ରୁବଂ ଜନ୍ମ ମୃତସ୍ୟ ଚ'– ଏହା ସଂସାରର ନିୟମ। ତେବେ କେଜାଣେ କାହିଁକି କିଛି ଲୋକଙ୍କ ଚାଲିଯିବାଦ୍ୱାରା ରିକ୍ତତାର ଅନୁଭୂତି ହୋଇଥାଏ, ସମସ୍ତଙ୍କ ଯିବାଦ୍ୱାରା ନୁହେଁ। ଏହାର ପାର୍ଥକ୍ୟ ବୁଝିବାକୁ ହେଲେ ବ୍ୟକ୍ତିତ୍ୱ ଓ କର୍ତ୍ତୃତ୍ୱର ଆକାଳନର ଜରୁରୀ ହେଇପଡ଼େ।

ଜାନକୀବାବୁ ସାହିତ୍ୟ, ସଂସ୍କୃତି, ସାମ୍ବାଦିକତା ଏବଂ ରାଜନୀତି କ୍ଷେତ୍ରରେ ଶତ ପ୍ରତିଶତ ପରିଣାମ ଦେଇଛନ୍ତି। ଏଥି ସକାଶେ ନିଜକୁ ବିଲୀନ କରିବାର ଆବଶ୍ୟକତା ରହିଥିଲେ, ସେ କେବେ ବି ପଛଘୁଞ୍ଚା ଦେଇ ନାହାନ୍ତି। ଜୀବନର ଅନ୍ତିମ ଦଶନ୍ଧିରେ ସେ ଅଧ୍ୟାତ୍ମ ସହିତ ତାଦାତ୍ମ୍ୟ ସ୍ଥାପନ କରିପାରିଥିଲେ, ଏହା ସ୍ପଷ୍ଟ ଅନୁମାନ ହେଉଛି।

ଜୀବନସାରା ସମସାମୟିକ ସମସ୍ୟାଗୁଡ଼ିକର ଚିରନ୍ତନ ମୂଲ୍ୟବୋଧ ଭିତ୍ତିରେ ସେ ସମାଧାନ ଖୋଜୁଥିଲେ। କ୍ରୋଧ ଓ ଅଭିମାନଠାରୁ ନିରାପଦ ଦୂରତା ବଜାୟ ରଖୁଥିଲେ। କେତେକ ପାଶ୍ଚାତ୍ୟ ଦାର୍ଶନିକଙ୍କ କହିବା ଅନୁସାରେ ଯେଉଁମାନେ ଜୀବନରେ ପ୍ରଚୁର ସଫଳତା ପାଇଛନ୍ତି, ସେମାନଙ୍କ ଜୀବନ କ୍ୱଚିତ୍ ସାର୍ଥକ ହୋଇଥିବାର ଦେଖାଯାଏ ତଥା ଯେଉଁ ଅଳ୍ପ ଲୋକ ନିଜ ଜୀବନକୁ ସାର୍ଥକ କରିପାରିଛନ୍ତି ସେମାନେ ପ୍ରତି ପଦକ୍ଷେପରେ ଅସଫଳତାର ତିକ୍ତ ସ୍ୱାଦ ଚାଖିବାକୁ ବାଧ ହୋଇଛନ୍ତି। ସମ୍ଭବତଃ ଜାନକୀବାବୁ ଆପଣା ଜୀବନ ଓ ଦର୍ଶନ ମାଧ୍ୟମରେ ଏହି ପାଶ୍ଚାତ୍ୟ ମନୀଷୀମାନଙ୍କ ମାନ୍ୟତାକୁ ଅସ୍ୱୀକାର କରି ଦେଇଛନ୍ତି। ଜୀବନରେ ଉଲ୍ଲେଖନୀୟ ସଫଳତା ପାଇଛନ୍ତି; ତଥା ଜୀବନକୁ ପୂରା ସାର୍ଥକ ମଧ୍ୟ କରିପାରିଛନ୍ତି। ତାଙ୍କ ମତରେ– ମୁଁ ଯାହା କହୁଛି ତାହାହିଁ ସତ୍ୟ ଏହା ନିଶ୍ଚିତ ଭାବରେ ସଙ୍କୀର୍ଣ୍ଣତାକୁ ଅଭିବ୍ୟକ୍ତ କରିଥାଏ, ଅଥଚ ଯାହା ସତ୍ୟ ତାହାକୁ ଆପଣାଇ ପାରିଲେ ଗତି ମହତ୍ତ୍ୱର ଦିଶାରେ ହୋଇଥାଏ। ଜାନକୀବାବୁ ଏହିପରି ମହତ୍ତ୍ୱର ପଥର ପଥିକ।

ଗୋଟିଏ ସତ୍ୟ ସାମୟିକ ଅଥଚ ଅନ୍ୟ ଏକ ସତ୍ୟ ଶାଶ୍ୱତ ହୋଇଥାଏ। ବର୍ତ୍ତମାନ ସାମୟିକ ସତ୍ୟ ବେଶ୍ ମୁଖର କିନ୍ତୁ ଶାଶ୍ୱତ ସତ୍ୟଟି ମୌନ ହୋଇ ରହୁଛି। ତଥାପି ବେଦ, ଉପନିଷଦ, ଆଗମ ଓ ପିଟକ ଆଦିର ମୂଲ୍ୟ ନିରନ୍ତର ବୃଦ୍ଧି ପାଇବାରେ ଲାଗିଛି– ଏହାର କାରଣ ବୁଝାପଡୁ ନାହିଁ। ଯାହା ପ୍ରାଚୀନ ତାହା ଅଧିକ ପ୍ରାସଙ୍ଗିକ ଓ ନୂତନ ହୋଇଚାଲିଛି। ନିଜର ଅକ୍ଷରବିନ୍ୟାସଦ୍ୱାରା ପାଠକ ସମାଜକୁ ତ୍ରୈକାଳିକତା ଆଡ଼କୁ ନେଇଯାଉଛନ୍ତି ନା ତାତ୍କାଳିକ ସତ୍ୟ ସହିତ ହିଁ ପରିଚୟ କରାଉଛନ୍ତି– ଏ ଦିଗରେ ଜାନକୀବାବୁ ଭାରି ସଚେତନ ଥିଲେ। ଶାଶ୍ୱତ ଓ ସାମୟିକ ମଧ୍ୟରେ ସ୍ୱୟଂ ସେତୁବନ୍ଧ ସାଜି ଉଭୟକୁ ସଂଯୁକ୍ତ କରିପାରିଥିଲେ। ସେ ଗଭୀର ଅନ୍ତର୍ଦୃଷ୍ଟି ଏବଂ ପ୍ରସାରିତ ଦୂରଦୃଷ୍ଟି ସହିତ ଅନେକ ମୌଳିକ ଗ୍ରନ୍ଥ ରଚନା କରିଛନ୍ତି ତଥା ବହୁ ସଦ୍‌ଗ୍ରନ୍ଥର ରୂପାନ୍ତରଣ ମଧ୍ୟ କରିଛନ୍ତି। ଏହି ଶ୍ରମ-ସାଧନା ପଛରେ ରହିଥିଲା ବ୍ୟକ୍ତି ମଧ୍ୟରେ ପବିତ୍ରତା, ସମାଜରେ ନିରାମୟତା ଏଂ ମାନବୀୟ ଦୋଷ-ଦୁର୍ବଳତାର ପରିମାର୍ଜନାର ମହତ୍ ଉଦ୍ଦେଶ୍ୟ। ତେବେ ପ୍ରାଚୀନତା ତାଙ୍କୁ ସମ୍ପୂର୍ଣ୍ଣ ଆଚ୍ଛନ୍ନ କରି ରଖିପାରି ନାହିଁ କି ଆଧୁନିକତାର ମାୟା ମରୀଚିକା ତାଙ୍କୁ ପ୍ରଲୁବ୍ଧ କରିପାରି ନାହିଁ। ତେଣୁ ତାଙ୍କ ରଚନା ସଂସାର ଚିରସବୁଜ ଓ ଉପାଦେୟ ହୋଇରହିଛି।

ଆମେ ସଂକ୍ରମଣ କାଳ ଦେଇ ଗତି କରୁଛୁ। ଏହି ଘଡ଼ିସନ୍ଧି ବେଳାରେ ପ୍ରାଚୀନ ମୂଲ୍ୟର ସୁରକ୍ଷା କରି ହେଉ ନାହିଁ କି ନୂତନ ମୂଲ୍ୟବୋଧର ସୃଜନ ମଧ୍ୟ ହୋଇପାରୁ ନାହିଁ। ଏହି ସଂକ୍ରମଣକାଳୀନ ରୋଗର ଉପଚାର ସକାଶେ ଆମକୁ ଅନ୍ତର୍ଜଗତ ଓ ବହିର୍ଜଗତ ମଧ୍ୟରେ ସମନ୍ୱୟ ସ୍ଥାପନ କରିବାକୁ ପଡ଼ିଥାଏ। ବହିର୍ଜଗତରେ ବସ୍ତୁଚେତନା ସକ୍ରିୟ ଥାଏ, କିନ୍ତୁ ଅନ୍ତର୍ଜଗତ୍‌ରେ ଅଧ୍ୟାତ୍ମଚେତନା। ଜାନକୀବାବୁଙ୍କ ଶବ୍ଦ ସଂସାର ନୈତିକ ଓ ସାଧୁତାର କଷଟିରେ ସବୁବେଳେ ଉତ୍ତୀର୍ଣ୍ଣ ହୋଇଛି। ତାଙ୍କର ସାହିତ୍ୟ ହେଉଛି ସମାଜର ଅମୂଲ୍ୟ ଐତିହ୍ୟ, ପଥ-ଭ୍ରଷ୍ଟମାନଙ୍କପାଇଁ ଧ୍ରୁବତାରା ଏବଂ ଯୁଗୀନ ସମସ୍ୟାଗୁଡ଼ିକର ସର୍ବକାଳୀନ ସମାଧାନ।

ମହାତ୍ମାଗାନ୍ଧୀଙ୍କୁ ଥରେ ପ୍ରଶ୍ନ କରାଯାଇଥିଲା– ଆପଣଙ୍କପାଇଁ ଆଶଙ୍କା ଓ ଆଶ୍ୱସ୍ତିର ଆଧାର କ'ଣ ସବୁ ସାଜିଥାଏ? ଗାନ୍ଧିଜୀ ଉତ୍ତର ଦେଇଥିଲେ– ଆମ ଯୁବସମାଜ ମନରେ କରୁଣାର ସ୍ରୋତ ଧୀରେ ଧୀରେ କୃଶ ହେବାର ଲାଗିଛି, ଏହା ମୋ ମନରେ ନିରାଶା ସୃଷ୍ଟି କରିଥାଏ। କିନ୍ତୁ ଆମ ମାଟିରେ ବିଶୁଦ୍ଧ ଆଧ୍ୟାତ୍ମିକତା ବଞ୍ଚି ରହିଛି– ଏହା ମୋ ମନକୁ ଆଶ୍ୱସ୍ତ କରିଥାଏ। ଏହି ପରିପ୍ରେକ୍ଷୀରେ ଦେଖିଲେ ମାନିବାକୁ ହେବ ଯେ ଟେକ୍‌ନିକ୍ ଓ ବୁଦ୍ଧି ବଳରେ ଶାସନ ପରିଚାଳନା ଦକ୍ଷତାର ସହିତ କରାଯାଇପାରିବ କିନ୍ତୁ ଏମାନଙ୍କ ସହିତ ବିବେକ ସମନ୍ୱିତ ଜ୍ଞାନ ରହିଥିଲେ ରାଷ୍ଟ୍ରର ସମ୍ୟକ୍ ନିର୍ମାଣ ସହଜସାଧ୍ୟ ହୋଇଥାଏ। ଏହି ତଥ୍ୟକୁ ଜାନକୀବାବୁ ଠିକ୍ ବୁଝିଥିଲେ। ସମ୍ୟକ୍ ଚିନ୍ତନ, ସମ୍ୟକ୍ ନିର୍ଣ୍ଣୟ ଏବଂ ତା'ପରେ ସମ୍ୟକ୍ କ୍ରିୟାନ୍ୱୟନ–ଏହି ପ୍ରକ୍ରିୟା ତାଙ୍କ ପ୍ରଶାସନର ବିଶେଷତ୍ୱ ଥିଲା। ସେ ଗୋଲାପ ରୂପରେ ପ୍ରସ୍ଫୁଟିତ ହୋଇ ବଗିଚାକୁ ସୁନ୍ଦର ଓ ସୁରଭିତ ରଖିବାର ପ୍ରୟାସ କରୁଥିଲେ କିନ୍ତୁ

କଣ୍ଟକମାନଙ୍କ ସହିତ ଆଡ଼୍‌ଜଷ୍ଟ ମଧ୍ୟ କରିନେଉଥିଲେ। କୁରୁକ୍ଷେତ୍ରକୁ ଧର୍ମକ୍ଷେତ୍ରରେ ପରିଣତ କରିବାର କଳା ତାହାଙ୍କୁ ଜଣାଥିଲା।

ପ୍ରାୟ ତିନିଦଶକ ତଳେ ଭାଗଲପୁର ଅଞ୍ଚଳର ଜଣେ ବିହାରୀବାସୀ ବନ୍ଧୁଙ୍କୁ ହାଲଚାଲ ପଚାରିବା ସମୟରେ ସେ କହିଲେ ସହଧର୍ମିଣୀ କ୍ୱଚିତ ରାତ୍ରିରେ ଶୋଇଥାନ୍ତି। ମୁଁ ଆଶ୍ଚର୍ଯ୍ୟ ହୋଇ କାରଣ ଜାଣିବାକୁ ଚାହିଁବାରୁ ସେ କହିଥିଲେ– ଆମ ବିହାରରେ ଦୈନିକ ତିନି ଘଣ୍ଟା ରାତି୧ଟାରୁ ୪ଟା ମଧ୍ୟରେ ବିଜୁଳି ରହିଥାଏ। ବାକି ସମୟରେ ପାୱାରକଟ୍ ହେଉଥାଏ। ପ୍ରବଳ ଗରମ ଓ ଗୁଳଗୁଳି ମଧ୍ୟରେ ରାତି ୧ଟା ଯାଏ ନିଦ ଆସେ ନାହିଁ। ବିଜୁଳି ଆସିଗଲେ ପି.ଏଚ୍.ଡି. ନଳରୁ ଜଳ ସଂଗ୍ରହଣ କରିବା ଆବଶ୍ୟକ ହୋଇପଡ଼େ। ତେଣୁ ସେ ପ୍ରାୟ ରାତିରେ ବିଶ୍ରାମ କରିପାରନ୍ତି ନାହିଁ। ଆମେ ଦିନବେଳା କଠୋର ଶ୍ରମ କରୁଥିବାରୁ ରାତିରେ ଯେମିତି ସେମିତି ଶୋଇ ପଡ଼ିଥାଉଁ। ଏହି ପ୍ରସଙ୍ଗ ଅବତାରଣା ପଛରେ ମୋର ଉଦ୍ଦେଶ୍ୟ ହେଉଛି– ସେହି କାଳ ଖଣ୍ଡରେ ଜାନକୀବାବୁ ଓଡ଼ିଶାକୁ ବିଜୁଳି କ୍ଷେତ୍ରରେ ବଳକା ରାଜ୍ୟରେ ପରିଣତ କରିବା ସ୍ୱପ୍ନ କେବଳ ଦେଖି ନ ଥିଲେ, ତାହାକୁ ସାକାର ମଧ୍ୟ କରିପାରିଥିଲେ। Vision elevates the nation ବେକାରୀ ଦୂର କରିବାକୁ ହେଲେ ଓ ବିକାଶ କରିବାକୁ ହେଲେ ଶାନ୍ତି ହିଁ ଏକମାତ୍ର ପନ୍ଥା– ଏହାକୁ ସେ ଅନୁଭବ କରିଥିଲେ।

ଏ ଦେଶରେ, ରାଜନୀତି ନାମରେ ଭାଷଣର ବନ୍ୟା ଓ ତ୍ୟାଗର ଦୁର୍ଭିକ୍ଷ ଚାଲିଥିବାବେଳେ ଜାନକୀବାବୁ ହେଉଛନ୍ତି ଏ କ୍ଷେତ୍ରରେ ବିରଳ ବ୍ୟତିକ୍ରମ। ତାଙ୍କ ଅବର୍ତ୍ତମାନରେ ଓଡ଼ିଶା ଆଜି ନିଶ୍ଚିତ ଭାବରେ ମୁରବି-ବିହୀନ ହୋଇଛି। ଜଣେ ପ୍ରାଜ୍ଞ ମନୀଷୀଙ୍କ ସନ୍ଦେହ ଅନୁପସ୍ଥିତିର କଳ୍ପନା ବ୍ୟକ୍ତିକୁ ଅସହାୟ ଓ ସମାଜକୁ ଦରିଦ୍ର କରିପକାଏ। ଅନ୍ଧକାରର ପ୍ରଗାଢ଼ତା ଓ ସାନ୍ଦ୍ରତାର ଅନୁଭୂତି ତୀବ୍ର ହେବା ସ୍ୱାଭାବିକ। ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଅବିଦ୍ୟମାନତାରେ ବଶିର ବଦ୍ରଙ୍କ ଉର୍ଦ୍ଦୁ ଶାୟରୀର ଦୁଇଟି ପଂକ୍ତି ଉଦ୍ଧାର କରୁଛି–

**ଉଜାଲୋଁ ଅପ୍‌ନି ୟାଦୋଁ କୋ ହମାରେ ସାଥ ରହନେ ଦୋ,**
**ନ ଜାନେ କିସ ଗଲୀ ମେଁ ଜିନ୍ଦଗୀକାସାମ୍ ହୋଯାଏ।**

ଅର୍ଥାତ୍ ଆଲୋକ! ଆପଣା ସ୍ମୃତିକୁ ଆମ ସହିତ ଜଡ଼ିତ କରି ରଖିଥାଅ। କିଏ ଜାଣିଛି କେଉଁ ଗଳିରେ ଜୀବନର ସଞ୍ଜ ଆସି ପହଞ୍ଚିଯିବ।



# ଯଶସ୍ୱୀ ଜାନକୀବଲ୍ଲଭ

**ଶିବପ୍ରସାଦ ତ୍ରିପାଠୀ**

ଯୋଗଜନ୍ମା ଯଶସ୍ୱୀ ପ୍ରଜ୍ଞାପୁରୁଷ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ମାଟିଦେହକୁ ସ୍ୱର୍ଗଦ୍ୱାର ଶ୍ମଶାନ ଗ୍ରାସ କରିସାରିଥିଲେ ମଧ୍ୟ ଯଶ ଓ ଖ୍ୟାତିର ସାମ୍ରାଜ୍ୟରେ ତାଙ୍କର ପୁଣ୍ୟସ୍ମୃତି ଚିରକାଳକୁ ଆୟୁଷ୍ମାନ୍ ହୋଇରହିବ। ଓଡ଼ିଶାର ରାଜନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ ଅନେକେ ବିଭିନ୍ନ ସମୟରେ ସ୍ୱକୀୟ ନୈପୁଣ୍ୟ ଓ ବିକ୍ରମ ପ୍ରଦର୍ଶନ କରିଛନ୍ତି। ତେବେ ତାରକା ଯେତେ ସୁନ୍ଦର ହେଲେ ମଧ୍ୟ ଚନ୍ଦ୍ରମାର ଆଲୋକ ଶୋଭାପ୍ରାପ୍ତ ହୁଏନାହିଁ।

ଆମର ଶାସ୍ତ୍ର କହେ "ସଦା ପ୍ରସନ୍ନ ମୁଖ ମିଷ୍ଟବାଣୀ/ସୁଶୀଳତା ଚ ସ୍ୱଜନେଷୁ ସଖ୍ୟ / ସୁତାଂ ପ୍ରସଙ୍ଗଃ କୁଳହୀନ ହାନ୍ / ଚିହ୍ନାନି ଦେହେ ତ୍ରିଦିବ ସ୍ଥିତାନାମ୍।" ସବୁ ସମୟରେ ସହାସ୍ୟ ମୁଖମଣ୍ଡଳ, ମଧୁରବାଣୀ, ମାର୍ଜିତ ବ୍ୟବହାର, ଉତ୍ତମ ଲୋକଙ୍କ ସହ ସଂପର୍କ ଆଦି ଲକ୍ଷଣଯୁକ୍ତ ଶରୀରରେ ତ୍ରିଦେବ ବିରାଜମାନ କରିଥାନ୍ତି। ଥରେ ଗଜପତି ମହରାଜା ଦିବ୍ୟସିଂହ ଦେବ 'ଦିବ୍ୟବାଣୀ' ଶୀର୍ଷକ ଏକ କ୍ଷୁଦ୍ର ପୁସ୍ତିକା ମୋତେ ଉପହାର ଦେଇଥିଲେ। ଏହି ପୁସ୍ତିକାର ମଧ୍ୟଭାଗର ଏକ ପୃଷ୍ଠା ଓଲଟାଇ ଦେଖିଲି ସ୍ୱାମୀ ଶିବାନନ୍ଦଙ୍କ ବାଣୀ, ସତ୍ୟ କହନ୍ତୁ, ଅଳ୍ପ କହନ୍ତୁ, ମଧୁର ବଚନ କହନ୍ତୁ।" ଏହି ଗୁଣଗୁଡ଼ିକ ସ୍ୱର୍ଗୀୟ ଜାନକୀବଲ୍ଲଭଙ୍କଠାରେ ପୂରି ରହିଥିଲା। ସୁପୁରୁଷଙ୍କ ପ୍ରତି ଈଶ୍ୱରୀୟ ଆଶୀର୍ବାଦ ସବୁ ସମୟରେ ରହିଥାଏ ଏବଂ ସେମାନଙ୍କ ନିକଟରେ ସମସ୍ତ ଜଟିଳ ସମସ୍ୟା ଓ ଜଞ୍ଜାଳର ସମାଧାନର ଦକ୍ଷତା ରହିଥାଏ। ପ୍ରବୀଣ ରାଜନେତା ଜାନକୀବଲ୍ଲଭ ଥିଲେ ଜଣେ ସୁଦକ୍ଷ ପ୍ରଶାସକ। ଅଳ୍ପ କଥାରେ ତୁରନ୍ତ ସାଧିତ ହେଉଥିଲା ଦୁରୂହ କାର୍ଯ୍ୟ।

କଥିତ ଅଛି "ଅପୂଜ୍ୟା ଯତ୍ର ପୂଜ୍ୟନ୍ତେ ପୂଜାପୂଜା ବ୍ୟତିକ୍ରମଃ/ତ୍ରୀଣି ତତ୍ର ପ୍ରବର୍ତ୍ତନ୍ତେ ଦୁର୍ଭିକ୍ଷଂ ମରଣଂ ଭୟମ୍।" ଯେଉଁଠାରେ ଅପୂଜ୍ୟମାନଙ୍କର ପୂଜା କରାଯାଏ ଏବଂ ପୂଜ୍ୟପୂଜାରେ ଅବହେଳା କରାଯାଏ ସେଠାରେ ଦୁର୍ଭିକ୍ଷ, ମରଣ ଓ ଭୟର ପ୍ରାବଲ୍ୟ ପରିଦୃଷ୍ଟ ହୁଏ। ଅପୂଜ୍ୟ ପୂଜାର ପଙ୍କିଳ ଅବିଧିପରି ପୂଜ୍ୟପୂଜାରେ ବ୍ୟତିକ୍ରମ ମଧ୍ୟ ଦୋଷାବହ। ବହୁ ଜ୍ଞାନୀଗୁଣୀ ସମାଜପ୍ରେମୀଙ୍କ ନିରବଚ୍ଛିନ୍ନ ସାଧନାର ଫଳଶ୍ରୁତିସ୍ୱରୂପ ଆଜିର ନବସମାଜର ଅଭ୍ୟୁଦୟ ଘଟିଛି। ପୁଣ୍ୟତୋୟା ଓଡ଼ିଶାର ନବନିର୍ମାଣ ପର୍ବରେ ସ୍ୱର୍ଗୀୟ ଜାନକୀବଲ୍ଲଭଙ୍କ ଭୂମିକା ଅନବଦ୍ୟ। ଆଜି ତାଙ୍କୁ ଖୋଜିବାର ବେଳ, ହେଜିବାର ବେଳ।

ଏକ ଚଳଚଞ୍ଚଳ ଜୀବନର ଅନ୍ୟ ନାମ ଥିଲା ଜାନକୀବଲ୍ଲଭ ପଟ୍ଟନାୟକ। ଜୀବନର ସାୟାହ୍ନରେ ମଧ୍ୟ ଥିଲା ଆଦ୍ୟକାଳର ସୁରଭି। ଶତଦଳ ପଦ୍ମର ଜଳରାଜ୍ୟରେ ଚନ୍ଦ୍ରମାର

ଜୟଯାତ୍ରା। ଭାଷାତୀତ ଓ ଭାବାତୀତ ଅଦମ୍ୟ ଉତ୍ସାହ ତଥା ଅଫୁରନ୍ତ ସମ୍ଭାବନାର ନିର୍ଯ୍ୟାସ। ବଦାନ୍ୟତା, ମାନବିକତା, ସ୍ନେହ ଓ ସଦ୍‌ଭାବନାର ଉଦ୍ଦାମ ଝରଣା। ଏକ ସ୍ୱୟଂ ସମ୍ପୂର୍ଣ୍ଣ ମହାନୁଷ୍ଠାନ, ଏକ ଶକ୍ତିବାହିନୀ। ଆଧ୍ୟାତ୍ମିକ ଭାବନା ଓ ପ୍ରାଚୀନ ପରମ୍ପରା ବିଜଡ଼ିତ ତାଙ୍କର ମାନସରାଜ୍ୟ।

ସ୍ୱାମୀ ଚିଦାନନ୍ଦଙ୍କ ମତରେ ପ୍ରାପ୍ତିର ସଫଳତାରେ ନ ଥାଏ ଆନନ୍ଦ, ଜନଜୀବନ ପ୍ରତି ସ୍ୱକୀୟ ଅବଦାନ ହିଁ ସୁଖ ଓ ସମୃଦ୍ଧି। ଜୀବନକୁ ସହଜ ଓ ସମୃଦ୍ଧ କରିବା ନିମନ୍ତେ ବନ୍ଧୁ ସୃଷ୍ଟି କରେ, ଏହାହିଁ ଉପଲବ୍ଧି। ସ୍ୱର୍ଗୀୟ ଜାନକୀବଲ୍ଲଭଙ୍କ ଉପଲବ୍ଧି ମଧ୍ୟ ଏହାଠାରୁ ଅଭିନ୍ନ।

ସ୍ୱର୍ଗୀୟ ଜାନକୀବଲ୍ଲଭଙ୍କ ରଚ୍ନାବଳୀ ତଥା କଥନଶୈଳୀ ଅତ୍ୟନ୍ତ ମାର୍ଜିତ ରୁଚିସମ୍ପନ୍ନ, ଭାବଗର୍ଭକ ତଥା ଚିତ୍ତଗ୍ରାହୀ ଓ ଅର୍ଥବିଶିଷ୍ଟ। ଓଡ଼ିଆ, ବଙ୍ଗଳା, ଇଂରାଜୀ, ହିନ୍ଦୀ, ସଂସ୍କୃତ ଓ ଅହମୀୟା ଭାଷାରେ ସେ ଥିଲେ ଧୁରୀଣ। ତାଙ୍କର କଥନଶୈଳୀରେ ଶବ୍ଦଚୟନର ବିଶେଷତ୍ୱ ଶ୍ରୋତାମାନଙ୍କୁ ବିମୋହିତ କରୁଥିଲା। ତାଙ୍କର ଭାଷଣସମୂହ ଥିଲା ରସମୟ କାବ୍ୟସଦୃଶ। ଯେପରିକି କବି ଲୋକନାଥ ବିଦ୍ୟାଧର 'ଚିତ୍ରକଳା' କାବ୍ୟରେ ଲେଖିଛନ୍ତି "ଓଜ ମାଧୁର୍ଯ୍ୟ ପ୍ରସାଦ ଉକ୍ତିବିଶେଷ / ନାନା ରସ ମିଶି ହେବ ଅତି ସୁରସ / ଗୁଣବନ୍ତ ଲୋକେ ରସେ ପ୍ରିୟ ହୋଇବ / ଖଳ ଲୋକେ ଶୁଣିଲେ ହେଁ ସୁଖ ଲଭିବ।"

ସକଳ ପ୍ରକାର ନିନ୍ଦା ଅଥବା ପ୍ରଶଂସାର ଊର୍ଦ୍ଧ୍ୱରେ ରହି ସେ ନିରନ୍ତର କାର୍ଯ୍ୟରତ ଥିଲେ। ବୟସାଧିକ୍ୟ ସତ୍ତ୍ୱେ ଅତୁଟ ଓ ଅବିଚଳିତ ମନୋବଳ ମାଧ୍ୟମରେ, ସାମାଜିକ, ସାହିତ୍ୟିକ, ସାଂସ୍କୃତିକ ଓ ଅର୍ଥନୈତିକ ବିକାଶ କ୍ଷେତ୍ରରେ ସେ ପ୍ରୟାସରତ ଥିଲେ। ପ୍ରୟାସ କରୁଥିବା ବ୍ୟକ୍ତି କେବେହେଲେ ନିରାଶ ହୁଅନ୍ତି ନାହିଁ। ଆଶା ଅସୁମାରି ସାଗର ଲହରୀ ପରି। ଶିଳ୍ପ, କୃଷି, ଶିକ୍ଷା, କଳା, ସଂସ୍କୃତି ଓ ଭାଷା କ୍ଷେତ୍ରରେ ପ୍ରଭୂତ ବିକାଶ ଲକ୍ଷ୍ୟରେ ସେ ଅନେକ ବିରୋଧାଭାସ ତଥା ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ 'ଚରୈବେତି ଚରୈବେତି' ନ୍ୟାୟରେ ଗତିଶୀଳ ଥିଲେ। କେନ୍ଦ୍ରମନ୍ତ୍ରୀ ପଦରୁ ସେ ରାଜ୍ୟ କ୍ଷମତା କେନ୍ଦ୍ରକୁ ଆସି ମୁଖ୍ୟମନ୍ତ୍ରୀ ହୋଇଥିଲେ। ଆଉ ଫେରିପାରି ନ ଥିଲେ କେନ୍ଦ୍ର ରାଜନୀତିକୁ। ରାଜ୍ୟର ମୋହ ତାଙ୍କୁ ଆଚ୍ଛନ୍ନ କରିପକାଇଥିଲା। ପରେ ସେ ଆସାମର ରାଜ୍ୟପାଳ ପଦମଣ୍ଡନ କଲେ। ଉଲ୍ଲେଖଯୋଗ୍ୟ ଯେ ସକଳ ଦକ୍ଷତା ସତ୍ତ୍ୱେ କଂଗ୍ରେସ ଦଳର ଦୁଇଜଣ ମହାନ୍ ପ୍ରତିଭାଧର ଡକ୍ଟର କରଣ ସିଂ ଏବଂ ଜାନକୀବଲ୍ଲଭ ପଟ୍ଟନାୟକ ଦେଶର ରାଷ୍ଟ୍ରପତି ପଦରୁ ବଞ୍ଚିତ। ତେବେ କେନ୍ଦ୍ର ସରକାରଙ୍କଦ୍ୱାରା ଜାନକୀବଲ୍ଲଭ ତିରୁପତି ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳାଧିପତି ଭାବରେ ନିଯୁକ୍ତ ହୋଇଥିଲେ ଏବଂ ଜୀବନର ଶେଷଦିନ ପର୍ଯ୍ୟନ୍ତ ଉକ୍ତ ପଦରେ ରହିଥିଲେ। ଡକ୍ଟର କରଣ ସିଂ ମଧ୍ୟ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର କୁଳାଧିପତି ନିଯୁକ୍ତ ହୋଇଥିଲେ।

'ପ୍ରଜାତନ୍ତ୍ର'ର ପୋଷ୍ଟଅଫିସ ଘରଠାରୁ ଗୁଆହାଟି ରାଜଭବନ ପର୍ଯ୍ୟନ୍ତ ଦୀର୍ଘଯାତ୍ରା। କେବେ କଣ୍ଟକିତ କେବେ କୁସୁମମଣ୍ଡିତ। ଶିକ୍ଷାଲାଭ ଓ ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ

ପରେ ଦୈନିକ ପ୍ରଜାତନ୍ତ୍ରରେ ସାମ୍ବାଦିକ ଭାବରେ ଜୀବନଯାତ୍ରା ଆରମ୍ଭ କରିଥିବା ଜାନକୀବଲ୍ଲଭ କେନ୍ଦ୍ରମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ତଥା ରାଜ୍ୟପାଳ ପଦମଣ୍ଡନ କଲେ। ଏକ ପରିପୂର୍ଣ୍ଣ ବ୍ୟକ୍ତିତ୍ୱ। ରାଜନୀତି କ୍ଷେତ୍ରରେ ଚାଣକ୍ୟ ଅଥବା ମୁକୁଟବିହୀନ ସମ୍ରାଟ୍। ସେ ପ୍ରଜାତନ୍ତ୍ରର ସମ୍ପାଦକ ଓ ଏଥିସହ ଇଂରାଜୀ ଦୈନିକ 'ଦି ଇଷ୍ଟର୍ଣ୍ଣ ଟାଇମ୍‌ସ'ର ସମ୍ପାଦକ ଦାୟିତ୍ୱ ନିର୍ବାହ କରିଥିଲେ। ପରବର୍ତ୍ତୀକାଳରେ ନିଜ ସମ୍ପାଦନାରେ ମାସିକ ଡାଇଜେଷ୍ଟ 'ପୌରୁଷ' ପ୍ରକାଶ କରିଥିଲେ। ଏଥିରେ ମୋର ଲେଖା ପ୍ରକାଶ ପାଇଛି। ଏଥିଲାଗି ସ୍ୱାଭାବିକ ଭାବରେ ତାଙ୍କ ସହ ମୋର ଭାବାବେଗ ଜଡ଼ିତ। ପରବର୍ତ୍ତୀକାଳରେ ମୁଁ ମଧ୍ୟ ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ସମ୍ବଲପୁରରୁ ପ୍ରକାଶିତ ଦୈନିକ ହୀରାଖଣ୍ଡର ବାର୍ତ୍ତା-ସମ୍ପାଦକ ଥିଲି।

ଜାନକୀବଲ୍ଲଭଙ୍କର ବିଚକ୍ଷଣ ପ୍ରଜ୍ଞା ପ୍ରଣିଧାନଯୋଗ୍ୟ। ସବୁ ଘଟଣ, ଅଘଟଣ, ସୁବିଧା ଅସୁବିଧା ତଥା ସଫଳତା ବିଫଳତାକୁ ସେ ସମାନ ଭାବରେ ଗ୍ରହଣ କରୁଥିଲେ। ଗୀତାର ବର୍ଣ୍ଣନା "ଯୋଗସ୍ଥ କୁରୁ କର୍ମାଣି ସଙ୍ଗ ତ୍ୟକ୍ତ୍ୱା ଧନଞ୍ଜୟ / ସିଦ୍ଧି ସିଦ୍ଧ୍ୟୋ ସମୋଭୂତ୍ୱା ସମତ୍ୱଂ ଯୋଗ ଉଚ୍ୟତେ।" ଏହି ଧାରାରୁ ଜାନକୀବଲ୍ଲଭ ବିଚ୍ୟୁତ ହୋଇ ନ ଥିଲେ।

ଆଜିକାଲିକା ରାଜନେତାମାନେ ଜନସାଧାରଣଙ୍କୁ ବହୁ ମିଛ ପ୍ରତିଶ୍ରୁତି ଦେଇଥାନ୍ତି। ମାତ୍ର ଜାନକୀବଲ୍ଲଭ ଥିଲେ ବାସ୍ତବବାଦୀ। ଜନଜୀବନର ବିଶ୍ୱକର୍ମା। ଲୋକଙ୍କ ସମସ୍ୟା ଓ ସମାଧାନର ପନ୍ଥାକୁ ସେ ଠିକ୍ ଭାବରେ ଜାଣିଥିଲେ। ସମ୍ପୂର୍ଣ୍ଣ କାର୍ଯ୍ୟକାଳ ୫ବର୍ଷ ପୂର୍ଣ୍ଣ କରିବାରେ ସେ ଓଡ଼ିଶାର ପ୍ରଥମ ମୁଖ୍ୟମନ୍ତ୍ରୀ। ତାଙ୍କ ପୂର୍ବରୁ କ୍ଷମତା-କନ୍ଦଳ ଯୋଗୁଁ କୌଣସି ମୁଖ୍ୟମନ୍ତ୍ରୀ ଏକାଦିକ୍ରମେ ପାଞ୍ଚ ବର୍ଷ କ୍ଷମତାରେ ରହିପାରି ନ ଥିଲେ। ପ୍ରଚଣ୍ଡ ପ୍ରତିଭାଧର, ପ୍ରବୀଣ କଂଗ୍ରେସନେତା ଜାନକୀବଲ୍ଲଭଙ୍କ ସହଧର୍ମିଣୀ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ ତାଙ୍କ ସୁଯୋଗ୍ୟ ସହଯୋଗୀ, ଅନୁଗାମୀ ତଥା ସମଭାବାପନ୍ନ ସଂସ୍କୃତିପ୍ରେମୀ ଭାବରେ ସୁଖ୍ୟାତି ଅର୍ଜନ କରିଛନ୍ତି। ସେ ମଧ୍ୟ ପାର୍ଲ୍ୟାମେଣ୍ଟ ସଦସ୍ୟ ତଥା ଭାରତୀୟ ଜାତୀୟ ମହିଳା କଂଗ୍ରେସର ଅଧ୍ୟକ୍ଷା ଥିଲେ। ପୌରୁଷର ସଂପାଦନା ଦାୟିତ୍ୱ ନିର୍ବାହ କରିଥିଲେ।

ଜାନକୀବଲ୍ଲଭଙ୍କ ତିରୋଧାନରେ 'ସମ୍ବାଦ'ର ସମ୍ପାଦକ ସୌମ୍ୟରଞ୍ଜନ ପଟ୍ଟନାୟକ ଯଥାର୍ଥରେ ମତବ୍ୟକ୍ତ କରିଛନ୍ତି ଯେ, ସ୍ୱର୍ଗୀୟ ଜାନକୀବଲ୍ଲଭ ପଟ୍ଟନାୟକ ପ୍ରତ୍ୟେକ ସମୟରେ ପ୍ରାସଙ୍ଗିକ ଥିଲେ। ଏହି ମତକୁ ଅନ୍ୟମାନେ ମଧ୍ୟ ସମର୍ଥନ କରିଛନ୍ତି। ଅଧୁନା ନିର୍ବାଚିତ ଜନପ୍ରତିନିଧି ବା ବିଧାୟକମାନଙ୍କୁ ଶାସନକଳ ଉପେକ୍ଷା କରୁଥିବା ବିଷୟ ପ୍ରମୁଖ ଆଲୋଚ୍ୟ ପ୍ରସଙ୍ଗ ପାଲଟିଛି। ତେବେ ଜାନକୀବଲ୍ଲଭଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ବିଧାୟକମାନଙ୍କ ସୁପାରିସ ଅଥବା ମତ ବିଶେଷ ଗୁରୁତ୍ୱ ପାଉଥିଲା। ଏଥିଲାଗି ମୁଖ୍ୟମନ୍ତ୍ରୀଙ୍କ ତରଫରୁ ସଂପୃକ୍ତ ଉଚ୍ଚପଦାଧିକାରୀମାନଙ୍କୁ କଡ଼ା ନିର୍ଦ୍ଦେଶ ଦିଆଯାଇଥିଲା। ସମ୍ପ୍ରତି କୌଣସି ବିଧାୟକ ଅଥବା ଦଳୀୟନେତା ସଚିବାଳୟରୁ ନିର୍ଦ୍ଦେଶନାମାଟିଏ ହାସଲ କରିବା କାଠିକର ପାଠରେ ପରିଣତ ହୋଇଛି। ପ୍ରଶାସନିକ ଅଧିକାରୀମାନେ ସମ୍ପ୍ରତି ଅଧିକ କ୍ଷମତାଶାଳୀ, ଯାହା ବାସ୍ତବ ଗଣତନ୍ତ୍ରର ପରିପନ୍ଥୀ। ଜନକୀବଲ୍ଲଭ ଥିଲେ ଓଡ଼ିଶାର ସ୍ୱର୍ଣ୍ଣଯୁଗର ବିନ୍ଧାଣି, ନବଯୁଗର ପୁରୋଧା।

ତାଙ୍କର ଜ୍ଞାନ ଓ ଜ୍ଞାନଲିପ୍ସା ଏ କ୍ଷେତ୍ରରେ ସହାୟକ ହୋଇଥିଲା। ନିତ୍ୟନୂତନ ଜ୍ଞାନ ଆହରଣରେ ତାଙ୍କର ପ୍ରବଳ ଆଗ୍ରହ ରହିଥିଲା।

ତିରୁପତି ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଯୋଗଦାନ ଲାଗି କୁଳାଧିପତି ଜାନକୀବଲ୍ଲଭ ତିରୁପତି ଗଲେ। ସେଠାରେ ସନ୍ଧ୍ୟାରେ ଏକ ଆନୁଷ୍ଠାନିକ ବୈଠକ ପରେ କୁଳପତି ଡକ୍ଟର ହରେକୃଷ୍ଣ ଶତପଥୀ ପ୍ରମୁଖଙ୍କ ସହ ମହାପ୍ରଭୁ ବାଲାଜୀଙ୍କ ଦର୍ଶନ ନିମନ୍ତେ ମନ୍ଦିରକୁ ଗଲେ। ତା' ପୂର୍ବରୁ ବିଷ୍ଣୁ ସହସ୍ରନାମ ପାଠ କରିଥିଲେ। ଦର୍ଶନପରେ ସେ ଅତିଥିଶାଳାରେ ଉପସ୍ଥିତ ସ୍ୱଜନବର୍ଗଙ୍କୁ ଶ୍ରୀ ବିଷ୍ଣୁ ସହସ୍ରନାମର ତାତ୍ପର୍ଯ୍ୟ ଏବଂ ଶ୍ରୀଜଗନ୍ନାଥଙ୍କର ମହିମା ସମ୍ପର୍କରେ କହିଥିଲେ। କିଛି ସମୟ ବିଶ୍ରାମପରେ ଅସୁସ୍ଥ ହେବାରୁ ବିଳମ୍ବିତ ରାତ୍ରିରେ ତାଙ୍କୁ ଚିକିତ୍ସା ନିମନ୍ତେ ଡାକ୍ତରଖାନାକୁ ନିଆଗଲା ଓ ପ୍ରତ୍ୟୁଷରେ ତାଙ୍କର ଜୀବନ ପ୍ରଦୀପ ନିର୍ବାପିତ ହୋଇଗଲା। ସେଦିନ ଥିଲା ପବିତ୍ର ଅକ୍ଷୟ ତୃତୀୟା। କିପରି ସୁଖଦ ଅନ୍ତିମ ଯାତ୍ରା, ଈଶ୍ୱରଙ୍କ କିଭଳି ସାଦର ନିମନ୍ତ୍ରଣ! ଭାଗବତକାର କହନ୍ତି, "ପ୍ରାଣୀର ଭଲମନ୍ଦ ବାଣୀ / ମରଣ କାଳେ ତାହା ଜାଣି।" ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ଜାନକୀବଲ୍ଲଭଙ୍କ ହୃଦୟ ଥିଲା ଆଧ୍ୟାତ୍ମିକ ଭାବନାରେ ପରିପୂର୍ଣ୍ଣ। ଈଶ୍ୱର ତାଙ୍କ ପ୍ରତି ସଦାପ୍ରସନ୍ନ ଥିଲେ। ଯେପରିକି ଭାଗବତକାର ଲେଖିଛନ୍ତି– "ମନୁଷ୍ୟ ଦେହେ ଦିବ୍ୟ ଜ୍ଞାନ / ଦେଖି ସନ୍ତୋଷ ଭଗବାନ।" ପବିତ୍ର ନବକଳେବର ପ୍ରକ୍ରିୟା ଚାଲିଥିବା ସମୟରେ ଜାନକୀବଲ୍ଲଭଙ୍କ ତିରୋଧାନ ଏକ ଈଶ୍ୱରୀୟ କାମନା ବୋଲାଯାଇପାରେ।

କୌଣସି ବିଶେଷଣଦ୍ୱାରା ଜାନକୀବଲ୍ଲଭଙ୍କ ମହାନତାକୁ ପ୍ରକାଶ କରିହେବ ନାହିଁ। ତାଙ୍କର ଜୀବନ ବୃତ୍ତାନ୍ତକୁ କଲମ ମୁନରେ ବର୍ଣ୍ଣନା କରିହେବ ନାହିଁ। ତାଙ୍କର କର୍ମମୟ ଜୀବନ ଓ ପୁଣ୍ୟସ୍ମୃତି ଜନମାନସରେ ଚିରକାଳ ନିମନ୍ତେ ଉଜ୍ଜୀବିତ ହୋଇରହିବ।



# ସାହିତ୍ୟପ୍ରାଣ ଜାନକୀବଲ୍ଲଭ ଓ ଉତ୍କଳ ସାହିତ୍ୟ ସମାଜ

**ଦେବସ୍ମାନ ଦାସ**

ଭାରତବର୍ଷର ଜଣେ ଶ୍ରେଷ୍ଠ ରାଜନୀତିଜ୍ଞ, ଓଡ଼ିଶାରେ ପ୍ରଥମକରି ତିନି ଥର ମୁଖ୍ୟମନ୍ତ୍ରୀ ପଦବୀ ମଣ୍ଡନ କରି ଇତିହାସ ସୃଷ୍ଟି କରିଛନ୍ତି ବୋଲି ଜାନକୀବଲ୍ଲଭ ପଟ୍ଟନାୟକ ଯେ ସ୍ମରଣୀୟ ତା' ନୁହେଁ; ସେ ହେଉଛନ୍ତି ଜଣେ ବହୁମୁଖୀ ପ୍ରତିଭାସମ୍ପନ୍ନ ବ୍ୟକ୍ତିତ୍ୱ। ସେ ଏକାଧାରରେ ହେଉଛନ୍ତି ଜଣେ ସଂଗ୍ରାମୀ, ଚାଷୀ ଆନ୍ଦୋଳନର ଅଗ୍ରଦୂତ, ସାମ୍ବାଦିକ, ସଫଳ ସମ୍ପାଦକ, ସାରସ୍ୱତ ସଂଗଠକ, କବି, ବିଦ୍ୱାନ୍, ଭାଷାବିତ୍, ଗବେଷକ, ସାହିତ୍ୟିକ, ସଫଳ ଅନୁବାଦକ, ସମାଲୋଚକ, ସୁବକ୍ତା, ସଂସ୍କୃତ ଭାଷାର ପଣ୍ଡିତ, ଶିକ୍ଷାବିତ୍, ଦକ୍ଷ ସାଂସଦ, କେନ୍ଦ୍ରମନ୍ତ୍ରୀ, ଜନପ୍ରିୟ ମୁଖ୍ୟମନ୍ତ୍ରୀ, ଦକ୍ଷ ବିରୋଧୀଦଳ ନେତା, ଆସାମର ଲୋକପ୍ରିୟ ରାଜ୍ୟପାଳ, ସର୍ବୋପରି ଜଣେ ସ୍ନେହଶୀଳ ମଣିଷ। ତାଙ୍କ ସଂସ୍ପର୍ଶରେ ଯିଏ ନ ଆସିଛି, ତାଙ୍କ ସ୍ନେହଶୀଳ ମଣିଷପଣିଆ କଥା ଅନୁଭବ କରିପାରି ନାହିଁ।

ଏହି ମହାନ୍ ସ୍ରଷ୍ଟା ୧୯୨୭ ମସିହା ଜାନୁଆରୀ ମାସ ୩ ତାରିଖରେ ଏକ ସଂସ୍କୃତିସମ୍ପନ୍ନ ଶିକ୍ଷକ ପରିବାରରେ ଅବିଭକ୍ତ ପୁରୀ ଜିଲ୍ଲା ତଥା ସମ୍ପ୍ରତି ଖୋର୍ଦ୍ଧା ଜିଲ୍ଲାର ରାମେଶ୍ୱର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ପିତା ଗୋକୁଳାନନ୍ଦ ପଟ୍ଟନାୟକ ଥିଲେ ଜଣେ ଆଦର୍ଶ ଶିକ୍ଷକ ଓ ସାରସ୍ୱତ ସ୍ରଷ୍ଟା। ପିତାମାତାଙ୍କ ଆଦର୍ଶ ଓ ପ୍ରଭାବ ଜାନକୀବଲ୍ଲଭଙ୍କ ଉପରେ ବହୁଭାବେ ପଡ଼ିଥିଲା। ତୁଳସୀ ଦୁଇପତ୍ରରୁ ବାସିବା ଭଳି ଖୋର୍ଦ୍ଧା ସ୍କୁଲର ଛାତ୍ର ଥିବାବେଳେ ଜାନକୀବଲ୍ଲଭଙ୍କ ସ୍ୱାଧୀନଚେତା ଓ ସମାଜସେବୀ ମନୋଭାବ ଜଳଜଳ ହୋଇ ଦିଶୁଥିଲା। ତତ୍କାଳୀନ ଖୋର୍ଦ୍ଧା ଜିଲ୍ଲାସ୍କୁଲର ସ୍ୱନାମଧନ୍ୟ ପ୍ରଧାନ ଶିକ୍ଷକ ବାଙ୍କନିଧି ପଟ୍ଟନାୟକ ବିଭିନ୍ନ ଛାତ୍ରଙ୍କ ଭବିଷ୍ୟତ ଜୀବନ ସମ୍ପର୍କରେ ପଚାରିବା ସମୟରେ ଜାନକୀବଲ୍ଲଭ ତାଙ୍କର ସମ୍ବାଦପତ୍ରର ସମ୍ପାଦକ ହେବା ଅଭିଳାଷ ରହିଛି ବୋଲି ମତପ୍ରକାଶ କରିଥିଲେ। ସେ ଖୋର୍ଦ୍ଧା ସ୍କୁଲରୁ ସ୍କୁଲଶିକ୍ଷା ସମାପ୍ତ କରି ରେଭେନ୍ସା ମହାବିଦ୍ୟାଳୟରୁ ୧୯୪୭ ମସିହାରେ ସଂସ୍କୃତରେ ସମ୍ମାନ ସହିତ ବି.ଏ. ପାସ୍ କରିଥିଲେ। ରେଭେନ୍ସା ମହାବିଦ୍ୟାଳୟର ଛାତ୍ର ଥିବା ସମୟରେ ବିଦେଶୀ ବର୍ଜନ ନୀତିରେ ଉଦ୍‌ବୁଦ୍ଧ ହୋଇ ରେଭେନ୍ସା ମହାବିଦ୍ୟାଳୟରୁ ବ୍ରିଟିଶ୍ ସରକାରଙ୍କ ୟୁନିୟନ୍ ଜ୍ୟାକ୍ (ପତାକା)କୁ ହଟାଇ ତ୍ରିରଙ୍ଗା ଉଡ଼ାଇଥିଲେ। ଏହା ଥିଲା ତାଙ୍କର ସ୍ୱାଧୀନତା ଆନ୍ଦୋଳନରେ ସାମିଲ୍ ହେବାର ପ୍ରଥମ ପ୍ରୟାସ। ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ୧୯୪୯ ମସିହାରେ ରାଜନୀତି ବିଜ୍ଞାନରେ ଏମ୍.ଏ. ପାସ୍ କରିଥିଲେ। ରାଜନୀତି ବିଜ୍ଞାନରେ

ଉଚ୍ଚଶିକ୍ଷା ହାସଲ କରିଥିଲେ ମଧ୍ୟ ଉଚ୍ଚ ସରକାରୀ ଚାକିରିର ମୋହ ପରିତ୍ୟାଗ କରି ସାମ୍ବାଦିକତା ଭଳି ସମ୍ମାନଜନକ ବୃତ୍ତିରେ କେବଳ ଯେ ପ୍ରବେଶ କରିଥିଲେ ତା' ନୁହେଁ, ଖୁବ୍ ତରୁଣ ବୟସରେ 'ଇଷ୍ଟର୍ଣ୍ଣ ଟାଇମ୍‌ସ' ଓ 'ପ୍ରଜାତନ୍ତ୍ର' ଭଳି ଦୁଇଟି ଦୈନିକ ସମ୍ବାଦପତ୍ରର ସମ୍ପାଦକ ଦାୟିତ୍ୱ ବହନ କରିଥିଲେ। ସାମ୍ବାଦିକତା ସହିତ କୃଷି ଓ କୃଷକମାନଙ୍କର ବିଭିନ୍ନ ସମସ୍ୟା ସହିତ ନିଜକୁ ସାମିଲ୍ କରି ୧୯୫୦ ମସିହାରେ ମଧୁପୁର ପ୍ରଜା ଆନ୍ଦୋଳନର ସେ ନେତୃତ୍ୱ ଗ୍ରହଣ କରିଥିଲେ। ସେ ସେହି ବର୍ଷ ମଧ୍ୟ ଯୁବକଂଗ୍ରେସ୍ ରାଜ୍ୟ ସଭାପତି ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ। ୧୯୫୪ରୁ ୧୯୬୦ ମସିହା ପର୍ଯ୍ୟନ୍ତ ପ୍ରଦେଶ କଂଗ୍ରେସ୍ କମିଟିର କାର୍ଯ୍ୟକାରୀ କମିଟିର ସଦସ୍ୟ ଭାବେ ସ୍ଥାନିତ ହୋଇଥିଲେ। ୧୯୫୬ ମସିହାରୁ ୧୯୬୭ ମସିହା ପର୍ଯ୍ୟନ୍ତ ସେ ସାହିତ୍ୟ ଏକାଡେମୀର ସଭ୍ୟ ଭାବେ କାର୍ଯ୍ୟ କରିଥିଲେ। ଏହି ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ଫେଲୋ ଓ ଓଡ଼ିଶା ମୌଳିକ ଶିକ୍ଷା ଓ ଶିକ୍ଷକ ସଂଘର ସଭାପତି ଦାୟିତ୍ୱ ଗ୍ରହଣ କରିଥିଲେ।

କଟକ ସହର ଥିଲା ତାଙ୍କ ଜୀବନର ସାଧନାର କ୍ଷେତ୍ର। କଟକରେ ଚାରି ବର୍ଷର କଲେଜ ଶିକ୍ଷା, ସତର ବର୍ଷର ଖବରକାଗଜ ସମ୍ପାଦକ ଜୀବନ ଏବଂ ୧୯୭୧ ଓ ୧୯୮୦ରେ କଟକ ଲୋକସଭା ଆସନରୁ ନିର୍ବାଚନରେ ବିଜୟୀ ହୋଇ ସେ ସାରାଜୀବନ କଟକ ଓ କଟକ ସହର ସହିତ ଆତ୍ମୀୟତାର କାର୍ଯ୍ୟରେ ବାନ୍ଧି ହୋଇଯାଇଥିଲେ। ଖୋର୍ଦ୍ଧା ତାଙ୍କର ଜନ୍ମଭୂମି ହେଲେହେଁ କଟକ ଥିଲା ତାଙ୍କର ପ୍ରମୁଖ କର୍ମଭୂମି। ସେ କଟକକୁ ପ୍ରାଣଭରି ଭଲପାଉଥିଲେ। ଓଡ଼ିଶାର ତିନିଥର ମୁଖ୍ୟମନ୍ତ୍ରୀ, ବିରୋଧୀ ଦଳ ନେତା, ଆସାମର ମହାମହିମ ରାଜ୍ୟପାଳ, ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳାଧିପତି ଭାବେ ସେ ବହୁ ସମ୍ମାନଜନକ ପଦବୀ ମଣ୍ଡନ କରିଥିଲେ ସତ; କିନ୍ତୁ ତାଙ୍କ ପ୍ରବୃତ୍ତିର ଶ୍ରେଷ୍ଠ ଦିଗ ଥିଲା ସାରସ୍ୱତ ସାଧନା। ତାଙ୍କ ରଚିତ 'ଗୌତମ ବୁଦ୍ଧ' ତାଙ୍କୁ ଜ୍ଞାନବୁଦ୍ଧରେ ପରିଣତ କରିଛି। ତାଙ୍କ ମନୋଜ୍ଞ କବିତା ସଙ୍କଳନର 'ସିନ୍ଧୁ ଉପତ୍ୟକା' ତାଙ୍କ କାବ୍ୟିକ ପ୍ରତିଭାର ସ୍ୱାକ୍ଷର ବହନ କରେ। 'ରାମାୟଣ', 'ମହାଭାରତ' ଗ୍ରନ୍ଥ ଦୁଇଟିର ସଂକ୍ଷିପ୍ତସାର ଗଦ୍ୟରଚନା, 'ଶ୍ରୀମଦ୍ ଭାଗବତ' ଗ୍ରନ୍ଥର ଗଦ୍ୟାନୁବାଦ ସଂସ୍କୃତ କବି ଭର୍ତ୍ତୃହରିଙ୍କ ତିନୋଟିଯାକ ଶତକର ଅନୁବାଦ, 'ବଙ୍କିମଚନ୍ଦ୍ର ଉପନ୍ୟାସମାଳା'ର ଅନୁବାଦ, 'ରାମକୃଷ୍ଣ ରସାମୃତ', 'ମାଲୁଣୀର ଫୁଲ ଓ ଅନ୍ୟାନ୍ୟ ଗଳ୍ପ' ସଙ୍କଳନ, 'ନିର୍ବାଚିତ ପ୍ରବନ୍ଧ' ସଙ୍କଳନ, ମୁଖ୍ୟମନ୍ତ୍ରୀ ଭାବେ ତାଙ୍କର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ଭାଷଣକୁ ନେଇ 'ସ୍ୱପ୍ନ ସଙ୍କଳ୍ପ' ଇତ୍ୟାଦି ଗ୍ରନ୍ଥ ତାଙ୍କ ସାରସ୍ୱତ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରନ୍ତି। ବିରୋଧୀଦଳର ନେତା ଭାବରେ ରାଜ୍ୟ ବିଧାନସଭାରେ ୨୦୦୪ ରୁ ୨୦୦୯ ମସିହା ପର୍ଯ୍ୟନ୍ତ ଦେଇଥିବା ବକ୍ତବ୍ୟକୁ ନେଇ 'ବାଚସ୍ପତି ମହୋଦୟ' ଶୀର୍ଷକ ପୁସ୍ତକରେ ୩୫ଟି ଗୁରୁତ୍ୱପୂର୍ଣ୍ଣ ଭାଷଣ ପ୍ରକାଶିତ ହୋଇଛି। ତାଙ୍କ ଭାଷଣ ମଧ୍ୟରେ 'ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା' ଶୀର୍ଷକ ଭାଷଣ ପଢ଼ିଲେ ମନେହୁଏ ଶ୍ରୀଜଗନ୍ନାଥ ସଂସ୍କୃତି ପ୍ରତି ତାଙ୍କର କେତେ ଅନୁରକ୍ତି, ଶ୍ରଦ୍ଧା, ଭକ୍ତି, ସମ୍ମାନ। ଇନ୍ଦ୍ରଦ୍ୟୁମ୍ନଙ୍କ

ଭଳି ନିଜ ବଂଶକୁ ମଧ୍ୟ ଶ୍ରୀଜଗନ୍ନାଥ ମନ୍ଦିରର ବିକାଶଧାରା ସହ ଜଡ଼ିତ କରିବାକୁ ସେ ପଛାଇ ନାହାନ୍ତି। ଯେତେବେଳେ ଜାନକୀବାବୁ ରାଜ୍ୟର ମୁଖ୍ୟମନ୍ତ୍ରୀ ଥିଲେ, ତିରୁପତି ମନ୍ଦିର ଭଳି ଶ୍ରୀଜଗନ୍ନାଥ ମନ୍ଦିରରେ ହୁଣ୍ଡି ବସାଇବାକୁ ନିଷ୍ପତ୍ତି ଗ୍ରହଣ କଲେ। ସେତେବେଳେ ବିରୋଧୀ ସେବାୟତମାନେ ଏକାଠି ହୋଇ ତାଙ୍କ ବଂଶ ବୁଡ଼ିଯାଉ ବୋଲି ଅଭିଶାପ ଦେଲେ। ଜାନକୀବାବୁ ତା' ଉତ୍ତରରେ କହିଥିଲେ, "ମୋ ବଂଶ ପଛେ ବୁଡୁ, ହୁଣ୍ଡି ବସି ମନ୍ଦିରର ଉନ୍ନତି ହେଉ।" ଆଜି ମଧ୍ୟ ସେବାୟତ ସମେତ ସମସ୍ତେ ଅନୁଭବ କରୁଛନ୍ତି, ହୁଣ୍ଡିରୁ ମିଳୁଥିବା ଅର୍ଥ କେବଳ ମନ୍ଦିରର ଉନ୍ନତି ପାଇଁ ନୁହେଁ, ବରଂ ସେବାୟତମାନଙ୍କର ବିଭିନ୍ନ କଲ୍ୟାଣପାଇଁ ମଧ୍ୟ ବିନିଯୋଗ ହେଉଛି। ଜଣେ ବହୁପାଠୀ ବିଦ୍ୱାନ ଓ ଲେଖକ ଭାବେ ସେ ବହୁ ସଶ୍ରଦ୍ଧ ସ୍ୱୀକୃତି ପାଇଛନ୍ତି।

ସଂସ୍କୃତ ଭାଷା ସାହିତ୍ୟରେ ତାଙ୍କର ପାଣ୍ଡିତ୍ୟ ପାଇଁ ତାଙ୍କୁ ପୁରୀର ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ଓ ତିରୁପତିର ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟ ଯଥାକ୍ରମେ 'ପ୍ରଜ୍ଞା ବାଚସ୍ପତି' (ଡକ୍ଟରେଟ) ଡିଗ୍ରୀ ଏବଂ ସାହିତ୍ୟରେ ଡକ୍ଟରେଟ୍ ଡିଗ୍ରୀ ପ୍ରଦାନ କରିଛନ୍ତି।

ଆସାମର ରାଜ୍ୟପାଳ ଭାବେ ସେ ବିଭିନ୍ନ ସଭାସମିତିରେ ଇଂରାଜୀ ଓ ଅହମିଆ ଭାଷାରେ ଦେଇଥିବା ଭାଷଣକୁ ୩ଟି ପୁସ୍ତକରେ ସଙ୍କଳନ କରାଯାଇଛି। ଆସାମର ରାଜଭବନ ପକ୍ଷରୁ ପ୍ରକାଶିତ ଏହି ପୁସ୍ତକର ନାମକରଣ କରାଯାଇଛି। 'Selected Speeches of Sri J.B. Patnaik, Hon'ble Governor of Assam' ପୁସ୍ତକ ସମ୍ପର୍କରେ ସୂଚନା ଦେବାକୁ ଯାଇ ମୁଖବନ୍ଧରେ ଉଲ୍ଲେଖ କରାଯାଇଛି, 'This Volume reflects the profound introspection the intensity and depth of vision that mark his orations which chiefly focus an socio-cultural and spiritual upliftment of the people." ଜାନକୀବଲ୍ଲଭଙ୍କର ସବୁଠାରୁ ବଡ଼ ବୈଶିଷ୍ଟ୍ୟ ହେଉଛି ସେ ଓଡ଼ିଶାରେ ଥାଆନ୍ତୁ କି ରାଜ୍ୟ ବାହାରେ ଥାଆନ୍ତୁ, ସେ ସାଂସ୍କୃତିକ ରାଜଧାନୀ କଟକ ସହରକୁ ଓ ଏଠି ଗଢ଼ିଉଠିଥିବା ଅନୁଷ୍ଠାନକୁ ପ୍ରାଣଭରି ଭଲପାଆନ୍ତି। ଆସାମର ରାଜ୍ୟପାଳ ଥିବାବେଳେ ଗୌହାଟୀରେ ୨୦୧୧ ମସିହା ଅକ୍ଟୋବର ମାସ ୨୧ ତାରିଖରେ ଆୟୋଜିତ 'ଆଜାଦ୍ ହିନ୍ଦ୍ ହୁକୁମତ୍ ଦିବସ'ର ୬୮ତମ ବାର୍ଷିକୀ ପାଳନ ଅବସରରେ ସେ କହିଥିଲେ, "Lastly, while I pay my heartfelt homage to the memory of Netaji and the I.N.A., I feel proud that Netaji was born in my native city, Cutack of Odisha and completed his distinctive formative years of school life there. Netaji first belonged to Cuttack, then to Calcutta and Bengal and later to India and the World."

ଓଡ଼ିଶା ବାହାରେ ରହୁଥିବା ଓଡ଼ିଆମାନେ ଓଡ଼ିଆ ସଂସ୍କୃତି, ସ୍ୱାଭିମାନ ପ୍ରତି କ୍ରମଶଃ ବିମୁଖ ହୋଇପଡୁଥିବାବେଳେ ଜାନକୀବଲ୍ଲଭଙ୍କ ଓଡ଼ିଆତ୍ୱକୁ ସବୁସ୍ତରରେ ଜାହିର କରିବାପାଇଁ କରିଥିବା ଉଦ୍ୟମକୁ କେହି ଅସ୍ୱୀକାର କରିପାରିବେ ନାହିଁ।

କଟକ ସହରରେ ଥିବା ଓଡ଼ିଶାର ପ୍ରାଚୀନତମ ଅନୁଷ୍ଠାନ 'ଉତ୍କଳ ସାହିତ୍ୟ ସମାଜ' ସହିତ ତାଙ୍କର ସମ୍ପର୍କ ଥିଲା କ୍ଷୀର-ନୀରର ସମ୍ପର୍କ ଭଳି। ୧୯୬୫ ମସିହାରୁ ସେ 'ଉତ୍କଳ ସାହିତ୍ୟ ସମାଜ'ର ଆଜୀବନ ସଦସ୍ୟ ଥିଲେ, ଯାହାଙ୍କ ସଭ୍ୟ ନମ୍ବର ଥିଲା ୨୪/୬୫। ଜାନକୀବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ 'ଉତ୍କଳ ସାହିତ୍ୟ ସମାଜ'କୁ ସଂସ୍କୃତି ବିଭାଗ ପକ୍ଷରୁ ମିଳୁଥିବା ଅନୁଦାନକୁ ବହୁଭାବେ ବୃଦ୍ଧି କରାଯାଇ ଏକଲକ୍ଷ ଟଙ୍କାକୁ ବୃଦ୍ଧି କରାଯାଇଥିଲା। 'ଉତ୍କଳ ସାହିତ୍ୟ ସମାଜ' ପକ୍ଷରୁ ପ୍ରଚଳିତ 'ସବୁଜକବି ଜଷ୍ଟିସ୍ ହରିହର ମହାପାତ୍ର ସମ୍ମାନ' ତାଙ୍କ କାବ୍ୟିକ ପ୍ରତିଭାର ସ୍ୱାକ୍ଷର ସ୍ୱରୂପ ପ୍ରଦାନ କରାଯାଇଥିଲା। ସେ କ୍ଷମତାରେ ଥାଆନ୍ତୁ କି ନ ଥାଆନ୍ତୁ, 'ଉତ୍କଳ ସାହିତ୍ୟ ସମାଜ'ର ବିଭିନ୍ନ କାର୍ଯ୍ୟକ୍ରମରେ ନିୟମିତ ଆସୁଥିଲେ। ଆସାମର ରାଜ୍ୟପାଳ ଭାବେ ଶପଥ ଗ୍ରହଣ କରିବାର ଅବ୍ୟବହିତ ପୂର୍ବରୁ ତାଙ୍କୁ ଓ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକଙ୍କୁ 'ଉତ୍କଳ ସାହିତ୍ୟ ସମାଜ' ପକ୍ଷରୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା ଅନୁଷ୍ଠାନର ଆଜୀବନ ସଭ୍ୟ ଭାବରେ। ସେହି ଉତ୍ସବରେ 'ଉତ୍କଳ ସାହିତ୍ୟ ସମାଜ'ର ତତ୍କାଳୀନ ସଭାପତି ଅନ୍ନଦା ପ୍ରସାଦ ରାୟ ସଭାପତିତ୍ୱ କରିଥିଲେ। 'ଆସାମ ସାହିତ୍ୟ ସଭା'ର ସଭାପତି ପଦ୍ମଶ୍ରୀ ରଙ୍ଗବଙ୍ଗ ତେରଙ୍ଗଙ୍କ ନେତୃତ୍ୱରେ ଏକ ପ୍ରତିନିଧି ଦଳ ଓଡ଼ିଶା ଭ୍ରମଣରେ ଆସିବାବେଳେ ତାଙ୍କ କାର୍ଯ୍ୟକ୍ରମ ଭୁବନେଶ୍ୱର ଓ ଅନ୍ୟାନ୍ୟ ଅଞ୍ଚଳରେ ହୋଇଥିଲା; ମାତ୍ର ଆସମାର ତତ୍କାଳୀନ ରାଜ୍ୟପାଳ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ପରାମର୍ଶକ୍ରମେ ସେମାନଙ୍କର ଏକ କାର୍ଯ୍ୟକ୍ରମ 'ଉତ୍କଳ ସାହିତ୍ୟ ସମାଜ'ରେ ସ୍ଥିରୀକୃତ ହୋଇଥିଲା। ସେହି ଅନୁସାରେ ୨୦୧୧ ମସିହା ଏପ୍ରିଲ୍ ମାସ ୨ ତାରିଖ ଶନିବାର ସନ୍ଧ୍ୟାରେ 'ଆସାମ ସାହିତ୍ୟ ସଭା'ର ୨୫ଜଣିଆ ପ୍ରତିନିଧି 'ଉତ୍କଳ ସାହିତ୍ୟ ସମାଜ' ପରିସରରେ ପହଞ୍ଚିଲେ। ତାଙ୍କୁ ପାରମ୍ପରିକ ରୀତିରେ ସ୍ୱାଗତ କରାଯିବା ପରେ ଶ୍ରୀରାମଚନ୍ଦ୍ର ଭବନରେ ଜାନକୀବଲ୍ଲଭ ପଟ୍ଟନାୟକ ଓ ଜୟନ୍ତୀ ପଟ୍ଟନାୟକଙ୍କ ଉପସ୍ଥିତିରେ ଓଡ଼ିଶାର ବହୁ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ସହିତ ପ୍ରତିନିଧିମାନଙ୍କର ଅନ୍ତରଙ୍ଗ ଆଳାପ ଓ ଆଲୋଚନା ହୋଇଥିଲା। ଏହାପରେ ଶତାବ୍ଦୀ ଭବନରେ ଏକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ସାଂସ୍କୃତିକ ପରିବେଶ ମଧ୍ୟରେ 'ବନ୍ଦେ ଉତ୍କଳ ଜନନୀ' ଓ 'ସର୍ବେଷାଂ ନୋ ଜନନୀ ଭାରତ' ଆବାହନୀ ସଙ୍ଗୀତ ଗାନ କରାଯାଇଥିଲା। ଜାତୀୟତାବାଦର ମନ୍ତ୍ରମୁଗ୍ଧ ସ୍ୱର ଭିତରେ ଓଡ଼ିଶାର ପ୍ରକୃତ ପ୍ରତିନିଧି ଓ ଭୈରବୀ ଶକ୍ତିର ପ୍ରତୀକ ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଆସାମର ଶ୍ରେଷ୍ଠ ଦେବୀ ମା' କାମାକ୍ଷାଙ୍କ ଫଟୋଚିତ୍ରରେ ମାଲ୍ୟାର୍ପଣ କରି ଏହି ସାରସ୍ୱତ ଉତ୍ସବକୁ ତତ୍କାଳୀନ ରାଜ୍ୟପାଳ ଜାନକୀବଲ୍ଲଭ ପଟ୍ଟନାୟକ ଓ 'ଆସାମ ସାହିତ୍ୟ ସଭା'ର ସଭାପତି ପଦ୍ମଶ୍ରୀ ରଙ୍ଗବଙ୍ଗ ତେରଙ୍ଗ ଉଦ୍‌ଘାଟନ କରିଥିଲେ। 'ଉତ୍କଳ ସାହିତ୍ୟ ସମାଜ'ର ତତ୍କାଳୀନ ସଭାପତି ଡକ୍ଟର ରତ୍ନାକର ଚଇନିଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଉତ୍ସବରେ ଜାନକୀବାବୁ ଓଡ଼ିଶା ଓ ଆସାମର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ବିଷୟବସ୍ତୁକୁ ନେଇ ପ୍ରକାଶିତ ହୋଇଥିବା 'ସାଂପ୍ରୀତି ସ୍ୱାକ୍ଷର'କୁ ମଧ୍ୟ ଉନ୍ମୋଚନ କରିଥିଲେ। ଆସାମ ଓ ଓଡ଼ିଶାକୁ ଏକ ସାଂସ୍କୃତିକ ରଜ୍ଜୁରେ ବାନ୍ଧିବାପାଇଁ ଏହା ଅଭିନବ ଉଦ୍ୟମ ବୋଲି ଜାନକୀବଲ୍ଲଭ

ପଟ୍ଟନାୟକ ତାଙ୍କର ବୌଦ୍ଧିକ ଭାଷଣରେ ମତପୋଷଣ କରିଥିଲେ। ଶେଷରେ ରାତ୍ରିଭୋଜନ ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି ସେ ଯେପରି ଆନନ୍ଦ ଅନୁଭବ କରୁଥିଲେ, ତାହା ଦେଖିନଥିବା କେହି ବ୍ୟକ୍ତି ସହଜରେ ବିଶ୍ୱାସ କରିପାରିବେ ନାହିଁ। ସେହିଭଳି ୨୦୧୨ ମସିହା ଫେବୃଆରୀ ମାସରେ 'ଆସାମ ସାହିତ୍ୟ ସଭା' ପକ୍ଷରୁ ଆସାମର ଲିଡ଼ୋରେ ଆୟୋଜିତ ସାରସ୍ୱତ ସଭାରେ ଯୋଗଦେବା ପାଇଁ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ପରାମର୍ଶକ୍ରମେ 'ଆସାମ ସାହିତ୍ୟ ସଭା' 'ଉତ୍କଳ ସାହିତ୍ୟ ସମାଜ'କୁ ନିମନ୍ତ୍ରଣ କରିଥିଲେ ଓ ମୋର ସୌଭାଗ୍ୟ, 'ଉତ୍କଳ ସାହିତ୍ୟ ସମାଜ' ପକ୍ଷରୁ ଅଧ୍ୟାପକ ଗୌରହରି ମହାନ୍ତି, ଜୀବନାନନ୍ଦ ଅଧିକାରୀ, ରାଜୀବ କୁମାର ଷଡଙ୍ଗୀଙ୍କ ସହ ମୁଁ ଯୋଗଦେଇଥିଲି। ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି, ୨୦୧୧ ମସିହାରେ 'ଉତ୍କଳ ସାହିତ୍ୟ ସମାଜ'ର ୧୦୯ତମ ସମାବର୍ତ୍ତନ ଉତ୍ସବରେ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ସମଗ୍ର ଓଡ଼ିଶାର ଜନଜୀବନ ପାଇଁ ତାଙ୍କର ସାମଗ୍ରିକ ଅବଦାନ ଓ ଶ୍ରେଷ୍ଠ ବ୍ୟକ୍ତିତ୍ୱ ଲାଗି 'ଉତ୍କଳରତ୍ନ' ସମ୍ମାନ ପ୍ରଦାନ କରାଯିବା ପାଇଁ ସ୍ଥିର ହୋଇଥିଲା। ମାତ୍ର ଆସାମରେ ନିଜର ପୂର୍ବନିର୍ଦ୍ଧାରିତ ସରକାରୀ କାର୍ଯ୍ୟକ୍ରମ ଅନୁଯାୟୀ ସେ ଏହି ଉତ୍ସବରେ ଯୋଗଦେଇ ନ ପାରିବାରୁ ଅନୁଷ୍ଠାନର କାର୍ଯ୍ୟନିର୍ବାହିକା ସମିତି ନିଷ୍ପତ୍ତି ଅନୁଯାୟୀ ୯ ଅକ୍ଟୋବର ୨୦୧୧ ରବିବାର ସନ୍ଧ୍ୟାରେ ଏକ ସ୍ୱତନ୍ତ୍ର ଉତ୍ସବ ଶତାବ୍ଦୀ ଭବନଠାରେ ଆୟୋଜନ କରାଯାଇ ଏହି ସମ୍ମାନ ତାଙ୍କୁ ପ୍ରଦାନ କରାଯାଇଥିଲା। ଏହି ସମ୍ମାନ ପ୍ରଦାନ କରି ଓଡ଼ିଶାର ତତ୍କାଳୀନ ରାଜ୍ୟପାଳ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବହୁମୁଖୀ ପ୍ରତିଭା ସମ୍ପର୍କରେ ଏକ ଓଜସ୍ୱିନୀ ବକ୍ତୃତା ପଦାନ କରିଥିଲେ। ସମ୍ବର୍ଦ୍ଧନାର ଉତ୍ତର ଦେଇ ସ୍ୱର୍ଗତ ପଟ୍ଟନାୟକ ୧୯୦୩ ମସିହାରୁ 'ଉତ୍କଳ ସାହିତ୍ୟ ସମାଜ' ଗଠନ ହୋଇଥିଲେ ମଧ୍ୟ ଅନୁଷ୍ଠାନ ତା'ର ସାମ୍ବିଧାନିକ ନିର୍ଦ୍ଦେଶକୁ ପାଳନ କରୁ ନ ଥିବାରୁ କ୍ଷୋଭ ପ୍ରକାଶ କରି ରାଜ୍ୟର ସର୍ବତ୍ର ଶାଖା ଗଠନ କରି ଏକ ବିଶାଳ ବଟବୃକ୍ଷ ଭଳି 'ଉତ୍କଳ ସାହିତ୍ୟ ସମାଜ' ସମଗ୍ର ରାଜ୍ୟ ଓ ରାଜ୍ୟ ବାହାରେ ବିସ୍ତାରିତ ହେବା ଆବଶ୍ୟକ ବୋଲି ମତପ୍ରକାଶ କରିବା ସହ ଓଡ଼ିଆ ଭାଷାକୁ ସରକାରୀ ସ୍ତରରେ ଆନ୍ତରିକତା ସହ ବ୍ୟାବହାରିକ ଭାଷା ଭାବେ ପ୍ରୟୋଗ ନିମିତ୍ତ ଏକ ବୌଦ୍ଧିକ ଆନ୍ଦୋଳନ ପାଇଁ ସେ ଡାକରା ଦେଇଥିଲେ। ତାଙ୍କ ଉପାଦେୟ ପରାମର୍ଶକୁ ଗ୍ରହଣ କରି 'ଉତ୍କଳ ସାହିତ୍ୟ ସମାଜ' ସମଗ୍ର ରାଜ୍ୟରେ ସମ୍ପ୍ରତି ୧୫ଟି ଶାଖା ଗଠନ କରିସାରିଛି।

୨୦୧୫ ମସିହା ମେ' ୭ ତାରିଖରେ ଅନୁଷ୍ଠିତ 'ଉତ୍କଳ ସାହିତ୍ୟ ସମାଜ'ର ୧୧୩ତମ ପ୍ରତିଷ୍ଠା ଉତ୍ସବରେ ଯୋଗଦେଇ ଅନୁଷ୍ଠାନର ପ୍ରଥମ ସମ୍ପାଦକ ବାଗ୍ମୀ ବିଶ୍ୱନାଥ କରଙ୍କ ୧୫୦ତମ ଜୟନ୍ତୀ ଅବସରରେ ତାଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ କରିବାପାଇଁ ଜାନକୀବାବୁ ସମ୍ମତି ପ୍ରଦାନ କରିଥିଲେ, ମାତ୍ର ତା' ପୂର୍ବରୁ ଏପ୍ରିଲ ୨୦ ତାରିଖରେ ତାଙ୍କର ଆକସ୍ମିକ ବିୟୋଗ ଆମ ସମସ୍ତଙ୍କୁ ମର୍ମାହତ କରିଥିଲା। ଆସାମର ରାଜ୍ୟପାଳ ଥିବାବେଳେ

'ଉତ୍କଳ ସାହିତ୍ୟ ସମାଜ'ର ତିନୋଟି (ଉପରିବର୍ଣ୍ଣିତ ଦୁଇଟି ଉତ୍ସବ ଓ କବି ଅନନ୍ତ ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକୀ ଉତ୍ସବ) ଉତ୍ସବରେ ସେ ଯୋଗଦେଇଥିଲେ।

ମୋର ସୌଭାଗ୍ୟ, ଆସାମର ସେ ମହାମହିମ ରାଜ୍ୟପାଳ ଥିବାବେଳେ ତାଙ୍କୁ ମୁଁ ଓ ମୋ ପୁଅ ଅର୍ଜୁନ ସବ୍ୟସାଚୀ ଦାସ ମା' କାମାକ୍ଷାଦେବୀଙ୍କ ଦର୍ଶନ ପାଇଁ ଗୌହାଟି ଯିବା ଅବକାଶରେ ସାକ୍ଷାତ କରିଥିଲୁ। ରାଜ୍ୟପାଳଙ୍କ ସ୍ୱତନ୍ତ୍ର ପଦାଧିକାରୀ ଭାବରେ ଆସାମ ରାଜଭବନରେ ଅବସ୍ଥାପିତ ହୋଇଥିବା ଡକ୍ଟର ଗୋବିନ୍ଦ ଭୂୟାଁ ରାଜ୍ୟପାଳଙ୍କ ସହ ଆମର ସାକ୍ଷାତ ଆଲୋଚନାର ସୁବନ୍ଦୋବସ୍ତ କରାଇଥିଲେ। 'ଉତ୍କଳ ସାହିତ୍ୟ ସମାଜ'ର ମୁଖ୍ୟ କାର୍ଯ୍ୟାଳୟ ଶ୍ରୀରାମଚନ୍ଦ୍ର ଭବନର ଫଟୋ ସହ ଅନୁଷ୍ଠାନର ଏକ ପ୍ରତୀକକୁ ଆସାମ ରାଜଭବନରେ ସ୍ଥାନିତ କରିବାପାଇଁ ମୁଁ ମାନ୍ୟବର ରାଜ୍ୟପାଳଙ୍କୁ ପ୍ରଦାନ କରିଥିଲି। ସେହିଦିନ ଆସାମ ରାଜଭବନରେ ପୂର୍ବାଞ୍ଚଳ ରାଜ୍ୟପାଳ ସମ୍ମିଳନୀ ହେଉଥାଏ ଓ ବହୁ ରାଜ୍ୟର ରାଜ୍ୟପାଳ ଆସାମ ରାଜଭବନରେ ଅତିଥି ହୋଇ ରହିଥାଆନ୍ତି। ବହୁ କାର୍ଯ୍ୟବ୍ୟସ୍ତତା ସତ୍ତ୍ୱେ ସେ ଅତ୍ୟନ୍ତ ଆନନ୍ଦର ସହିତ ଏହା ଗ୍ରହଣ କରି 'ଉତ୍କଳ ସାହିତ୍ୟ ସମାଜ'ର ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ଅତ୍ୟନ୍ତ ଆଗ୍ରହ ସହକାରେ ପଚାରି ବୁଝିଥିଲେ। ଏହାହିଁ ତାଙ୍କର 'ଉତ୍କଳ ସାହିତ୍ୟ ସମାଜ' ଏବଂ ଓଡ଼ିଆ ଭାଷା ସାହିତ୍ୟର ସର୍ବବିଧ ବିକାଶ ପ୍ରତି ଆନ୍ତରିକତାର ସ୍ୱାକ୍ଷର ବହନ କରେ। ବସ୍ତୁତଃ 'ଉତ୍କଳ ସାହିତ୍ୟ ସମାଜ' ତାଙ୍କଭଳି ଜଣେ ପ୍ରମୁଖ ହିତୈଷୀ ଓ ପରାମର୍ଶଦାତାଙ୍କୁ ହରାଇଛି।



# ଗ୍ରନ୍ଥ, ଗ୍ରନ୍ଥାଗାର ଓ ଜାନକୀବଲ୍ଲଭ ପଟ୍ଟନାୟକ

**ସାଫଲ୍ୟ କୁମାର ନନ୍ଦୀ**

ବିଦ୍ୱାନ୍ ବ୍ୟକ୍ତିମାନେ ସର୍ବଦା ଗ୍ରନ୍ଥ ପ୍ରତି ଆକୃଷ୍ଟ ହୋଇଥାନ୍ତି। ଗ୍ରନ୍ଥଟିଏ ତାଙ୍କ ଦୃଷ୍ଟିକୁ ଆସିଲେ ଏବଂ ଗ୍ରନ୍ଥଟି ତାଙ୍କର ପଠନୋପଯୋଗୀ ହୋଇଥିଲେ, ସେ ତାହାକୁ ସଂଗ୍ରହ କରିବାକୁ ଆଗ୍ରହ ପ୍ରକାଶ କରିଥାନ୍ତି। ସେହି ସଂଗ୍ରହ ଧୀରେ ଧୀରେ ବଢ଼ିବାକୁ ଲାଗେ ଏବଂ ପରବର୍ତ୍ତୀକାଳରେ ସେହି ବ୍ୟକ୍ତିଗତ ସଂଗ୍ରହ ଏକ ଗ୍ରନ୍ଥାଗାରର ଆଧାର ଧାରଣ କରେ। ମୁଁ ଜାତୀୟ ଗ୍ରନ୍ଥାଗାରରେ କାର୍ଯ୍ୟ କରିବା ଅବସରରେ ଭାରତର କେତେଜଣ ବିଦ୍ୱାନ୍ ବ୍ୟକ୍ତିଙ୍କର ବ୍ୟକ୍ତିଗତ ଗ୍ରନ୍ଥ ସଂଗ୍ରହ ଦେଖିବାର ସୁଯୋଗ ପାଇଥିଲି। ଏହି ବ୍ୟକ୍ତିଗତ ସଂଗ୍ରହ ପାଠକମାନଙ୍କର ଗବେଷଣାରେ ବ୍ୟବହାର କରିବା ଉଦ୍ଦେଶ୍ୟରେ ସେହି ବ୍ୟକ୍ତିଙ୍କର ବଂଶଧରମାନେ ପରବର୍ତ୍ତୀକାଳରେ ଜାତୀୟ ଗ୍ରନ୍ଥାଗାରକୁ ଦାନ କରିଯାଇଛନ୍ତି। ଭାରତବର୍ଷର ଅନ୍ୟତମ ବିଶିଷ୍ଟ ବିଦ୍ୱାନ୍ ସାର୍ ଆଶୁତୋଷ ମୁଖାର୍ଜୀଙ୍କର ବ୍ୟକ୍ତିଗତ ଅନୁଭୂତିରୁ ଜାଣିଛି ଗ୍ରନ୍ଥାଗାରଟି ସର୍ବବୃହତ୍। ତାଙ୍କର ପରିବାରର ସଦସ୍ୟମାନେ ଜାତୀୟ ଗ୍ରନ୍ଥାଗାରକୁ ଦାନ କରିଥିବା ପୁସ୍ତକ ତଥା ଅନ୍ୟାନ୍ୟ ସାମଗ୍ରୀର ସଂଖ୍ୟା ୮୫,୦୦୦କୁ ଅତିକ୍ରମ କରିଗଲାଣି। ଏବେ ମଧ୍ୟ ପୁସ୍ତକଗୁଡ଼ିକ ଆସିବାରେ ଲାଗିଛି। ଏହା ଏକ ବିରଳ ଏବଂ ମୂଲ୍ୟବାନ୍ ସଂଗ୍ରହ। ସେହି କ୍ରମରେ ଦେଖିବାକୁ ଗଲେ ଓଡ଼ିଶାରେ ମଧ୍ୟ ସ୍ୱାଧୀନତା ପୂର୍ବରୁ କେତେଜଣ ରାଜା ମହାରାଜା ନିଜ ଉଆସ ମଧ୍ୟରେ ହେଉ ବା ବାହାରେ ହେଉ ନିଜର ଜ୍ଞାନପିପାସା ମେଣ୍ଟାଇବା ଉଦ୍ଦେଶ୍ୟରେ ଗ୍ରନ୍ଥାଗାର ପ୍ରତିଷ୍ଠା କରିଥିଲେ। ସେମାନଙ୍କ ମଧ୍ୟରେ କନିକା ରାଜା, ମୟୂରଭଞ୍ଜ ରାଜା ପ୍ରଭୃତିଙ୍କ ଅବଦାନ ସ୍ମରଣୀୟ। ଏବର ରେଭେନ୍ସା ବିଶ୍ୱବିଦ୍ୟାଳୟର କନିକା ଲାଇବ୍ରେରୀ କନିକା ରାଜାଙ୍କର ପୁସ୍ତକ ପ୍ରୀତିର ବଳିଷ୍ଠ ଉଦାହରଣ। ପଶ୍ଚିମବଙ୍ଗରେ ଗ୍ରନ୍ଥ ଓ ଗ୍ରନ୍ଥାଗାରଗୁଡ଼ିକରେ ସଂଖ୍ୟା ଅଧିକ ଥିବା ପରିଲକ୍ଷିତ ହୋଇଥାଏ। ଭାରତବର୍ଷର ଗ୍ରନ୍ଥାଗାର ଆନ୍ଦୋଳନରେ ଓଡ଼ିଶାର ଯୋଗଦାନ ସେପରି ଉତ୍ସାହଜନକ ଥିବାପରି ଲାଗେ ନାହିଁ। ଓଡ଼ିଶାର ଗ୍ରନ୍ଥାଗାରଗୁଡ଼ିକ ଅନ୍ୟାନ୍ୟ ଅଗ୍ରଣୀ ପ୍ରଦେଶର ଗ୍ରନ୍ଥାଗାର ତୁଳନାରେ ନିମ୍ନମାନର। ଯଦିଓ ଗ୍ରାମ ଶିକ୍ଷିତ ଯୁବସମ୍ପ୍ରଦାୟଙ୍କ ପ୍ରଚେଷ୍ଟା ଏବଂ ରାଜା ରାମମୋହନ ରାୟ ଲାଇବ୍ରେରୀ ଫାଉଣ୍ଡେସନ ମାଧ୍ୟମରେ ସରକାରୀ ଅନୁଦାନପୁଷ୍ଟ ଗ୍ରାମ, ସହରମାନଙ୍କରେ ଅସଂଖ୍ୟ ଗ୍ରନ୍ଥାଗାର ଗଢ଼ାଯାଇଥିଲେ ମଧ୍ୟ ଉପଯୁକ୍ତ ରକ୍ଷଣାବେକ୍ଷଣ ଓ ଶିକ୍ଷାର୍ଥୀମାନଙ୍କର ସେଥିପ୍ରତି ଅନାଗ୍ରହ ଫଳରେ ସେଗୁଡ଼ିକ ମଧ୍ୟରୁ ଅନେକଗୁଡ଼ିଏ ନାମକୁମାତ୍ର ପାଠାଗାର ଭାବରେ ପରିଗଣିତ ହେଉଥିବାର ଲକ୍ଷ୍ୟ କରାଯାଉଛି।

ଏଭଳି ଏକ ପୃଷ୍ଠଭୂମି ଉପରେ ଓଡ଼ିଶାରେ ଏକ ଆଦର୍ଶ ଗ୍ରନ୍ଥାଗାର ନିର୍ମାଣର ସ୍ୱପ୍ନ ଦେଖିଥିଲେ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ। ସେ ତାଙ୍କର ବ୍ୟସ୍ତବହୁଳ

ଜୀବନକାଳ ମଧ୍ୟରେ ପ୍ରଜାତନ୍ତ୍ରର ସଂପାଦନାଠୁଁ ଆରମ୍ଭ କରି, ଓଡ଼ିଶା ପ୍ରଦେଶ କଂଗ୍ରେସର ନେତୃତ୍ୱ ଜାତୀୟ କଂଗ୍ରେସକୁ ଓଡ଼ିଶାରେ କ୍ଷମତାସୀନ ରାଜନୈତିକ ଦଳ ଭାବରେ ପ୍ରତିଷ୍ଠାର ସଂଗ୍ରାମ, ସାଂସଦ ଏବଂ କେନ୍ଦ୍ର ମନ୍ତ୍ରୀ, ଓଡ଼ିଶାର ମୁଖ୍ୟମନ୍ତ୍ରୀ, ବିଶ୍ୱବିଦ୍ୟାଳୟ କୁଳାଧିପତି, ବିରୋଧୀ ଦଳର ନେତା ଓ ରାଜ୍ୟପାଳ ଭୂମିକାରେ କାର୍ଯ୍ୟ କରିବା ଅବସରରେ ନିଜର ଗ୍ରନ୍ଥ ଅଧ୍ୟୟନ ପିପାସା ମେଣ୍ଟାଇବା ପାଇଁ ଓ ସାହିତ୍ୟ ରଚନା ପାଇଁ ସାର୍ ଆଶୁତୋଷ ମୁଖାର୍ଜୀଙ୍କ ଭଳି ଏକ ନିଜସ୍ୱ ଗ୍ରନ୍ଥାଗାର ଆବଶ୍ୟକତା ପ୍ରତି ସର୍ବଦା ଗୁରୁତ୍ୱ ଦେଉଥିଲେ। ଛାତ୍ର ଅବସ୍ଥାରୁ ମୃତ୍ୟୁର ପୂର୍ବମୁହୂର୍ତ୍ତ ପର୍ଯ୍ୟନ୍ତ ପୁସ୍ତକ ସଂଗ୍ରହ କାର୍ଯ୍ୟ କରିବା ତାଙ୍କର ଏକ ଦୈନନ୍ଦିନ କର୍ମସୂଚୀର ବ୍ୟବସ୍ଥିତ ଅଙ୍ଗ ଥିଲା। ତାଙ୍କଦ୍ୱାରା ବିଭିନ୍ନ ସମୟରେ ସଂଗୃହୀତ ଗ୍ରନ୍ଥଗୁଡ଼ିକ ବିଚ୍ଛିନ୍ନ ଭାବରେ ରାମେଶ୍ୱର, କଟକର ସେଲ୍‌ଟର ଛକ, ନୂଆଦିଲ୍ଲୀ ଓ ଭୁବନେଶ୍ୱରର ସରକାରୀ ବାସଭବନ ଏବଂ ଗୌହାଟୀ ରାଜଭବନରେ ଗଚ୍ଛିତ ହୋଇ ରହିଥିଲା। ସେ ଫରେଷ୍ଟଗାର୍ଡରେ ନିଜ ବାସଭବନର ଦ୍ୱିତୀୟ ମହଲାଟିକୁ ତାଙ୍କୁ ସ୍ୱପ୍ନର ଗ୍ରନ୍ଥାଗାରରେ ରୂପାନ୍ତରିତ କରିବାର କାର୍ଯ୍ୟ ଆରମ୍ଭ କରିଦେଇଥିଲେ।

ସୌମ୍ୟରଞ୍ଜନ ପଟ୍ଟନାୟକଙ୍କ ଦୈନିକ ସମ୍ବାଦ ପ୍ରକାଶ କରିବାର ଅବ୍ୟବହିତ ପୂର୍ବରୁ ଦୈନିକ ଆନନ୍ଦବଜାର ପତ୍ରିକାର ଆଧୁନିକ କାର୍ଯ୍ୟପ୍ରଣାଳୀ, ଆଧୁନିକ ମୁଦ୍ରଣଶୈଳୀ ସମ୍ବନ୍ଧରେ ଜାଣିବାପାଇଁ ୧୯୮୧ ମସିହାରେ ମୁଖ୍ୟମନ୍ତ୍ରୀ ଜାନକୀବାବୁ ନିଜ ଜ୍ୱାଇଁଙ୍କ ସହିତ କୋଲକାତା ଆସିଥିଲେ। ଉତ୍କଳ ଭବନରେ ଅବସ୍ଥାନ କାଳରେ ଜାତୀୟ ଗ୍ରନ୍ଥାଗାର ପରିଦର୍ଶନରେ ଆସି ଗ୍ରନ୍ଥାଗାରର ବିଭିନ୍ନ ବିଭାଗ ବୁଲି ଦେଖିବା ସମୟରେ ଆଶୁତୋଷ ମୁଖାର୍ଜୀଙ୍କ ସଂଗ୍ରହ ବିଭାଗଟି ତାଙ୍କୁ ବିଶେଷଭାବରେ ଆକର୍ଷିତ କରିଥିଲା। ନିଜର ଗ୍ରନ୍ଥାଗାରଟିକୁ ସେହିଭଳି ଗଢ଼ିବାର ଇଚ୍ଛା ତାଙ୍କ ମନରେ ଅଙ୍କୁରିତ ହେବାକୁ ଲାଗିଲା। ଜାତୀୟ ଗ୍ରନ୍ଥାଗାର ପରିଦର୍ଶନ କାଳରେ ଜଣେ ଗ୍ରନ୍ଥାଗାରିକ ଭାବରେ ମୁଁ ତାଙ୍କ ସହିତ ଦୀର୍ଘସମୟ ରହି ବିଭିନ୍ନ ବିଭାଗର କାର୍ଯ୍ୟପ୍ରଣାଳୀ ବୁଝାଇବା ସମୟରେ ଅନୁଭବ କରିଥିଲି ପୁସ୍ତକ ଓ ଗ୍ରନ୍ଥାଗାର ପ୍ରତି ତାଙ୍କର ବିଶେଷ ଆଗ୍ରହ ରହିଛି। ଗ୍ରନ୍ଥାଗାରରୁ ଫେରିବା ସମୟରେ ତାଙ୍କ ମୁଖମଣ୍ଡଳରେ ଏକ ତୃପ୍ତିର ପ୍ରତିଚ୍ଛବି ପରିଲକ୍ଷିତ ହେଉଥିଲା। ନିଜର ଗ୍ରନ୍ଥାଗାର ଗଠନ କରିବାରେ ମୋର ସହଯୋଗର ପ୍ରତିଶ୍ରୁତି ନେଇ ସେ ଉତ୍କଳ ଭବନକୁ ଫେରିଆସିଥିଲେ। ଭୁବନେଶ୍ୱର ଫେରିଆସିବା ପରେ ପରେ ଜାତୀୟ ଗ୍ରନ୍ଥାଗାର ପରିଦର୍ଶନକୁ ସ୍ମରଣୀୟ କରି ରଖିବାପାଇଁ ସେ ଦୟନୀୟ ଅବସ୍ଥାରେ ପଡ଼ିଥିବା ରାଜ୍ୟ କେନ୍ଦ୍ରୀୟ ଗ୍ରନ୍ଥାଗାରର ସଂସ୍କାରରେ ଲାଗିପଡ଼ିଲେ। ଜାତୀୟ ଗ୍ରନ୍ଥାଗାରର ପୂର୍ବତନ ଲାଇବ୍ରେରୀୟାନ ଡକ୍ଟର ଟି. ଆର୍. କାଲିଆଙ୍କୁ ରାଜ୍ୟ କେନ୍ଦ୍ରୀୟ ଗ୍ରନ୍ଥାଗାରର ନିର୍ଦ୍ଦେଶକ ପଦରେ ନିଯୁକ୍ତି ଦେଇ ଏହାର ସର୍ବାଙ୍ଗୀଣ ଉନ୍ନତି କରିବା ସହିତ ମହତାବଙ୍କର ରାଜ୍ୟ କେନ୍ଦ୍ରୀୟ ଗ୍ରନ୍ଥାଗାରକୁ ଡଃ ହରେକୃଷ୍ଣ ମହତାବଙ୍କ ନାମରେ ନାମିତ କରିଥିଲେ।

ଏହି ସମୟରେ ସେ ନିଜସ୍ୱ ପାଠାଗାରଟିର ଯତ୍ନ ନେବା ଆରମ୍ଭ କରିଦେଇଥିଲେ। ଉଦ୍ୟାନମାର୍ଗସ୍ଥିତ ନିଜ ବାସଭବନର ଦ୍ୱିତୀୟ ମହଲାରେ ସଂଗୃହୀତ ପୁସ୍ତକଗୁଡ଼ିକୁ ଯତ୍ନର ସହିତ ରଖିବାପାଇଁ କାଚ କବାଟଦିଆ ଉତ୍କୃଷ୍ଟ କାଠର ଆଲମିରା ଏବଂ କ୍ୟାବିନେଟ୍ ନିର୍ମାଣ କାର୍ଯ୍ୟ

ସମ୍ପନ୍ନ କରାଗଲା । ବିଚ୍ଛିନ୍ନ ଭାବରେ ବିଭିନ୍ନ ସ୍ଥାନରେ ଥିବା ତାଙ୍କ ସଂଗୃହୀତ ପୁସ୍ତକ ଓ ପତ୍ରପତ୍ରିକାଗୁଡ଼ିକୁ ଏକତ୍ର କରାଗଲା ।

୨୦୦୪ ମସିହା ନିର୍ବାଚନ ପରେ ରାଜ୍ୟରେ କଂଗ୍ରେସ ବିରୋଧୀ ଦଳରେ ବସିଲା ଏବଂ ଜାନକୀବାବୁ ବିଧାନସଭା ବିରୋଧୀ ଦଳର ନେତାଭାବରେ କାର୍ଯ୍ୟ କଲେ । ଏହି ସମୟରେ ମୁଁ ତାଙ୍କୁ ୧୯୮୧ ମସିହାରେ ଦେଇଥିବା ପ୍ରତିଶ୍ରୁତି ବୋଧହୁଏ ତାଙ୍କ ମନକୁ ଆସିଲା । ଦିନେ ହଠାତ୍ ଜାନକୀବାବୁଙ୍କ ସହିତ ବେଶ୍ ଘନିଷ୍ଠ ଏବଂ ତାଙ୍କର ଜୀବନୀ ଲେଖକ ଗୋବିନ୍ଦ ଭୂୟାଁ ମୋତେ ଫୋନ୍‌ରେ ଜଣାଇଲେ, ଜାନକୀବାବୁ ତାଙ୍କ ଲାଇବ୍ରେରୀରେ ଗଚ୍ଛିତ ପୁସ୍ତକଗୁଡ଼ିକର ସଂରକ୍ଷଣ ବିଷୟରେ ଆଲୋଚନା କରିବାପାଇଁ ଭୁବନେଶ୍ୱର ଆସିବାକୁ କହିଛନ୍ତି । ଆପଣଙ୍କ ଉପସ୍ଥିତି ଚାହୁଁଛନ୍ତି । ଆପଣ ଭୁବନେଶ୍ୱର ଆସନ୍ତୁ । ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକୁ ମୁଁ ଏକକ ଭାବରେ କରିବା ସମ୍ଭବ ନୁହେଁ ବୋଲି ଅନୁଭବ କରି ଗ୍ରନ୍ଥାଗାର ଗଠନ ଏବଂ ସଂରକ୍ଷଣରେ ଅଭିଜ୍ଞ କୋଲକାତାସ୍ଥିତ ଜାତୀୟ ଗ୍ରନ୍ଥାଗାରର ଡେପୁଟି ଲାଇବ୍ରେରୀୟାନ ସେକ୍ ମଜାହାରୁଲ ଇସଲାମ୍ ଓ ଲାଇବ୍ରେରୀ ଅଟୋମେସନରେ ଅଭିଜ୍ଞ ପାର୍ଥ ମୁଖାର୍ଜୀଙ୍କୁ ସଙ୍ଗରେ ନେଇ ଅଗଷ୍ଟ ୧୬ ତାରିଖରେ ଶ୍ରୀ ପଟ୍ଟନାୟକ ବାସଗୃହରେ ପହଞ୍ଚିଲି । ଗ୍ରନ୍ଥାଗାର, ତାହାର ଆସବାବପତ୍ର ଓ ସଂଗ୍ରହର ସଂଖ୍ୟା ଦେଖି ଆଶ୍ଚର୍ଯ୍ୟ ହେବାସହିତ ଏକ ସଙ୍ଗରେ ଆମ ତିନିଜଣଙ୍କ ପାଟିରୁ ବାହାରି ଆସିଲା ଏ ତ ଆଉ ଜଣେ ଆଶୁତୋଷ ମୁଖାର୍ଜୀ । ଗ୍ରନ୍ଥାଗାରର ଗଚ୍ଛିତ ପୁସ୍ତକଗୁଡ଼ିକୁ ସଜାଡ଼ି ରଖିବାକୁ ଯାଇ ଜାଣିଲୁ ଏହାର ସଂଖ୍ୟା ୧୫ରୁ ୧୬,୦୦୦ ମଧ୍ୟରେ ସୀମିତ । ସେତେବେଳକୁ ଭୁବନେଶ୍ୱର ସରକାରୀ ବାସଭବନ, ତୁଳସୀପୁର ଘରୁ ସବୁ ବହି ଆସି ନ ଥାଏ । ସେହି ବହି ଓ ପତ୍ରପତ୍ରିକାଗୁଡ଼ିକ ଆସିବା ପରେ ତାଙ୍କର ସଂଗୃହୀତ ପୁସ୍ତକର ସଂଖ୍ୟା ୨୦,୦୦୦କୁ ଟପିଗଲା । ସେତେବେଳେ ତାଙ୍କ ବୃହତ୍ ଗ୍ରନ୍ଥାଗାରଟିରେ ଶୀତତାପ ନିୟନ୍ତ୍ରିତ ବ୍ୟବସ୍ଥା ହୋଇ ନ ଥାଏ । ଫଳରେ ଭୁବନେଶ୍ୱରର ଅତ୍ୟଧିକ ତାପମାତ୍ରାରେ ଗ୍ରନ୍ଥାଗାରଟି ଅତିରିକ୍ତ ଗରମ ହେଉଥିଲା ଯାହା ଗଚ୍ଛିତ ପୁସ୍ତକ, ଆସବାବପତ୍ର ଏବଂ ପାଠକଙ୍କ ବ୍ୟବହାରପାଇଁ ଅସହ୍ୟ । ଏହା ଜାନକୀବାବୁଙ୍କ ଦୃଷ୍ଟିକୁ ଅଣାଯିବାରୁ ସେ ଏଠାରେ ଶୀତତାପ ନିୟନ୍ତ୍ରିତ ବ୍ୟବସ୍ଥା କରାଯିବାର ସିଦ୍ଧାନ୍ତ ନେଲେ । ପ୍ରଥମ ପର୍ଯ୍ୟାୟରେ ପୁସ୍ତକଗୁଡ଼ିକୁ ବିଷୟଭିତ୍ତିକ ଭାଗ କରି ସ୍ଥାନିତ କରାଗଲା ଏବଂ ସମଗ୍ର ସଂଗ୍ରହଟିକୁ କମ୍ପ୍ୟୁଟରାଇଜଡ଼ କରିବାପାଇଁ ଯୋଜନା କରି ଆମେ ତିନିହେଁ କୋଲକାତା ଫେରିଆସିଲୁ । ଗ୍ରନ୍ଥାଗାରଟି ଏବେ ତାଙ୍କର ବ୍ୟବହାର ଉପଯୋଗୀ ହେବାଫଳରେ ସେ ଆମର କାର୍ଯ୍ୟରେ ସନ୍ତୁଷ୍ଟ ହୋଇଥିଲେ । ତା'ପରଠୁଁ ସେ ବିଭିନ୍ନ ସମୟରେ ଏହି ଗ୍ରନ୍ଥାଗାରଟିକୁ ପୂର୍ଣ୍ଣାଙ୍ଗ ରୂପ ଦେବା ସମ୍ବନ୍ଧରେ ବିଭିନ୍ନ ପରିକଳ୍ପନା ଓ ପଦକ୍ଷେପ ନେବା ବିଷୟରେ ମୋ ସହିତ ଆଲୋଚନା କରୁଥିଲେ ଏବଂ ଏହାର ରକ୍ଷଣାବେକ୍ଷଣ ପ୍ରତି ସଜାଗ ରହୁଥିଲେ ।

ଜାନକୀବାବୁଙ୍କର ପୁସ୍ତକ ହିଁ ପ୍ରାଣ ଥିଲା । ସେ ଯେହେତୁ ଏକାଧାରରେ ପୁସ୍ତକ ପଢୁଥିଲେ ଓ ଲେଖୁଥିଲେ, ତେଣୁ ବିଭିନ୍ନ ଭାବରେ ପୁସ୍ତକ ସଂଗ୍ରହ କରୁଥିଲେ । ଉପହାର ଆକାରରେ ସେ ବହୁ ପୁସ୍ତକ ଉପହାର ପାଉଥିଲେ ଏବଂ ପ୍ରଚୁର ପୁସ୍ତକ କିଣୁଥିଲେ । ସେ ଯେକୌଣସି ସ୍ଥାନକୁ ଗଲେ ସେଠାକାର ବହି ବଜାରରୁ ନିଜ ପସନ୍ଦର କିଛି ବହି ବା ପତ୍ରପତ୍ରିକା କିଣିବା ତାଙ୍କର

ଗୋଟିଏ ନିଶାରେ ପରିଣତ ହୋଇଯାଇଥିଲା । ଭାରତ ଏବଂ ଦେଶ ବିଦେଶର ବହି ଭେଣ୍ଡରମାନେ ନୂଆ ପୁସ୍ତକଟିଏ ବାହାରିବାମାତ୍ରେ ଜାନକୀବାବୁଙ୍କ ନିକଟକୁ ପଠାଇ ଦେଉଥିଲେ । ତାଙ୍କର ପାଣ୍ଡିତ୍ୟ ପ୍ରତି ଶ୍ରଦ୍ଧା ଜ୍ଞାପନ କରି ଦେଶବିଦେଶର ବହୁ ବଡ଼ ବଡ଼ ଲେଖକ ତାଙ୍କର ରଚିତ ପୁସ୍ତକଟିକୁ ଉପହାରସ୍ୱରୂପ ପଠାଇଥିବା ମୁଁ ତାଙ୍କ ଗ୍ରନ୍ଥାଗାରରେ ଦେଖିଛି । ଜାନକୀବାବୁଙ୍କର ଗ୍ରନ୍ଥାଗାରଟି ଓଡ଼ିଆ ଛଡ଼ା ସଂସ୍କୃତ, ହିନ୍ଦୀ, ବଙ୍ଗଳା, ଇଂରାଜୀ ଓ ଅସମୀୟା ଭାଷା ସହ କେତୋଟି ବିଦେଶୀ ଭାଷାର ଉପାଦେୟ ପୁସ୍ତକ ସମାରୋହରେ ସମୃଦ୍ଧ । ରାଜ୍ୟପାଳ ପଦରୁ ଅବସର ନେଇ ୨୦୧୪ ମସିହା ଡିସେମ୍ବର ୧୧ ତାରିଖ ଦିନ ଭୁବନେଶ୍ୱର ବିମାନବନ୍ଦରରେ ଅବତରଣ କରିବାପରେ ସାମ୍ବାଦିକମାନଙ୍କର ପ୍ରଶ୍ନ ଥିଲା, 'ଆପଣ ଏଥର କେଉଁ କାର୍ଯ୍ୟରେ ନିଜକୁ ସାମିଲ କରିବେ ।' ସେମାନଙ୍କ ପ୍ରଶ୍ନର ଚଟାପଟ୍ ଉତ୍ତରଦେଇ ସେ କହିଥିଲେ, 'ପ୍ରଥମେ ମୁଁ ମୋର ଗ୍ରନ୍ଥାଗାରଟିକୁ ସଜାଡ଼ିବି ।' ଏ ମନ୍ତବ୍ୟ ଜଣେ ରାଜନେତାଙ୍କର ନ ଥିଲା, ଏ ମନ୍ତବ୍ୟ ଥିଲା ଜଣେ ସଂସ୍କୃତିବନ୍ତ ସାହିତ୍ୟପ୍ରାଣ ବିଶିଷ୍ଟ ବିଦ୍ୱାନ୍‌ଙ୍କର ।

ଆସାମରୁ ଓଡ଼ିଶା ଆସିବା ପରେ ଭୁବନେଶ୍ୱର ଆସି ଲାଇବ୍ରେରୀ ସଜାଡ଼ିବାକୁ ଜାନକୀବାବୁ ମୋତେ ଡକାଇଥିଲେ । ମୁଁ ୨୦୧୫ ମସିହା ଅପ୍ରେଲ ୧୭ ତାରିଖ ଦିନ ଭୁବନେଶ୍ୱରରେ ପହଞ୍ଚି ୧୮ ତାରିଖ ସକାଳୁ ଲାଇବ୍ରେରୀ ସଷ୍ଟୀକରଣ କାର୍ଯ୍ୟ ଆରମ୍ଭ କରିଥିଲି । ଏଥର କିନ୍ତୁ ବହିର ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଥିଲା । ସେ ଆସାମରୁ ଆସିବା ସମୟରେ ସେଠାରୁ ପ୍ରାୟ ଚାରିହଜାରରୁ ଅଧିକ ଉପାଦେୟ ପୁସ୍ତକ ସାଥିରେ ଆଣିଥିଲେ । ପୁସ୍ତକ ସଜାଡ଼ିବାବେଳେ ମୋ ପାଖରେ ରହି ମଝିରେ ମଝିରେ ସେ କାର୍ଯ୍ୟକୁ ଉପଭୋଗ କରୁଥିଲ ଓ ମୋତେ ନାନା ପରାମର୍ଶ ଦେଉଥିଲେ । ତାଙ୍କ ଉପସ୍ଥିତିରେ ମୁଁ ଉତ୍ସାହିତ ହୋଇଥିଲି । ୨୦୧୫ ଏପ୍ରିଲ ୨୦ ତାରିଖ ଦିନ ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଯୋଗଦେବାକୁ ସେ ତିରୁପତି ବାହାରିଲେ । ସେଦିନ ସକାଳ ଠିକ୍ ୭ଟାରେ ତାଙ୍କ ବାସଭବନର ସେଣ୍ଟ୍ରାଲ୍ ହଲ୍‌ର ସୋଫାରେ ବସି ପାଠାଗାର କାମ ଯେମିତି ଠିକ୍‌ଠାକ୍ ଚାଲେ ସେଥିପାଇଁ ତାଙ୍କ ପୁତ୍ର ପୃଥ୍ୱୀବଲ୍ଲଭବାବୁଙ୍କୁ ଓ ମୋତେ ପରାମର୍ଶ ଦେଲେ । ତିରୁପତିରୁ ଫେରିଲେ ପାଠାଗାର ପାଇଁ ଏକ ସ୍ଥାୟୀ ପରିକଳ୍ପନା ସମ୍ବନ୍ଧରେ ଆଲୋଚନା କରିବା ବୋଲି ମୋତେ କହିଥିଲେ । କିଏ ଜାଣିଥିଲା ସେ ଆଉ ଫେରିବେନି, କିଏ ଜାଣିଥିଲା ଜ୍ଞାନପିପାସୁ, ଗ୍ରନ୍ଥପିପାସୁ ଓ ଗ୍ରନ୍ଥାଗାରପ୍ରେମୀ ଏହି ଉଜ୍ଜ୍ୱଳ ନକ୍ଷତ୍ର ନିଜର ସ୍ୱସ୍ଥାନକୁ ଏମିତି ହଠାତ୍ ଚାଲିଯିବେ ଏବଂ ଓଡ଼ିଆ ଭାଷା ଜଗତରେ ଆଉ ଏକ ଶୂନ୍ୟସ୍ଥାନ ସୃଷ୍ଟି ହେବ, ଯାହା କେହି କେବେ ପୂରଣ କରିପାରିବେ ନାହିଁ । ୨୧ ତାରିଖ ସକାଳୁ ସକାଳୁ ତାଙ୍କର ଦେହାନ୍ତ ଖବର ପାଇ ମୁଁ ସ୍ତବ୍ଧ ହୋଇଗଲି । ତାଙ୍କର ପ୍ରିୟ ଗ୍ରନ୍ଥାଗାରର ଅଧୁରା କାମ ପୂର୍ଣ୍ଣାଙ୍ଗ. ହୋଇପାରିଲେ ହିଁ ପବିତ୍ର ଆତ୍ମା ଶାନ୍ତି ପାଇବ । ମୋ କ୍ଷୁଦ୍ର ବିଚାରରେ ଯଦି ଦେଶର ପାଠକବର୍ଗଙ୍କ କାର୍ଯ୍ୟରେ ତାଙ୍କର ଏହି ପ୍ରିୟ ଓ ବୃହତ୍ ଗ୍ରନ୍ଥାଗାରଟି ବ୍ୟବହୃତ ହୁଏ, ତେବେ ତାଙ୍କ ସ୍ୱପ୍ନ ସାର୍ଥକ ହେବ ଏବଂ ସେ ପରପାରିରେ ଥାଇ ଆମ୍ଭମାନଙ୍କୁ ଆଶୀର୍ବାଦ ଦେବେ ।



# ପ୍ରଣମ୍ୟ ପୁରୁଷ : ଜାନକୀବଲ୍ଲଭ

ଶ୍ରୀମତୀ ବାସନ୍ତୀ ପ୍ରଧାନ

ଜାନକୀବଲ୍ଲଭଙ୍କର ପିତା ଥିଲେ ଜଣେ ସ୍କୁଲ ଶିକ୍ଷକ ଓ କବି। ପୁତ୍ର ଜାନକୀବଲ୍ଲଭଙ୍କ ପାଇଁ ତାଙ୍କର ବହୁତ ସ୍ୱପ୍ନ ଥିଲା ଏବଂ ତାଙ୍କ ପୁତ୍ର ଭବିଷ୍ୟତରେ ଜଣେ ଖୁବ୍ ବଡ଼ମଣିଷ ହେଉ ବୋଲି ସେ ସ୍ୱପ୍ନ ଦେଖିଥିଲେ। ପିତାଙ୍କର ଇଚ୍ଛା ଫଳପ୍ରଦ ହୋଇଛି। ପ୍ରାଥମିକ ଶ୍ରେଣୀଠାରୁ ଆରମ୍ଭ କରି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଏମ୍.ଏ. ଶ୍ରେଣୀ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ସେ ଜଣେ ସ୍ୱତନ୍ତ୍ର ଛାତ୍ର ଭାବରେ ବାରି ହୋଇପଡୁଥିଲେ।

ଛାତ୍ରାବସ୍ଥାରୁ ସେ ଦେଶପାଇଁ ଚିନ୍ତା କରୁଥିଲେ। ପାଠପଢ଼ି ସେତେବେଳେ ସେ ଇଚ୍ଛା କରିଥିଲେ ଯେକୌଣସି ଉଚ୍ଚ ସରକାରୀ ଚାକିରି କରିପାରିଥାନ୍ତେ; ମାତ୍ର ତାହା ସେ କରି ନାହାନ୍ତି। ସ୍ୱାଧୀନ ଜୀବନ ଓ ସ୍ୱାଧୀନ ଚିନ୍ତା; ଜନଗଣଙ୍କ ପାଇଁ କାର୍ଯ୍ୟ କରିବାର ଲକ୍ଷ୍ୟ ନେଇ ୧୯୫୦ ମସିହାରେ ସେ ଡଃ ହରେକୃଷ୍ଣ ମହତାବଙ୍କ ପ୍ରତିଷ୍ଠିତ ପ୍ରଜାତନ୍ତ୍ର ପ୍ରଚାର ସମିତିରେ ଯୋଗ ଦେଇଥିଲେ। କଟକ ପାଲଟିଥିଲା ତାଙ୍କ କର୍ମଭୂମି। 'ପ୍ରଜାତନ୍ତ୍ର' ଓ ଇଂରାଜୀ ଦୈନିକ ସମ୍ବାଦପତ୍ର 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର ସଂପାଦକଭାବରେ ସେ ୧୯୬୭ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ।

୧୯୭୧ ମସିହାରେ କଟକ ଲୋକସଭା ଆସନରୁ ସେ ଲୋକସଭା ସଦସ୍ୟ ଭାବରେ ନିର୍ବାଚିତ ହୋଇଥିଲେ ଏବଂ ତାଙ୍କ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଦେଶପାଇଁ, ମଣିଷ ସମାଜର ସର୍ବବିଧ ଉନ୍ନତିପାଇଁ ଚିନ୍ତା କରୁଥିଲେ ଏବଂ କାର୍ଯ୍ୟ କରିଯାଇଛନ୍ତି।

ମୁଁ ଖୁବ୍ କମ୍ ବୟସରୁ ତାଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ଲାଭ କରିଥିଲି। ମୋର ସ୍ୱର୍ଗତ ପିତା ଫଗୁମଣି ଖୁଣ୍ଟିଆ ଥିଲେ ସେତେବେଳେ କଟକ ଛତ୍ରବଜାରର ଜଣେ ଖୁବ୍ ପ୍ରତିଷ୍ଠିତ ବ୍ୟବସାୟୀ। ଜାନକୀବଲ୍ଲଭଙ୍କ ସହ ମୋ ବାପାଙ୍କର ଘନିଷ୍ଠ ସମ୍ପର୍କ ଥିଲା। ସେ ନାରୀ ଶିକ୍ଷାର ବିକାଶ ସହିତ ସମାଜର ସବୁ କ୍ଷେତ୍ରରେ ମହିଳାମାନେ ଅଗ୍ରଣୀ ଭୂମିକା ଗ୍ରହଣ କରନ୍ତୁ; ସେଥିପାଇଁ ଅହରହ ଚିନ୍ତା କରୁଥିଲେ। ମୁଖ୍ୟମନ୍ତ୍ରିତ୍ୱ କାଳରେ ସେ ନାରୀଶିକ୍ଷାର ଉନ୍ନତି ପ୍ରତି ବିଶେଷ ଧ୍ୟାନ ଦେଇଥିଲେ। ତାଙ୍କରି ପ୍ରେରଣାରେ ମୁଁ କଟକ ମ୍ୟୁନିସିପାଲିଟିର କାଉନସିଲର ଭାବରେ ନିର୍ବାଚିତ ହୋଇଥିଲି।

ଜାନକୀବଲ୍ଲଭ କେନ୍ଦ୍ର ସରକାରରେ ଦୀର୍ଘକାଳ ମନ୍ତ୍ରୀ ଦାୟିତ୍ୱ ନିର୍ବାହ କରିବା ସହିତ ଓଡ଼ିଶାରେ ୧୪ ବର୍ଷ ମୁଖ୍ୟମନ୍ତ୍ରୀ ଭାବରେ ରାଜ୍ୟର ଶାସନଭାର ଗ୍ରହଣ କରିଥିଲେ। ଶିକ୍ଷା,

ସ୍ୱାସ୍ଥ୍ୟ, ଗମନାଗମନ ଆଦି ଜନସାଧାରଣଙ୍କର ମୌଳିକ ସମସ୍ୟା ସମାଧାନ ଦିଗରେ ସେ ଅଧିକ ଗୁରୁତ୍ୱ ଦେଇଥିଲେ। ଭାଷା-ସାହିତ୍ୟର ଉନ୍ନତିପାଇଁ ତାଙ୍କର ସ୍ୱତନ୍ତ୍ର ଧ୍ୟାନ ଥିଲା। ଓଡ଼ିଆ ଭାଷାକୁ ସରକାରୀ ଭାଷା କରିବାପାଇଁ ତାଙ୍କ ଶାସନକାଳରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା; କିନ୍ତୁ ପରବର୍ତ୍ତୀ ସରକାର ସେଥିପ୍ରତି ଧ୍ୟାନ ଦେଲା ନାହିଁ।

ଜାନକୀବଲ୍ଲଭ ଥିଲେ ଜଣେ ପ୍ରସିଦ୍ଧ ସାହିତ୍ୟିକ। ତାଙ୍କ ପିତା ଗୋକୁଳାନନ୍ଦ ପଟ୍ଟନାୟକ ଜଣେ କବି ଥିଲେ ଏବଂ ଜାନକୀବଲ୍ଲଭ ସ୍ୱୀକାର କରିଛନ୍ତି କବିତ୍ୱ ତାଙ୍କର ପିତୃଦତ୍ତ। ସେ 'ସିନ୍ଧୁ ଉପତ୍ୟକା' ଶୀର୍ଷକରେ ଏକ କବିତା ପୁସ୍ତକ ପ୍ରକାଶ କରିଥିଲେ ଏବଂ ସେହି କବିତାଗୁଡ଼ିକରେ ତାଙ୍କର ନୀତି, ଆଦର୍ଶବୋଧ ଓ ଜୀବନ ପ୍ରତି ଦୃଷ୍ଟିକୋଣ ପ୍ରାଞ୍ଜଳଭାବରେ ପ୍ରକଟିତ ହୋଇଛି। ସେ ଗ୍ରନ୍ଥରେ ସନ୍ନିବେଶିତ 'ଅସୂୟା' କବିତାରେ ଲେଖିଛନ୍ତି–

"ମୋର ଯାତ୍ରା ପଥ ଦୀର୍ଘ କଙ୍କରିତ
କେତେ ଢିପ କେତେ ଖାଲ, କ୍ୱଚିତ ମିଳଇ ସମତଳ
ଖାଲି କଣ୍ଟା ମାଇଲ ମାଇଲ
ମୁଁ ନିଶ୍ଚୟ କରିଅଛି ଯିବି ଏଇ ବାଟେ
ଥାଉ କଣ୍ଟା ଖାଲ, ଢିପ। ମୁଁ ଚାଲିବି
ମୋଟେ ନ ଓହରି / ମୋର ଲକ୍ଷ୍ୟ ପଥେ।"

ସେହି ମହାମନା ଦେଶଭକ୍ତ ଜାନକୀବଲ୍ଲଭଙ୍କର ଲକ୍ଷ୍ୟପଥ ହେଉଛି ଜନଗଣଙ୍କର କଲ୍ୟାଣ କରିବା; ରାଜ୍ୟ ଓ ଦେଶର ସର୍ବବିଧ ବିକାଶପାଇଁ ନିରନ୍ତର ନିଜକୁ ନିୟୋଜିତ କରିବା। ସେ ଲକ୍ଷ୍ୟପଥରେ ନିଶ୍ଚୟ ପ୍ରତିବନ୍ଧକ ଆସିବ; ସବୁ ମହତ୍ କାର୍ଯ୍ୟରେ ପ୍ରତିବନ୍ଧକ ଆସେ; କିନ୍ତୁ ସେଥିରୁ ଓହରିଯିବା ବୁଦ୍ଧିମାନ୍ ବ୍ୟକ୍ତି ବା ନୀତିନିଷ୍ଠ ବ୍ୟକ୍ତିଙ୍କର ଧର୍ମ ନୁହେଁ। ବାସ୍ତବରେ ଜାନକୀବଲ୍ଲଭ ଥିଲେ ଜଣେ ଆଦର୍ଶ ରାଜନେତା; ନୀତିନିଷ୍ଠ ଦେଶଭକ୍ତ। ରାଜନୀତି ଓ ସାହିତ୍ୟ ତାଙ୍କ ଜୀବନରେ ଏକାକାର ହୋଇଥିଲା। ସେ ସବୁଦିନ ପାଇଁ ସ୍ମୃତିରେ ଅମ୍ଳାନ ରହି ଆମମାନଙ୍କପାଇଁ ଆଦର୍ଶର ପଥପ୍ରଦର୍ଶକ ହେବେ।



# ଏ ଜାତି ସବୁଦିନପାଇଁ କୃତଜ୍ଞ ରହିବ

**ରବୀନ୍ଦ୍ର କୁମାର ବେହେରା**

ରାଜନୀତିରେ ଜାନକୀବଲ୍ଲଭଙ୍କର ଦକ୍ଷତା ଓ ସଫଳତା ପାଇଁ କେହି କେହି ତାଙ୍କୁ ରାଜନୀତିର ଚାଣକ୍ୟ ବୋଲି କହିଥାଆନ୍ତି। ଓଡ଼ିଶାର ଯେଉଁ କେତେଜଣ ହାତଗଣତି ରାଜନେତା ଜାତୀୟ ରାଜନୀତିରେ ପ୍ରଭାବ ଆଉ ପ୍ରତିଷ୍ଠା ଲାଭ କରି ନିଜ ପାଇଁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲେ ସେମାନଙ୍କ ମଧ୍ୟରେ ଜାନକୀବଲ୍ଲଭ ଅନ୍ୟତମ। ୧୯୮୦ ମସିହା ବେଳକୁ କେନ୍ଦ୍ର ରାଜନୀତିର ସେ ଥିଲେ ଜଣେ ଅଗାଧାଡ଼ିର ନେତା। ତାଙ୍କର ପାରିଦର୍ଶିତାପାଇଁ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ତାଙ୍କୁ ଖୁବ୍ ଶ୍ରଦ୍ଧା କରୁଥିଲେ ଓ ପ୍ରାଧାନ୍ୟ ଦେଉଥିଲେ। କେନ୍ଦ୍ର ରାଜନୀତିର ତାଙ୍କ ପାଇଁ ବହୁ ଗୁରୁତ୍ୱପୂର୍ଣ୍ଣ ସୁଯୋଗ ଥିଲା। କିନ୍ତୁ ନିଜ ଜନ୍ମଭୂମି ଓଡ଼ିଶା ମାଟିର ଅଧିକ ସେବା କରିବା ଲକ୍ଷ୍ୟରେ ସେ କେନ୍ଦ୍ର ରାଜନୀତିରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ।

ରାଜନୀତିର ପଶାପାଲିରେ ହାରଜିତ୍ ଲାଗିରହିଥାଏ। କେତେବେଳେ ଜିତିବା ତ କେତେବେଳେ ହାରିବା। ସେ କିନ୍ତୁ ଉଭୟ ପରିସ୍ଥିତିରେ ଥିଲେ ସ୍ଥିତପ୍ରଜ୍ଞ। ବିଚଳିତ ହେବା ତାଙ୍କୁ କେହି କେବେ ଦେଖି ନାହାନ୍ତି। ରାଜନୀତି ମାଧ୍ୟମରେ ଜନସେବା, ସମାଜସେବା, ପାଇଛନ୍ତି ଅଜସ୍ର ସଫଳତା। କେନ୍ଦ୍ରମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ବିରୋଧୀଦଳର ନେତା ଓ ଶେଷରେ ରାଜ୍ୟପାଳ ପଦବୀ; ସବୁ କ୍ଷେତ୍ରରେ ସେ ଛାଡ଼ି ଯାଇଛନ୍ତି ଅକ୍ଷୟ ଯଶ ଓ ଅଲିଭା ପାଦଚିହ୍ନ।

ତାଙ୍କର ସବୁଠୁ ବଡ଼ ଗୁଣ ହେଲା ଧୈର୍ଯ୍ୟ। ଅସୀମ ଧୈର୍ଯ୍ୟର ସେ ମୂର୍ତ୍ତିମନ୍ତ ପ୍ରତୀକ। ନିନ୍ଦା ଓ ପ୍ରଶଂସା, ଜୟ ଓ ପରାଜୟକୁ ସେ ସମାନ ଦୃଷ୍ଟିରେ ଦେଖି ଆସିଛନ୍ତି। 'ହଜାର ଦିନରେ ହଜାର ଶିଳ୍ପ' ସ୍ଲୋଗାନ୍‌ର ଜନକ ହେଉଛନ୍ତି ଜାନକୀବଲ୍ଲଭ। ଓଡ଼ିଶାକୁ ଏକ ଶିଳ୍ପୋନ୍ନତ ରାଜ୍ୟରେ ପରିଣତ କରିବାପାଇଁ ସେ ବହୁ ସ୍ୱପ୍ନ ଦେଖିଥିଲେ ଏବଂ ତାଙ୍କରି ପ୍ରଚେଷ୍ଟାରେ ସାରା ରାଜ୍ୟରେ ତାଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଶିଳ୍ପର ଏକ ଭରପୂର ବାତାବରଣ ସୃଷ୍ଟି ହୋଇଥିଲା। ଶିକ୍ଷିତ ଯୁବକମାନେ ଶିଳ୍ପପ୍ରତି ବହୁମାତ୍ରାରେ ଆକୃଷ୍ଟ ହୋଇଥିଲେ। ତାଙ୍କର କେତେକ ସ୍ୱପ୍ନ ଆଜି ବାସ୍ତବ ରୂପ ନେଇଛି।

ସାହିତ୍ୟିକ ଭାବରେ ସେ ଥିଲେ ଜଣେ ସଫଳ ବ୍ୟକ୍ତିତ୍ୱ। କେବଳ ଓଡ଼ିଆ ନୁହେଁ, ସଂସ୍କୃତ ଭାଷାରେ ସେ ସୁପଣ୍ଡିତ ଥିଲେ। ଇଂରାଜୀ ଭାଷାରେ ସେ ବେଶ୍ ଦକ୍ଷ ଥିଲେ ଓ

ଅଳ୍ପଦିନ ମଧ୍ୟରେ ଅହମୀୟା ଭାଷା ଶିକ୍ଷା କରି ଆସାମରେ ଅଜସ୍ର ଲୋକପ୍ରିୟତା ଲାଭ କରିଥିଲେ। ସେ ସୃଷ୍ଟି କରିଥିଲେ ଅନେକ ଉପାଦେୟ ଗ୍ରନ୍ଥ। ସେଗୁଡ଼ିକ ହେଉଛି ଓଡ଼ିଆ ଭାଷା ସାହିତ୍ୟ ଜଗତର ଗୋଟିଏ ଗୋଟଏ ଅମଳିନ କୀର୍ତ୍ତି। ସାହିତ୍ୟ ଥିଲା ରକ୍ତରେ। କାରଣ ତାଙ୍କ ବାପା ଗୋକୁଳାନନ୍ଦ ପଟ୍ଟନାୟକ ଥିଲେ ଜଣେ ସୁସାହିତ୍ୟିକ। ଓଡ଼ିଆ ଭାଷା ଭଣ୍ଡାରକୁ ଗୋକୁଳାନନ୍ଦଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ। ସେହି ଗୁଣସୂତ୍ରରେ ବୋଧହୁଏ ଜାନକୀବଲ୍ଲଭଙ୍କ ପାଖକୁ ଆସିଥିଲା ସାହିତ୍ୟର ଏକ ଚିରପ୍ରବହମାନ ସ୍ରୋତସ୍ୱିନୀ।

ଓଡ଼ିଆଙ୍କ ଆରାଧ୍ୟଦେବତା ଶ୍ରୀଜଗନ୍ନାଥଙ୍କର ସେ ଥିଲେ ଜଣେ ପରମ ସେବକ। ଜଗନ୍ନାଥ ସଂସ୍କୃତିର ଜଣେ ଉଚ୍ଚମାନର ଗବେଷକ। ଆସାମର ଦିବ୍ରୁଗଡ଼ଠାରେ ଜଗନ୍ନାଥ ମନ୍ଦିର ଓ ପୁରୀର ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ତାଙ୍କର ଅମର କୀର୍ତ୍ତିସ୍ତମ୍ଭ। ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦାଜନକ କୁଳାଧିପତି ପଦରେ ସେ ଅଧିଷ୍ଠିତ ହୋଇଥିଲେ। ସେ ସେହି ଗୌରବମୟ ପଦ ମଣ୍ଡନ କରି ତା'ର କୀର୍ତ୍ତିମାନ ଐତିହ୍ୟର ଧାରାକୁ ବଞ୍ଚାଇ ରଖିବାପାଇଁ ଅହରହ ସଂଗ୍ରାମରତ ଥିଲେ। ଏହାକୁ ଏକ ସଂଯୋଗ କୁହାଯାଇପାରେ। କାରଣ ଯେଉଁଠାରୁ ସେ ଅପାର ଆନନ୍ଦ ଲାଭ କରିପାରୁଥିଲେ, ସେହିଠାରେ ହିଁ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଥିଲା। ସେଦିନ ଭାରତୀୟ ସଂସ୍କୃତି ଜଗତ ତା'ର ଅତିପ୍ରିୟ ସନ୍ତାନକୁ ସବୁଦିନ ପାଇଁ ହରାଇ ବସିଥିଲା। ସଂସ୍କୃତ ଓ ସଂସ୍କୃତି ଆକାଶରୁ ଜଣେ ଜ୍ଞାନୋଦୀପ୍ତ ପୁରୁଷଙ୍କର ବିଦାୟ ଘଟିଥିଲା।

ସାହିତ୍ୟ ଓ ରାଜନୀତି ଉଭୟଙ୍କୁ ଏକତ୍ର କରିଚାଲିବା ଓ ସଫଳତା ଲାଭ କରିବା ଖୁବ୍ କଷ୍ଟକର। କାରଣ ରାଜନୀତି ପରି ଏକ କଣ୍ଟକିତ ପଥରେ ସାହିତ୍ୟର ସେବା କରିବା ଏକ ଦୁରୂହ ବ୍ୟାପାର। ତଥାପି ସେ ଉଭୟଙ୍କୁ ସମାନ ଦୃଷ୍ଟିରେ ଦେଖିଛନ୍ତି। ସମାନ ନ୍ୟାୟ ଦେଇଛନ୍ତି। ଯୁବକ ବୟସରେ ନିଜର ଗୁଣବତ୍ତା ଓ ବିଚକ୍ଷଣତା ଯୋଗୁଁ ସେ 'ପ୍ରଜାତନ୍ତ୍ର' ଓ ଦୈନିକ ଇଂରାଜୀ 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର ସଂପାଦକ ପଦବୀ ମଣ୍ଡନ କରିଥିଲେ। ପତ୍ରିକା ସଂପାଦନା କ୍ଷେତ୍ରରେ ସେ ପର ପିଢ଼ି ପାଇଁ ଏକ ଜାଜ୍ୱଲ୍ୟମାନ ସୋପାନ ତିଆରି କରିଯାଇଛନ୍ତି। ସେ ଥିଲେ ମର୍ଯ୍ୟାଦାସଂପନ୍ନ ପତ୍ରିକା 'ପୌରୁଷ'ର ପ୍ରତିଷ୍ଠାତା ସଂପାଦକ। ମହାଭାରତର ମହାବୀର କର୍ଣ୍ଣଙ୍କର ବାଣୀ 'ଉଚ୍ଚକୁଳରେ ଜାତ ହେବା ଦୈବର ଅଧୀନ, କିନ୍ତୁ ପୁରୁଷକାର ମୋର ଅଧୀନ' ଥିଲା ଜାନକୀବଲ୍ଲଭଙ୍କ ଜୀବନର ବୀଜମନ୍ତ୍ର। ଏହାକୁ ସମସ୍ତେ ଆହ୍ୱାନ ଭାବରେ ଗ୍ରହଣ କରନ୍ତୁ, ଏହା ସେ ଚାହୁଁଥିଲେ। ଆତ୍ମଚେଷ୍ଟା ବଳରେ ଜଣେ ଉନ୍ନତିର ବେଶ୍ ଉପରକୁ ଉଠିପାରିବ, ଏହା ସେ ନିଜ ଜୀବନରେ ପ୍ରତିପାଦିତ କରିପାରିଛନ୍ତି।

ସର୍ବୋପରି ଜାନକୀବଲ୍ଲଭ ଥିଲେ ଶିକ୍ଷକସମାଜର ଜଣେ ଅଗ୍ରପୂଜ୍ୟ ବ୍ୟକ୍ତି। ସବୁଠୁ ଅବହେଳିତ ଅବସ୍ଥାରେ ଥିବା ପ୍ରାଥମିକ ଶିକ୍ଷକଙ୍କୁ ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ସର୍ବପ୍ରଥମେ

ସରକାରୀ କର୍ମଚାରୀର ମାନ୍ୟତା ମିଳିଥିଲା। ଯାହାକୁ ଆଧାର କରି ପରବର୍ତ୍ତୀ ଅବସ୍ଥାରେ ନିମ୍ନ ମାଧମିକ ଓ ମାଧମିକ ଶିକ୍ଷକ ସମାଜ ସରକାରୀ ହେବାର ପଥ ପରିଷ୍କାର ହୋଇଯାଇଥିଲା। ଏହିଦୃଷ୍ଟିରୁ ସମଗ୍ର ଶିକ୍ଷକସମାଜ ସେ ପ୍ରଜ୍ଞାପୁରୁଷଙ୍କ ନିକଟରେ ଚିରକାଳ କୃତଜ୍ଞ ହୋଇ ରହିଥିବେ। ପ୍ରାଥମିକ ଶିକ୍ଷକଙ୍କୁ ସରକାରୀ କର୍ମଚାରୀ ରୂପେ ଘୋଷଣା କରି ସେ ସେଦିନ କହିଥିଲେ, "ମୁଁ ଆଜି ମୋ ପିତୃଋଣ ଶୁଝୁଛି।" କାରଣ ତାଙ୍କ ପିତା ଥିଲେ ଜଣେ ପ୍ରାଥମିକ ଶିକ୍ଷକ।

ଜାନକୀବଲ୍ଲଭ ଜଣେ ସଫଳ ରାଜନେତା ଓ ପରିପୂର୍ଣ୍ଣ ବ୍ୟକ୍ତିତ୍ୱ। ଶିଷ୍ଟ ଓ ନମ୍ର। ଦମ୍ଭ ଓ ଅହମିକା ତାଙ୍କୁ ସ୍ପର୍ଶ କରି ନ ଥିଲା। ଧୀରସ୍ଥିର ଚଳଣି ସହ ମଧୁର ବଚନ ଥିଲା ତାଙ୍କର ଏକ ବିଶେଷ ଗୁଣ। ରାଜନୀତିରେ ତାଙ୍କ ପରି ଗୁଣୀ ବ୍ୟକ୍ତିଙ୍କର ଏବେ ଅଭାବ ପରିଲକ୍ଷିତ ହେଉଛି। ମୂଲ୍ୟବୋଧ୍‌ରେ ବିଶ୍ୱାସ କରୁଥିବା ଉଚ୍ଚଶିକ୍ଷିତ ଯୁବକମାନେ ଅଧିକ ସଂଖ୍ୟାରେ ରାଜନୀତିକୁ ପ୍ରବେଶ କଲେ ତାହାହିଁ ହେବ ଜାନକୀବଲ୍ଲଭଙ୍କ ପ୍ରତି ଏ ଜାତିର ପ୍ରକୃତ ଶ୍ରଦ୍ଧାଞ୍ଜଳି।



# ଅର୍ଦ୍ଧଶତାବ୍ଦୀ ଓଡ଼ିଶା ଇତିହାସର ଅଧିନାୟକ

**ବିଭୂତି ପଟ୍ଟନାୟକ**

୧୯୪୬ ମସିହା। ବ୍ରିଟିଶ ଶାସନ କାଳ। ସ୍ୱାଧୀନତା ଆସିବ ଆସିବ ବୋଲି ସେ ପର୍ଯ୍ୟନ୍ତ ଆସି ନାହିଁ। ସରକାରୀ ଅଫିସ୍, କଲେଜ, କୋର୍ଟ୍, କଚେରି ଉପରେ ଉଡୁଛି ବ୍ରିଟିଶ ସାମ୍ରାଜ୍ୟବାଦର ବିଜୟ-କେତନ ୟୁନିୟନଜ୍ୟାକ୍। ପ୍ରତିବର୍ଷ ଭଳି ସେ ବର୍ଷ ମଧ୍ୟ ରେଭେନ୍ସା କଲେଜ ବାର୍ଷିକ କ୍ରୀଡ଼ା ଉତ୍ସବରେ ପ୍ରଥମେ ୟୁନିୟନ୍ ଜ୍ୟାକ୍ ଉତ୍ତୋଳନ କରାଗଲା। ଏହା କଂଗ୍ରେସ ସୋସାଲିଷ୍ଟ ଏବଂ କମ୍ୟୁନିଷ୍ଟ ଛାତ୍ର ସଂଗଠନର ଛାତ୍ରନେତାମାନଙ୍କର ସହ୍ୟ ହେଲା ନାହିଁ। ଛାତ୍ରକଂଗ୍ରେସର ସଭାପତି ପ୍ରଦୀପ୍ତ କିଶୋର ଦାସ ଏବଂ ଯୁବସୋସାଲିଷ୍ଟ ନେତା ରବି ରାୟ ୟୁନିୟନ୍ ଜ୍ୟାକ୍‌କୁ ଟାଣି ତଳେ ପକାଇ ଦେଇ ଜାତୀୟ କଂଗ୍ରେସ୍‌ର ତ୍ରିରଙ୍ଗ ଝଣ୍ଡା ଉଡ଼ାଇ ଦେଲେ। ତଳେ ପଡ଼ିଥିବା ୟୁନିୟନ ଜ୍ୟାକ୍‌କୁ ପାଦରେ ଦଳିଦେଲେ କମ୍ୟୁନିଷ୍ଟ ଛାତ୍ରନେତା ମନମୋହନ ମିଶ୍ର।

ରେଭେନ୍ସା କଲେଜର ଛାତ୍ରମାନେ ବ୍ରିଟିଶ ୟୁନିୟନ୍ ଜ୍ୟାକ୍ କାଢ଼ି ଫୋପାଡ଼ି ଦେଇ କଂଗ୍ରେସ୍ ଜାତୀୟ ପତାକା ଉଡ଼ାଇ ଦେଇଥିବା ଛାତ୍ରମାନଙ୍କ ବିରୋଧରେ କଡ଼ା ବ୍ୟବସ୍ଥା ନେବାକୁ ତତ୍‌କାଳୀନ ଓଡ଼ିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ୍ ଆଦେଶ ଦେଇଥାଆନ୍ତି। ସରକାରୀ ଆଦେଶ ବିରୋଧରେ ବିକ୍ଷୋଭ ପ୍ରଦର୍ଶନ କରିଥିବା ଛାତ୍ରମାନଙ୍କୁ ବ୍ରିଟିଶ୍ ପୋଲିସ୍ ଗିରଫ୍ କରି ଜେଲ୍ ପଠାଇ ଦେଇଥାଏ। କିନ୍ତୁ ସରକାରୀ ଦମନଲୀଳା ସ୍ୱାଧୀନତା ସଂଗ୍ରାମୀ ଛାତ୍ରମାନଙ୍କୁ ଭୟଭୀତ କରିବା ବଦଳରେ ଅଧିକ ଉତ୍ତେଜିତ କରି ଦେଇଥାଏ। ସେମାନେ ୟୁନିୟନ୍ ଜ୍ୟାକ୍ ବଦଳରେ ଜାତୀୟ ତ୍ରିରଙ୍ଗା ଝଣ୍ଡା ଉଡ଼ାଇ ସାରିଲାପରେ ରେଭେନ୍ସା କଲେଜ ପଶ୍ଚିମ ଛାତ୍ରାବାସକୁ ସରକାରୀ ନିୟନ୍ତ୍ରଣମୁକ୍ତ କରି ସ୍ୱାଧୀନ ସାଧାରଣତନ୍ତ୍ର ଭାବରେ ଘୋଷଣା କରିବାକୁ ସ୍ଥିର କଲେ। ପ୍ରଦୀପ୍ତ କିଶୋର ଦାସ, ରବି ରାୟ କିମ୍ବା ମନମୋହନ ମିଶ୍ର ପ୍ରମୁଖ ଛାତ୍ରନେତାମାନେ କେହି ହଷ୍ଟେଲରେ ରହୁ ନ ଥିଲେ, ସେଥିପାଇଁ ପଶ୍ଚିମ ଛାତ୍ରାବାସରେ ରହୁଥିବା ମେଧାବୀ ଛାତ୍ର ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ସ୍ୱାଧୀନ ଛାତ୍ରାବାସର ସଭାପତି ଭାବରେ ନିର୍ବାଚିତ କରାଗଲା। ସେତେବେଳେ ପଶ୍ଚିମ ଛାତ୍ରାବାସର ସୁପରିଣ୍ଟେଣ୍ଡେଣ୍ଟ ଥିଲେ ଦର୍ଶନ ଅଧ୍ୟାପକ ଶ୍ରୀନିବାସ ସାହୁ। ପଶ୍ଚିମ ଛାତ୍ରାବାସକୁ ସାଧାରଣତନ୍ତ୍ର ଭାବରେ ଘୋଷଣା କଲେ ନିର୍ବାଚିତ ସଭାପତି ଜାନକୀବଲ୍ଲଭ ପଟ୍ଟନାୟକ। ଛାତ୍ରାବାସରେ ଜାତୀୟ ତ୍ରିରଙ୍ଗ ଝଣ୍ଡା ଉଡ଼ାଇବା ସହିତ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ ଅଧ୍ୟାପକ ସାହୁଙ୍କୁ ହଷ୍ଟେଲ ମଧ୍ୟରେ ଗୋଟିଏ କୋଠରି ଭିତରେ ଅଟକ ରଖିଥିଲେ। ପୋଲିସ୍ କିମ୍ବା ରେଭେନ୍ସା କଲେଜ ଅଧ୍ୟକ୍ଷ ଏସ୍.ରାୟଙ୍କୁ ପଶ୍ଚିମ ଛାତ୍ରାବାସ ଭିତରେ ପ୍ରବେଶ କରିବାକୁ ଦିଆଗଲା ନାହିଁ। ସ୍ୱାଧୀନ ଛାତ୍ରାବାସର ସଭାପତି, ନିର୍ଭୀକ ଛାତ୍ରନେତା ଜାନକୀବଲ୍ଲଭ ପଟ୍ଟନାୟକ

ସେଦିନ ଦୃପ୍ତକଣ୍ଠରେ ସରକାରଙ୍କୁ ଚେତାବନୀ ଦେଇଥିଲେ– କଲେଜ ବାର୍ଷିକ କ୍ରୀଡ଼ା ଉତ୍ସବରେ ୟୁନିୟନ୍ ଜ୍ୟାକ୍ ବଦଳରେ ଜାତୀୟ ପତାକା ଉଡ଼ାଇଥିବା ଅଭିଯୋଗରେ ଗିରଫ୍ ହୋଇଥିବା ଛାତ୍ରମାନଙ୍କୁ ସସମ୍ମାନେ ଖଲାସ ନ କରିବା ପର୍ଯ୍ୟନ୍ତ ପଶ୍ଚିମ ଛାତ୍ରାବାସରେ ସୁପରିଣ୍ଟେଣ୍ଡେଣ୍ଟ୍ ଅଧ୍ୟାପକ ସାହୁଙ୍କୁ ଖଲାସ୍ କରାଯିବ ନାହିଁ କି ବାହାରର କାହାକୁ ଛାତ୍ରାବାସ ମଧ୍ୟରେ ପ୍ରବେଶ କରିବାକୁ ଦିଆଯିବ ନାହିଁ।

ଶେଷରେ ସରକାର ଛାତ୍ରମାନଙ୍କ ଦାବି ମାନିନେଇଥିଲେ। ଗିରଫ ହୋଇଥିବା ଛାତ୍ରମାନଙ୍କୁ ବିନା ସର୍ତ୍ତରେ ଖଲାସ କରିଦେବାପରେ ସଂସ୍କୃତ ଅନର୍ସ ଛାତ୍ର ଜାନକୀବଲ୍ଲଭ ପଶ୍ଚିମ ଛାତ୍ରାବାସର କର୍ତ୍ତୃତ୍ୱ ପୁନଷ୍ଚ ସୁପରିଣ୍ଟେଣ୍ଡେଣ୍ଟ ଅଧ୍ୟାପକ ସାହୁଙ୍କୁ ସସମ୍ମାନେ ଫେରାଇ ଦେଇଥିଲେ।

ଯେପରି ଅହିଂସାତ୍ମକ ଉପାୟରେ ଛାତ୍ର ଜାନକୀବଲ୍ଲଭ ଜାତୀୟତାବୋଧଦ୍ୱାରା ଉଦ୍‌ବୁଦ୍ଧ ହୋଇ ଦକ୍ଷତା ଓ ନିର୍ଭୀକତାର ସହିତ ବ୍ରିଟିଶ– ବିରୋଧୀ ଛାତ୍ର ଆନ୍ଦୋଳନର ନେତୃତ୍ୱ ନେଇ ଛାତ୍ରମାନଙ୍କ ଦାବି ପୂରଣରେ ସମର୍ଥ ହୋଇଥିଲେ ତାହା ତତ୍‌କାଳୀନ ଓଡ଼ିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲା। ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ଉପାଧ୍ୟୁତ୍ତର ଡିଗ୍ରୀ ନେଇ ଫେରିଲାପରେ ହରେକୃଷ୍ଣ ମହତାବ ତାଙ୍କୁ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ପ୍ରକାଶିତ ଇଂରାଜୀ ଦୈନିକୀ 'ଇଷ୍ଟର୍ଣ୍ଣ ଟାଇମ୍‌ସ' ଏବଂ ଓଡ଼ିଆ ଦୈନିକୀ 'ପ୍ରଜାତନ୍ତ୍ର'ର ସମ୍ପାଦନା ଦାୟିତ୍ୱ ଅର୍ପଣ କରିଥିଲେ।

୧୯୫୫-୫୬ ମସିହାରେ ଖ୍ରୀଷ୍ଟ କଲେଜରେ ପଢୁଥିବାବେଳେ ରବିବାର 'ପ୍ରଜାତନ୍ତ୍ର'ରେ ଗଳ୍ପ ଲେଖି ଜାନକୀବାବୁଙ୍କ ସହ ମୋର ପ୍ରଥମ ପରିଚୟ। 'ପ୍ରଜାତନ୍ତ୍ର' ସେତେବେଳେ କଂଗ୍ରେସ୍ ସମ୍ପର୍କିତ ସମ୍ବାଦପତ୍ର। ମୁଁ କଂଗ୍ରେସ୍‌ର ସମର୍ଥକ ନ ଥିଲି। କିନ୍ତୁ ସୁଧାଂଶୁମୋହନ ରାଉତରାୟ ଏବଂ ଗୋପାଳ ମିଶ୍ର–ଯେଉଁମାନେ ମୋ ସହିତ ଖ୍ରୀଷ୍ଟ କଲେଜରେ ମୋ ଉପର କ୍ଲାସ୍‌ରେ ପାଠ ପଢୁଥିଲେ–ସେମାନେ ଡକ୍ଟର ମହତାବଙ୍କର ପ୍ରିୟ ଥିଲେ। ସୁଧାଂଶୁବାବୁ ମତେ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହ ପରିଚୟ କରାଇ ଦେଇଥିଲେ। ଗୋପାଳ ମିଶ୍ର ମତେ ଦିନେ ତାଙ୍କ ମେସ୍‌କୁ ଚ' ଖାଇବାପାଇଁ ଡାକି ନେଇ କହିଲେ– ତମେ ଏ ବର୍ଷ ରବିବାର ପ୍ରଜାତନ୍ତ୍ର ଗଳ୍ପ ପୁରସ୍କାରପାଇଁ ମନୋନୀତ ହୋଇଛ। ପୁରସ୍କାର ବିଚାରକମାନଙ୍କ ମଧ୍ୟରୁ ଜାନକୀବଲ୍ଲଭ ପଟ୍ଟନାୟକ ତମକୁ ଉଚ୍ଚ ପ୍ରଶଂସା କରିବା ଫଳରେ ଡକ୍ଟର ମହତାବ ମଧ୍ୟ ଏ ବର୍ଷ ଗଳ୍ପ ପୁରସ୍କାର ତମକୁ ଦେବାପାଇଁ ସମ୍ମତ ହୋଇଛନ୍ତି।

ଗୋପାଳ ମିଶ୍ର ଯେ ସେତେବେଳେ ରବିବାର ପ୍ରଜାତନ୍ତ୍ର ଗଳ୍ପ ବାଛିବା ଦାୟିତ୍ୱରେ ଥିଲେ, ମତେ ଜଣା ନ ଥିଲା। ନୂଆ ନୂଆ ଗଳ୍ପ ଲେଖୁଥିବା ମୋ ଭଳି ଜଣେ ମଫସଲି ଛାତ୍ରର ଗଳ୍ପ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଭଳି ଜଣେ ବିଦ୍ୱାନ୍ ସମ୍ପାଦକ ପଢ଼ି ପ୍ରଶଂସା କରୁଥିଲେ, ଏକଥା ଜାଣିଲା ପରେ ଗଳ୍ପ ଲେଖିବାର ଆତ୍ମପ୍ରତ୍ୟୟ ମୋ ମନରେ ଦୃଢ଼ରୁ ଦୃଢ଼ତର ହୋଇଥିଲା।

ମଝିରେ ମଝିରେ 'ପ୍ରଜାତନ୍ତ୍ର' ଅଫିସ୍ ଗଲେ ଜାନକୀବାବୁଙ୍କ ସହ ଦେଖାହୁଏ। କିନ୍ତୁ କଥାବାର୍ତ୍ତା କରିବାର ସୁଯୋଗ ମିଳେ ନାହିଁ। କିନ୍ତୁ ୧୯୫୬ ମସିହା ସୀମା ଆନ୍ଦୋଳନବେଳେ ସେ ସୁଯୋଗ ଆସିଗଲା। ଖ୍ରୀଷ୍ଟ କଲେଜ ଛାତ୍ର ୟୁନିୟନର ସଭାପତି ଏବଂ ନିଖିଳ ଉତ୍କଳ ଛାତ୍ର

ୟୁନିୟନ୍ ସଭାପତି ଭାବରେ ସଢ଼େଇକଳା-ଖରସୁଆଁ ମିଶ୍ରଣ ଦାବିରେ ଯେଉଁ ଐତିହାସିକ ଛାତ୍ର ଆନ୍ଦୋଳନ ଗଢ଼ି ଉଠିଥିଲା, ମୁଁ ତା'ର ନେତୃତ୍ୱ ନେଇଥିଲି। ଆନ୍ଦୋଳନ ପରିଚାଳନା ପାଇଁ ନିୟମିତ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହ ବିଚାର-ବିମର୍ଶ ହେଉଥିଲା। 'ପ୍ରଜାତନ୍ତ୍ର' ସରକାରୀ ସମର୍ଥକ କଂଗ୍ରେସ୍ କାଗଜ ହେଲେ ମଧ୍ୟ ସରକାର ବିରୋଧୀ ସୀମା ଆନ୍ଦୋଳନକୁ ଜାନକୀବାବୁ ଦୃଢ଼-ସମର୍ଥନ ଜଣାଉଥିଲେ। ଆନ୍ଦୋଳନକୁ ତେଜେଇ ରଖିବାପାଇଁ ଛାତ୍ରୟୁନିୟନ ସାଧାରଣ ସମ୍ପାଦକ ଭାବରେ ମୋର ଦୁଇଟି ଆବେଦନ ପ୍ରଚାରପତ୍ର ନିଜ ଖର୍ଚ୍ଚରେ ଛାପି ସେ ବିଭିନ୍ନ କଲେଜକୁ ପଠାଇବା ବ୍ୟବସ୍ଥା କରିଦେଇଥିଲେ। ସେତିକିବେଳେ ତାଙ୍କ ସହ ମୋର ଘନିଷ୍ଠତା ଏକପ୍ରକାର ଆତ୍ମୀୟତାରେ ପରିଣତ ହୋଇଯାଇଥିଲା।

ସାମ୍ବାଦିକତା ଛାଡ଼ି ଜାନକୀବାବୁ ନିର୍ବାଚନ ରାଜନୀତିରେ ପ୍ରବେଶ କରିଥିଲେ ଏବଂ କଂଗ୍ରେସ ଟିକେଟରେ ଲୋକସଭାକୁ ନିର୍ବାଚିତ ହୋଇ ୧୯୭୩-୧୯୭୭ ଏବଂ ୧୯୮୦ ମସିହାର ପ୍ରଥମାର୍ଦ୍ଧରେ ଇନ୍ଦିରାଗାନ୍ଧିଙ୍କ ମନ୍ତ୍ରିମଣ୍ଡଳରେ କେନ୍ଦ୍ରମନ୍ତ୍ରୀ ଥିଲେ। ସେହିପରି ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ ୧୯୮୦-୮୯ରେ ୧୯୯୫ ରୁ ୧୯୯୯ ମସିହା ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରିଥିଲେ। କେନ୍ଦ୍ରମନ୍ତ୍ରୀ ଏବଂ ମୁଖ୍ୟମନ୍ତ୍ରୀ ଥିବାବେଳେ ଓଡ଼ିଶାର କୃଷି, ଶିଳ୍ପ, ଶିକ୍ଷା, ସଂସ୍କୃତିର ବିକାଶ ପାଇଁ ସେ ଯାହା କରିଛନ୍ତି ତାହା ଇତିହାସ ହୋଇଗଲାଣି। ସେ ସମ୍ପର୍କରେ ଅନେକ ପୁସ୍ତକ, ପ୍ରବନ୍ଧ, ନିବନ୍ଧ ମଧ୍ୟ ଲେଖା ହୋଇଛି। କିନ୍ତୁ ଓଡ଼ିଆ ଭାଷାକୁ ସରକାରୀ ସ୍ତରରେ ବ୍ୟବହାର କରିବାପାଇଁ ତାଙ୍କର ଅସମ୍ଭବ ଜିଦ୍ ଏବଂ ଓଡ଼ିଆ ଭାଷା-ସାହିତ୍ୟକୁ ଓଡ଼ିଶାର ସୀମାନ୍ତ ଅଞ୍ଚଳରେ, ପ୍ରଚାରିତ, ପ୍ରସାରିତ କରିବାପାଇଁ ଓଡ଼ିଶା ଲେଖକ-ସାମ୍ମୁଖ୍ୟ ଦଶରାରେ ସାହିତ୍ୟ ଉତ୍ସବ ଆୟୋଜନ କରିବା ଲାଗି ତାଙ୍କର ଆନ୍ତରିକ ନିଷ୍ଠା, ଆଲୋଚକମାନଙ୍କର ଦୃଷ୍ଟିର ଅନ୍ତରାଳରେ ରହିଯାଇଛି।

ରାଜନୀତିଜ୍ଞ ଜାନକୀବଲ୍ଲଭଙ୍କ ଅପେକ୍ଷା ସାହିତ୍ୟିକ, ସମ୍ପାଦକ, ଅନୁବାଦକ ସର୍ବୋପରି ବିଜ୍ଞ, ଅଭିଜ୍ଞ, ବିଦ୍ୱାନ୍ ଜାନକୀବାବୁଙ୍କ ପ୍ରତି ମୋର ଥିଲା ଅପରିସୀମ ଶ୍ରଦ୍ଧା ଓ ସମ୍ମାନ। କାବ୍ୟ କବିତା, ପ୍ରବନ୍ଧ, ରାମାୟଣ, ମହାଭାରତ, ଶ୍ରୀମଦ୍ ଭାଗବତ ରଚନା ଠାରୁ ଆରମ୍ଭ କରି ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସର ଅନୁବାଦ ପର୍ଯ୍ୟନ୍ତ– ସୃଜନ, ଅନୁସୃଜନ କ୍ଷେତ୍ରରେ ସେ ଥିଲେ ଜଣେ ସବ୍ୟସାଚୀ ସାହିତ୍ୟିକ। କିନ୍ତୁ କୌଣସି ନା କୌଣସି କାରଣରୁ ଆତ୍ମଜୀବନୀ ଲେଖିବାପାଇଁ ତାଙ୍କର ଆଗ୍ରହର ଅଭାବ ଥିଲା। ଆତ୍ମଜୀବନୀ ଲେଖିବା କଥା କହିଲେ ସମୟ ନାହିଁ ବୋଲି କହି ସେ ଏଡ଼ାଇ ଯାଉଥିଲେ।

ଆସାମର ରାଜ୍ୟପାଳ ହୋଇ ଗୌହାଟି ଚାଲିଗଲାପରେ ଆତ୍ମଜୀବନୀ ଲେଖିବା ପାଇଁ ମୁଁ ତାଙ୍କ ଉପରେ ଏକପ୍ରକାର ଚାପ ପ୍ରୟୋଗ କରିଥିଲି। ସମୟ ନାହିଁ ବୋଲି କହିବାପାଇଁ ତାଙ୍କର ଯୁକ୍ତି ନ ଥିଲା, ସେ ଏକପ୍ରକାର ରାଜି ହୋଇଥିଲେ।

୨୦୧୧ ମସିହାରେ ଅନ୍ଧ-କନ୍ଧ କବି ଭୀମ ଭୋଇଙ୍କ ଭକ୍ତି-ସାହିତ୍ୟ ସମ୍ପର୍କରେ କେନ୍ଦ୍ର ସାହିତ୍ୟ ଏକାଡେମୀ ତରଫରୁ ଏକ ଜାତୀୟ ଆଲୋଚନା ଚକ୍ରର ଆୟୋଜନ କରାଗଲା। ଜାନକୀବାବୁଙ୍କୁ ସେହି ସେମିନାର ଉଦ୍‌ଘାଟନ କରିବାପାଇଁ ମୁଁ ରାଜି କରାଇନେଇଥିଲି।

ସେମିନାର ଉଦ୍‌ଘାଟନୀ ଉତ୍ସବରେ ମଞ୍ଚ ଉପରେ ସଭାପତି ସୁନୀଲ ଗଙ୍ଗୋପାଧ୍ୟାୟ, ଏକାଡେମୀର ସଚିବ କୃଷ୍ଣ ମୂର୍ତ୍ତି, ମୁଖ୍ୟବକ୍ତା ସୀତାକାନ୍ତ ମହାପାତ୍ର, ଓଡ଼ିଆ ଭାଷା ପରାମର୍ଶଦାତା କମିଟିର ଆବାହକ ଭାବରେ ମୋ ସହିତ ଉଦ୍‌ଘାଟକ ଜାନକୀବଲ୍ଲଭ ପଟ୍ଟନାୟକ ଆସନ ଗ୍ରହଣ କରିବା କଥା, ବିଧି ଅନୁସାରେ ମହାମହିମ ରାଜ୍ୟପାଳଙ୍କ ପାଇଁ ଅଲଗା ସିଂହାସନର ବ୍ୟବସ୍ଥା କରାଯାଇଥିଲା। ଉଦ୍‌ଘାଟନ କରିବାପାଇଁ ଜାନକୀବାବୁ ମଞ୍ଚ ଉପରକୁ ଆସିଲାବେଳେ ମୁଁ ତାଙ୍କୁ ଯେତେବେଳେ ତାଙ୍କ ସିଂହାସନ ଆଡ଼କୁ ପାଛୋଟି ନେଲି, ମୋ ମୁହଁକୁ କଟମଟ କରି ଅନେଇ କହିଲେ–ଇଏ କ'ଣ ? ମୁଁ ଏଠାକୁ ରାଜ୍ୟପାଳ ଭାବରେ ଆସି ନାହିଁ, ଲେଖକ ଭାବରେ ଆସିଛି।

ତା'ପରେ ତାଙ୍କ ସିକ୍ୟୁରିଟି ଅଫିସରକୁ ସ୍ୱତନ୍ତ୍ର ସିଂହାସନ ଉଠାଇ ନେବାକୁ କହି ସୁନୀଲ ଗଙ୍ଗୋପାଧ୍ୟାୟ ପାଖରେ ଏକ ପ୍ଲାଷ୍ଟିକ ଚେୟାରରେ ବସିପଡ଼ିଲେ। ଏକାଡେମୀ ସଭାପତି, ସଚିବ ଏବଂ ମୁଁ ଯେତେ ଅନୁରୋଧ କଲେ ମଧ୍ୟ ରାଜ୍ୟପାଳଙ୍କ ପାଇଁ ଉଦ୍ଦିଷ୍ଟ ସିଂହାସନକୁ ଫେରିଲେ ନାହିଁ।

ମୁହୂର୍ତ୍ତ କେତୋଟି ମଧ୍ୟରେ ଜାନକୀବାବୁଙ୍କର ସେହି ଆଚରଣ ରାଜକୀୟ ପରିବେଶକୁ କେବଳ ଏକ ସାହିତ୍ୟିକ ପରିବେଶରେ ରୂପାନ୍ତରିତ କରିଦେଲା ନାହିଁ, ତାଙ୍କର ଭାବମୂର୍ତ୍ତିକୁ ମଧ୍ୟ ଏକ ଉଜ୍ଜ୍ୱଳ ଉଚ୍ଚତାକୁ ନେଇଯାଇଥିଲା। ଭାରତୀୟ ଭକ୍ତି ସାହିତ୍ୟର ପ୍ରେକ୍ଷାପଟରେ ଶୂନ୍ୟବାଦୀ ସନ୍ଥକବି ଭୀମଭୋଇଙ୍କ ବୈଶିଷ୍ଟ୍ୟ ଦର୍ଶାଇ ସେଦିନ ସେ ଯେଉଁ ଚିନ୍ତା ଉଦ୍ରେକୀ ବକ୍ତବ୍ୟ ରଖିଥିଲେ, ତାହା ଆସାମ, ପଶ୍ଚିମବଙ୍ଗ ଏବଂ ମୈଥିଳୀ ଭାଷାର ସମବେତ ପ୍ରତିନିଧିମାନଙ୍କୁ ମନ୍ତ୍ରମୁଗ୍ଧ କରି ରଖିଥିଲା।

ଉଦ୍‌ଘାଟନୀ ଉତ୍ସବ ଶେଷରେ ରାଜଭବନକୁ ଫେରିଯିବା ଆଗରୁ ମତେ ପାଖକୁ ଡାକି କହିଲେ, ସେମିନାର ଶେଷରେ ତମେ ହୋଟେଲ ଛାଡ଼ି ସସ୍ତ୍ରୀକ ରାଜଭବନକୁ ଚାଲିଆସ। ତମେ ତ ସରକାରୀ ଚାକିରିରୁ ଅବସର ନେଇସାରିଲଣି, ଅନ୍ତତଃ ଗୋଟିଏ ମାସ ମୋ ସହିତ ରୁହ। ତେବେ ଆସାମ, ମେଘାଳୟ, ଅରୁଣାଚଳ ପ୍ରଦେଶରେ ବୁଲାବୁଲି କର। ମୁଁ ସବୁ ବ୍ୟବସ୍ଥା କରିଦେବି। ଆଉ–

ତା'ପରେ ଢୋକ ଗିଳି କହିଲେ–ମତେ ଯେଉଁ ଆତ୍ମଜୀବନୀ ଲେଖିବା କଥା କହୁଥିଲ– ତମେ ରହିଲେ ସେ ବିଷୟରେ ଆଲୋଚନା କରିବା–

ସେ ଏତେ ଆନ୍ତରିକତାର ସହିତ ଏକମାସ ନ ହେଲେ ମଧ୍ୟ ଅନ୍ତତଃ ତାଙ୍କ ସହିତ ଆସାମ ରାଜଭବନରେ ରହିବାକୁ କହୁଥିଲେ ଯେ, ନାହିଁ କରିଦେବା ପାଇଁ ଜିଭ ଲେଉଟି ନ ଥିଲା। କିନ୍ତୁ ତିନି ଦିନ ପରେ ଭୁବନେଶ୍ୱର ଫେରିବାପାଇଁ ରିଟର୍ଣ୍ଣ ଟିକେଟ୍ ହୋଇ ସାରିଥିଲା। ଆଠ ଦିନ ପରେ ନୂଆ ଦିଲ୍ଲୀରେ ଏକାଡ଼େମୀକ କାର୍ଯ୍ୟକାରୀ କମିଟି ବୈଠକରେ ଯୋଗଦେବାକୁ ଥିଲା, ତଥାପି ସେମିନାର ପରେ ଆସାମ, ମେଘାଳୟ, ନାଗାଲାଣ୍ଡ୍ ବୁଲି ଦେଖିବି ବୋଲି ଯେଉଁ ତିନିଦିନ ହାତରେ ରଖିଥିଲି, ସେତିକି ଦିନ ଗୌହାଟି ବିଶ୍ୱବିଦ୍ୟାଳୟରୁ ଓଡ଼ିଶା M.I.L. ଅଧ୍ୟାପିକା ଜ୍ୟୋତ୍ସ୍ନା ରାଉତ ବିଶ୍ୱାଳ ଏବଂ ତାଙ୍କ ସ୍ୱାମୀ ପୋଲିସ୍ I.G. ଅଜୟ ରାଉତଙ୍କ ଅତିଥି ଭାବରେ ରହିବାପାଇଁ କଥା ଦେଇସାରିଥିଲି। ଜ୍ୟୋତ୍ସ୍ନା ଆମ ଜଗତସିଂହପୁରର ଝିଅ। ସେ କହିଲା–

ଆପଣ ଯଦି ରାଜଭବନରେ ରହିବେ ସରକାରୀ ପ୍ରୋଟୋକଲ ମାନି ଆପଣଙ୍କୁ ଚଳିବାକୁ ପଡ଼ିବ। ସେଠାରେ ରହିଲେ ଆପଣଙ୍କ ସହିତ ମୋର ଦେଖା କରିବା କଷ୍ଟକର ହେବ। ଜ୍ୟୋସ୍ନା ଏବଂ ଅଜୟବାବୁଙ୍କ ଅତିଥି ହୋଇ ରହିବି ବୋଲି ଜାଣିଲା ପରେ ଜାନକୀବାବୁ ଆପତ୍ତି କଲେ ନାହିଁ, ସେଦିନ ରାଜଭବନରେ ତାଙ୍କ ସହିତ ରାତ୍ରିଭୋଜନ କରିବାପାଇଁ ଆମନ୍ତ୍ରଣ କଲେ।

ସମୁଚ୍ଚ ପାହାଡ଼ ଉପରେ ନିର୍ମିତ ଆସାମର ରାଜଭବନରେ ଜାନକୀବାବୁ ପାଦ ରଖିଲାପରେ ରାଜଭବନ ଉତ୍କଳ କଳାଭବନରେ ପରିଣତ ହୋଇଥିଲା। ନିୟମିତ ରାଜଭବନ ଅଡିଟୋରିୟମରେ ଓଡ଼ିଶାର ଶିଳ୍ପୀ କଳାକାରମାନଙ୍କୁ ଡାକି ଓଡ଼ିଶୀ ନୃତ୍ୟ, ସଙ୍ଗୀତ, ଭଜନ, କୀର୍ତ୍ତନ, ଗୋଟିପୁଅ, ଦାସକାଠିଆ ପରିବେଷଣ କରାଯାଉଥିଲା। ମୁଁ ଯେଉଁଦିନ ରାତ୍ରିଭୋଜନ ପାଇଁ ଯାଇଥିଲି ସେଦିନ ରାଜଭବନ ଅଡ଼ିଟୋରିୟମରେ ରାବଣ ଛାୟା ମଞ୍ଚସ୍ଥ ହୋଇଥିଲା। ଆସାମରେ ରହଣି କାଳ ମଧ୍ୟରେ ଜାନକୀବାବୁ ଅହମିୟା ଏବଂ ଓଡ଼ିଆ କଳା, ସଂସ୍କୃତି, ଭାଷା ଓ ସାହିତ୍ୟ ମଧ୍ୟରେ ସମନ୍ୱୟ ସ୍ଥାପନପାଇଁ ସ୍ଥପତିର ଭୂମିକା ପାଳନ କରିଥିଲେ।

ରାବଣଛାୟା ଦେଖିବା ଭିତରେ ଆତ୍ମଜୀବନୀ ପ୍ରସଙ୍ଗ ମୁଁ ଉତ୍ଥାପନ କରିଥିଲି। ସେ କହିଥିଲେ–ହାତରେ ସମୟ ଥିଲେ କେବଳ ଆତ୍ମଜୀବନୀ ଲେଖିବାର ମାନସିକତା ତିଆରି ହୋଇପାରେ ନାହିଁ। ରାଜଭବନରେ ବହି ପଢ଼ିବାରେ ସମୟ କଟିଯାଉଛି। କିନ୍ତୁ ଏକଥା ନୁହେଁ ଯେ ଆତ୍ମଜୀବନୀ ଲେଖିବା କଥା ମୋଟେ ଭାବୁ ନାହିଁ। ଭାବୁଛି, କିନ୍ତୁ କେଉଁଠୁ ଆରମ୍ଭ କରିବି, କେଉଁଠି ଶେଷ କରିବି, କେଉଁ କଥା ଲେଖିବି, କେଉଁ ଘଟଣା ବାଦ୍ ଦେବି, ସେ କଥା ଠିକ୍ କରିପାରୁ ନାହିଁ। ସେଥିପାଇଁ ଚାହୁଁଥିଲି–ତମେ ଏଠାରେ କିଛିଦିନ ରହିଗଲେ–ଭାବୁଥିଲି।

ତା'ପରେ ବାକ୍ୟ ସମ୍ପୂର୍ଣ୍ଣ ନ କରି ରହିଗଲେ।

ଖାଇବାପାଇଁ ଟେବୁଲକୁ ଯିବା ଆଗରୁ ସ୍ମିତ ହସି କହିଥିଲେ--ମୁଁ କ୍ଷମତାରେ ଥିଲାବେଳେ ତମେ ମୋ ଠାରୁ କେବେ କିଛି ଚାହିଁ ନାହଁ। ଆଜି ମୋ ସାଙ୍ଗରେ ଏଠାରେ କିଛିଦିନ ରହିବାପାଇଁ ତମକୁ କହୁଛି ବୋଲି ମନରେ ଅନ୍ୟଥା କିଛି ଭାବ ନାହିଁ।

ମୁଁ ଅପ୍ରସ୍ତୁତ ହୋଇ ତାଙ୍କୁ ବାଧା ଦେଇ କହିଥିଲି–ଆପଣ ଏ ସବୁ କ'ଣ କହୁଛନ୍ତି ? ଓଡ଼ିଆ ଭାଷା, ସାହିତ୍ୟର ବିକାଶରେ ଆପଣଙ୍କ ଅତୁଳନୀୟ ଅବଦାନ ଏବଂ ମୋ ଲେଖକ ଜୀବନର ଆରମ୍ଭରେ ଆପଣଙ୍କ ଉତ୍ସାହ ମୁଁ କୌଣସିଦିନ ଭୁଲିପାରିବି ନାହିଁ। ଡକ୍ଟର ମହତାବଙ୍କ ପରେ ଆପଣହିଁ ହେଉଛନ୍ତି ଓଡ଼ିଆ ଭାଷା, ସାହିତ୍ୟର ଅଭିଭାବକ। ଯଦି ମୋର ଉପସ୍ଥିତି ଆତ୍ମଜୀବନୀ ଲେଖାରେ ଆପଣଙ୍କୁ ସାହାଯ୍ୟ କରିବ ବୋଲି ଆପଣ ଭାବୁଛନ୍ତି, ମୁଁ କଥା ଦେଉଛି– ସାହିତ୍ୟ ଏକାଡେମୀ ଦାୟିତ୍ୱରୁ ଅବ୍ୟାହତି ନେଲା ପରେ ଏ ରାଜଭବନରେ ଆପଣଙ୍କ ସହିତ ଅନ୍ତତଃ ଗୋଟିଏ ମାସ କଟାଇବି।

କଥା ଦେଇଥିଲି କିନ୍ତୁ କଥା ରଖିପାରି ନ ଥିଲି। ମୁଁ ଗୌହାଟି ଯିବାପୂର୍ବରୁ ସେ ରାଜଭବନ ଛାଡ଼ି ଓଡ଼ିଶା ଫେରିଆସିଥିଲେ ଏବଂ ଗତବର୍ଷ ଅକ୍ଷୟତୃତୀୟା ଦିନ ଅର୍ଦ୍ଧଶତାବ୍ଦୀ ଓଡ଼ିଶା ଇତିହାସର ଅଧିନାୟକ ଏପାରିରେ ଆମକୁ ଛାଡ଼ି ସେପାରିକୁ ଚାଲିଗଲେ।



# ଜାନକୀବଲ୍ଲଭ-ସାର୍ଥକନାମା ସଫଳକାମା

ଶରତ କୁମାର କର

ଜାନକୀବଲ୍ଲଭ ପଟ୍ଟନାୟକ ସାମ୍ବାଦିକ, ସାହିତ୍ୟିକ, ଅଧ୍ୟାତ୍ମଚେତାଲେଖକ, ବିଚକ୍ଷଣ ରାଜନେତା ଓ କୂଟନୀତିରେ ଧୁରୀଣ ଭାବରେ ଓଡ଼ିଶାରେ ଓ ଭାରତରେ ବେଶ୍ ପରିଚିତ। ଦୀର୍ଘଜୀବନରେ ବହୁପ୍ରକାର ବ୍ୟକ୍ତି, ଘଟଣା, ପରିସ୍ଥିତି ଓ ପରିବେଶ ମଧ୍ୟରେ ସେ ଗତି କରିଥିବେ ଓ ନାନା ସମସ୍ୟା ଓ ସଙ୍କଟର ମଧ୍ୟ ସାମ୍ନା କରିଥିବେ। ତାଙ୍କର ଆଦର୍ଶ ଅନୁସାର ଇଚ୍ଛା ଓ ସ୍ୱପ୍ନସବୁକୁ ଜୀବଦ୍ଦଶାରେ ସେ ସଫଳ କରିପାରିଥିଲେ କି ଆଉ କିଛି ତାଙ୍କର ଅତୃପ୍ତ ଆଶା, କାମନା ରହିଗଲା। ତାହା ସେ ନିଜେ ହିଁ ଜାଣିଥିବେ। ତାଙ୍କର ଏକାନ୍ତ ନିଜର ଆତ୍ମଜ ଓ ଆତ୍ମଜା ତାଙ୍କ ସ୍ୱପ୍ନ-କାମନାର ସୂଚନା ପାଇଥାଇପାରନ୍ତି; କିନ୍ତୁ ଆମେ ଜନସାଧାରଣ ବିଶେଷକରି ତାଙ୍କର ଲମ୍ବା ଗତିବିଧି କାର୍ଯ୍ୟକ୍ରମକୁ ଦୂରରୁ ଦେଖିଆସିଥିବା ମୋ ଭଳି ତାଙ୍କ ସଂପର୍କରେ (ମୁଁ ସ୍କୁଲ ଛାତ୍ର ଥିବା ଅବସ୍ଥାରୁ ତାଙ୍କ ସହ 'ପ୍ରଜାତନ୍ତ୍ର' କାର୍ଯ୍ୟାଳୟରେ ସଂପର୍କରେ ଆସିଛି) କିଛି କିଛି ଜାଣିଥିବା ପର୍ଯ୍ୟବେକ୍ଷକଙ୍କ ଧାରଣାରେ ସ୍ୱର୍ଗତ ଜାନକୀବଲ୍ଲଭ ପଟ୍ଟନାୟକ ଏକ ସଫଳ ବ୍ୟକ୍ତିତ୍ୱ। ଯେଉଁ କାର୍ଯ୍ୟରେ ହାତ ଦେଇଛନ୍ତି ସେ ତାଙ୍କ ଇଚ୍ଛା ମୁତାବକ ନେଇ ଆଣି ଥୋଇ ଜାଣି ଯଥେଷ୍ଟ ସଫଳତା ଅର୍ଜନ କରିଛନ୍ତି।

ଜୀବନର ଉତ୍ଥାନ ପତନ, ଝଡ଼ଝଞ୍ଜାକୁ ସେ ଯେଭଳି ପାର ହୋଇଯାଇ ସଫଳତାର ଶିଡ଼ି ଚଢ଼ି ଚଢ଼ି ଆଗେଇ ଯାଇଛନ୍ତି, ସେଭଳି ଉଦାହରଣ କ୍ୱଚିତ ଲୋକଙ୍କ ଜୀବନରେ ଘଟେ। କେହି ତାଙ୍କୁ ରାଜନୈତିକ ସାପ ଶିଢ଼ି ଲୁଡୁ ଖେଳରେ ସାପ ମୁହଁରେ ପଡ଼ି ୯୯ରୁ ୨କୁ ଖସାଇପାରି ନାହାନ୍ତି। ଛୋଟ ଛୋଟ ସାପ ମୁହଁରେ ପଡ଼ିଥିଲେ ବି ସେଗୁଡ଼ିକ ଗତାନୁଗତିକ, ତାକୁ ସେ ସମ୍ଭାଳି ନିଅନ୍ତି। ସଫଳତାର ଶିଡ଼ି ବାରମ୍ବାର ଚଢ଼ି ସେ ଆଗକୁ ଆଗକୁ, ଉପରକୁ ଉପରକୁ ଯାଇଛନ୍ତି ଓ ଉଠିଛନ୍ତି। ତାଙ୍କର ବହୁ ଗଣ୍ୟମାନ୍ୟ, ସାଧାରଣ, ଅସାଧାରଣ, ସାହିତ୍ୟିକ, ଆଧ୍ୟାତ୍ମିକ, ସେବାକାରୀ, ସାହାଯ୍ୟକାରୀ, ପ୍ରଶାସକମାନଙ୍କ ସହ ବ୍ୟକ୍ତିଗତ ସଂପର୍କ ଯୋଗୁଁ, ସେ ଏକଦା ବିରୋଧୀମାନଙ୍କୁ ବଶ କରିବା ବା ସଂପୂର୍ଣ୍ଣ ନିଷ୍କ୍ରିୟ କରିଦେବାରେ ପାରଙ୍ଗମତା ଦେଖାଇ ନିଜେ ନିଜର ସାରଥି ଓ ନିଜେ ନିଜପାଇଁ ଯୋଦ୍ଧା ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି।

ଏହି ମନ୍ତବ୍ୟ ଦେବାରେ ମୋର ବ୍ୟକ୍ତିଗତ ଓ ମୋର ସଂପର୍କ ଥିବା ଅନେକ ବ୍ୟକ୍ତିଗତ ବନ୍ଧୁମାନଙ୍କର ମତାମତ ଅନୁସାରେ ମୁଁ ତାଙ୍କୁ ଅନୁଶୀଳନ କରିଛି। ସଭାରେ, ମଞ୍ଚରେ ଆପାତ ବିରୋଧାଭାଷ ଥିଲେ ହେଁ (ସମୟ ସମୟରେ, ସବୁବେଳେ ନୁହେଁ)

ତାଙ୍କର ବ୍ୟକ୍ତିତ୍ୱର ମୁଁ ପ୍ରଶଂସକ ଏହା ତାଙ୍କୁ ସିଧାସଳଖ କହିଛି। ଅଥଚ ମୁଁ ଅନୁଭବ କରିଛି ସେ ମୋ କଥାକୁ ସହଜ ଭାବରେ ବିଶ୍ୱାସ ହୁଏତ କରୁ ନ ଥିଲେ। ଏହା ହୁଏତ ଠିକ୍। କାରଣ ଯେକୌଣସି ପରିଚିତ ଅପରିଚିତ ବ୍ୟକ୍ତିକୁ ସରଳ ଭାବରେ ବିଶ୍ୱାସ କରିବା ଉଚିତ ନୁହେଁ। ଏହା ହୁଏତ ବିଚକ୍ଷଣ କୂଟନୀତିର ଲକ୍ଷଣ, ଯାହା ତାଙ୍କ ପାଖରେ ଥିଲା। ମୋ ପାଖରେ ତା'ର ଅଭାବ ଯୋଗୁଁ ମୁଁ ବହୁତ ଠିକିଛି। କିନ୍ତୁ ମୋର ସ୍ୱଭାବରେ ଏଇ ଅଭାବଟା ହିଁ ମୋର ଦୁର୍ବଳତା। ତେଣୁ ସେ ଶତକଡ଼ା ୧୦୦ ନ ହେଲେ ବି ୯୫ ଭାଗ ବିଚକ୍ଷଣ ରାଜନୀତିଜ୍ଞ। ସେ ଓଡ଼ିଆ ଭାଷା, ସଂସ୍କୃତ, ସଂସ୍କୃତି, ଆଧ୍ୟାତ୍ମିକ ଚେତନା, ସାମ୍ବାଦିକତା, ଲୋକସଂପର୍କ, ସ୍ନାତକୋତ୍ତର ରାଜନୀତିବିଜ୍ଞାନ ଡିଗ୍ରୀଧାରୀ ଭାବେ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ। ଏହିଭଳି ଯୋଗ୍ୟତାଧାରୀ ଭାରତର କେତେକ ବିଶିଷ୍ଟ ନେତା ଓ ବ୍ୟକ୍ତିବିଶେଷଙ୍କ ପ୍ରଭାବ ମୋ ଉପରେ ମଧ୍ୟ ପଡ଼ିଛି (ଜାନକୀବାବୁଙ୍କ ପ୍ରଭାବ ସମେତ)।

ତାଙ୍କ ସହ ମୋର କେତେକ ବିଶେଷ ପରିସ୍ଥିତିରେ ଆଳାପ-ଆଲୋଚନା ଓ ସ୍ଥଳବିଶେଷରେ ପ୍ରତ୍ୟକ୍ଷ ଓ ପରୋକ୍ଷରେ ଦ୍ୱନ୍ଦ୍ୱ ହୋଇଥାଏ। ତା' ସତ୍ତ୍ୱେ ଆମର ସଂପର୍କରେ ଯେପରି କୌଣସି ମଳିନତା ନ ପଡ଼େ, ତାହା ସେ ପ୍ରଦର୍ଶନ କରିଛନ୍ତି ଓ ମୁଁ ତାଙ୍କୁ ବୟସ, ଜ୍ଞାନ, ପ୍ରତିଷ୍ଠା ଦୃଷ୍ଟିରୁ କେବେ ଅସମ୍ମାନ କରି ନାହିଁ। କେବଳ ରାଜନୈତିକ ମଞ୍ଚରେ ଭାଷା, ବକ୍ତୃତା, ତର୍କ ଦୃଷ୍ଟିରୁ ଉତ୍ତର-ପ୍ରତ୍ୟୁତ୍ତର ଛଳରେ ଯାହା କିଛି ଘଟଣା ଘଟିଛି—ତା'ର କୌଣସି ସ୍ଥାୟୀ ପ୍ରଭାବ ନ ଥାଏ। ତାହା କ୍ରୀଡ଼ାବିତ୍‌ମାନଙ୍କର 'Sportsman's spirit' ଭାବରେ ଆମେ ଗ୍ରହଣ କରିଥାଉ।

ମୋର ତାଙ୍କ ସହ ଅନେକ ଏକାନ୍ତ ଅନୁଭୂତି ଏ କ୍ଷୁଦ୍ର ରଚନାରେ ଦେଇହେଉନି। ବାରାନ୍ତରେ ପରେ ମୁଁ ଲେଖିବି କିନ୍ତୁ ବକ୍ତୃତା, ଆଲୋଚନା ଛଳରେ ବନ୍ଧୁମାନଙ୍କୁ ପ୍ରାୟ କହିଛି। ମୁଁ ଛାତ୍ର ଅବସ୍ଥାରେ ଯଥାକ୍ରମେ ଶ୍ରୀହର୍ଷ ମିଶ୍ର ଓ ଚିନ୍ତାମଣି ପାଣିଗ୍ରାହୀଙ୍କ ପାଖରୁ ସ୍ୱତନ୍ତ୍ର ପ୍ରତିନିଧି (ପ୍ରଜାତନ୍ତ୍ର) Eastern Timesର Rotating Representative ଭାବରେ ଅଧିକାର ପାଇ ଉଭୟ ପତ୍ରିକାପାଇଁ ରାଜନୈତିକ, ସାମାଜିକ Story (ବକ୍ତବ୍ୟ) ଦେଇଛି। ଯାହା ଜାନକୀବାବୁ ଓ ସ୍ୱୟଂ ଡକ୍ଟର ମହତାବ ପ୍ରଶଂସା କରିଛନ୍ତି।

ମୁଁ ଯେତେବେଳେ ପ୍ରତ୍ୟକ୍ଷ ରାଜନୀତି କଂଗ୍ରେସ (ଅଖିଳ ଭାରତ)ରେ ପ୍ରବେଶ କରି ସଂଗଠନ କଲି ଓ ୧୯୬୭ରେ ମାହାଙ୍ଗାରେ ପ୍ରାର୍ଥୀ ହେଲି। ସେତେବେଳକୁ ଗୁରୁ, ଶିଷ୍ୟ (ମହତାବବାବୁ ଓ ଜାନକୀବାବୁ) ଜନକଂଗ୍ରେସ ନେତା ଓ ବିଧାନସଭା ପ୍ରାର୍ଥୀ। ତେଣୁ ନାନା ମତମତାନ୍ତର କଥା କଟାକଟି ଘଟିଛି। ଅବଶ୍ୟ ବେଶୀ ଡକ୍ଟର ମହତାବଙ୍କ ସହ। ତଥାପି ସେ ସମୟରେ ମୁଁ କଟକ ଜିଲ୍ଲା କଂଗ୍ରେସର ସଂପାଦକ ଥାଇ ତାଙ୍କୁ ସ୍ୱରାଜ ଆଶ୍ରମକୁ ବକ୍ତାଭାବେ ନିମନ୍ତ୍ରଣ କରିଥିଲି ତାଙ୍କ ରୁଷ ଗସ୍ତର ବିବରଣୀ କଂଗ୍ରେସକର୍ମୀଙ୍କୁ ଶୁଣାଇବାକୁ 'ପ୍ରଜାତନ୍ତ୍ର' ସଂପାଦକ ଭାବେ। ଯଦିଚ ସେତେବେଳେ ଜନକଂଗ୍ରେସ ମୁଖ୍ୟ ନେତା ମହତାବବାବୁଙ୍କ କାଗଜରେ ସେ ଥିଲେ ସମ୍ପାଦକ। ଏଭଳି ଉଦାରତା ଓ ବୁଦ୍ଧିଜୀବୀର

ମାନ୍ୟତା ତାଙ୍କ ପାଖରେ ଥିଲା। ମୋର ମଧ୍ୟ ତାଙ୍କପ୍ରତି ଦଳୀୟ ରାଜନୀତି ଊର୍ଦ୍ଧ୍ୱରେ ସମ୍ମାନ ଥିଲା। ରାଜନୈତିକ ଜୀବନ ଓ ସାଧାରଣ ଜୀବନରେ ଥାଇ ମୁଁ ଜାନକୀବାବୁ ଓ ମହତାବବାବୁଙ୍କର ବିପରୀତ ରାଜନୈତିକ ଦଳ (ବିଜୁବାବୁଙ୍କ ନେତୃତ୍ୱରେ କଂଗ୍ରେସ)ର ମୁଖପାତ୍ର, ମୁଖ୍ୟବକ୍ତା, ମୁଖ୍ୟ ପ୍ରଚାରକ ଭାବେ ମୁକାବିଲା କରିଛି, ଜନସାଧାରଣଙ୍କର ପ୍ରଶଂସା ଓ ତାଙ୍କ କାଗଜରେ ନିନ୍ଦା ପାଇଛି ତାହା ମୋ ଜୀବନର ବିଚିତ୍ର ଅନୁଭୂତି। ଠିକ୍ ସେହିପରି ମହତାବଙ୍କ ସହ ରାଜନୈତିକ ଏକାତ୍ମତା ହେବାପରେ ସେ ମୋର ବହୁ ପ୍ରଶଂସା କରି 'ପ୍ରଜାତନ୍ତ୍ର'ର ସଂପାଦକ ଜାନକୀବାବୁ ଓ ସାମ୍ବାଦିକମାନଙ୍କୁ ମୋ ସମ୍ମୁଖରେ କହିଛନ୍ତି– "ଶରତବାବୁ ପ୍ରତି ଆମେ ବହୁତ ଅନ୍ୟାୟ କରିଛୁ ତାଙ୍କୁ full publicity ଦିଆଯାଉ। ସେ ଜଣେ ଦକ୍ଷ ରାଜନୈତିକ ବକ୍ତା, ତାର୍କିକ ଓ ତାଙ୍କ ଯୁକ୍ତିରେ ରାଜନୀତିବିଜ୍ଞାନ ଭରପୂର ହୋଇଥାଏ।" ଏ ପ୍ରଶଂସା ମୁଁ ଜୀବନରେ ଭୁଲିବି ନାହିଁ। ଯଦିଚ ମୋର ଉତ୍ତର ଥିଲା– "ଆପଣଙ୍କର ସମାଲୋଚନା ମୋ ପ୍ରତି, ପୁଣି ପ୍ରଜାତନ୍ତ୍ରରେ ମତେ ଓଡ଼ିଶାର ଜନସାଧାରଣଙ୍କ ପାଖରେ ଖୁବ୍ ପରିଚିତ ଓ ବଳିଷ୍ଠ କରିଦେଇଥିଲା ମୋର ଯୁବାବସ୍ଥାରେ, ସେଥିପାଇଁ ମୁଁ ବରଂ କୃତଜ୍ଞ।" (ଏହା ୧୯୬୭ ଠାରୁ ୭୧, ୭୨, ୭୩ ବେଳର ଘଟଣା)।

ଏହାପରେ ଡକ୍ଟର ମହତାବଙ୍କ ଗାଡ଼ି ବହୁଦିନଧରି କଲିକତା ମରାମତି ହେବାକୁ ଯାଇଥିବାରୁ ମୁଁ ଫିଆଟ୍ ଗାଡ଼ି ଚଳାଇ ତାଙ୍କୁ ପ୍ରତିଦିନ ଏକାମ୍ର ନିବାସରୁ ପ୍ରଜାତନ୍ତ୍ର ଅଫିସ ନେଇଯାଏ ଦିନ ୨ଟାରୁ ୩ଟା ବେଳ ଯାଏ। ପରେ କାଗଜ ବାହାରିବା ପରେ ସନ୍ଧ୍ୟାରେ ଆସୁ। ବାଟରେ ମୋତେ ତାଙ୍କର ଅମାୟିକ, ଅଯାଚିତ ରାଜନୈତିକ ଓ ଅନ୍ୟାନ୍ୟ ପରାମର୍ଶ ଦିଅନ୍ତି ଭୀଷ୍ମ ପିତାମହ ଭଳି। ଏଭଳି ଜାନକୀବାବୁ ଓ ତାଙ୍କ ଗୁରୁ ଓ ତାଙ୍କ କାଗଜ ସହ ମୋର ସଂପର୍କ। ସେ ସମ୍ପର୍କ ସୂତ୍ର ମୁଁ ଜାଣେ ଯେ ମହତାବବାବୁଙ୍କ ସହ ଜାନକୀବାବୁଙ୍କ ସହ ମୁଁ ଏକାନ୍ତ ସମ୍ପର୍କରେ ଏକଦା ଥିଲି। ଅନ୍ୟାନ୍ୟ ପରେ। ମୁଁ କିନ୍ତୁ ଅନୁଭବ କଲି ଜାନକୀବାବୁ ତାଙ୍କ ନାମ, କାମ ସାର୍ଥକ କରିଛନ୍ତି ତାଙ୍କ ଗୁରୁଙ୍କ ପରି। ବରଂ ଅନେକ କ୍ଷେତ୍ରରେ ମହତାବଙ୍କଠାରୁ ସେ ବଳିଯାଇଛନ୍ତି। ମହତାବବାବୁଙ୍କ ପରି ସେ ସାମ୍ବାଦିକ, ସାହିତ୍ୟିକ, ଲେଖକ, ରାଜନୈତିକ ନେତା, ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ, ରାଜ୍ୟପାଳ। ମାତ୍ର ଗୋଟିଏ ସ୍ଥାନରେ କ୍ଷମତା ଚକ୍ରରେ ବା ମଞ୍ଚରେ ଅଧିକ ସମୟ ଏକାଧାରରେ ରହିବାର (Staying pure) ଧୈର୍ଯ୍ୟ, ସାହସ, ବିଚକ୍ଷଣତା ତାଙ୍କର ଅଧିକ ଥିଲା ନିଶ୍ଚୟ। ସ୍ୱାଧୀନତା ସଂଗ୍ରାମରେ ଅଧିକ ଭାଗ, ଜେଲଦଣ୍ଡ ଭଳି ମହତାବଙ୍କ ପରି ସେ ହୁଏତ ଭୋଗି ନ ଥିଲେ ମଧ୍ୟ ସେଥିରେ ସଂପୃକ୍ତ ଥିଲେ ଓ ତାଙ୍କ ଶ୍ୱଶୁର ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକଙ୍କ ପିତା ନିରଞ୍ଜନ ପଟ୍ଟନାୟକ ଜଣେ ଖ୍ୟାତନାମା ସଂଗ୍ରାମୀ। ସର୍ବୋପରି ପତି-ପତ୍ନୀ ଦୁହେଁ ରାଜନୀତି, ସାହିତ୍ୟଧାରାରେ ଚିରକାଳ ଅବିସ୍ମରଣୀୟ ହୋଇ ରହିବେ।



# ପ୍ରଖ୍ୟାତ ଜାନକୀବାବୁ

ଅନାଦି ସାହୁ

ସଭା ହେଉଥାଏ ସୂଚନା ଭବନରେ (ଏବେ ତା'ର ନାଁ ଜୟଦେବ ଭବନ)। ମୁଖ୍ୟବକ୍ତା ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ। ମୁଁ ଥିଲି ସମ୍ମାନିତ ବକ୍ତା। ଅନ୍ୟ ବକ୍ତା ସେମାନଙ୍କ ବକ୍ତବ୍ୟ ରଖିଲାବେଳେ ମୁଁ ଓ ଶ୍ରୀପଟ୍ଟନାୟକ ଗୋଟାଏ ଓଡ଼ିଆ ଶବ୍ଦ ଉପରେ ଆଲୋଚନା କରୁଥିଲୁ। ସେ ପଦର ମୁଁ ଗୋଟିଏ ଅର୍ଥ କଲାବେଳେ ଶ୍ରୀ ପଟ୍ଟନାୟକ ଅନ୍ୟ ଅର୍ଥ କଲେ। ନିର୍ଣ୍ଣୟ ହେଲା ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ଆଣି ଦେଖିବା। ସଭା ଭିତରେ ଅଣାଗଲା ଭାଷାକୋଷ। ଶ୍ରୀ ପଟ୍ଟନାୟକ ଯେଉଁ ଅର୍ଥ ବାହାର କରିଥିଲେ ତାହା ଠିକ୍ ଥିଲା।

ଏହା ହେଉଛି ବିଦ୍ୱାନ୍ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କର ପ୍ରତିଭା। ମୁଖ୍ୟମନ୍ତ୍ରୀ ହେବା ସତ୍ତ୍ୱେ ସମୟ ବାହାର କରି ସେ ପ୍ରବନ୍ଧ ଲେଖୁଥିଲେ। 'ପୌରୁଷ'ରେ ନିୟମିତ ବାହାରୁଥିଲା 'କୃଷ୍ଣାବତାର'। ଓଡ଼ିଆ ଭାଷାର ପ୍ରୟୋଗରେ ଏତେ ବୁଦ୍ଧିମତ୍ତା ଥିଲା ଯେ କୃଷ୍ଣଙ୍କ ଗୁଣାବଳୀ ଜାଣିବାପାଇଁ କିଛି ଅସୁବିଧା ନ ଥିଲା।

ମୁଁ ଏସ୍.ପି ଥିଲାବେଳେ ତାଙ୍କୁ ଆଣି ଉପହାର ଦେଇଥିଲି ଗରୁଡ଼ ପୁରାଣ। ତିନି ଖଣ୍ଡରେ ଖଣ୍ଡେ ଇଂରାଜୀ ପୁରାଣ। ୟୁନେସ୍କୋ ତାକୁ ପ୍ରକାଶ କରିଥିଲେ। ମୁଁ ଭାବି ନ ଥିଲି ଯେ ତିନିଖଣ୍ଡ ପୁରାଣକୁ ସେ ପଢ଼ିବେ। ପ୍ରାୟ ଦୁଇ ମାସ ପରେ ତାଙ୍କ ସହ ଦେଖାହେଲା। ସେ କହିଲେ, ଉପାଦେୟ ପୁସ୍ତକ ନୁହେଁ। ଆୟୁର୍ବେଦର ସମସ୍ତ ବୃକ୍ଷଲତାକୁ ଏହି ପୁରାଣରେ ସାମିଲ କରିଛନ୍ତି ସ୍ରଷ୍ଟା।

ବିଦ୍ୱାନ୍ ଶ୍ରୀ ପଟ୍ଟନାୟକ ଏକାଧାରରେ ଜଣେ ଲେଖକ, ଜଣେ ବାଗ୍ମୀ, ଜଣେ ଦେଶସେବକ।

ଡାଇରେକ୍ଟର ସ୍ପୋର୍ଟସ୍ ଥିଲାବେଳେ ତାଙ୍କୁ କହିଥିଲି– ଆଦିବାସୀ ପିଲା ଆସି ହକି ହଷ୍ଟେଲରେ ରହୁଛନ୍ତି। ଖରାଛୁଟିରେ ଗାଁକୁ ଯାଉଛନ୍ତି। ଫେରିଲାବେଳେ ସେମାନେ ଦୁଇ ତିନି କେଜି ଓଜନ ହରାଉଛନ୍ତି।

ମୁଖ୍ୟମନ୍ତ୍ରୀ ପଚାରିଲେ– କାହିଁକି ଏମିତି ହେଉଛି ?

କହିଲି ଘରେ ଖାଇବା ଅଭାବ ଯୋଗୁଁ ହେଉଛି।

ସେ କହିଲେ– ପ୍ରତ୍ୟେକ ପିଲାଙ୍କୁ ୫/୭ କେ.ଜି. ଚାଉଳ ଦିଅ। ଗାଁରେ ତାହା ଖାଇବେ।

ତାହା ଦିଆଗଲା। କିନ୍ତୁ ଫଳ କିଛି ହେଲା ନାହିଁ। ସେମାନେ ଫେରିଲା ପରେ ସେହି କମ୍ ଓଜନ।

ମୁଁ ସେମାନଙ୍କୁ କାରଣ ପଚାରିଲି। ଉତ୍ତର ଥିଲା– ଘରର ସମସ୍ତେ ଦୁଇଦିନ ଭିତରେ ସବୁ ଖାଇଦେଲେ।

ମୁଁ ଆଉ ମୁଖ୍ୟମନ୍ତ୍ରୀଙ୍କୁ ଏକଥା କହିଲି ନାହିଁ। ଅଧିକା ସ୍ପୋର୍ଟସ୍ ହଷ୍ଟେଲ କରାଗଲା। ଅଧିକା ପିଲା ରହିଲେ। ଓଡ଼ିଶାରେ ସ୍ପୋର୍ଟସ୍‌ର ଅୟମାରମ୍ଭ ହେଲା। ଜାତୀୟ ଅନ୍ତର୍ଜାତୀୟ କ୍ଷେତ୍ରରେ ଓଡ଼ିଆ ପିଲା ପୁରସ୍କାର ପାଇଲେ। ଏହା ସମ୍ଭବ ହୋଇଥିଲା ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଯୋଗୁଁ।

କଳିଙ୍ଗ ଷ୍ଟାଡ଼ିୟମ୍, ଜବାହରଲାଲ ନେହରୁ ଇନ୍‌ଡୋର୍ ଷ୍ଟାଡିୟମ୍ ଏବଂ ପାନପୋଷର ଉଚ୍ଚ ଆଷ୍ଟ୍ରୋଟ୍ରଫି ତାଙ୍କ ଅବଦାନ। ତାଙ୍କ ଅବଦାନ ବ୍ରହ୍ମପୁର ଷ୍ଟାଡିୟମ୍, ଭବାନୀପାଟଣା, ଢେଙ୍କାନାଳ, ଫୁଲବାଣୀ ଇନ୍‌ଡୋର୍ ହଲ।

ସେ ଥିଲେ ଏକାଧାରରେ ରାଜନୀତିଜ୍ଞ, ସମାଜସେବୀ ଓ ପ୍ରଖ୍ୟାତ ଲେଖକ।



# ରାଜଭବନରେ ଗୋଟିଏ ରାତି

**ରାମଚନ୍ଦ୍ର ବେହେରା**

ଆସାମ ସାହିତ୍ୟ ସଭା (ଓଡ଼ିଶାରେ ଏକାଡେମୀ)ର ଅଧିବେଶନ ଲିଡୁ ନାମକ ସ୍ଥାନରେ ଅନୁଷ୍ଠିତ ହେଉଥାଏ। ଲିଡୁ ଏକ ସାନ ସହର, ଓ ତାହା ତିନ୍‌ସୁକିଆ ଜିଲ୍ଲାରେ ଅବସ୍ଥିତ। ଏଇ ସାହିତ୍ୟ ସଭାର ନିମନ୍ତ୍ରଣ କ୍ରମେ, ଓଡ଼ିଶାରୁ ତିନୋଟି ପ୍ରମୁଖ ସାହିତ୍ୟ ଅନୁଷ୍ଠାନ–ଓଡ଼ିଶା ସାହିତ୍ୟ ଏକାଡେମୀ, ଆମ ଓଡ଼ିଶା ଏବଂ ଉତ୍କଳ ସାହିତ୍ୟ ସମାଜର ବାର ଜଣ ସଦସ୍ୟ ଏଥିରେ ଯୋଗ୍‌ ଦେବା କଥା। ଓଡ଼ିଶା ସାହିତ୍ୟ ଏକାଡେମୀକୁ ଆମେ ପ୍ରତିନିଧିତ୍ୱ କରୁଥିଲୁ ମୋ ସମେତ ଏକାଡେମୀର କାର୍ଯ୍ୟକାରିଣୀ ସମିତିର ଦୁଇ ଜଣ ସଦସ୍ୟ। ଆମପାଇଁ ରହିବା ବ୍ୟବସ୍ଥା ହୋଇଥିଲା ତିନସୁକିଆର ଏକ ରୁଚିପୂର୍ଣ୍ଣ ହୋଟେଲରେ। ସେଠାକାର କଲେଜର ଇତିହାସ ବିଭାଗର ଜଣେ ଅଧ୍ୟାପକ ଆମ୍ଭମାନଙ୍କର ଭଲମନ୍ଦ, ସୁବିଧା ଅସୁବିଧା ବୁଝିବାର ଦାୟିତ୍ୱ ନେଇଥାନ୍ତି। ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଇପାରେ ଯେ ଏଇ ଅଧ୍ୟାପକଙ୍କର ପୂର୍ବପୁରୁଷ ଥିଲେ ବଲାଙ୍ଗୀର ଜିଲ୍ଲାର ବାସିନ୍ଦା। ପାଞ୍ଚ-ଛ' ପୁରୁଷ ଧରି ତାଙ୍କ ପରିବାର ରହିଆସୁଛନ୍ତି ତିନସୁକିଆରେ। ଓଡ଼ିଆ ବିସ୍ମୃତ ହୋଇସାରିଛନ୍ତି ତିନି-ଚାରି ପୁରୁଷ ହେଲା। ଓଡ଼ିଶାକୁ ଆସିବାର ଅବସର ପାଇ ନାହାନ୍ତି। ଏଇ ଅଧ୍ୟାପକଙ୍କ କର୍ତ୍ତୃତ୍ୱରେ ଥିଲା ଗୋଟିଏ ଗାଡ଼ି, ଆମ୍ଭମାନଙ୍କୁ କୁଆଡ଼େ, ବିଶେଷତଃ ଲିଡୁକୁ ନେବା ଆଣିବା କରିବାପାଇଁ।

ଆସାମ ସାହିତ୍ୟ ସଭାର ଅଧିବେଶନ କେଉଁ ବର୍ଣ୍ଣାଢ଼୍ୟ ପରିବେଶରେ ଅନୁଷ୍ଠିତ ହୁଏ, କେଉଁ ପ୍ରକାର ଉତ୍ସାହ-ଉଦ୍ଦୀପନା ସୃଷ୍ଟି କରେ ସମଗ୍ର ରାଜ୍ୟରେ ତାହା ଜଣେ ନ ଦେଖିଲେ ଆଦୌ ବିଶ୍ୱାସ କରିପାରିବ ନାହିଁ। ଏଇ ଅଧିବେଶନ ପାଇଁ ପ୍ରସ୍ତୁତ ହୋଇଥିବା ପ୍ରକାଣ୍ଡ, ସମ୍ଭ୍ରାନ୍ତ ମଞ୍ଚ ଏବଂ ଏହାର ସଭାପତିଙ୍କୁ ମଞ୍ଚ ପାଖକୁ ଆଣିବାପାଇଁ ଶୋଭାଯାତ୍ରା, ମଞ୍ଚ ସମ୍ମୁଖସ୍ଥ ଅଡିଟୋରିଅମ୍ ଆମ୍ଭମାନଙ୍କପାଇଁ ଥିଲା ଅବିଶ୍ୱାସ୍ୟ ଏବଂ ଅଭୂତପୂର୍ବ। ଏହାସହିତ ଆସାମ ଲୋକମାନଙ୍କର ନମ୍ରତା ଓ ଅତିଥିପରାୟଣତା। ଏସବୁର ସମାହାର ଆମ୍ଭମାନଙ୍କ ପାଇଁ ଥିଲା ଅବିସ୍ମରଣୀୟ ଓ ମଧୁର ଅଭିଜ୍ଞତା।

ଅଧିବେଶନର ଅନ୍ତିମ ଦିନ ରାଜ୍ୟପାଳ ଜାନକୀବଲ୍ଲଭ ପଟ୍ଟନାୟକ ହଜାର ହଜାର ସଂଖ୍ୟାରେ ସମବେତ ସାହିତ୍ୟିକଙ୍କୁ ଉଦ୍‌ବୋଧନ ଦେଲେ ଶୁଦ୍ଧ ଅହମିଆ ଭାଷାରେ। ଓଡ଼ିଶାରୁ ଆମେ ଯେଉଁମାନେ ମଞ୍ଚ ଉପରେ ଉପସ୍ଥିତ ଥିଲୁ, ଆଦୌ ବିସ୍ମିତ ହୋଇ ନ ଥିଲୁ ଜାନକୀବାବୁ ଅହମିଆ ଭାଷାକୁ ଏଭଳି ଚମତ୍କାର ଭାବରେ ଆୟତ୍ତ କରିଥିବାର ଦେଖି। ଆସାମର ଜନଜୀବନ ସହିତ ସେ କିପରି ଅବଗତ ଓ ଆଧ୍ୟାତ୍ମିକ ସ୍ତରରେ ସଂପୃକ୍ତ ଥିଲେ, ତାହା ଆଲୋଚନା

କରିବାର ଏହା ପରିସର ନୁହେଁ। ମୁଁ ତାଙ୍କୁ ଜଣେ ପଣ୍ଡିତ ଓ ଜ୍ଞାନପିପାସୁ ଭାବରେ ଜାଣେ। ରାଜନୀତି କରିବା ସହିତ ଜଣେ ଗବେଷକର ଅନୁସନ୍ଧିତ୍ସା ଓ ଜିଜ୍ଞାସା ତାଙ୍କୁ ସ୍ୱତନ୍ତ୍ର ପରିଚୟ ଦିଏ। ରାଜନୀତି ସହିତ ଆଦୌ ସଂପର୍କ ନ ଥିବା ମୋ ଭଳି ଅସଂଖ୍ୟ ଲୋକ ତାଙ୍କର ଏଇ ସୃଜନଶୀଳ, କୋମଳ ଓ ଉନ୍ମୁଖ ସତ୍ତାକୁ ଶ୍ରଦ୍ଧା ଓ ସମ୍ମାନ କରନ୍ତି। ଏଦୃଷ୍ଟିରୁ ସେ କେତେ ବିଶାଳ ଓ ସମ୍ବେଦନଶୀଳ, ତାହାର ସଂଖ୍ୟାହୀନ ଦୃଷ୍ଟାନ୍ତ ରହିଚି ନାମହୀନ ଅଜସ୍ର ଲୋକଙ୍କ ପାଖରେ। ଅହମିଆ ଆମ ଓଡ଼ିଆର ଅନ୍ୟତମ ଭଗିନୀ ଭାଷା। ସେଥିପାଇଁ ଅହମିଆ ଭାଷାରେ ତାଙ୍କର ଉତ୍କୃଷ୍ଟତା ତାଙ୍କୁ ଜାଣିଥିବା କୌଣସି ବ୍ୟକ୍ତିଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିବ ନାହିଁ।

ଏଇ ଅଧିବେଶନ କାଳରେ ସେ ଓଡ଼ିଶାରୁ ଯାଇଥିବା ପ୍ରତିନିଧିମାନଙ୍କପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିଥିଲେ। ଲିଡୁରୁ ତିନ୍‌ସୁକିଆ ଆସିବା ବାଟରେ ପଡ଼େ ଦିଗ୍‌ବୋଇ। ସେଠାକାର ସର୍କିଟ୍ ହାଉସ୍‌ରେ ଆମ୍ଭମାନଙ୍କ ପାଇଁ ଏକ ନୈଶଭୋଜିର ଆୟୋଜନ କରିଥିଲେ ସେ। ଜିଲ୍ଲାର ପ୍ରମୁଖ ପ୍ରଶାସନିକ ଅଧିକାରୀଙ୍କ ଗହଣରେ ଅନୁଷ୍ଠିତ ହୋଇଥିଲା ସତେ ଅବା ଏକ ଘନିଷ୍ଠ ବନ୍ଧୁମିଳନ ଏବଂ ପରେପରେ ଭୋଜି। ରାଜ୍ୟପାଳ ଠିଆ ହୋଇ ଗୋଟିଏ ମୁହୂର୍ତ୍ତ ପାଇଁ ନ ବସି, ତଦାରଖ କରୁଥିଲେ ଆମ୍ଭମାନଙ୍କର ଖାଇବା। ସେ ସନ୍ତୋଷ ପ୍ରକାଶ କରୁଥିଲେ ଯେ ଆମେ ଉପଭୋଗ କରୁଚୁ ସ୍ୱାଦିଷ୍ଟ ଶାକାହାର ଭୋଜି।

୨୦୧୨ ମସିହାର ଲିଡୁ ଅଧିବେଶନ ଆମେ ମନେ ରଖିବୁ ଦୁଇଟି କାରଣ ପାଇଁ। ଆମେ ଲକ୍ଷ୍ୟ କଲୁ ଆସାମ ଲୋକଙ୍କର ନିଜ ଭାଷା ପ୍ରତି ଥିବା ଅତୁଳନୀୟ ଶ୍ରଦ୍ଧା ଓ ଉତ୍ସାହକୁ। ଏହି ମହୋତ୍ସବ ଆହୁରି ମନୋଜ୍ଞ ହୋଇପାରିଥିଲା। ଗୋଟିଏ ପାଖରେ ପ୍ରକାଣ୍ଡ ପୁସ୍ତକମେଳା ଓ ଅନ୍ୟ ପାଖରେ ଅତ୍ୟନ୍ତ ଆକର୍ଷଣୀୟ ହସ୍ତଶିଳ୍ପ ପ୍ରଦର୍ଶନୀ ଯୋଗୁଁ। ସାହିତ୍ୟ ସଭା ଏପରି ଲୋକମାନଙ୍କୁ ଆକର୍ଷଣ କରିପାରେ, ସେମାନଙ୍କ ଭିତରେ ସୃଷ୍ଟି କରିପାରେ ଆତ୍ମାଭିମାନ, ଭାଷା ପ୍ରତି ସାଲିସବିହୀନ ଅଙ୍ଗୀକାର ଓ ମମତା; ତାହା ଆମେ ଓଡ଼ିଶାର ଲୋକେ ବିଶ୍ୱାସ କରିବୁ କିପରି ? ଆମର ସେଭଳି ପରମ୍ପରା କିମ୍ବା ମାନସିକତା ହିଁ ନାହିଁ।

ଦ୍ୱିତୀୟତଃ, ଜାନକୀବାବୁ ଆମ୍ଭମାନଙ୍କୁ ଆପାତତଃ କୋଳେଇ ନେବାର, ଆମ ସ୍ପନ୍ଦନକୁ ଶ୍ରଦ୍ଧା କରିବାର ମହାର୍ଘ ଅନୁଭୂତି। ସେଠାରେ ସେ ଆମ୍ଭମାନଙ୍କପାଇଁ ନିଛକ, ଆପଣାର ଜାନକୀବାବୁ ହିଁ ଥିଲେ, ରାଜ୍ୟପାଳର ଆନୁଷ୍ଠାନିକତା ପରିହାର କରି।

ଏହାର କିଛି ମାସ ପରେ, ଗୌହାଟୀରେ ଅନୁଷ୍ଠିତ ହେଉଥିବା ପୁସ୍ତକ ମେଳାରେ ଅନ୍ୟତମ ଅତିଥି ଭାବରେ ଯୋଗ ଦେବାପାଇଁ ମୁଁ ନିମନ୍ତ୍ରିତ ହୋଇଥିଲି। ବ୍ରହ୍ମପୁତ୍ର କୂଳରେ ଥିବା ସର୍କିଟ୍ ହାଉସ୍‌ରେ ରହିବାପାଇଁ ବ୍ୟବସ୍ଥା ହୋଇଥିଲା। ଯେତେଦୂର ମନେ ପଡୁଚି, ତାହା ଥିଲା ସେପ୍ଟେମ୍ବର ମାସ। ବ୍ରହ୍ମପୁତ୍ର ନିଜର ବିଶାଳତା ନେଇ ଦେଖାଯାଉଥିଲା ସ୍ଫୀତ। ଏହାର ପ୍ରବାହରେ କ୍ଷିପ୍ରତା ନ ଥିଲେ ମଧ୍ୟ ଦେଖାଯାଉଥିଲା କିଞ୍ଚିତ୍ ଭୟ ଉଦ୍ରେକକାରୀ। ବର୍ଷାଋତୁ ଅତିକ୍ରାନ୍ତ ହେବାର ଅନ୍ତିମ ଘଣ୍ଟି ବାଜି ନ ଥିଲା। ମଝିରେ ମଝିରେ ବର୍ଷା ହେଉଥିଲା।

ତେବେ, ମୋ ପାଇଁ ଅପେକ୍ଷା କରିଥିଲା ନୈରାଶ୍ୟ। ପଚାରି ବୁଝିଲି ଯେ ରାଜ୍ୟପାଳ ନାହାନ୍ତି। ପରେ ଜାଣିବାକୁ ପାଇଲି ଯେ ସେ ଯାଇଛନ୍ତି କାଶ୍ମୀର, ଏକ ସଂସ୍କୃତ ଅଧିବେଶନ ଉଦ୍‌ଘାଟନ କରିବାପାଇଁ। ସେଠାରୁ ସେ ଯିବେ ମୁମ୍ବାଇ। ତାଙ୍କର ଗୌହାଟୀକୁ ପ୍ରତ୍ୟାବର୍ତ୍ତନ ସଂପର୍କରେ ସ୍ପଷ୍ଟ ସୂଚନା ମିଳି ନ ଥିଲା।

ସରିଗଲା ପୁସ୍ତକ ମେଳା। ତାହାର ପରଦିନ ପାଇଁ ମୋର ଟିକଟ ଥିଲା। ପରଦିନ ସକାଳ ନ'ଟା ଆଡ଼କୁ ସେ ରାଜ୍ୟର ବାରଜଣ ଲେଖିକା ମୋତେ ସାକ୍ଷାତ କରିବାକୁ ଆସିଥିଲେ। ମୋ କଥା ସାହିତ୍ୟର ମୁଖ୍ୟ ସ୍ୱର କ'ଣ, ସେ ସମ୍ପର୍କରେ ଜାଣିବାପାଇଁ ସେମାନଙ୍କଠାରେ ଥିଲା ଆଗ୍ରହ। ସେମାନେ ଗୋଟେ ଝାଂପି ଉପହାର ଦେଇଥିଲେ, ଯାହାକୁ ଯତ୍ନର ସହିତ ମୁଁ ଘରକୁ ଆଣିଲି। ଏହା ଅଛି, ଆହୁରି ଦୁଇଟି ଝାଂପି ସହିତ। ତେବେ ମୋ ପ୍ରତି ସେମାନେ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କଲେ ଅନ୍ୟ ଏକ ବାଗରେ। ସାନ-ବଡ଼ ପ୍ରାୟ ତିରିଶଟି ବହି ଉପହାର ଦେଲେ ମୋତେ। ଅହମିଆ ଭାଷାରେ ଲିଖିତ ଏ ବହିଗୁଡ଼ିକୁ ଆଣିବା ଥିଲା, ଅସମ୍ଭବ; ଅନାବଶ୍ୟକ ମଧ୍ୟ। ମୁଁ ବଙ୍ଗଳା ଅକ୍ଷର ସହିତ ମଧ୍ୟ ପରିଚିତ ନୁହେଁ।

ମଧ୍ୟାହ୍ନ ଭୋଜନ ପରେ ମୁଁ ବାହାରିଯିବି ଏୟାରପୋର୍ଟ। ମୋତେ ବିସ୍ମିତ ଏବଂ ବେଶି ଆନନ୍ଦିତ କରି ସର୍କିଟ୍ ହାଉସର ମୋ କୋଠରିରେ ପହଞ୍ଚିଗଲେ ଡକ୍ଟର ଗୋବିନ୍ଦ ଭୂୟାଁ। ତାଙ୍କଠାରେ ଅବସୋସ ଥିଲା। ରାଜ୍ୟପାଳଙ୍କ ସହିତ ମୋର ସାକ୍ଷାତ ସମ୍ଭବ ହୋଇପାରିଲା ନାଇଁ ସେ ସେଇଦିନ ସକାଳେ ମୁମ୍ବାଇରୁ ଫେରିଥିବାରୁ। ଜାନକୀବଲ୍ଲଭଙ୍କର ଅତ୍ୟନ୍ତ ଶ୍ରଦ୍ଧାଶୀଳ ତାଙ୍କ ଜୀବନୀ ଲେଖକ ଡକ୍ଟର ଭୂୟାଁ ଅବସ୍ଥାନ କରୁଥିଲେ ଗୌହାଟୀ ରାଜଭବନରେ, ରାଜ୍ୟପାଳଙ୍କ ସ୍ୱତନ୍ତ୍ର ପଦାଧିକାରୀ ଭାବରେ।

ଏୟାରପୋର୍ଟରେ ମୋତେ ଅପେକ୍ଷା କରୁଥିଲା ଅସୁବିଧା। ମୋତେ କୁହାଗଲା ଯେ, ପାଗ ଖରାପ ଥିବାରୁ ସେଦିନର କୋଲକାତା-ଭୁବନେଶ୍ୱର ଉଡ଼ାଣ ବାତିଲ କରାଯାଇଚି। ମୋ ଆଗରେ ଥିଲା ଦୁଇଟି ବିକଳ୍ପ। ମୁଁ ଯଦି ଚାହିଁବି, ତେବେ ଗୌହାଟୀରୁ କୋଲକାତା ଯାଇପାରିବି। ତା'ପର ଦିନ ନିର୍ଦ୍ଧାରିତ ସମୟରେ କୋଲାକାତାରୁ ଯାଇପାରିବି ଭୁବନେଶ୍ୱର। ଏହା ଗ୍ରହଣଯୋଗ୍ୟ ହେଲା ନାଇଁ ମୋ ପକ୍ଷେ। କୋଲକାତାରେ କେଉଁଠି ରହିବା ଜଞ୍ଜାଳ ତ ଅଛି; ତା ସହିତ ଅଛି, ଏୟାରପୋର୍ଟରୁ ସହରକୁ ଯିବା ଏବଂ ପରଦିନ ପୁଣି ଉଡ଼ାଣ ଧରିବାକୁ ଏୟାରପୋର୍ଟକୁ ଫେରିବା। ଦ୍ୱିତୀୟ ବିକଳ୍ପ ହେଉଛି ମୋର ସେଦିନର ଟିକଟକୁ ପରଦିନ ପାଇଁ ରିସିଡ୍ୟୁଲ କରିବା। ପରଦିନ ମୁଁ ପୁଣି ଆସିବି ଏୟାରପୋର୍ଟ ଏବଂ ସ୍ୱାଭାବିକ ଭାବରେ କୋଲକାତା ଏବଂ ସେଠାରୁ ଭୁବନେଶ୍ୱରକୁ ଉଡ଼ାଣ ଧରିବି। ମୁଁ ଏଇ ବିକଳ୍ପକୁ ଗ୍ରହଣ କରିବା ମାତ୍ରେ ପରଦିନ ପାଇଁ ସେମାନେ ଟିକଟ ଇସ୍ୟୁ କଲେ।

ଏବେ ଏୟାରପୋର୍ଟରୁ ମୁଁ ଫେରିବି କିପରି? ମୋତେ ଏୟାରପୋର୍ଟକୁ ଆଣିଥିବା ଟାକ୍‌ସି ସାଙ୍ଗେ ସାଙ୍ଗେ ଫେରିଯିବା ସ୍ୱାଭାବିକ। ମୁଁ ପୁସ୍ତକମେଳାର କର୍ତ୍ତୃପକ୍ଷଙ୍କୁ ଫୋନ କଲି,

ମୋର ଅସୁବିଧା ସଂପର୍କରେ। ଅତ୍ୟନ୍ତ ବିନୟୀ ଏବଂ ଅତିଥିପରାୟଣ, ପୁସ୍ତକମେଳାର ସଂଯୋଜକ ମୋତେ ଆଶ୍ୱାସନା ଦେଲେ। ଏୟାରପୋର୍ଟରେ ମୋତେ ପହଞ୍ଚାଇଥିବା ଟାକ୍ସି ପୁଣି ପହଞ୍ଚିବ ମୋ ପାଖରେ। ଟ୍ରାଫିକ ସମସ୍ୟା ଯୋଗୁଁ ମୋତେ ଧୈର୍ଯ୍ୟର ସହିତ ଅପେକ୍ଷା କରିବାକୁ ହେବ ଟାକ୍ସି ପହଞ୍ଚିବା ପର୍ଯ୍ୟନ୍ତ।

ମୋଠାରୁ ମୋର ଅସୁବିଧା କଥା ଶୁଣି ଗୋବିନ୍ଦବାବୁ ଅତ୍ୟନ୍ତ ଉତ୍ସାହିତ ଓ ଆନନ୍ଦିତ ହୋଇ କହିଲେ ଯେ ମୁଁ ସର୍କିଟ ହାଉସ ନ ଯାଇ ରାଜଭବନକୁ ହିଁ ଯିବି। ମୋତେ ସେ ବର୍ଣ୍ଣନା କଲେ ରାଜ୍ୟପାଳଙ୍କ ଅତିଥି ଭାବରେ।

କିଛି ସମୟ ପରେ ଅତିଥି ଭବନରେ ମୋ ପାଇଁ ଉଦ୍ଦିଷ୍ଟ କୋଠରିରେ ଜିନିଷପତ୍ର ରଖି ମୁଁ ଆସିଲି ଗୋବିନ୍ଦବାବୁଙ୍କ ସହିତ ରାଜଭବନର ରୁଚିପୂର୍ଣ୍ଣ ଡ୍ରଇଁରୁମ୍‌କୁ। ମୋତେ ବେଶି ସମୟ ଅପେକ୍ଷା କରିବାକୁ ପଡ଼ି ନ ଥିଲା। ହସ ହସ ମୁହଁରେ ଜାନକୀବାବୁ ଓ ମାଡାମ ପଟ୍ଟନାୟକ ପହଞ୍ଚିଲେ ସେଠାରେ। ତାଙ୍କ ପଛେ ପଛେ ଟ୍ରେ ଧରିଥିବା ରାଜଭବନର ଜଣେ କର୍ମଚାରୀ। ଟ୍ରେରେ ଥିଲା, ଆସାମରେ ଅତିଥିଙ୍କୁ ସ୍ୱାଗତ କରିବାପାଇଁ ବ୍ୟବହୃତ ହେଉଥିବା ଅଙ୍ଗବସ୍ତ୍ର।

ଜାନକୀବାବୁ ତାହାକୁ ମୋ କାନ୍ଧରେ ପକାଇଲେ। ମୋର ନମ୍ର ପ୍ରତିବାଦଟି ଥିଲା ଏଇପରି– 'ସାର୍, ଏହାର କୌଣସି ଆବଶ୍ୟକତା ନ ଥିଲା।'

ସେମାନେ ବସିଲେ ସୋଫାରେ। ମୋତେ ଏବଂ ଗୋବିନ୍ଦବାବୁଙ୍କୁ ବସିବାକୁ ଇଙ୍ଗିତ ଦେଲେ। ତାଙ୍କର ଉତ୍ତର ଥିଲା– 'ଆପଣ ଆମର ଅତିଥି। ଅତିଥିଙ୍କୁ ସ୍ୱାଗତ କରିବାପାଇଁ ଏ ରାଜ୍ୟରେ ଏହି ଶୁଭେଚ୍ଛାପୂର୍ଣ୍ଣ ବିଧି ଅଛି। ଉତ୍ତମ ବିଧି।'

ଚାରି-ପାଞ୍ଚ ମିନିଟ୍‌ର ଗୁରୁତ୍ୱହୀନ କଥା ପରେ ଜାନକୀବଲ୍ଲଭଙ୍କର ମନ୍ତବ୍ୟ– 'ଆପଣ ଖୁବ୍ ଭଲ ଗପ ଲେଖୁଛନ୍ତି।'

ଏକ ବିସ୍ମୟକର, ମଧୁର ମନ୍ତବ୍ୟ। ମୋର କାହିଁକି ବା ବିଶ୍ୱାସ ହୁଅନ୍ତା ଯେ ସେ ମୋର କିଛି ଲେଖା ପଢ଼ିଛନ୍ତି ? ଆପାତତଃ ଅଜାଣତରେ ବାହାରିଗଲା ଏଇ ପ୍ରଶ୍ନ ମୋ'ଠାରୁ– 'ସାର୍, କ'ଣ କେବେ ମୋ ଲେଖା ପଢ଼ିଛନ୍ତି ?'

ଅନ୍ୟ କେହି ହୁଏତ କ୍ଷୁବ୍ଧ ହୋଇଥାନ୍ତେ; ମାତ୍ର ଜାନକୀବାବୁଙ୍କର ସ୍ମିତ ହସ ସଂପ୍ରସାରିତ ହେଲା। ସତେ ଅବା ସେ ଆମୋଦିତ ହେଉଛନ୍ତି। ସେ ଦୃଷ୍ଟି ବୁଲାଇ ଆଣିଲେ ମାଡ଼ାମ୍‌ଙ୍କ ଆଡୁ। ଏଥର ମୋତେ ଅନେଇ, ମୋର ଗୋଟିଏ ଚର୍ଚ୍ଚିତ ଗପର ସାରାଂଶ କହିବା ଆରମ୍ଭ କଲେ। ସତେ ଅବା ସେ ମୋର ଲେଖା ପଢ଼ିଥିବାର ପ୍ରମାଣ ଦେବା ଜରୁରୀ ମନେ କଲେ।

ମୁଁ ଖୁବ୍ ଅପ୍ରତିଭ ହେଲି। କହିଲି– 'ଆଉ, ସାର, ସେତିକି। ସାର୍ ପ୍ରଚୁର ପଢ଼ନ୍ତି। ସାର୍‌ଙ୍କୁ ଆମେ ଜଣେ ବିଦ୍ୱାନ୍ ବୋଲି ବିବେଚନା କରୁ। ଏତେ ବ୍ୟସ୍ତତା ଭିତରେ ମୋ ଗପ

ସାର୍ ପଢ଼ିଚନ୍ତି। ଏଠାକୁ ଆସିବା ସାର୍ଥକ ହେଲା ଏଇଠି । ଗୋଟେ ପ୍ରକାର ପରିପୂର୍ଣ୍ଣତା ଏହା।'

ପ୍ରାୟ ଅଧଘଣ୍ଟାଏ ପର୍ଯ୍ୟନ୍ତ ମୁଁ ଶୁଣାଉଥିଲି ମୋ କଥା ସାହିତ୍ୟରେ ମୁଖ୍ୟ ଉପାଦାନ। ମ୍ୟାଡାମ୍ ପଟ୍ଟନାୟକଙ୍କ ପ୍ରଶ୍ନର ଉତ୍ତର ଦେଇ କହିଥିଲି ଯେ ମୋର ଅଧିକାଂଶ ଉପନ୍ୟାସ ଓ ଦୀର୍ଘ ଗପର ମୁଖ୍ୟ ଚରିତ୍ରମାନେ ହେଉଛନ୍ତି ନାରୀ ଏବଂ ସେମାନଙ୍କର ସଂଘର୍ଷ।

ଚାଳିଶ ମିନିଟ୍ ଅତିବାହିତ ହୋଇସାରିଲାଣି ସେତେବେଳକୁ। ଜାନକୀବାବୁ କହିଲେ– 'ଆପଣଙ୍କର ଗୋଟେ ଗଳ୍ପ ସଙ୍କଳନ ଦେବେ। ସମ୍ବାଦ ଅଫିସକୁ ପଠାଇଦେଲେ ତାହା ମୁଁ ପାଇଯିବି ସହଜରେ।'

ରାଜ୍ୟପାଳ ନୁହଁ; ଜଣେ ପଠନପ୍ରିୟ, ବାଗ୍ମୀ, ଅନୁସନ୍ଧିତ୍ସୁ, ସଂସ୍କୃତିପ୍ରେମୀ ମୋଠାରୁ ଗୋଟେ ବହି ମାଗୁଚନ୍ତି। ଯାହାଙ୍କର ବ୍ୟକ୍ତିତ୍ୱର ପ୍ରଭାବ ଓ ଶାସନ କରିବାର ସାମର୍ଥ୍ୟ ବର୍ଷ ବର୍ଷ ଧରି ପ୍ରଭାବିତ୍ ଓ ନିୟନ୍ତ୍ରିତ କରିଆସିଚି ଓଡ଼ିଶାର ଭୂଗୋଳକୁ ଓ ଓଡ଼ିଆଙ୍କର ଜୀବନଧାରାକୁ। ମୁଁ ଅଭିଭୂତ ହୋଇପଡ଼ିଲି।

ମାଡାମଙ୍କର ପ୍ରଶ୍ନ, ଏଇ ଅବିସ୍ମରଣୀୟ ଆସର ଭାଙ୍ଗିବା ବେଳକୁ– 'କାଲି ଆପଣ କ'ଣ ଖାଇବାକୁ ପସନ୍ଦ କରିବେ, ଲଞ୍ଚ ବାବଦ୍‌ରେ।'

ମୁଁ ସାହସୀ ହୋଇଯାଇଥିବାରୁ କହିଲି– 'ମୁଁ ଜାଣେ ଯେ ସାର୍, ସନ୍ନ୍ୟାସୀ ଭୋଜନ କରିଆସୁଚନ୍ତି। ଆପଣ କିଞ୍ଚିତ ଆଗ୍ରହ ରଖନ୍ତି ମାଛ ପାଇଁ। ସେଇଥିରୁ ମୋତେ ଟିକିଏ ଦେଲେ ଚଳିଯିବ।'

ଆରେ, ନା। ମାଛ ଟିକିଏ କାହିଁକି ? ଚିକେନ୍ ପରଷାଯିବ ମଧ୍ୟାହ୍ନ ଭୋଜନରେ। ମାଡାମ କହିଲେ।

ପରଦିନ ସ୍ୱାଦିଷ୍ଟ ସକାଳ ଭୋଜନ। ସେଇ ଅବସରରେ ଗୋବିନ୍ଦବାବୁ କହିଲେ– ଜାନକୀବାବୁ ଅନ୍ୟ କାହାକୁ ବହି ମାଗିବା ଗୋଟେ ଦୁର୍ଲଭ ଘଟଣା। ପ୍ରଚୁର ସଂଖ୍ୟକ ବହି ତାଙ୍କ ପାଖକୁ ଆସେ ଲେଖକମାନଙ୍କଠାରୁ। ବଡ଼ କଥା ହେଉଚି ସେ ପଢ଼ନ୍ତି ସେସବୁ ବହି; ନ ହେଲେ କେବଳ ପୃଷ୍ଠା ଓଲଟାନ୍ତି କେତେକ ବହିର।

ତୃପ୍ତିକର ମଧ୍ୟାହ୍ନ ଭୋଜନ। ଗୋବିନ୍ଦବାବୁ ଗାଡ଼ି ବ୍ୟବସ୍ଥା କରିଥିଲେ। ଏକ ଆବେଗମୟ, ଅଭୁଲା ଅନୁଭୂତି ନେଇ ମୁଁ ବାହାରିଗଲି ଏୟାରପୋର୍ଟକୁ। କେବଳ ରାଜନୀତି ଜାନକୀବାବୁଙ୍କ ବ୍ୟକ୍ତିତ୍ୱକୁ ବିଶାଳ କରି ନ ଥିଲା; ଆମେ ଜାଣୁ, ଏବେ ମଧ୍ୟ ସେ ସ୍ୱର୍ଗରେ ବହିର ପୃଷ୍ଠା ଓଲଟାଉଥିବେ। ବହିର ବାସ୍ନା ଉପଭୋଗ କରୁଥିବେ, ତାଙ୍କ ଭଳି ବିଦ୍ୱାନ୍ ରାଜନୀତି ଜଗତରେ ଚିରକାଳ ରହିବେ।

•

# ଜାନକୀବଲ୍ଲଭ : ଓଡ଼ିଶା-ଓଡ଼ିଆଙ୍କର ସାର୍ବଜନୀନ ନେତା

**ବରେନ୍ଦ୍ର କୃଷ୍ଣ ଧଳ**

ଓଡ଼ିଶାର ଅଳ୍ପ କେତେଜଣ ଯୋଗଜନ୍ମା ବ୍ୟକ୍ତିଙ୍କ ମଧ୍ୟରେ ଜାନକୀବଲ୍ଲଭ ପଟ୍ଟନାୟକ ଅନ୍ୟତମ। ସମ୍ଭବତଃ ଓଡ଼ିଶାର ସେ ଏକମାତ୍ର ବ୍ୟକ୍ତି ଯେ ନିଜକୁ ବିଭିନ୍ନ କ୍ଷେତ୍ରରେ ଅତି ଦୃଢ଼ଭାବେ ପ୍ରତିଷ୍ଠିତ କରିପାରିଥିଲେ। ଦୀର୍ଘଦିନରୁ ତାଙ୍କସହ ସମ୍ପର୍କରେଆସି ତାଙ୍କର ବିଶେଷତ୍ୱ ଓ ବିଚକ୍ଷଣତା ମୁଁ ଅନୁଭବ କରିପାରିଛି।

ସର୍ବେନ୍ଦ୍ରିୟ ଗୁଣାଭାସମ–କୃଷ୍ଣଙ୍କୁ ସକଳ ଗୁଣର ଆଧାର ବୋଲି କୁହାଯାଇଛି । ଜାନକୀବଲ୍ଲଭ ସେହିଭଳି ଏକାଧାରରେ ସାମ୍ବାଦିକ, ସମ୍ପାଦକ, ରାଜନୀତିଜ୍ଞ, ରାଷ୍ଟ୍ରନୀତିଜ୍ଞ, ବାଗ୍ମୀ, ବିଭିନ୍ନ ଭାଷାରେ ପଣ୍ଡିତ, ବିଭିନ୍ନ କ୍ଷେତ୍ରରେ ନିଜକୁ ସଫଳଭାବେ ପ୍ରତିଷ୍ଠା କରିବାରେ ଓଡ଼ିଶାରେ ପ୍ରମୁଖ ବ୍ୟକ୍ତିତ୍ୱ ।

ଜୀବନ ତାଙ୍କର ଆରମ୍ଭ ହୋଇଥିଲା ସାମ୍ବାଦିକତାରୁ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ରାଜନୀତିବିଜ୍ଞାନରେ ଏମ୍‌.ଏ. ପାସ୍ କରି ଓଡ଼ିଶା ଫେରିବାପରେ ସେ ନିଜକୁ ସାମ୍ବାଦିକତାରେ ନିୟୋଜିତ କଲେ। ସେତେ଼ବେଳକାରର ବିଖ୍ୟାତ ଖବରକାଗଜ ପ୍ରଜାତନ୍ତ୍ରରେ ସେ ୧୯୫୨ ମସିହାରେ ସମ୍ପାଦକ ଦାୟିତ୍ୱ ନେଲେ। ଡକ୍ଟର ହରେକୃଷ୍ଣ ମହତାବଙ୍କର ଏହି ଖବରକାଗଜରେ ସମ୍ପାଦକ ରୂପେ ସେ ନିଜର ଏକ ସ୍ୱତନ୍ତ୍ରତା ପ୍ରତିପାଦନ କରିଥିଲେ। ସେତେବେଳେ ଓଡ଼ିଶାରେ ତିନୋଟି ଖବରକାଗଜ ପ୍ରକାଶିତ ହେଉଥିଲା। ସମାଜ (ସମ୍ପାଦକ ରାଧାନାଥ ରଥ), ପ୍ରଜାତନ୍ତ୍ର (ସମ୍ପାଦକ ଜାନକୀବଲ୍ଲଭ ପଟ୍ଟନାୟକ) ଏବଂ ମାତୃଭୂମି (ସମ୍ପାଦକ–ବାଳକୃଷ୍ଣ କର) । ସେତେବେଳେ ସମ୍ପାଦକୀୟ ଦୁଇ କଲମ–ଦେଢ଼ କଲମର ବିରାଟ ବିରାଟ ପ୍ରବନ୍ଧ ସଦୃଶ ହେଉଥିଲା। ଜାନକୀବାବୁ ହେଉଛନ୍ତି ପ୍ରଥମ ସମ୍ପାଦକ ଯେ ଏହି ଧାରାକୁ ଭାଙ୍ଗିଦେଇ ତାଙ୍କ ସମ୍ପାଦକୀୟ ମାତ୍ର ଅଧକଲମରେ ସୀମାବଦ୍ଧ ରଖିଥିଲେ। ପ୍ରତିଦିନ ସେ ଗୋଟିଏ ବଦଳରେ ଦୁଇଟି ସମ୍ପାଦକୀୟ ଲେଖୁଥିଲେ। ପ୍ରଥମେ ପ୍ରଥମେ ଏହାକୁ କେତେକ ବ୍ୟଙ୍ଗ-ବିଦ୍ରୂପ କରିଥିଲେ। ମାତ୍ର ପରେ ସମସ୍ତେ ତାଙ୍କରି ଧାରାକୁ ହିଁ ଗ୍ରହଣ କରିଥିଲେ। ଜାନକୀବାବୁଙ୍କର ମତଥିଲା ରାଜ୍ୟ ବା ଦେଶର ଯେକୌଣସି ସମସ୍ୟାକୁ ସିଧାସଳଖଭାବେ ଉପସ୍ଥାପିତ କରିବାକୁ ନିବନ୍ଧର ଆବଶ୍ୟକତା ନାହିଁ। ତେଣୁ ତାଙ୍କ ସମ୍ପାଦକୀୟରେ ସେ ସରକାର ହୁଅନ୍ତୁ ବା ଅନ୍ୟ ଯେକୌଣସି ସମସ୍ୟା ହେଉ ସିଧାସଳଖ ପ୍ରଶ୍ନ କରୁଥିଲେ ଏବଂ ଆବଶ୍ୟକ ହେଲେ ପରବର୍ତ୍ତୀସଂଖ୍ୟାରେ ତା'ର ସମାଧାନର ଇଙ୍ଗିତ ଦେଉଥିଲେ। ମୋର

ମନେହୁଏ ଓଡ଼ିଆ ସାମ୍ବାଦିକତାରେ ସେ ଥିଲେ ଶ୍ରେଷ୍ଠ ସମ୍ପାଦକ। ଜାନୀକବାବୁ ତାଙ୍କ ସାମ୍ବାଦିକତା ଆରମ୍ଭ କରିଥିଲେ ଇଂରାଜୀ ଦୈନିକ ଇଷ୍ଟର୍ଣ୍ଣ ଟାଇମ୍‌ସରୁ ୧୯୫୦ ମସିହାରୁ। ୧୯୬୭ ମସିହାରେ ପ୍ରଜାତନ୍ତ୍ରରୁ ସେ ଅପସରି ଯାଇ ନିଜର ଏକ ପତ୍ରିକା ପ୍ରକାଶ କଲେ। ପତ୍ରିକାର ନାମ ପୌରୁଷ। ମୁଁ ଦେଖିଛି ଏହି ପତ୍ରିକା ପାଇଁ ସେ ସାଇକଲରେ ବିଭିନ୍ନ ସ୍ଥାନ ଯାଇ ଏହାକୁ ପ୍ରତିଷ୍ଠିତ କରାଇପାରିଥିଲେ। ୧୯୫୦ ମସିହା ବେଳକୁ ଜାନକୀବାବୁଙ୍କ ଭଳି ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି ଚାହିଁଥିଲେ ଯେକୌଣସି ବଡ଼ ସରକାରୀ ବା ବେସରକାରୀ ଚାକିରି କରିପାରିଥାନ୍ତେ, ମାତ୍ର ସେ ତାହା ନ କରି ଦେଶପାଇଁ ମୁକ୍ତ ମନରେ କାର୍ଯ୍ୟ କରିବାକୁ, ନିଜ ଗୋଡ଼ରେ ନିଜେ ଦୃଢ଼ ଭାବରେ ଠିଆ ହେବାକୁ ସାମ୍ବାଦିକତାକୁ ବରଣ କରିଥିଲେ। ସେହି ମନୋଭାବ ଓ ମନୋବଳ ତାଙ୍କୁ ଓଡ଼ିଶାର ଏକ ନମ୍ବର ବ୍ୟକ୍ତିତ୍ୱରେ ପହଞ୍ଚାଇଥିଲା।

ଜାନକୀବାବୁଙ୍କ ସମ୍ପର୍କରେ ଲେଖିବସିଲେ ଏକ ବଡ଼ ଗ୍ରନ୍ଥ ହେବ। ମୋର ମନେହୁଏ ଓଡ଼ିଶାରେ ସେ ହେଉଛନ୍ତି ଏକମାତ୍ର ବ୍ୟକ୍ତିତ୍ୱ ଯେ ତିନିଥର ମୁଖ୍ୟମନ୍ତ୍ରୀ, କେନ୍ଦ୍ରରେ ତିନିଥର ମନ୍ତ୍ରୀ (ଉପମନ୍ତ୍ରୀ, ରାଷ୍ଟ୍ରମନ୍ତ୍ରୀ ଓ ଥରେ କ୍ୟାବିନେଟ୍ ମନ୍ତ୍ରୀ) ଥରେ ବିରୋଧୀଦଳ ନେତା (୨୦୦୪ ମସିହାରୁ ୨୦୦୯ ମସିହା) ଥରେ ରାଜ୍ୟପାଳ, ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳାଧିପତି ପଦରେ ନିଜକୁ ଅଧିଷ୍ଠିତ କରାଇପାରିଥିଲେ ଏବଂ ପ୍ରତ୍ୟେକଟି କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ଅର୍ଜନ କରିଥିଲେ। ଜାନକୀବାବୁ ଥିଲେ ପଣ୍ଡିତ ଓ ତାଙ୍କର ପ୍ରାଜ୍ଞତା ସର୍ବଜନବିଦିତ। ତାଙ୍କର ଲିଖିତ ଗୌତମବୁଦ୍ଧ ଆଜି ବି ପଣ୍ଡିତମାନଙ୍କପାଇଁ ଏକ ଦିଗ୍‌ଦର୍ଶକ। ସେ ଭର୍ତ୍ତୃହରିଙ୍କ ଶୃଙ୍ଗାରଶତକ, ନୀତିଶତକ, ବୈରାଗ୍ୟଶତକ ଓଡ଼ିଆରେ ଅନୁବାଦ କରି ଓଡ଼ିଆ ଭାଷା, ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି। ଏହି ଗ୍ରନ୍ଥଗୁଡ଼ିକ ଓଡ଼ିଆ ଭାଷାରେ ଅନୁବାଦ କରିବା ବହୁ ପଣ୍ଡିତଙ୍କର କଳ୍ପନା ବାହାରେ ଥିଲା। ଜାନକୀବାବୁ ବଙ୍କିମଚନ୍ଦ୍ର ଉପନ୍ୟାସମାଳାର ସୁନ୍ଦର ଓଡ଼ିଆ ଅନୁବାଦ କରିଥିଲେ। ଏହି ବୃହତ୍ ପୁସ୍ତକପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ଅନୁବାଦ ପୁରସ୍କାର ପାଇଥିଲେ।

ଜାନକୀବାବୁଙ୍କ ଅଗାଧ ପାଣ୍ଡିତ୍ୟ ଥିଲା। ମୋର ଏ ସମ୍ପର୍କରେ ଏକ ଘଟଣା ମନେ ପଡୁଛି। ୧୯୮୫ ମସିହା ଏପ୍ରିଲ ମାସରେ 'ଲେଖକ ସାମ୍ମୁଖ୍ୟ' ବିଶ୍ୱଭାରତୀରୁ ଏକ ନିମନ୍ତ୍ରଣ ପାଇଥିଲା। ସେତେବେଳେ ଶାନ୍ତିନିକେତନ ବିଶ୍ୱଭାରତୀର କୁଳପତି ଥିଲେ ଭାରତର ବିଖ୍ୟାତ ଐତିହାସିକ ପ୍ରଫେସର ନିମାଇଁ ସାଧନ ବସୁ। ମୁଁ ଏ ନିମନ୍ତ୍ରଣ ସମ୍ପର୍କରେ ପ୍ରଥମେ ବିଶ୍ୱଭାରତୀର ତତ୍କାଳୀନ ଓଡ଼ିଆ ବିଭାଗ ମୁଖ୍ୟ ଡଃ ଖଗେଶ୍ୱର ମହାପାତ୍ରଙ୍କ ସହ କଥା ହେଲି। ତାଙ୍କ ପରାମର୍ଶରେ ନିମାଇଁ ସାଧନ ବସୁଙ୍କ ସହ ଟେଲିଫୋନ୍ ଯୋଗେ କଥାହେଲି। ସେ କଥାବାର୍ତ୍ତାବେଳେ ମୋତେ କହିଲେ, ମିଃ ଧଳ!– ଶୁଣିଛି ଆପଣଙ୍କର ମୁଖ୍ୟମନ୍ତ୍ରୀ ଜାନକୀବାବୁ ଜଣେ ଅତ୍ୟନ୍ତ ଜ୍ଞାନୀ ଓ ପଣ୍ଡିତ ବ୍ୟକ୍ତି। ଆପଣଙ୍କ ସଭାବେଳେ ସେ ଆସିପାରନ୍ତେକି ? ଆପଣ ଚେଷ୍ଟାକରି ତାଙ୍କୁ ବିଶ୍ୱଭାରତୀକୁ ଅଣାନ୍ତୁ। ମୁଁ ତାଙ୍କୁ କହିଲି ଆପଣ

ଏକ ନିମନ୍ତ୍ରଣ ପତ୍ର ଜାନକୀବାବୁଙ୍କୁ ଦିଅନ୍ତୁ। ତା'ର କପି ମୋତେ ଦିଅନ୍ତୁ। ମୁଁ ଚେଷ୍ଟା କରିବି। ଦିନକ ପରେ ଶାନ୍ତିନିକେତନ ଓଡ଼ିଆବିଭାଗର ଜଣେ ଅଧ୍ୟାପକ ଏକ ନିମନ୍ତ୍ରଣପତ୍ର ଧରି ମୋ ପାଖରେ ପହଞ୍ଚିଲେ। ମୁଁ ପତ୍ରଟି ନେଇ ଜାନକୀବାବୁଙ୍କ ପାଖକୁ ଗଲି। ତାଙ୍କୁ ସାକ୍ଷାତ କରି ଲେଖକ ସାମ୍ମୁଖ୍ୟର ପଚାଶଜଣ ସାହିତ୍ୟିକ ବିଶ୍ୱଭାରତୀ ଯିବା ପାଇଁ ନିମନ୍ତ୍ରଣ ପାଇଥିବା କହିଲି। ତାଙ୍କୁ ବିଶ୍ୱଭାରତୀ ଯିବାପାଇଁ ଅନୁରୋଧ କଲି। ସେ ରାଜି ହେଲେ ଏବଂ ଆମେମାନେ ଯିବାପାଇଁ ରାଜ୍ୟ ପର୍ଯ୍ୟଟନ ବିଭାଗର ଏକ ଶୀତତାପନିୟନ୍ତ୍ରିତ ବସ ବ୍ୟବସ୍ଥା କରିଦେଲେ।

ଶାନ୍ତିନିକେତନରେ ଆମେ ପଚାଶଜଣ ଓଡ଼ିଆ ସାହିତ୍ୟିକ, ବହୁସଂଖ୍ୟକ ବଙ୍ଗଳା ସାହିତ୍ୟିକ, ପ୍ରଫେସରଙ୍କ ସମେତ କଲିକତାର କିଛି ସାହିତ୍ୟିକ ମଧ୍ୟ ଯୋଗ ଦେଇଥିଲେ। ଏହି ସମାବେଶ ବିଶ୍ୱଭାରତୀର ଉତ୍ତରାୟଣ ସଭାକକ୍ଷରେ ଅନୁଷ୍ଠିତ ହୋଇଥିଲା। ବିଖ୍ୟାତ ଲେଖକ ଓ ଅବସରପ୍ରାପ୍ତ ଆଇ.ସି.ଏସ୍. ଅଫିସର ଅନ୍ନଦାଶଙ୍କର ରାୟ ଏହି ସଭାରେ ସଭାପତିତ୍ୱ କରିଥିଲେ। ଜାନକୀବାବୁ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ। ନିମାଇଁ ସାଧନ ବସୁ ତାଙ୍କର ଅଭିଭାଷଣରେ ଜାନକୀବାବୁଙ୍କୁ କେବଳ ଜଣେ ରାଜନୀତିଜ୍ଞ ବା ମୁଖ୍ୟମନ୍ତ୍ରୀ ନୁହନ୍ତି; ଏ ଦେଶର ଏକ ପ୍ରମୁଖ ପ୍ରାଜ୍ଞ ବ୍ୟକ୍ତିରୂପେ ପରିଚୟ ଦେଇଥିଲେ। ସେ ସଭାରେ ଜାନକୀବାବୁଙ୍କ ଭାଷଣ ଶାନ୍ତିନିକେତନରେ ସମସ୍ତଙ୍କୁ ଚମତ୍କୃତ କରିଦେଇଥିଲା। ଜାନକୀବାବୁ ତାଙ୍କ ଭାଷଣ ଆରମ୍ଭ କରିଥିଲେ ସଂସ୍କୃତ ଭାଷାରେ। ଅଧଘଣ୍ଟାଏରୁ ଅଧିକ ସମୟ ସଂସ୍କୃତରେ କହିବା ପରେ ସେ ଇଂରେଜୀରେ କହିଲେ, ଆପଣମାନଙ୍କ ଭିତରୁ ଯେଉଁମାନେ ସଂସ୍କୃତ ଜାଣି ନ ଥିବେ ସେମାନଙ୍କ ଅବଗତି ପାଇଁ ମୁଁ ଇଂରାଜୀରେ କହୁଛି। ତାଙ୍କର ବିଷୟ ଥିଲା- ଭାରତୀୟ ସାହିତ୍ୟ ପରିପ୍ରେକ୍ଷୀରେ ଓଡ଼ିଆ ଓ ବଙ୍ଗଳା ସାହିତ୍ୟ। ଏହି ବିଷୟ ଉପରେ ସେ ନିର୍ଭୁଲ ଇଂରାଜୀରେ ପ୍ରାୟ ୪୫ ମିନିଟ୍ ପର୍ଯ୍ୟନ୍ତ ଭାଷଣ ଦେଲେ। ବଙ୍ଗଳା ସାହିତ୍ୟ ଓ ରବୀନ୍ଦ୍ରନାଥଙ୍କ ଉପରେ ଜାନକୀବାବୁଙ୍କର ଏହି ଭାଷଣ ସମଗ୍ର ପ୍ରେକ୍ଷାଳୟରେ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥିଲା।

ସଭାପତି ଅଭିଭାଷଣରେ ଅନ୍ନଦାଶଙ୍କର ରାୟ କହିଲେ, 'ଜାନକୀବାବୁ ପଣ୍ଡିତ ବ୍ୟକ୍ତି ବୋଲି ଶୁଣିଥିଲି। ମାତ୍ର ତାଙ୍କ ପାଣ୍ଡିତ୍ୟ ଏତେ ବ୍ୟାପକ ଓ ଗଭୀର ତାହା ଆଜି ତାଙ୍କ ଭାଷଣ ଶୁଣି ଅନୁଭବ କରୁଛି। ଭାରତବର୍ଷରେ ରାଜନୀତିକ ବ୍ୟକ୍ତିଙ୍କ ମଧ୍ୟରେ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଭଳି ପଣ୍ଡିତ ବିରଳ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ବିଶେଷକରି ବଙ୍ଗଳା ସାହିତ୍ୟ ଉପରେ ତାଙ୍କର ଏଭଳି ପର୍ଯ୍ୟାଲୋଚନା ମୋତେ ଆଶ୍ଚର୍ଯ୍ୟ କରିଛି।'

ଆଜି ଜାନକୀବାବୁଙ୍କ ସମ୍ପର୍କରେ ଲେଖିବାବେଳେ ମୋର ମନେହୁଏ ସେ ଥିଲେ ପ୍ରକୃତ ଅର୍ଥରେ ଖାଣ୍ଟି ଓଡ଼ିଆ। ଓଡ଼ିଆଭାଷା, ସାହିତ୍ୟ, ସଂସ୍କୃତି ପ୍ରତ୍ୟେକ କ୍ଷେତ୍ରରେ ସେ ଯେଉଁ ଅବଦାନ ଦେଇଛନ୍ତି ଆଜିପର୍ଯ୍ୟନ୍ତ ଅନ୍ୟ କୌଣସି ଓଡ଼ିଆ ସେ ସ୍ତରକୁ ସ୍ପର୍ଶ କରି ନାହାନ୍ତି।

୧୯୫୪ ମସିହାରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିବାବେଳେ ସରକାରୀ ସ୍ତରରେ ଓଡ଼ିଆ ଭାଷା ପ୍ରଚଳନ ପାଇଁ ଏକ ଆଇନ୍ ପ୍ରଣୟନ କଲେ। ଆଇନ୍ ପ୍ରଚଳନ ପରେ ନବକୃଷ୍ଣ ଚୌଧୁରୀ ୧୯୫୬ରେ ମୁଖ୍ୟମନ୍ତ୍ରୀପଦରୁ ଅବ୍ୟାହତି ନେଲେ। ମାତ୍ର ପ୍ରଶାସନିକ କ୍ଷେତ୍ରରେ ଓଡ଼ିଆ ଭାଷା ଆଇନ୍ ପଡ଼ି ରହିଲା। ତାଙ୍କ ପରେ ଡଃ ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ, ବୀରେନ ମିତ୍ର, ସଦାଶିବ ତ୍ରିପାଠୀ, ରାଜେନ୍ଦ୍ର ନାରାୟଣ ସିଂହଦେଓ, ବିଶ୍ୱନାଥ ଦାସ, ନନ୍ଦିନୀ ଶତପଥୀ, ବିନାୟକ ଆଚାର୍ଯ୍ୟ ଓ ନୀଳମଣି ରାଉତରାୟ ମୁଖ୍ୟମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ କଲେ। ହେଲେ ଓଡ଼ିଆ ଭାଷାକୁ ଆଉ କେହି ପ୍ରଶାସନିକ ଭାଷା କରିବାପାଇଁ ମନ ଦେଲେ ନାହିଁ। ବିଚାରା ଓଡ଼ିଆ ଭାଷା ଭାଗ୍ୟ ଆଦରି ସଚିବାଳୟ ପାହାଡ଼ର ପଥର ତଳେ ଚାପି ହୋଇ ପଡ଼ିରହିଲା। ୧୯୮୦ ମସିହାରେ ଜାନକୀବଲ୍ଲଭ ପଟ୍ଟନାୟକ ଏ ରାଜ୍ୟର ଦାୟିତ୍ୱ ନେଲେ। ପ୍ରକୃତ ଅର୍ଥରେ ସେ ଥିଲେ ଓଡ଼ିଆ ବିଶୁଦ୍ଧ ଓଡ଼ିଆପ୍ରାଣ। ନବକୃଷ୍ଣ ଚୌଧୁରୀଙ୍କ ଓଡ଼ିଆ ସରକାରୀ ଭାଷା ଆଇନ୍–୧୯୫୪କୁ ଜାନକୀବାବୁ ସଚିବାଳୟ ପାହାଡ଼ତଳୁ ମୁଖ୍ୟମନ୍ତ୍ରୀଙ୍କ ଟେବୁଲକୁ ଆଣିଲେ। ଓଡ଼ିଶାର ପ୍ରଶାସନିକ ସ୍ତରରେ ଓଡ଼ିଆଭାଷା ପ୍ରଚଳନପାଇଁ ଏକ ନୂଆ ଆଇନ୍ ଓଡ଼ିଶା ଆଇନ୍ ୧୯୮୫ ମସିହାରେ ବିଧାନସଭାରେ ଗୃହୀତ ହେଲା। ଓଡ଼ିଆ ଭାଷାରେ ସ୍ୱତନ୍ତ୍ରଭାବରେ ନୂଆ ଟାଇପ ରାଇଟର ପ୍ରସ୍ତୁତ ହେଲା। ସଚିବାଳୟ ସ୍ତରଠାରୁ ବ୍ଲକ୍‌ସ୍ତର ପର୍ଯ୍ୟନ୍ତ ଓଡ଼ିଆ ସର୍ଟହ୍ୟାଣ୍ଡ୍‌ରେ ଡିକ୍ଟେସନ୍ ନେବା ପାଇଁ ଷ୍ଟେନୋମାନଙ୍କୁ ତାଲିମ ଦିଆଗଲା ଓ ଟାଇପିଷ୍ଟମାନେ ଓଡ଼ିଆ ଟାଇପ୍ ଶିଖିଲେ। ୧୯୮୫ ମସିହାରୁ ନୂତନ ଉତ୍ସାହ, ଉଦ୍ଦୀପନାରେ ଓଡ଼ିଆଭାଷାରେ ପ୍ରଶାସନିକ କାର୍ଯ୍ୟ ଆରମ୍ଭ ହେଲା। ଜାନକୀବାବୁ କେବଳ ସେତିକିରେ ସନ୍ତୁଷ୍ଟ ନ ଥିଲେ, ସେ ଏକ ନିର୍ଦ୍ଦେଶନାମା ଜାରି କଲେ ଏଣିକି ଇଂରେଜୀ ଭାଷାରେ କେହି ଅଧିକାରୀ ଫାଇଲ ପଠାଇଲେ ତାହା ଫେରାଇ ଦିଆଯିବ। ସବୁ ଫାଇଲ୍ ଓଡ଼ିଆ ଭାଷାରେ ଲେଖିକରି ପଠାଇବାକୁ ନିର୍ଦ୍ଦେଶନାମାରେ କୁହାଗଲା। ସମସ୍ତେ ଓଡ଼ିଆ ପଢ଼ିଲେ- ଓଡ଼ିଆ ଶିଖିଲେ। ଏଇ ହେଉଛନ୍ତି ଜାନକୀବଲ୍ଲଭ ପଟ୍ଟନାୟକ। ଓଡ଼ିଶା ଆଉ ଓଡ଼ିଆଙ୍କର ପ୍ରକୃତ ଦାୟାଦ। ଏକ ଗର୍ବିତ ଉତ୍ତରାଧିକାରୀ। ଜାନକୀବାବୁ ୧୯୯୦ରେ ଶାସନରୁ ଅବ୍ୟାହତି ନେଲେ। ଆସିଲେ ବିଜୁ ପଟ୍ଟନାୟକ। ଓଡ଼ିଆ ଭାଷା ପଛକୁ ଠେଲି ହୋଇଗଲା। ବିଜୁ ପଟ୍ଟନାୟକ କ'ଣ ଓଡ଼ିଆ ନ ଥିଲେ? ତେବେ ଏ ଅବସ୍ଥା ହେଲା କାହିଁକି? କାରଣ, ଜାନକୀବାବୁଙ୍କ ଓଡ଼ିଆ ଭାଷା ପ୍ରୀତି ବିଜୁ ପଟ୍ଟନାୟକଙ୍କର ନ ଥିଲା। ତେବେ ଜାନକୀବାବୁ ପୁଣି ୧୯୯୫ରେ ଶାସନକୁ ଆସିଲେ। ଓଡ଼ିଆଭାଷା ପୁଣି ସ୍ୱମହିମାରେ ବିରାଜମାନ କଲା। ପୁଣି ପ୍ରଶାସନିକସ୍ତରରେ ଓଡ଼ିଆଭାଷା ପ୍ରଚଳନ ହେଲା। ୧୯୯୯ରେ ଜାନକୀବାବୁ ମୁଖ୍ୟମନ୍ତ୍ରୀ ପଦରୁ ଅବ୍ୟାହତି ନେଲେ। ଓଡ଼ିଆ ଭାଷାର ଗୌରବସୂର୍ଯ୍ୟ ତାଙ୍କ ସାଙ୍ଗେ ସାଙ୍ଗେ ବୁଡ଼ିଗଲା। ତା'ପରେ ଏବେ ଚାଲିଛି ସମ୍ପୂର୍ଣ୍ଣ ଅଣଓଡ଼ିଆ ରାଜ।

ଆପଣ କ'ଣ କହିବାକୁ ଦ୍ୱିଧା କରିବେ ଯେ ଜାନକୀବାବୁ ଥିଲେ ପ୍ରକୃତ ଓଡ଼ିଆ! ଓଡ଼ିଶା ଆଉ ଓଡ଼ିଆଙ୍କର ଏକମାତ୍ର ଉତ୍ତରାଧିକାରୀ!

ଓଡ଼ିଆ ସାହିତ୍ୟର ବିଶେଷ କରି ଓଡ଼ିଆ ବହିର ପ୍ରସାର ଓ ପ୍ରଚାରପାଇଁ ଆମେ ଆରମ୍ଭ କଲୁ ଭୁବନେଶ୍ୱର ପୁସ୍ତକମେଳା। ଜାନକୀବାବୁ ଥିଲେ ଆମର ପ୍ରକୃତ ଅର୍ଥରେ ପୃଷ୍ଠପୋଷକ। ୧୯୮୫ରେ ପ୍ରଥମ ମେଳା ଉଦ୍‌ଘାଟନ କରିବା ପରଠାରୁ ପ୍ରତିବର୍ଷ ସେ ମେଳାକୁ ଆସୁଥିଲେ। ତାଙ୍କ ତିରୋଧାନ ପୂର୍ବରୁ ଫେବୃଆରୀ ୧୦ତାରିଖ ୨୦୧୫ରେ ସେ ୩୧ତମ ଭୁବନେଶ୍ୱର ପୁସ୍ତକମେଳା ଉଦ୍‌ଘାଟନ କରିଥିଲେ।

ମୁଁ ଜାଣିବାରେ ଓଡ଼ିଶାରେ ଜାନକୀବଲ୍ଲଭ ପଟ୍ଟନାୟକ ଏକମାତ୍ର ବକ୍ତା ଯେ ଓଡ଼ିଆରେ ଭାଷଣ ଦେଲାବେଳେ ସମଗ୍ର ଭାଷଣରେ ଓଡ଼ିଆ ବ୍ୟତୀତ ଅନ୍ୟଭାଷାର ଶବ୍ଦ ବ୍ୟବହାର କରନ୍ତି ନାହିଁ। ଅନେକ ସମୟରେ ଆମେ ଏ ବିଷୟ ଅନୁଧ୍ୟାନ କରିଛୁ। କାରଣ ଓଡ଼ିଶାର ଉପାନ୍ତ ଅଞ୍ଚଳରେ ଲେଖକ ସାମ୍ମୁଖ୍ୟ ପକ୍ଷରୁ ଯେଉଁ ସାହିତ୍ୟୋତ୍ସବ କରାଯାଇଥାଏ ପ୍ରତ୍ୟେକ ସାହିତ୍ୟୋତ୍ସବରେ ସେ ଯୋଗ ଦେଇଥା'ନ୍ତି। ତାଙ୍କ ମତରେ ଓଡ଼ିଶାର ପ୍ରାନ୍ତୀୟ ଅଞ୍ଚଳରେ ଓଡ଼ିଆଭାଷା ଉପରେ ତେଲଗୁ, ହିନ୍ଦୀ, ବଙ୍ଗଳା ପ୍ରଭାବ ବିସ୍ତାର କରୁଛନ୍ତି। ତେଣୁ ପ୍ରାନ୍ତୀୟ ଅଞ୍ଚଳରେ ବଡ଼ବଡ଼ ଓଡ଼ିଆ ସାହିତ୍ୟ ଉତ୍ସବ କରାଯାଉ। ତାଙ୍କରି ପ୍ରେରଣା ଓ ସମ୍ପୂର୍ଣ୍ଣ ସହଯୋଗରେ ଆମେ ସୁନାବେଢ଼ା, ରାଉରକେଲା, ପାରଳାଖେମୁଣ୍ଡି, ବଲାଙ୍ଗିର, ଖଡ଼ିଆଳ, ବାଲେଶ୍ୱର,. କେନ୍ଦୁଝର, ବାରିପଦା, ସମ୍ବଲପୁର ଆଦି ଅଞ୍ଚଳରେ ଏକାଧିକ ବାର ସାହିତ୍ୟୋତ୍ସବ କରିଥିଲୁ। ଓଡ଼ିଶାରେ ଆଉ କୌଣସି ନେତାଙ୍କର ଏ ଭାବନା ନ ଥିଲା ବା ନାହିଁ। ଜାନକୀବାବୁ ଘଣ୍ଟାଏରୁ ଅଧିକ ସମୟ ଖାଣ୍ଟି ଓଡ଼ିଆରେ ଭାଷଣ ଦିଅନ୍ତି।

ମୋର ୭୫ ବର୍ଷ ପୂର୍ତ୍ତି ଉପଲକ୍ଷେ ମୋ ପରିବାର ଏବଂ କିଛି ପାରିବାରିକ ବନ୍ଧୁ ମୋତେ ନ ଜଣାଇ ଗୋପନରେ ମୋର ଜୟନ୍ତୀ ପାଳନ କରି ମୋତେ ଆଶ୍ଚର୍ଯ୍ୟ କରିଦେବା ପାଇଁ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଞ୍ଜିନିୟରସ୍ ପ୍ରେକ୍ଷାଳୟରେ ଏକ ବଡ଼ ସମାବେଶର ଆୟୋଜନ କରିଥିଲେ। ସମୟ ଥିଲା, ୨୦୧୫ ଜାନୁଆରୀ ୪ ତାରିଖ। ଏ ଉପଲକ୍ଷେ 'ଅନନ୍ୟ ବରେନ୍ଦ୍ର' ଶିରୋନାମରେ ଏକ ପୁସ୍ତକ ମଧ୍ୟ ପ୍ରକାଶ କରିଥିଲେ। କିଛି ବନ୍ଧୁ ଜାନକୀବାବୁଙ୍କୁ ଯାଇ ଏହା ଜଣାଇ ଉତ୍ସବରେ ମୁଖ୍ୟ ଅତିଥି ହେବାସହ ମୋ ଉପରେ ଏକ ନିବନ୍ଧ ଦେବାପାଇଁ ଅନୁରୋଧ କରିଥିଲେ। ଆଶ୍ଚର୍ଯ୍ୟର ବିଷୟ ଜାନକୀବାବୁ ମୋ ସମ୍ପର୍କରେ ଏକ ଲେଖା ସହ ସେଦିନ ମୁଖ୍ୟଅତିଥି ହୋଇଥିଲେ। ମୋପ୍ରତି ତାଙ୍କର ଶ୍ରଦ୍ଧାରେ ମୁଁ ଅଭିଭୂତ ହୋଇଥିଲି।

ମୋ ବିଚାରରେ ସେ ଓଡ଼ିଶା ଓ ଓଡ଼ିଆଙ୍କର ଜଣେ ମହାନାୟକ, କେବଳ ମହାନାୟକ ନୁହନ୍ତି, ଓଡ଼ିଶା ଓ ଓଡ଼ିଆଙ୍କର ସେ ହେଉଛନ୍ତି ସାର୍ବଜନୀନ ନେତା।



# ଭାଷା-ସାହିତ୍ୟର ଅନନ୍ୟ ପୃଷ୍ଠପୋଷକ

ପାବକ କାନୁନ୍‌ଗୋ

ଜାନକୀବଲ୍ଲଭ ପଟ୍ଟନାୟକ ଆମଠାରୁ ବିଦାୟ ନେବାର ଏକ ବର୍ଷ ହୋଇଗଲାଣି। ବର୍ଷକ ତଳେ ଯେଉଁମାନେ ଶୋକପ୍ରକାଶ କରିଥିଲେ ସେମାନଙ୍କ ଭିତରୁ ଅନେକେ କହିଥିଲେ, ତାଙ୍କ ବିୟୋଗରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହେଲା ତାହା ସହଜରେ ପୂରଣ ହେବ ନାହିଁ। ଆଜି ବର୍ଷକ ପରେ ଅନୁଭୂତ ହେଉଛି ସେହି କଥା କେତେ ସତ୍ୟ। ଓଡ଼ିଶାର ଗୌରବମୟ ଇତିହାସ, ସ୍ଥାପତ୍ୟ, କଳା ଓ ସଂସ୍କୃତିପ୍ରତି ତାଙ୍କର ଯେଉଁ ପ୍ରଗାଢ଼ ଅନୁରାଗ ଥିଲା ସେହିଭଳି ଆଉ ଜଣେ ଅନୁରାଗୀ ଓଡ଼ିଶାରୁ ଆଜି ଖୋଜିଲେ ଆମକୁ ନିରାଶ ହେବାକୁ ପଡ଼ିବ। ସବୁଠାରୁ ବଡ଼ କ୍ଷତି ହେଲା ଓଡ଼ିଆ ଭାଷା ଓ ସାହିତ୍ୟର। ଆମ ଭାଷା କିପରି ବିକାଶ ପଥରେ ଆଗେଇଯିବ ସେ କଥା ସେ ମୃତ୍ୟୁପର୍ଯ୍ୟନ୍ତ ଚିନ୍ତା କରୁଥିଲେ। ଭଲ ଓଡ଼ିଆ ବହିଟିଏ ଦେଖିଲେ ବା ପୁସ୍ତକ ପ୍ରଦର୍ଶନୀକୁ ଗଲାବେଳେ ସେ କିପରି ଖୁସି ହୋଇଯାଉଥିଲେ ତାହା ଅନେକଙ୍କର ଅନୁଭବରେ ଥିବ। ଓଡ଼ିଆ ଭାଷା-ସାହିତ୍ୟକୁ ଜାନକୀବଲ୍ଲଭଙ୍କ ଅବଦାନ ସମ୍ପର୍କରେ ନାନା ଦିଗରୁ ଆଲୋଚନା ହେବ–ଏଠାରେ କିନ୍ତୁ ଗୋଟିଏ ସ୍ୱଳ୍ପ ଆଲୋଚିତ ଦିଗ ସମ୍ପର୍କରେ ସଂକ୍ଷେପରେ ଆଲୋଚନା କରୁଛି।

ଓଡ଼ିଆ ଭାଷାରେ ଗୋଟିଏ ସୁସଂପାଦିତ ବିଶ୍ୱକୋଷ ବା ଏନ୍‌ସାଇକ୍ଲୋପିଡିଆ ପ୍ରଣୟନର ଆବଶ୍ୟକତା କେତେ ତାହା ଜାନକୀବାବୁ ଅନୁଭବ କରୁଥିବାରୁ ଏ ଦିଗରେ ହେଉଥିବା ଉଦ୍ୟମକୁ ଉତ୍ସାହିତ କରୁଥିଲେ। ଯେତେବେଳେ ନିଶ୍ଚିତ ଭାବରେ ସ୍ୱୀକୃତ ହୋଇଗଲା ଯେ ମାନବ ଜ୍ଞାନର ପ୍ରତ୍ୟେକ ବିଭାଗ ଅନ୍ୟ ବିଭାଗଗୁଡ଼ିକ ସହିତ ଅଳ୍ପ ବହୁତେ ସଂପୃକ୍ତ ଓ ଗୋଟିକକୁ ସଂପୂର୍ଣ୍ଣରୂପେ ବାଦ ଦେଇ ଅନ୍ୟ ବିଷୟରେ ବିଜ୍ଞାନସମ୍ମତ ପ୍ରଣାଳୀରେ ଆଲୋଚନା କରାଯାଇପାରିବ ନାହିଁ; ସେତେବେଳେ ଅନୁଭବ କରାଗଲା ଯେ ଗୋଟିଏ ପୁସ୍ତକର କଳେବରରେ ଜ୍ଞାନର ପ୍ରତ୍ୟେକ ବିଭାଗର ପରିଚୟ ଊଣା ଅଧିକେ ରହିବା ଆବଶ୍ୟକ। ସେହି ଅନୁଭବରୁ ଜନ୍ମନେଲା ବିଶ୍ୱକୋଷ ବା ଏନ୍‌ସାଇକ୍ଲୋପିଡ଼ିଆ। ଜାନକୀବାବୁଙ୍କର ନିର୍ଦ୍ଦିଷ୍ଟ ମତ ଥିଲା ଯେ ଯେଉଁ ଭାଷାରେ ଗୋଟିଏ ସେଟ୍ ଗୃହତ୍, ସୁସଂପାଦିତ ଏନ୍‌ସାଇକ୍ଲୋପିଡ଼ିଆ ନାହିଁ, ସେ ଭାଷା ବିଶ୍ୱର ଉନ୍ନତ ଭାଷାର ଦରବାରରେ ସ୍ଥାନ ପାଏ ନାହିଁ।

ଏହିଭଳି ଚିନ୍ତା କରୁଥିବାରୁ ଓଡ଼ିଆ ଭାଷାରେ ବିନୋଦ କାନୁନ୍‌ଗୋଙ୍କ ସଂପୂର୍ଣ୍ଣ ଏକକ ଚେଷ୍ଟାରେ ସମ୍ପାଦିତ ହେଉଥିବା ଜ୍ଞାନମଣ୍ଡଳ କିପରି ଆହୁରି ବିକଶିତ ହେବ ସେ ଦିଗରେ ଜାନକୀବାବୁ ଆନ୍ତରିକତାର ସହିତ ସବୁପ୍ରକାର ସାହାଯ୍ୟ ସମର୍ଥନ

ଯୋଗାଇଦେଇଥିଲେ। ଜାନକୀବାବୁଙ୍କ ଉତ୍ସାହରେ ଶ୍ରୀ କାନୁନ୍‌ଗୋ ୧୯୮୭ରେ ଭୁବନେଶ୍ୱଠାରେ ଜାତୀୟ ବିଶ୍ୱକୋଷ କେନ୍ଦ୍ର ପ୍ରତିଷ୍ଠା କଲେ। ମୁଖ୍ୟମନ୍ତ୍ରୀ ଭାବରେ ସେ ଏହି କେନ୍ଦ୍ରକୁ ଉଦ୍‌ଘାଟନ କରି ଗୋଟିଏ ରାଷ୍ଟ୍ର, ବିଶେଷତଃ ବିକଶିତ ରାଷ୍ଟ୍ରରେ ବିଶ୍ୱକୋଷର ଭୂମିକା ସଂପର୍କରେ ଯେଉଁ ଅଭିଭାଷଣ ଦେଲେ ତାହା ଅନେକଙ୍କୁ ଚକିତ କରିଦେଲା। ତାଙ୍କର ପାଣ୍ଡିତ୍ୟର ଗଭୀରତା କେତେ ତାହା ଉପସ୍ଥିତ ବିଦ୍ୱାନ୍‌ମଣ୍ଡଳୀ ଜାଣିଗଲେ। ଗୋଟିଏ ଭାଷାରେ ଯେତେ ଭଲ ବହି ପ୍ରକାଶିତ ହେଲେ ମଧ୍ୟ ଏନ୍‌ସାଇକ୍ଳୋପିଡ଼ିଆର ସ୍ଥାନ କେହି ପୂରଣ କରିପାରିବେ ନାହିଁ, ଏ ଦିଗରେ ପ୍ରତ୍ୟେକ ଓଡ଼ିଆ ନିଷ୍ଠାପର ଉଦ୍ୟମ କରିବାର ବେଳ ଆସିଛି ବୋଲି ସେ ଆହ୍ୱାନ ଜଣାଇଥିଲେ। ବିନୋଦ କାନୁନ୍‌ଗୋଙ୍କୁ ଏକ 'ଚଳନ୍ତି ବିଶ୍ୱକୋଷ' ଭାବରେ ବର୍ଣ୍ଣନା କରି ତାଙ୍କର ସାଧନା ଭବିଷ୍ୟତ ବଂଶଧରମାନଙ୍କୁ ପ୍ରେରଣା ଯୋଗାଇବ ବୋଲି ସେ କହିଥିଲେ।

ଆମ ଭାଷାରେ ବଡ଼ ବା ବୟସ୍କଙ୍କ ପାଇଁ ଗୋଟିଏ ବୃହତ୍ ବିଶ୍ୱକୋଷର ପ୍ରସ୍ତୁତି ସାଙ୍ଗକୁ ପିଲାମାନଙ୍କ ପାଇଁ ଗୋଟିଏ ବିଶ୍ୱକୋଷ ରଚନା ଉପରେ ସେ ଗୁରୁତ୍ୱ ଦେଉଥିଲେ। ତେଣୁ କଳାପଟା ଅଭିଯାନରେ ଯେତେବେଳେ କେନ୍ଦ୍ର ସରକାର ପ୍ରତ୍ୟେକ ଆଞ୍ଚଳିକ ଭାଷାରେ ଗୋଟିଏ ଲେଖାଁ ଶିଶୁ ବିଶ୍ୱକୋଷ (ଚିଲ୍‌ଡ୍ରେନ୍‌ସ ଏନ୍‌ସାଇକ୍ଳୋପିଡ଼ିଆ) ପ୍ରସ୍ତୁତ କରିବାକୁ ସବୁ ରାଜ୍ୟକୁ ପରାମର୍ଶ ଦେଲେ ମୁଖ୍ୟମନ୍ତ୍ରୀ ଜାନକୀବାବୁ ଚାହିଁଲେ ଏହି ଦାୟିତ୍ୱ ବିନୋଦବାବୁଙ୍କୁ ଦିଆଯାଉ। ତତ୍କାଳୀନ ଶିକ୍ଷାସଚିବ ପ୍ୟାରୀମୋହନ ମହାପାତ୍ରଙ୍କୁ ପରାମର୍ଶ ଦେଲେ ତୁରନ୍ତ ବିନୋଦବାବୁଙ୍କ ସମ୍ମତି ନେଇ କାର୍ଯ୍ୟ ଆରମ୍ଭ କରାଯାଉ। ମାତ୍ର ତିନି ମାସ ମଧ୍ୟରେ ଦୁଇ ଭାଗ ବିଶିଷ୍ଟ 'ଶିଶୁ ଜ୍ଞାନମଣ୍ଡଳ'ଟିକୁ ଯେତେବେଳେ ବିନୋଦବାବୁ ଜାନକୀବାବୁଙ୍କୁ ଦେଲେ ସେ ଆନନ୍ଦରେ ଗଦ୍‌ଗଦ ହୋଇଗଲେ ଓ ଚାହିଲେ ପ୍ରତ୍ୟେକ ଓଡ଼ିଆ ପିଲାଙ୍କ ପାଖରେ ଏହା ଯଥାଶୀଘ୍ର ପହଞ୍ଚୁ।

ଜାନକୀବାବୁଙ୍କ ପାଣ୍ଡିତ୍ୟ, ବିଦ୍‌ବତ୍ତା ଓ ଗବେଷଣା ପ୍ରତି ଗଭୀର ଶ୍ରଦ୍ଧା ସମ୍ପର୍କରେ ସମସ୍ତେ ଜାଣନ୍ତି। କିନ୍ତୁ ଏନ୍‌ସାଇକ୍ଳୋପିଡିଆର ଇତିହାସ ସମ୍ପର୍କରେ ତାଙ୍କର ଯେ ଏପରି ଗଭୀର ଜ୍ଞାନ ରହିଛି, ତାହା ଅନେକଙ୍କୁ ଜଣା ନ ଥିଲା। ତାହା ଜଣାପଡ଼ିଗଲା, ଯେତେବେଳେ ପ୍ରାନ୍ତୀୟ ଭାଷାଗୁଡ଼ିକରେ ସମ୍ପାଦିତ ହେଉଥିବା ବିଶ୍ୱକୋଷର ମୁଖ୍ୟ ସମ୍ପାଦକମାନଙ୍କର ଗୋଟିଏ ସମ୍ମିଳନୀରେ ସେ ଉଦ୍‌ବୋଧନ ଦେଲେ। ୧୯୮୮ରେ ବିନୋଦ କାନୁନ୍‌ଗୋଙ୍କଦ୍ୱାରା ସ୍ଥାପିତ ଜାତୀୟ ବିଶ୍ୱକୋଷ କେନ୍ଦ୍ର ପକ୍ଷରୁ ମହୀଶୂରର କେନ୍ଦ୍ରୀୟ ଭାଷା ସଂସ୍ଥାନ ସହଯୋଗରେ ପ୍ରଥମ ଜାତୀୟ ସମ୍ମିଳନୀ ଭୁବନେଶ୍ୱରଠାରେ ଆୟୋଜିତ ହୋଇଥିଲା। ଶ୍ରୀ ପଟ୍ଟନାୟକ ସେହି ସମ୍ମିଳନୀକୁ ଉଦ୍‌ଘାଟନ କରି ବିଶ୍ୱର ବିଶ୍ୱକୋଷ ଆନ୍ଦୋଳନର ଗତି ଓ ପ୍ରକୃତି ତଥା ଭାରତରେ ଏ ଦିଗରେ ହେଉଥିବା କ୍ଷୀଣ ଉଦ୍ୟମ ସଂପର୍କରେ ଉପସ୍ଥିତ ପଣ୍ଡିତମଣ୍ଡଳୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ। ସେମାନେ ଜାନକୀବଲ୍ଲଭଙ୍କ ଜ୍ଞାନର ପରିସୀମା ଦେଖି ଏପରି ଅଭିଭୂତ ହୋଇଗଲେ ଯେ ବିନୋଦବାବୁଙ୍କୁ ଅଭିନନ୍ଦନ ଜଣାଇ କହିଲେ, ଓଡ଼ିଆମାନେ ଭାଗ୍ୟବାନ୍ ଯେ ଏପରି ଜଣେ ବିଦ୍ୱାନ୍‌ଙ୍କୁ ମୁଖ୍ୟମନ୍ତ୍ରୀ ଭାବରେ ପାଇଛନ୍ତି।

ଜାନକୀବାବୁ ତାଙ୍କର ଉଦ୍‌ବୋଧନ ଆରମ୍ଭରେ ଉତ୍କଳମଣି ଗୋପବନ୍ଧୁଙ୍କର 'କ୍ଷୋଭ' ସମ୍ପର୍କରେ ଯେଉଁ ସୂଚନା ଦେଲେ ତାହା ଉପସ୍ଥିତ ଥିବା ଅନେକ ଓଡ଼ିଆ ବିଦ୍ୱାନ୍‌ଙ୍କ ପାଇଁ ମଧ୍ୟ ଥିଲା ନୂଆ। ସେ କହିଲେ ଯେ ୧୯୧୮ରେ ପଣ୍ଡିତ ଗୋପବନ୍ଧୁ ଓଡ଼ିଆ ଭାଷାରେ ବିଶ୍ୱକୋଷର ଅଭାବ ସଂପର୍କରେ ଯେଉଁ ମତ ଦେଇଥିଲେ ଆଜି ବି ତାହାର ପ୍ରାସଙ୍ଗିକତା ରହିଛି। ଗୋପବନ୍ଧୁ କହିଥିଲେ "ପ୍ରତିଭାଶାଳୀ ସାଧକ ଅନ୍ୟାନ୍ୟ କ୍ଷେତ୍ରରେ ଯେପରି ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେହିପରି ଯୁଗାନ୍ତର ଘଟାଇଥାନ୍ତି। ସେପରି ମହାପୁରୁଷଙ୍କ ଚାରିପାଖରେ କେତେଗୁଡ଼ିଏ ସହଯୋଗୀ ଆସି ସ୍ୱତଃ ମିଳିଯାନ୍ତି। ଏକ ଅଭିନବ ଚିନ୍ତା ଓ କର୍ମର ସ୍ରୋତ ସର୍ବତ୍ର ପ୍ରବାହିତ ହୁଏ। ପଞ୍ଚସଖାଙ୍କ ଅଭ୍ୟୁଦୟବେଳେ ଓଡ଼ିଶାରେ ଏପରି ପ୍ରବାହ ଥରେ ଦେଖାଦେଇଥିଲା। ମାତ୍ର ଏପରି ଯୁଗ ସବୁ ଜାତିର ଭାଗ୍ୟରେ ସହଜରେ ଆସେ ନାହିଁ। ପ୍ରତିଭାର ବିକାଶ ସାଧାରଣତଃ ସବୁବେଳେ ସର୍ବତ୍ର ଘଟେ ନାହିଁ। ଅଧିକ ଭାଗ କାର୍ଯ୍ୟ ପୃଥିବୀର ସବୁ କ୍ଷେତ୍ରରେ ଅଧ୍ୟବସାୟ, ସହଯୋଗିତା ଏବଂ ନୈଷ୍ଠିକତା ପ୍ରଭାବରେ ହୋଇଥାଏ। ଏ ଉପାଦାନ ମଧ୍ୟ ଓଡ଼ିଶାରେ ଏକାନ୍ତ ଅଭାବ। ଓଡ଼ିଶାରେ ଧନ ସଙ୍ଗେ ବିଦ୍ୟାର ଯୋଗ ନାହିଁ। ଏନ୍‌ସାଇକ୍ଲୋପିଡିଆ ଭଳି କାର୍ଯ୍ୟ ଭିନ୍ନ ଭିନ୍ନ ଦେଶରେ ସାହିତ୍ୟ ରାଜ୍ୟରେ ସମ୍ପାଦିତ ହେଉଛି। ଆମ୍ଭମାନଙ୍କ ଆଖି ଆଗରେ ବଙ୍ଗ ଦେଶରେ ବିଶ୍ୱକୋଷ ସଂକଳିତ ହୋଇଅଛି। କିନ୍ତୁ ନିକଟ ଭବିଷ୍ୟତରେ ସେଭଳି ଗୋଟିଏ କାର୍ଯ୍ୟ ସ୍ୱପ୍ନରେ ମଧ୍ୟ ଆଶା କରାଯାଇପାରିବ କି ?"

ଓଡ଼ିଆ ଭାଷାରେ ବିଶ୍ୱକୋଷ ରଚନାର ଇତିହାସ ଯେତେବେଳେ ଲେଖା ହେବ ଜାନକୀବଲ୍ଲଭଙ୍କ ସଂପର୍କରେ ଏଥିରେ ନିଶ୍ଚୟ ଗୋଟିଏ ଉଜ୍ଜ୍ୱଳ ଅଧ୍ୟାୟ ସଂଯୋଜିତ ହେବ– ଏଥିରେ ସନ୍ଦେହ ନାହିଁ।



# ଅନୁଭୂତିରେ ଜାନକୀବଲ୍ଲଭ

ଗଣେଶ୍ୱର ବେହେରା

ବିଶିଷ୍ଟ ଚିନ୍ତାନାୟକ ବେଞ୍ଜାମିନ୍ ଫ୍ରାଙ୍କଲିନ୍ ଏକଦା କହିଥିଲେ "If you would not be forgotten as soon as you are dead, either write something worth reading or do something worth writing". ଜାନକୀବଲ୍ଲଭ ପଟ୍ଟନାୟକ ଥିଲେ ଉଭୟ ଯୋଗ୍ୟତାର ବିରଳ ଉଦାହରଣ। ସାଧାରଣ ଜୀବନରେ ସେ ଯେପରି ଥିଲେ ମହାନାୟକ, ସାହିତ୍ୟ ସୃଜନ କ୍ଷେତ୍ରରେ ଥିଲେ ସେପରି ଅବିଶ୍ୱସନୀୟ ପ୍ରତିଭାର ଅଧିକାରୀ। ଏପରି କେହି ନାହିଁ, ଯେ ତାଙ୍କ ସଂସ୍ପର୍ଶରେ ଆସିଛି କିନ୍ତୁ ପ୍ରଭାବିତ ହୋଇ ନାହିଁ। ତାଙ୍କ ବ୍ୟକ୍ତିତ୍ୱର ଛାପ ତାଙ୍କର ପ୍ରତ୍ୟେକ ସହଯୋଗୀଙ୍କଠାରେ ସହଜରେ ବାରି ହୋଇପଡ଼େ। ମୁଁ ଜଣେ ଅକିଞ୍ଚନ। ତାଙ୍କର ସହଯୋଗୀ ହେବାର ସ୍ପର୍ଦ୍ଧା କରିବି ନାହିଁ, କିନ୍ତୁ ଜଣେ ଅନୁଗାମୀ ନିଶ୍ଚୟ। ଦୀର୍ଘ ତିନି ଦଶନ୍ଧିରୁ ଊର୍ଦ୍ଧ୍ୱକାଳର ରାଜନୀତିକ ଜୀବନରେ ମୁଁ ବହୁ ରାଜନେତାଙ୍କ ସହ କାମ କରିବାର ସୁଯୋଗ ପାଇଛି; କିନ୍ତୁ ଜାନକୀବଲ୍ଲଭ ପଟ୍ଟନାୟକ ମୋତେ ସବୁଠାରୁ ଅଧିକ ମାତ୍ରାରେ ପ୍ରଭାବିତ କରିପାରିଥିଲେ।

ସେ ଥିଲେ ବହୁ ପ୍ରେରଣାର ଉତ୍ସ। ୧୯୮୫ରେ ମୁଁ ପ୍ରଥମଥର ଓଡ଼ିଶା ବିଧାନସଭାକୁ ପଟ୍ଟାମୁଣ୍ଡାଇ ଆସନରୁ ନିର୍ବାଚିତ ହୋଇଥିଲି। ରାଜନୀତି ପ୍ରତି ମୋର ଆଗ୍ରହ ଥିଲା ସତ, କିନ୍ତୁ ମୁଁ ଥିଲି ସଂପୂର୍ଣ୍ଣ ଅନଭିଜ୍ଞ। ବିଧାୟକ ଭାବରେ କିପରି ନିଜକୁ ଗଢ଼ିପାରିବି ସେଥିପାଇଁ ଥିଲା ଅଭାବନୀୟ ଉତ୍କଣ୍ଠା। ଠିକ୍ ଏହି ସମୟରେ ସେ ଉଭା ହୋଇଥିଲେ ପଥପ୍ରଦର୍ଶକ ଭାବରେ। କଂଗ୍ରେସ ବିଧାୟକ ଦଳ ବୈଠକରେ ମୋ ଭଳି ନବାଗତମାନଙ୍କୁ ଉତ୍ସାହିତ କରି କହିଥିଲେ, "ଓଡ଼ିଶାବାସୀଙ୍କ ଆଶୀର୍ବାଦରୁ ଆମ୍ଭେ ଦୁଇ-ତୃତୀୟାଂଶ ଆସନରେ ବିଜୟୀ ହୋଇଥିଲେ ମଧ୍ୟ ଆମ୍ଭକୁ ଏକ ଶକ୍ତିଶାଳୀ ବିରୋଧୀଦଳର ସାମ୍ନା କରିବାକୁ ପଡ଼ିବ। ଆପଣମାନଙ୍କ ମଧ୍ୟରେ ଅଧିକାଂଶ ପ୍ରଥମଥରପାଇଁ ଗୃହକୁ ଆସିଛନ୍ତି। ତଥାପି ଶଙ୍କି ଯିବାର ନାହିଁ। ବିରୋଧୀଙ୍କୁ ମୁକାବିଲା କରିବାର ଆତ୍ମବିଶ୍ୱାସ ରହିବା ଦରକାର। ପ୍ରୟୋଜନ କଠିନ ପରିଶ୍ରମ। କାରଣ ଅଧ୍ୟୟନ ଓ ଅଧ୍ୟବସାୟ ବଳରେ ଅଭିଜ୍ଞତାକୁ ପରାଜିତ କରାଯାଇପାରେ।" ତାଙ୍କର ଏହି କାଳଜୟୀ ପରାମର୍ଶ ଆମ୍ଭମାନଙ୍କୁ ଅଭୂତପୂର୍ବ ପ୍ରେରଣା ଓ ଶତସିଂହର ବଳ ଦେଇଥିଲା।

ପଣ୍ଡିତ ନେହରୁଙ୍କ ଭଳି ସେ କହୁଥିଲେ 'ଆରାମ୍ ହାରାମ୍ ହୈ'। ଅଳସୁଆଙ୍କୁ ଘୃଣା କରୁଥିଲେ। ନିର୍ବାଚନ ମଣ୍ଡଳୀ ବୁଲି ଲୋକସଂପର୍କ ରକ୍ଷା କରିବାରେ ଯେଉଁମାନେ ହେଳା କରୁଥିଲେ, ସେମାନଙ୍କ ଉପରେ ଭୀଷଣ ଅସନ୍ତୁଷ୍ଟ ହେଉଥିଲେ। ଏପରିକି ତାଙ୍କର ନିୟମିତ ତାଗିଦ୍‌ସତ୍ତ୍ୱେ ଯେଉଁମାନେ ବିଫଳ ହେଉଥିଲେ, ସେମାନଙ୍କୁ ସାକ୍ଷାତ ଦେଉ ନ ଥିଲେ।

ସବୁବେଳେ ଆଶୀର୍ବାଦ ଦେଇ କହୁଥିଲେ, 'ତୁମ ରାଜନୀତିକ ଜୀବନ ଦୀର୍ଘାୟୁ ହେଉ । ତୁମେ ବର୍ତ୍ତମାନ ପ୍ରଥମ ପାହାଚରେ । ଏହିପରି ଅନେକ ପାହାଚ ଅତିକ୍ରମ କରିବାକୁ ହେବ । ଆବଶ୍ୟକ କର୍ତ୍ତବ୍ୟନିଷ୍ଠା ଓ କର୍ମପ୍ରବଣତା । ଏଥିରୁ ଯେପରି ଦୂରେଇ ନ ଯାଅ ।'

ଏକଦା ମୋ ଉପରେ ଅସନ୍ତୁଷ୍ଟ ହୋଇ କେତେକ କଂଗ୍ରେସ ବନ୍ଧୁ ମୁଖ୍ୟମନ୍ତ୍ରୀଙ୍କୁ ଭେଟିବାକୁ ଚାହିଁଲେ । ସେ ସେମାନଙ୍କୁ ସମୟ ଦେଲେ, ମୋତେ ଉପସ୍ଥିତ ରହିବାକୁ କହିଲେ । ମୁଁ ଡରି ଯାଇଥିଲି । କାରଣ କର୍ମୀ ଭାବରେ ଅଭିଜ୍ଞତା ଅଭାବରୁ ଅଜ୍ଞାତରେ କେତେକ ଭୁଲ୍ କରିପକାଉଥିଲି । ତଥାପି ବୈଠକରେ ଯୋଗଦେବା ବ୍ୟତୀତ ବିକଳ୍ପ ନ ଥିଲା । ବସିରହିଲି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ନିରବରେ । ବନ୍ଧୁମାନଙ୍କର ଅଭିଯୋଗ ପରେ ମୋତେ କହିବାକୁ ନିର୍ଦ୍ଦେଶ ମିଳିବାରୁ କେବଳ ଏତିକି କହିଲି ଯେ ନିଜକୁ ସଜାଡ଼ିନେବାକୁ ନିଶ୍ଚୟ ଚେଷ୍ଟା କରିବି । ସେମାନଙ୍କୁ ଆଶ୍ୱାସନା ଦେଇ ସେ କହିଲେ, ଆପଣମାନେ ଯାଆନ୍ତୁ । ଆଉ ଅସୁବିଧା ହେବ ନାହିଁ । ତା'ପରେ ମୋତେ ଡାକି କହିଲେ, ମୁଁ ବହୁତ ଖୁସି । ବେଶ୍ ଅଭିଯୋଗ ଆସିଲା, କିନ୍ତୁ କେହି ପଇସା ଖାଇବାର ଅଭିଯୋଗ କଲେ ନାହିଁ । ଭଗବାନ୍ ସବୁବେଳେ ତୋ ପଛରେ ଛିଡ଼ାହେବେ । ବାଟରୁ ଅବାଟକୁ ଯିବୁ ନାହିଁ । ଅସୁବିଧା ପଡ଼ିଲେ ମୋତେ କହିବୁ, ହାତ ପତେଇବୁ ନାହିଁ । ତାଙ୍କ କଥା ଶୁଣି ମୋ ଆଖି ଓଦା ହୋଇଗଲା । ମୁଁ ପାଦଛୁଇଁ ନମସ୍କାର କଲି । ପ୍ରଚଣ୍ଡ ଆତ୍ମସନ୍ତୋଷର ସହ ମୁଖ୍ୟମନ୍ତ୍ରୀଙ୍କ ବାସଭବନରୁ ଫେରିଲି । ଅସନ୍ତୁଷ୍ଟମାନଙ୍କ ଅଭିଯୋଗ ପରେ ଭର୍ତ୍ସନା ପରିବର୍ତ୍ତେ ପ୍ରଶଂସା ଓ ତାହା ପୁଣି ମୁଖ୍ୟମନ୍ତ୍ରୀଙ୍କ ଠାରୁ, ମୁଁ ସ୍ୱପ୍ନରେ ଭାବି ନ ଥିଲି । ବାସ୍ତବରେ ସେ ଥିଲେ ଭିନ୍ନ ଏକ ନେତା, ଯିଏ ତାଙ୍କର ଉତ୍ତରପିଢ଼ିକୁ ଲାଞ୍ଚ ମିଛରୁ ଦୂରେଇ ରହିବାକୁ ପ୍ରେରଣା ଦେଉଥିଲେ । ଧନ୍ୟ ସେ ମଣିଷ, ଅମୂଲ୍ୟ ତାଙ୍କର ପରାମର୍ଶ ।

ବିରୋଧୀ ଦଳ ପ୍ରତି ତାଙ୍କର ଗଭୀର ସମ୍ମାନ ଥିଲା । ସମାଲୋଚନା ଯେତେ କଠୋର ଏବଂ ବ୍ୟକ୍ତିଗତ ଅସୂୟାସୂଚକ ହେଲେ ମଧ୍ୟ ସେଗୁଡ଼ିକୁ ଶୁଣିବାପାଇଁ ତାଙ୍କର ଧୈର୍ଯ୍ୟ ଥିଲା । ଯୋଡ଼ିଏ କଥାରୁ ଏହା ସ୍ପଷ୍ଟ ସୂଚିତ ହେଉଥିଲା । ବିରୋଧୀଙ୍କ କଣ୍ଠରୋଧ କରିବାରେ ପ୍ରୟାସୀ ନ ଥିଲେ । ଦ୍ୱିତୀୟତଃ, ସବୁଠାରୁ ବଡ଼ କଥା ହେଲା ସେ ନିଜେ ଅଧିକାଂଶ ସମୟରେ ଗୃହରେ ଉପସ୍ଥିତ ରହି ସମସ୍ତ କଟୁ, ତିକ୍ତ ଓ କଷାୟ ପ୍ରତିକ୍ରିୟା ଶୁଣୁଥିଲେ ଓ ତାହାର ଯଥାର୍ଥ ଜବାବ ମଧ୍ୟ ଦେଉଥିଲେ । ସେତେବେଳେ ବିରୋଧୀଦଳରେ ଥିବା ତାଙ୍କର କଠୋର ସମାଲୋଚକଭାବେ ପରିଚିତ ରାମକୃଷ୍ଣ ପଟ୍ଟନାୟକ, ବିଜୟ ମହାପାତ୍ର ଓ ଶ୍ରୀକାନ୍ତ ଜେନା ପ୍ରମୁଖଙ୍କ ମୁହଁରେ ବହୁବାର ମୁଁ ଜାନକୀବଲ୍ଲଭଙ୍କ ଉଚ୍ଚ ପ୍ରଶଂସା ଶୁଣିଛି । ଏହା ପ୍ରମାଣିତ କରୁଛି ଯେ ସେ ସଚ୍ଚା ଗଣତନ୍ତ୍ରର ବିଶ୍ୱାସୀ ଥିଲେ ଓ ପ୍ରତିହିଂସାପରାୟଣତାର ବିରୋଧୀ ଥିଲେ । ଦାର୍ଶନିକ ଭୋଲଟେୟାର୍ ଥିଲେ ତାଙ୍କ ପାଇଁ ଆଦର୍ଶ, ଯିଏ କହିଥିଲେ "I may not agree to what you say. But I will defend to death your right to say." ତାଙ୍କର ଏକ ବିଶେଷ ଗୁଣ ମୁଁ ବହୁବାର ଲକ୍ଷ୍ୟ କରିଛି, ସେ ବିରୋଧୀଦଳର ବିଧାୟକଙ୍କ ପ୍ରତି ମଧ୍ୟ ସମ୍ବେଦନଶୀଳ ହୋଇ ସେମାନଙ୍କ ବ୍ୟକ୍ତିଗତ ସମସ୍ୟାର ସମାଧାନ ପାଇଁ ବିନା ଦ୍ୱିଧାରେ ସାହାଯ୍ୟ କରୁଥିଲେ ।

ଜାନକୀବଲ୍ଲଭ ପଟ୍ଟନାୟକଙ୍କର ବ୍ୟକ୍ତିତ୍ୱର ତୁଳନା ନାହିଁ । ସେ ନିଜେ ହିଁ ନିଜର ତୁଳନା । 'ଧୈର୍ଯ୍ୟ ଯସ୍ୟ ପିତା କ୍ଷମା ଚ ଜନନୀ' । ଭର୍ତ୍ତୃହରିଙ୍କ ଏହି ଉକ୍ତିର ସେ ଥିଲେ ଉଜ୍ଜ୍ୱଳ

ଉଦାହରଣ । ୧୯୯୦ ସାଧାରଣ ନିର୍ବାଚନରେ କଂଗ୍ରେସର ଘୋର ବିପର୍ଯ୍ୟୟ ହେଲା । ୧୪୭ରୁ ମାତ୍ର ୧୦ ଆସନରେ କଂଗ୍ରେସ ବିଜୟୀ ହେଲା । ରାଜନୀତିକ ବିଶ୍ଳେଷକଙ୍କ ମଧ୍ୟରୁ ଅନେକ କଂଗ୍ରେସର ମୃତ୍ୟୁଲେଖ ଲେଖିବାରେ ପ୍ରତିଯୋଗିତା ଆରମ୍ଭ କରିଦେଲେ । ଦଳୀୟ ଟିକଟରୁ ବଞ୍ଚିତ ହୋଇ ମୁଁ ମଧ୍ୟ ଅନୁରୂପ ଭାବରେ ମ୍ରିୟମାଣ ହୋଇପଡ଼ିଥିଲି । ଏହି ସମୟରେ ଜାନକୀବାବୁଙ୍କ ନେତୃତ୍ୱକୁ ନେଇ ପ୍ରଶ୍ନବାଚୀ ସୃଷ୍ଟି ହେଲା । ସମସ୍ତେ ସେ ହିଁ ପରାଜୟର ମୁଖ୍ୟ କାରଣ ବୋଲି ଆକ୍ଷେପ କଲେ । କିନ୍ତୁ ଦୃଢ଼ମନା ଜାନକୀବଲ୍ଲଭ ଅବିଚଳିତ ରହି ସଂକଟର ସାମ୍ନା କଲେ । ମାତ୍ର ଦୁଇ ବର୍ଷ ପରେ ପ୍ରଦେଶ କଂଗ୍ରେସର ନେତୃତ୍ୱ ନେଇ ୧୯୯୫ରେ ପ୍ରବଳ ପରାକ୍ରମୀ ବିଜୁବାବୁଙ୍କ ଜନତାଦଳକୁ ଧରାଶାୟୀ କରି କଂଗ୍ରେସକୁ ବିଜୟୀ କଲେ । ୧୯୯୫ର ବିଜୟ ତାଙ୍କ ଅଭୂତପୂର୍ବ ରାଜନୀତିକ ବିଚକ୍ଷଣତା ପାଇଁ ସମ୍ଭବ ହୋଇଥିଲା । ସେ ଥିଲେ ସ୍ଥିତପ୍ରଜ୍ଞ । ତେଣୁ ବିଜୟରେ ଆତ୍ମହରା କିମ୍ବା ପରାଜୟରେ ପାତାଳ ପ୍ରବେଶ କରୁ ନ ଥିଲେ । ଏଇଠି ଅଟକି ନ ଥିଲା ତାଙ୍କ ସଫଳତାର ଦୌଡ଼ । ୧୯୯୬ ମସିହାର ଲୋକସଭା ନିର୍ବାଚନରେ ଜାତୀୟ ସ୍ତରରେ କଂଗ୍ରେସ ଦାରୁଣ ଧକ୍କା ଖାଇଥିଲେ ମଧ୍ୟ ଓଡ଼ିଶାରେ ତାଙ୍କ ନେତୃତ୍ୱରେ କଂଗ୍ରେସର ଦୁର୍ଗ ଦୁର୍ଭେଦ୍ୟ ରହିପାରିଥିଲା । ସମୁଦାୟ ୨୧ ଆସନରୁ କଂଗ୍ରେସ ୧୬ ଆସନରେ ବିଜୟଲାଭ କରିଥିଲା । ସେତେବେଳେ ଆମ୍ଭେ ସମସ୍ୱରରେ ତାଙ୍କୁ ଅଭିବାଦନ ଜଣାଇ କହିଥିଲୁ ଯେ ଏହା ଆପଣଙ୍କପାଇଁ Individual Brilliance against collective failure ତା'ପରେ ପଛକୁ ଅନାଇବାର ନ ଥିଲା । ତାଙ୍କର ଦିଗ୍‌ବିଜୟୀ ନେତୃତ୍ୱ ଯୋଗୁଁ ଓଡ଼ିଶାରେ ୧୯୯୭ରେ ପଞ୍ଚାୟତ ଓ ପୌର ନିର୍ବାଚନରେ କଂଗ୍ରେସ ଦୁଇ-ତୃତୀୟାଂଶ ଆସନରେ ଜିଣିପାରିଥିଲା ।

ସୁତରାଂ ଏକାଧିକ ସଫଳତାର ବିନ୍ଧାଣି ହେଉଛନ୍ତି ଜାନକୀବଲ୍ଲଭ ପଟ୍ଟନାୟକ । ନବେ ଦଶକର ନିରବଚ୍ଛିନ୍ନ ବିଜୟ ତାଙ୍କ ମନୋବଳକୁ ଏପରି ଶକ୍ତିଶାଳୀ କରିଥିଲା ଯେ, ସେ ୧୯୯୭ରେ କଲିକତାଠାରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନରେ ଉଦ୍‌ବୋଧନ ଦେଇ କହିଥିଲେ, "ଯଦି ଆପଣମାନେ ଦୃଢ଼, ଲୋକପ୍ରିୟ ତଥା ଅପରାଜେୟ କଂଗ୍ରେସ ସଂଗଠନ ଦେଖିବାକୁ ଚାହାନ୍ତି, ତେବେ ଓଡ଼ିଶା ଆସନ୍ତୁ ।" କଠିନ ପରିଶ୍ରମ, ନିରବଚ୍ଛିନ୍ନ ସଂଗ୍ରାମ ଓ ଗଭୀର ଆତ୍ମବିଶ୍ୱାସଦ୍ୱାରା ଅସାଧ୍ୟ ସାଧନ କରାଯାଇପାରେ, ଏହାହିଁ ଥିଲା ତାଙ୍କର ମହାମନ୍ତ୍ର ।

ବାସ୍ତବରେ ସେ ଥିଲେ ଯୁଗସ୍ରଷ୍ଟା । ତାଙ୍କର ବିୟୋଗରେ ଏକ ଯୁଗର ଅବସାନ ହେଲା । ଇତିହାସର ଇତି ହେଲା । ହେଲେ, ସେ ମରି ମଧ୍ୟ ଅମର । ଓଡ଼ିଶାବାସୀଙ୍କ ହୃଦୟରେ ତାଙ୍କର ସ୍ୱତନ୍ତ୍ର ସ୍ଥାନ ଚିରକାଳ ଉଜ୍ଜ୍ୱଳ ହୋଇ ରହିଥିବ । ଜାନକୀବଲ୍ଲଭ ପଟ୍ଟନାୟକ ଥିଲେ ଜଣେ ଯଶସ୍ୱୀ ସାଧକ । ଅନେକ ତାଙ୍କର ସାଧନାର ଫଳଶ୍ରୁତି । ଅମାପ ତା'ର ଗଭୀରତା । ସବୁର ଆକଳନ ମୋ ପରି କ୍ଷୁଦ୍ର ମଣିଷ ପକ୍ଷେ ଅସମ୍ଭବ । ଆଲୋକବର୍ତ୍ତିକା ପରି ସେ ଆମ୍ଭକୁ ବାଟ ଦେଖାଉଥିବେ ଓ ଆମ୍ଭେ ତାଙ୍କ ପ୍ରଦର୍ଶିତ ବାଟରେ ଚାଲି ଜୀବନରେ ସାର୍ଥକତା ଲାଭ କରୁଥିବା, ଏହାହିଁ କାମନା ।



# ଝରାପତ୍ର ଓ ପୁରୁଣା ଦିନ

ତପନ ମିଶ୍ର

ସେ ଯିବାର ଇତିମଧ୍ୟରେ ବର୍ଷଟିଏ ବିତିଗଲାଣି, ତଥାପି ସେ ଯେପରି ଆମ ଭିତରେ ଥିବାର ଅନୁଭବ ଆସୁଛି। ଅବର୍ତ୍ତମାନର ବର୍ତ୍ତମାନ, ମୃତ୍ୟୁ ସତ୍ତ୍ୱେ ଜଣକ ସତ୍ତାର ଅନୁଭବକୁ ଭାଷାରେ ପ୍ରକାଶ କରିବା କଷ୍ଟ। ଏହା ଆମର ଶୂନ୍ୟମନସ୍କତାର ଏକ ସାମୟିକ ପ୍ରତିଫଳନ ହୋଇପାରେ। ଲୋକଜୀବନରେ ଯେଉଁମାନେ ଦୀର୍ଘକାଳ ବିଭିନ୍ନଭାବେ ଛାଇ ହୋଇ ରହନ୍ତି ସେମାନଙ୍କ ଅବର୍ତ୍ତମାନରେ ଏଭଳି ଅନୁଭବ ବେଶ୍ କାଳ ଅନୁଭୂତ ହୁଏ। ଓଡ଼ିଶାର ଜନଜୀବନ, ସାହିତ୍ୟ, ସାମ୍ବାଦିକତା, ବୌଦ୍ଧିକତା ଓ ରାଜନୀତିରେ ଜାନକୀବଲ୍ଲଭ ଗୋଟିଏ ବଡ଼ ଅଧ୍ୟାୟର ନାୟକ ଥିଲେ। ସେ ଯୁଗର ଅବସାନ ଘଟିଛି ଏବଂ ତାହା ଆଉ ଫେରିବାର ନୁହେଁ। ମୃତ୍ୟୁର ବର୍ଷକ ପରେ ସ୍ମୃତି ପଖାଳିବାର ଅବକାଶ କେବଳ ନିଛକ ପାରମ୍ପରିକତା ବାହାରେ ଅନେକ କିଛି ମହତ୍ତ୍ୱ ରଖେ। ସେ ଗୋଟିଏ ଜୀବନରେ ଏକାଧିକ ଜୀବନ ଜିଇଥିଲେ। ସେଥିରେ ଥିଲା ଏକ ଅନନ୍ୟ ସମନ୍ୱୟ। ଏକାଧାରରେ ଥିଲେ ସେ ଯଶସ୍ୱୀ ସାମ୍ବାଦିକ, ସାହିତ୍ୟିକ ଓ ରାଜନେତା। ତାଙ୍କ ଜୀବନର ତ୍ରିବେଣୀ ସଙ୍ଗମ ସୃଷ୍ଟି କରିଥିଲା ଏକ ନୂଆ ପ୍ରବାହ। ତାଙ୍କ ସାହିତ୍ୟ ଓ ସାମ୍ବାଦିକତା ଯେତେ ନିରୋଳା ଏବଂ ବୋଧଗମ୍ୟ ଥିଲା ତାଙ୍କର ରାଜନୀତି ଠିକ୍ ଥିଲା ତାହାର ଓଲଟା। ବୋଧହୁଏ ତାଙ୍କ ରାଜନୀତିର ଗୂଢ଼ସୂତ୍ରକୁ ସେ ସାର୍ବଜନୀନ କରିବାକୁ ସୁଯୋଗ ଦେଇ ନ ଥିଲେ। କ୍ଷମତାରେ ରହିବାକୁ ହେଲେ କ୍ଷମତାକୁ ମଧ୍ୟ ଛାଡ଼ିବାକୁ ପଡ଼େ। ଜିନ୍ଦାବାଦ୍ ପାଇବାକୁ ମୁର୍ଦ୍ଦାବାଦ ଏବଂ ଯଶ ପାଇଁ ଅପଯଶ ଅର୍ଜିବାକୁ ପଡ଼େ, ଏହାକୁ ସେ ରାଜନୀତିର ବୃତ୍ତିଗତ ବିପତ୍ତି ଭାବେ ଗ୍ରହଣ କରିନେଇ ଅସୁବିଧାକୁ ସୁବିଧାରେ ପରିଣତ କରି ସଫଳତାର ପାହାଚ ଗୋଟିକ ପରେ ଗୋଟିଏ ଚଢ଼ିଥିଲେ ସ୍ଥିତପ୍ରଜ୍ଞଭାବେ। ନିଜର ଜୀବନକାଳ ମଧ୍ୟରେ ବୃତ୍ତିଗତ ଆବଶ୍ୟକତା ଦୃଷ୍ଟିରୁ ସେ ସମାଜର ବିଭିନ୍ନ ବର୍ଗସହ ସମ୍ପର୍କ ରଖିଥିଲେ। ସାମାଜିକ ବ୍ୟବସ୍ଥାର ତନ୍ତୁଗୁଡ଼ିକୁ ବେଶ୍ ଭଲଭାବେ ପରଖି ନେଇଥିଲେ। ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହିତ ଅନେକ ସାମ୍ବାଦିକଙ୍କର ଅତି ନିବିଡ଼ ସମ୍ପର୍କ ଥିଲା। ମୋର କିନ୍ତୁ ସେମିତି ନିବିଡ଼ତା ତାଙ୍କ ସହିତ ନ ଥିଲା, ଯଦିଓ ଆମେ ଦୁହେଁ ପରସ୍ପରକୁ ଭଲଭାବେ ଜାଣିଥିଲୁ। ମୁଁ ତାଙ୍କୁ କ୍ଷମତା ଭିତରେ ଓ କ୍ଷମତା ବାହାରେ ଦେଖିଛି ଏବଂ ଉଭୟ ସ୍ଥିତିରେ ତାଙ୍କ ସହ କେତେଥର ମିଶିଛି। ସେଥିରେ ମୁଁ ତାଙ୍କଠାରେ ଗୋଟିଏ ବିଶେଷତ୍ୱ ଲକ୍ଷ୍ୟ କରିଥିଲି ଯେ କ୍ଷମତାର ଯିବା ଆସିବାର ପ୍ରକ୍ରିୟା ଭିତରେ ସେ ପ୍ରାୟତଃ ସ୍ଥିତପ୍ରଜ୍ଞ ରହୁଥିଲେ। ପରିସ୍ଥିତିର ପ୍ରଭାବରେ ତାଙ୍କର ସ୍ୱାଭାବିକ ଶାନ୍ତ, ଅବିଚଳିତ ଭାବ ଆଦୌ ପ୍ରଭାବିତ ହେଉ ନ ଥିଲା।

ଗୋଟିଏ ଘଟଣା ମନେପଡୁଛି। ସେ ମୁଖ୍ୟମନ୍ତ୍ରୀ ଥାଆନ୍ତି, ଏହି ସମୟରେ ନିଜକୁ ପୁରୀ ଗୋବର୍ଦ୍ଧନ ପୀଠର ଶଙ୍କରାଚର୍ଯ୍ୟ ଦାବି କରୁଥିବା ସ୍ୱାମୀ ଅଧକ୍ଷଜାନନ୍ଦଙ୍କୁ ନେଇ ବିବାଦ ଉଠିଲା। ପରେ କଥା ଉଠିଲା ଯେ ସ୍ୱାମୀ ନିଶ୍ଚଳାନନ୍ଦ ସରସ୍ୱତୀଙ୍କୁ ହଟାଇ ଜାନକୀବାବୁ ଅଧକ୍ଷଜାନନ୍ଦଙ୍କୁ ଶଙ୍କରାଚାର୍ଯ୍ୟ କରିବାକୁ ମସୁଧା କରୁଛନ୍ତି। ସାମ୍ବାଦିକ ମହଲରେ ଏକଥା ମଧ ଜୋର୍ ଚର୍ଚ୍ଚା ହେଉଥାଏ। ଏହି ସମୟରେ ଜାନକୀବାବୁଙ୍କର ଅଧକ୍ଷଜାନନ୍ଦଙ୍କ ସମ୍ପର୍କରେ ଏକ ବଡ଼ ପ୍ରବନ୍ଧ 'ସମାଜ'ରେ ପ୍ରକାଶ ପାଇଲା। ଏହି ଲେଖା ପ୍ରକାଶ ପାଇବାପରେ ନିଶ୍ଚଳାନନ୍ଦ ସରସ୍ୱତୀଙ୍କ ସମର୍ଥକ ମହଲରେ ପ୍ରବଳ ଆଲୋଡ଼ନ ସୃଷ୍ଟି ହେଲା। ଅନେକ ଆସି 'ସମାଜ'ର ତତ୍କାଳୀନ ସମ୍ପାଦକ ରାଧାନାଥ ରଥ ଓ ସହଯୋଗୀ ସମ୍ପାଦିକା ମନୋରମା ମହାପାତ୍ରଙ୍କ ଭେଟି ପ୍ରତିବାଦ ପତ୍ରମାନ ଦେଲେ। କିଛି ପାଠକ ମଧ ଜାନକୀବାବୁଙ୍କ ଲେଖାକୁ ବିରୋଧ କରି ପତ୍ର ଲେଖିଲେ।

ସେତେବେଳେ ମୁଁ 'ସମାଜ'ର ସମ୍ପାଦକୀୟ ପୃଷ୍ଠା ଦାୟିତ୍ୱରେ ଥାଏ। ସମ୍ପାଦକ ଓ ସହଯୋଗୀ ସମ୍ପାଦକଙ୍କ ଅଫିସରୁ ଯେଉଁ ଚିଠିସବୁ ପ୍ରକାଶ ପାଇଁ ମନୋନୀତ ହୋଇ ଆସେ ତାହାକୁ ଆବଶ୍ୟକମତେ ସମ୍ପାଦିତ କରି ଛପାଇବା ଦାୟିତ୍ୱ ଥାଏ ମୋର। ଏହି ପ୍ରକ୍ରିୟାରେ ଜାନକୀବାବୁଙ୍କ ଲେଖା ଉପରେ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କର ଏକ ପ୍ରତିକ୍ରିୟା ସମ୍ବଳିତ ପତ୍ର ପ୍ରକାଶିତ ହେଲା। ଚିଠିର ଭାଷା ବେଶ୍ ଶ୍ଳୀଳ ଓ ଭାବ ସଂଯମ ହୋଇଥିଲେ ହେଁ ଏହାର ବିଷୟବସ୍ତୁରେ ଥିଲା କିଛି ତଥ୍ୟ ଓ ସତ୍ୟ ଯାହା ବୋଧହୁଏ ଜାନକୀବାବୁଙ୍କ ପାଇଁ ଅସ୍ୱସ୍ତିକର ଥିଲା। ପରଦିନ ଅଫିସରେ ବସିଥିବାବେଳେ ତାଙ୍କ ବ୍ୟକ୍ତିଗତ ସହକାରୀ ମୋତେ ଟେଲିଫୋନ କରି ସାର୍ କଥାହେବେ ବୋଲି କହିଲେ। ଆହତ ଗଳାରେ ଜାନକୀବାବୁ ମତେ ପଚାରିଲେ, "ଆରେ ତୁ ଏସବୁ ଚିଠିଗୁଡ଼ା କାହିଁକି ଛପାଉଛୁ ? ତୋର ଏଥିରେ କି ଲାଭ" ? ମୁଁ ହଠାତ୍ କିଛି ବୁଝିପାରିଲି ନାହିଁ। ପଚାରିଲି, "ଆଜ୍ଞା କେଉଁ ଚିଠି ?" ସେ ମୋତେ ସେ ଚିଠି ବିଷୟରେ କହିଲେ। ମୁଁ ସକଳ ବିନମ୍ରତାର ସହ କହିଲି, "ଆଜ୍ଞା ମୋର ଏଥିରେ କିଛି ଭୂମିକା ନାହିଁ। ସମ୍ପାଦକଙ୍କ ଦପ୍ତରରୁ ପ୍ରକାଶ ପାଇଁ ଆସୁଥିବା ଚିଠିଗୁଡ଼ିକୁ ଆବଶ୍ୟକ ସମ୍ପାଦନା ସହ ଛାପିବା ଦାୟିତ୍ୱ କେବଳ ମୋର। କେଉଁ ଚିଠି ଯିବ ନ ଯିବ ସେ କ୍ଷମତା ମୋର ନାହିଁ। ଆପଣ ପରା ସମ୍ପାଦକ ଥିଲେ, ଆପଣ କ'ଣ ଏକଥା ଜାଣି ନାହାନ୍ତି ?' ତା'ପରେ ତାଙ୍କ ପାଟିରୁ ବାହାରି ଆସିଲା, "ସେ ତା' ହେଲେ ମୋତେ ଏମିତି ମିଛରେ ତୋ ନାଁ କାହିଁକି କହିଲା ? ହଉ ପଛରେ କଥା ହେବା" କହି ଟେଲିଫୋନ୍, ରଖିଦେଲେ। ମୁଁ ଅନୁଭବ କଲି ଯେ ସେ ମୋ କଥା ଠିକ୍ ବୁଝିପାରିଲେ ଏବଂ ଚିଠି ପ୍ରକାଶନନେଇ ତାଙ୍କ ମୁଣ୍ଡରେ ଏକ ବିଭ୍ରାନ୍ତିକର ଧାରଣା ପ୍ରବେଶ କରାଯାଇଥିଲା। ପରେ କିଛି ବନ୍ଧୁ କହିଲେ "ଜାନକୀବାବୁ ଭାରି ପ୍ରତିହିଂସା-ପରାୟଣ। ମଉକା ଦେଖି ତତେ ପାନେ ଦେବେ।" କିଛି ଦିନ ପରେ ଥରେ ଦେଖା ହେଲା। ପାଖକୁ ଡାକି ଶ୍ରଦ୍ଧାର ସହ କଥା ହେଲେ। ସେ ଜଣେ ବିଦ୍ୱାନ୍ ଓ ଭଲ ସମ୍ପାଦକ ଥିବାରୁ ଜାନକୀବାବୁଙ୍କ ପ୍ରତି ମୋର ବିଶେଷ ଶ୍ରଦ୍ଧା ସମ୍ମାନ ଥିଲା। ତାଙ୍କ ରାଜନୀତି ସହ ମୋର କିଛି ନେଣଦେଣ ନ ଥିଲା। ଯେତେବେଳେ ସଭାସମିତିରେ ଦେଖା

ହୋଇଯାଏ କୁଶଳ ଜିଜ୍ଞାସା କରିବା ସହ ପଦେ କହନ୍ତି, "ଆରେ ତୁ ତ' କାହିଁକି କେବେ ଆସୁନୁ? ଆଉ ସବୁ ଠିକ୍‌ଠାକ୍ ଚାଲିଛି ତ?" ମୁଁ କିନ୍ତୁ ବୃତ୍ତିଗତ କାର୍ଯ୍ୟ ବିନା କ୍ୱଚିତ୍ ତାଙ୍କ ପାଖକୁ ଯାଇଛି।

ଆଉ ଏକ ଘଟଣା ମନକୁ ଆସୁଛି। ସେ କ୍ଷମତାରେ ନ ଥାନ୍ତି। ପୂର୍ବତନ ମୁଖ୍ୟମନ୍ତ୍ରୀ ହିସାବରେ ଭୁବନେଶ୍ୱରରେ ସରକାରୀ ବାସଭବନରେ ରହୁଥାନ୍ତି। ପୂର୍ବତନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ଥାନ୍ତି ତାଙ୍କର ପଡ଼ୋଶୀ। ଏହା ୧୯୯୯ ମହାବାତ୍ୟାର ଅଳ୍ପ କେତେ ଦିନ ପରର ଘଟଣା। ସେଥର 'ସମାଜ'ର ଏକ ବିଶେଷାଙ୍କ ବାହାରିବାର ନିଷ୍ପତ୍ତି ନିଆଯାଇଥାଏ। ଜାନକୀବାବୁ ଓ ନନ୍ଦିନୀ ଦେବୀଙ୍କ ସମେତ ଅନ୍ୟ କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ସାକ୍ଷାତ୍‌କାର ନେବାର ଦାୟିତ୍ୱ ମୋ ଉପରେ ଥାଏ। ମୁଁ ଭୁବନେଶ୍ୱରରେ ପହଞ୍ଚି ତାଙ୍କ ବ୍ୟକ୍ତିଗତ ଦପ୍ତରରେ ଥିବା ଜଣେ ଅଧିକାରୀଙ୍କୁ ମୋର ଅଭିପ୍ରାୟ ଜଣାଇଲି। ସଙ୍ଗେସଙ୍ଗେ ସେ ଜାନକୀବାବୁଙ୍କୁ ଏକଥା ଜଣାଇଲେ ଏବଂ ମୋତେ ଅପେକ୍ଷା କରିବାକୁ କୁହାଗଲା। ପ୍ରାୟ ଦୁଇ ଘଣ୍ଟା ଅପେକ୍ଷା କରିବାପରେ ମୋର ଧୈର୍ଯ୍ୟଚ୍ୟୁତି ଘଟିଲା। ତେଣେ ନନ୍ଦିନୀ ଦେବୀଙ୍କୁ ଭେଟିବାକୁ ଧାର୍ଯ୍ୟ ହୋଇଥିବା ସମୟ ଉଚ୍ଛୁର ହୋଇଯାଉଥାଏ। ଜାନକୀବାବୁଙ୍କ ଦପ୍ତରରେ ଏକଥା ଜଣାଇଦେଇ ମୁଁ ପଳାଇ ଆସିଲି। ସେ ଦିନ ରାତିରେ ଜାନକୀବାବୁଙ୍କ ଟେଲିଫୋନ୍ ପାଇଲି। ଏକ ଜରୁରୀ କାର୍ଯ୍ୟ ଯୋଗୁଁ ସେ ବ୍ୟସ୍ତଥିବାରୁ ବିଳମ୍ବ ହେଲାବୋଲି କହି ଦୁଃଖ ପ୍ରକାଶ କରିବା ସହ ପରଦିନ ଆସିବାକୁ କହି ସମୟ ନିର୍ଦ୍ଧାରଣ କଲେ। ଯଥାସମୟରେ ପହଞ୍ଚିବା ପରେ ତାଙ୍କର ବ୍ୟକ୍ତିଗତ ସହାୟକ ଗୋବିନ୍ଦବାବୁ ତୁରନ୍ତ ଖବର ଦେଲେ ଏବଂ ମୋତେ ଭିତରକୁ ଯିବାକୁ ଡକରା ମିଳିଲା। ସତେ ଯେପରି ସେ ମୋ ଅପେକ୍ଷାରେ ଥିଲେ। କବାଟ ପାଖରେ ଏକ ଚେୟାରରେ ସେ ବସିଥିଲେ। ନମସ୍କାର କରି ତାଙ୍କ ଶରୀରକୁ ମୁଁ କ୍ଷଣେ ଚାହିଁଲି। ପଚାରିଲେ, "କ'ଣ ଏମିତି ଦେଖୁଛୁ କିରେ?" ମୁଁ କହିଲି "ନା' କିଛି ନୁହେଁ" ଆପଣଙ୍କ ପୀତବସ୍ତ୍ର ପରିହିତ ଶରୀର ଦେଖୁଛି। ଧୋତି, କମିଜ ଓ ଚାଦର ସବୁ ହଳଦିଆ।" ସେ ନିଜ ଲୁଗାପଟା ଉପରେ ଥରେ ଆଖି ବୁଲାଇନେଇ ବିନୟର ସହ କହିଲେ, "କାଲି ଟିକେ ଡେରି ହୋଇଗଲା ବୋଲି ତୁ ଏମିତି ରାଗି ପଳାଇଗଲୁ।" ମୁଁ ମୋ ବାସ୍ତବତା ତାଙ୍କୁ ବୁଝାଇଦେବା ପରେ ସେ ଆଶ୍ୱସ୍ତ ହେଲେ।

ପଚାରିଲେ 'କି ଇଣ୍ଟରଭ୍ୟୁ ନେବୁ? ମୁଁ ସବୁ କଥା ବୁଝାଇ କହିଲି। ରାମ, କୃଷ୍ଣ କିଛି ନ କହି କିଛି ସମୟ ନିରବ ହୋଇ ବସିଲେ। ତା'ପରେ କହିଲେ, "ତୁ ଜାଣିଚୁ ଆଜି ଦିନଟା କ'ଣ?" ମୁଁ କିଛି ଉତ୍ତର ଦେବା ପୂର୍ବରୁ କହିଲି, "ଆଜି ପରା ଧନୁ ସଂକ୍ରାନ୍ତି। ତୁ ଧନୁ ମୁଆଁ ଆଗ ଖା।"" ମୁଆଁ ସହ କିଛି ଜଳଖିଆ ପର୍ବ ପରେ ସେ ମୋତେ ଭାବଗମ୍ଭୀର ମୁଦ୍ରାରେ କହିଲେ, "ଆରେ ଇଣ୍ଟରଭ୍ୟୁ କ'ଣ ନେବୁ? ମୁଁ ଡାକୁଛି ତୁ ଲେଖ୍।" ମୁଁ ଅଡୁଆରେ ପଡ଼ିଲି। କହିଲି, "ସାର୍! ଆପଣ ଡାକିଲେ ତ' ପ୍ରବନ୍ଧ ହୋଇଯିବ, ସାକ୍ଷାତକାର କିପରି ହେବ?" କିଛି ସମୟ ଭାବି କହିଲେ, "ଆରେ ଖାଲି ଓଡ଼ିଶା କ'ଣ,

ତତେ ସାରା ଦେଶ ଦୁନିଆର କଥା ଡାକି ଦେଉଛି। ତୁ ତାକୁ ତୋ ସୁବିଧା ମତେ ପ୍ରସ୍ତୁତ କରି ଛାପିବୁ।"

ମୁଁ ବାଧ୍ୟ ଶିଶୁ ପରି ଲେଖି ଚାଲିଛି ଏବଂ ସେ ଅନର୍ଗଳ ଡାକି ଚାଲିଛନ୍ତି। ପ୍ରାୟ ଏକ ଘଣ୍ଟା ପରେ ଲେଖା ଶେଷ ହେଲା। ମୁଁ କହିଲି "ସାର୍! ଏହା ତ ଏକ ବଡ଼ ପ୍ରବନ୍ଧ ହୋଇଗଲା, ଏହାର ଶୀର୍ଷକ କ'ଣ ଦେବା ?" ସେ କହିଲେ, "ତୁ ଗୋଟେ ଭଲ ଶୀର୍ଷକ ଦେବୁ। ଅସଂଗତି ଥିଲେ ସଂଶୋଧନ କରିଦେବୁ। ଦେଖିବୁ ଲେଖାଟି ଯେପରି ନିର୍ଭୁଲ ପ୍ରକାଶ ପାଏ।" ମୁଁ ତାଙ୍କଠାରୁ ମେଲାଣି ନେଇ ଫେରିଲି। ଲେଖିବା ବେଳେ ଯେଉଁ ଭାବନା, ଫେରିବା ସମୟରେ ସେହି କଥା ମୋ ମନକୁ ଆନ୍ଦୋଳିତ କରୁଥାଏ। ପରିଣତ ବୟସରେ ସମଗ୍ର ଦେଶ ଦୁନିଆର ରାଜନୈତିକ, ଆର୍ଥିକ ଓ ଅନ୍ୟାନ୍ୟ ପ୍ରସଙ୍ଗକୁ ଭିତ୍ତି କରି ସେ ଯେଉଁ ପ୍ରବନ୍ଧଟି ମୋତେ ଅନର୍ଗଳ ଡାକିଗଲେ ସେଥିରେ ତଥ୍ୟଗତ ବା ଅନ୍ୟାନ୍ୟ ଅସଂଗତି ବିଶେଷ କିଛି ନ ଥିଲା। ସାରା ଜଗତର ସମସ୍ୟା ଓ ସମ୍ଭାବନା ଥିଲା ଏହାର ମୁଖ୍ୟ ବିଷୟବସ୍ତୁ। ବୋଧହୁଏ ମହାବାତ୍ୟା ଥିଲା ଏକ ପ୍ରତୀକ। ମୁଁ ଭାବୁଥିଲି ସତେ ଯେପରି ଜଣେ ଧୁରୀଣ ସମ୍ପାଦକଙ୍କଠାରୁ ମୁଁ ଶ୍ରୁତଲିଖନଟିଏ ନେଇଛି ଜଣେ ଶିକ୍ଷାନବିସ ସାମ୍ବାଦିକ ଭଳି। ତାଙ୍କର ସ୍ମରଣଶକ୍ତି ଓ ଘଟଣାବଳୀ ସଂକ୍ରାନ୍ତ ସର୍ବଶେଷ ତଥ୍ୟ ମତେ ସ୍ତବ୍ଧ କରିଥିଲା।

ଆମ ବିଶେଷାଙ୍କର କଳେବର ଦୃଷ୍ଟିରୁ ତା'କୁ ସାମାନ୍ୟ କାଟଛାଣ୍ଟ କରି ମୋତେ ଛପାଇବାକୁ ପଡ଼ିଲା; କିନ୍ତୁ ତାହା ସାକ୍ଷାତକାର ପରିବର୍ତ୍ତେ ପ୍ରବନ୍ଧ ଆକାରରେ ଗଲା। ବହୁ ଭାବିଚିନ୍ତି ସେ ପ୍ରବନ୍ଧର ଶୀର୍ଷକ ଦେଇଥିଲି, 'ନୂଆ ସକାଳ ଓ କଅଁଳ ପତ୍ର'।

ବିଶେଷାଙ୍କ ଯଥା ସମୟରେ ପ୍ରକାଶ ପାଇଲା। ପରଦିନ ପ୍ରାୟ ୧୦ଟା ବେଳକୁ ଟେଲିଫୋନ୍ ଆସିଲା "ସାର୍, କଥା ହେବେ... ?" ତା'ପରେ ସେପଟରୁ ଜାନକୀବାବୁଙ୍କ ସ୍ୱର। "ଆରେ ପଢ଼ିଲି। ଯଥାର୍ଥ ଭାବେ ଉପସ୍ଥାପିତ କରିଛୁ। ସବୁଠୁ ଚମତ୍କାର ହୋଇଛି 'ହେଡିଂ' ଟି...।' ସେ ପ୍ରଶଂସା ଟିକକ ମତେ କୃତାର୍ଥ କରିଦେଲା। ମୁଁ କିଛି ସମୟ ଶୂନ୍ୟମନସ୍କ ହୋଇଗଲି। ଆଜି ତାଙ୍କ କଥା ମନେ ପଡୁଛି। ଏବେ ଏ ପ୍ରବନ୍ଧର ନାଁ କ'ଣ ଦେବି ?



# ନିଦା ବିଷ୍ଣୁ

## ମହେଶ୍ୱର ମହାନ୍ତି

ତାଙ୍କ ସହିତ ମୋର ଗୋଟିଏ ଅବସୋସ ରହିଗଲା। ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ୧୯୮୭ ମସିହାରେ ମୋ ଗାଆଁ ହାଇସ୍କୁଲର ରୌପ୍ୟଜୟନ୍ତୀ ଉତ୍ସବକୁ ମୁଁ ତାଙ୍କୁ ଅତିଥି କରି ନେଇଥିଲି। ମୋ ଗାଆଁ ଅବିଭକ୍ତ କଟକ ଜିଲ୍ଲା (ବର୍ତ୍ତମାନ ଜଗତ୍‌ସିଂହପୁର)ର ଓଷକଣା ବ୍ରିଟିଶ ଶାସନକାଳରେ ହରିଶପୁର କିଲା ଅଧୀନରେ ଥିଲା। ହରିଶପୁର ପୂର୍ବେ ଗୋଟିଏ ବନ୍ଦର ଥିଲା। ଏହାର ଇତିହାସ ବେଶ୍ ସମୃଦ୍ଧ। ୧୮୧୭ର ପାଇକ ବିଦ୍ରୋହରେ ହରିଶପୁରର ରାଜା ମଧୁସୂଦନ ମଙ୍ଗରାଜଙ୍କ ଭୂମିକା ବିଶେଷଭାବେ ଉଲ୍ଲେଖଯୋଗ୍ୟ। ହରିଶପୁରଠାରୁ କିଛି ଦୂରରେ ଦକ୍ଷିଣ ଦିଗରେ ଅବସ୍ଥିତ ମରିଚିପୁର ମଧ୍ୟ ପ୍ରାଚୀନ କାଳରେ ଥିଲା ଏକ ସମୃଦ୍ଧ ବନ୍ଦର। ମରିଚିପୁର କିଲାର ମଧ୍ୟ ଏକ ସ୍ୱତନ୍ତ୍ର ଇତିହାସ ଅଛି। ସଭା ଶେଷରେ ସ୍କୁଲର ବିଶ୍ରାମକକ୍ଷରେ ଦୁହେଁ ପାଖାପାଖି ବସିଥିବାବେଳେ ତାଙ୍କ ସହିତ ବ୍ୟକ୍ତିଗତ ସଂପର୍କ କାରଣରୁ କିଛି ଆଳାପ-ଆଲୋଚନା କରିବାର ସୁଯୋଗ ମିଳିଥିଲା। ସେଇ ଅବସରରେ ମରିଚିପୁର ଏବଂ ହରିଶପୁର ଏଇ ଦୁଇଟି କିଲାର ଇତିହାସ ସମ୍ପର୍କରେ କିଛି ସୂଚନା ଦେଇଥିଲି। ଆଗରୁ ସେ ମରିଚିପୁର ଏବଂ ହରିଶପୁର ବନ୍ଦରର ନାଆଁ ଅବଶ୍ୟ ଶୁଣିଥିଲେ; କିନ୍ତୁ ସେ ବିଷୟରେ ଅଧିକ କିଛି ଖବର ତାଙ୍କ ପାଖରେ ନ ଥିଲା। ସେ ତେଣୁ ବେଶ୍ ଆଗ୍ରହରେ ସେ ସବୁ ଶୁଣିଥିଲେ। ଗଲାପୂର୍ବରୁ କହିଥିଲେ, "ଆପଣ ଏ ବିଷୟରେ ଲେଖନ୍ତୁ, ଆପଣ ଜଣେ ଅଧ୍ୟାପକ, ପୁଣି ଏ ଅଞ୍ଚଳର ବାସିନ୍ଦା। ଏଇଟି ଆପଣ ଲେଖିବା ଉଚିତ। କେବେ ଆସନ୍ତୁ, ଏ ବିଷୟରେ ଆଲୋଚନା କରିବା।"

ମୁଁ ତାଙ୍କ କଥାରେ ମୁଣ୍ଡ ଟୁଙ୍ଗାରିଥିଲି।

ବିଶ୍ରାମକକ୍ଷରୁ ଗାଡ଼ି ପାଖକୁ ଆସିବାବେଳେ ମୋ କାନ୍ଧରେ ହାତ ପକାଇ ସେ ଆସିଥିଲେ ଏବଂ ଗାଡ଼ିରେ ବସିବା ପରେ ଲୋକ ଭିଡ଼ଥିବା ସତ୍ତ୍ୱେ ମୋତେ ମନେପକାଇ ଦେଇ ଟିକିଏ ଇଙ୍ଗିତ ଦେଇ କହିଥିଲେ, "ସେ କାମଟି କରନ୍ତୁ, କରନ୍ତୁ। ଭଲ କାମଟିଏ ହେବ।"

ଏଇ ଦୁଇଟି ବାକ୍ୟ ଶୁଣିବା ପରେ ମୋର ମନେହେଲା, ଏହା ରାଜନୀତିଆଙ୍କ ଭଳି ଉପରଠାଉରିଆ କଥା ନୁହେଁ। ଏଥିରେ କିଛି ଗୁରୁତ୍ୱ ଅଛି। ମୋ କଥାଟି ବୋଧେ ତାଙ୍କ ମନକୁ ଛୁଇଁଚି। ତେଣୁ ସେ ଭୁଲି ନାହାନ୍ତି।

ସେ ଚାଲିଗଲାପରେ ଗହଳିଟା ସିନା ତାଙ୍କ ଗାଡ଼ି ପାଖରୁ ଭାଙ୍ଗିଗଲା; ହେଲେ ମହୁମାଛିମାନେ ଗୋଟିଏ ଗଛରୁ ଉଡ଼ିଯାଇ ଆଉ ଗୋଟିଏ ଗଛରେ ଫେଣା ଆକାରରେ ଝୁଲିପଡ଼ିବା ଭଳି ଗହଳିଟା ମୋ ଚାରିପଟରେ ଜମିଗଲା। ସମସ୍ତଙ୍କର କୌତୂହଳୀ ପ୍ରଶ୍ନ, "କୋଉ କାମ? କୋଉ କାମ?"

ମୁଁ ହାଲୁକା ଭାବରେ କଥାଟି କଅଣ ବୋଲି କହିଦେଇ ଚାଲିଯିବାକୁ ବାହାରିଲି। ହେଲେ ସେମାନେ କିନ୍ତୁ ସେଇଟିକୁ ଗ୍ରହଣ କଲେ ନାହିଁ। ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଯେଉଁ କାମଟି କଥା କହିଛନ୍ତି ସେଇଟି ଆଉ କିଛି ଗୋଟାଏ ବଡ଼ ଗୁରୁତ୍ୱପୂର୍ଣ୍ଣ କଥା ହୋଇଥିବ। ରାଜନୀତିଆ ଲୋକଙ୍କର ସନ୍ଦେହୀ ମନ। ଏଭଳି ସନ୍ଦେହ ହେବା ସ୍ୱାଭାବିକ। ସେ ବିଷୟରେ ଏଠାରେ ଅଧିକ କିଛି ଆଲୋଚନା କରିବାର କାରଣ ନାହିଁ।

ତେବେ ଏ ପ୍ରସଙ୍ଗଟି ଆଜି ଏଠାରେ ଉଲ୍ଲେଖ କରିବାର ଅଭିପ୍ରାୟ ଏହି ଯେ ଜାନକୀବାବୁ ରାଜନୀତି ବାହାରେ ଥିଲେ ଜଣେ Intellectual ବା ବୁଦ୍ଧିଜୀବୀ। ଆଜିକାଲି କ୍ଷମତା ରାଜନୀତିରେ ବୁଦ୍ଧିଜୀବୀମାନଙ୍କର ସଂଖ୍ୟା ଅତ୍ୟନ୍ତ ନଗଣ୍ୟ। ରାଜନୀତିରେ ଆଉ ବୁଦ୍ଧିଜୀବୀମାନଙ୍କର ସ୍ଥାନ ନାହିଁ କହିଲେ ଚଳେ। ଇନ୍ଦିରାଗାନ୍ଧୀଙ୍କ ପ୍ରଧାନମନ୍ତ୍ରିତ୍ୱ କାଳରେ ଭାରତରେ ତିନି ଜଣ ବୁଦ୍ଧିଜୀବୀ-ମୁଖ୍ୟମନ୍ତ୍ରୀ ଥିଲେ ବୋଲି ଦିଲ୍ଲୀରେ ଆଲୋଚନା ହୁଏ। ପ୍ରଥମରେ ପଶ୍ଚିମବଙ୍ଗର ଜ୍ୟୋତିବସୁ, ଦ୍ୱିତୀୟରେ କର୍ଣ୍ଣାଟକର ରାମକୃଷ୍ଣ ହେଗଡ଼େ, ତୃତୀୟରେ ଓଡ଼ିଶାର ଜାନକୀବଲ୍ଲଭ ପଟ୍ଟନାୟକ। ଏହା ସତ୍ୟ । ଜାନକୀବାବୁଙ୍କ ସ୍ୱଭାବର ଗୋଟିଏ ଉତ୍ତମ ଦିଗ ହେଉଛି ସେ ଥିଲେ ସ୍ୱଳ୍ପଭାଷୀ। ବେଶ୍ ଭଦ୍ର, ମାର୍ଜିତ। କଥାରେ କେବେ ଉଗ୍ରତା ନ ଥାଏ। ଦଳୀୟସଭାରେ ଯାହା, ବିଧାନସଭାରେ ସେଇଆ, ସଭାସମିତିରେ ମଧ୍ୟ ସେଇଆ। ପ୍ରତିପକ୍ଷଙ୍କ ଉଦ୍ଦେଶ୍ୟରେ ସେ କେବେ କଠୋର ଭାଷା ପ୍ରୟୋଗ କରିବାର ଦେଖାଯାଇ ନାହିଁ। ଓଡ଼ିଶାର ଗୋଟିଏ ବିଖ୍ୟାତ ସମ୍ବାଦପତ୍ର ଅତି ଉଗ୍ର ଭାଷାରେ, ଏପରିକି ଶାଳୀନତା ଲଙ୍ଘନ କରି ତାଙ୍କ ସରକାର, ତାଙ୍କ ଦଳ ଏବଂ ତାଙ୍କର ସହଯୋଗୀ ତଥା ଏକାନ୍ତ ନିକଟତମ ମନ୍ତ୍ରୀ ସ୍ୱର୍ଗତ ବସନ୍ତ କୁମାର ବିଶ୍ୱାଳଙ୍କ ବିରୋଧରେ ନିୟମିତ ଭାବେ ସମାଲୋଚନା କରି ଲେଖୁଥିଲେ। ବସନ୍ତବାବୁ ଅବଶ୍ୟ ଫୁଲକା ଉପରକୁ ଲମ୍ଫ ଦେଇ ଠିକ୍ ସେଇ ଭାଷାରେ ତା'ର ଜବାବ ଦେଉଥିଲେ; କିନ୍ତୁ ଜାନକୀବାବୁ ଥିଲେ ନିରବ, ନିର୍ବିକାର। ସେ କେବେ ପଦଟିଏ ସେ ସଂପର୍କରେ ଉଚ୍ଚାରଣ କରି ନାହାନ୍ତି। ସେ ଯାହା କରିବାକୁ ଚିନ୍ତା କରିଥାଆନ୍ତି, ତାକୁ କାମରେ କରିଦିଅନ୍ତି; ମାତ୍ର କଥାରେ କିଛି କହନ୍ତି ନାହିଁ। ତେଣୁ ତାଙ୍କୁ କୁହାଯାଏ ସେ ଗୋଟିଏ 'ନିଦାବିଷ୍ଣୁ'। ଦଳୀୟ ସଭା ବ୍ୟତୀତ ଅନ୍ୟ କୌଣସି ସାଧାରଣ ସଭାରେ ସେ କେବେ ରାଜନୀତି ଚର୍ଚ୍ଚା କରନ୍ତି ନାହିଁ। ସେ ଦିଗରେ ସେ ବେଶ୍ ସତର୍କ। ସାହିତ୍ୟ ଓ ରାଜନୀତିକୁ ସେ ବରାବର ପୃଥକ୍ ରଖିଥାଆନ୍ତି।

କ୍ଷମତା ରାଜନୀତିରେ ଉତ୍‌ଥାନ ପତନ ଅବଶ୍ୟମ୍ଭାବୀ। ରାଜନୀତିରେ ଗୋଡ଼ ଦେଲେ ପୋଷାକରେ କାଦୁଅଛିଟା ଲାଗିବା ସ୍ୱାଭାବିକ। ସେ କିନ୍ତୁ ଏ କ୍ଷେତ୍ରରେ ଥିଲେ ନିର୍ବିକାର। ଗୀତାର ବାଣୀ, "ସୁଖେଷୁ ବିଗତସ୍ପୃହ, ଦୁଃଖେଷୁ ଅନୁଦ୍‌ବିଗ୍ନ ମନ"—ଏଇଟିକୁ ସେ ଦୀକ୍ଷାମନ୍ତ୍ର ଭାବରେ ଗ୍ରହଣ କରିନେଇଥିଲେ। ପ୍ରକୃତରେ ସେ ଯେ ସୁଖଦୁଃଖରେ ବିଚଳିତ ନ ଥିଲେ ତାହା ନୁହେଁ; କିନ୍ତୁ ସେ କେବେ ତାହା ପ୍ରକାଶ କରୁ ନ ଥିଲେ। ହୁଏତ ତାଙ୍କର ଅନ୍ତର୍ଜ୍ୱଳନ ଥିଲା। ସେ ଭିତରେ ଭିତରେ ଜଳୁଥିଲେ। ବାହାରୁ ତାହା ଜଣାପଡୁ ନ ଥିଲା। ରାଜନୀତିକ ଜୀବନରେ ଯେତେବେଳେ ତାଙ୍କର ଅବସାଦକର ମୁହୂର୍ତ୍ତ ଆସିଛି, ସେତେବେଳେ ସେ ତାହାକୁ ଅତିକ୍ରମ କରିବା ନିମନ୍ତେ ସାହିତ୍ୟ ସାଧନାରେ ନିଜକୁ ନିମଗ୍ନ କରିଦେଇଛନ୍ତି। ତା' ଦ୍ୱାରା ତାଙ୍କ ମାନସିକ ଚାପ ହୁଏତ ହ୍ରାସ ପାଇଛି, ଅପରପକ୍ଷରେ ଓଡ଼ିଆ ସାହିତ୍ୟ ଉପକୃତ ହୋଇଛି।

ଗୋଟିଏ ପିଢ଼ିର ଅବସାନ ଘଟିଲା। ଓଡ଼ିଶାର ରାଜନୀତିକ ଇତିହାସରେ ଗୋଟିଏ ପୃଷ୍ଠା ଯୋଡ଼ାଗଲା। ମୋର କିନ୍ତୁ ସେଇ ଅବସୋସଟି ରହିଗଲା। ମୁଁ ହରିଶପୁର ଓ ମରିଚିପୁରର କିଛି ଇତିହାସ ସଂଗ୍ରହ କରିଛି। ତାଙ୍କୁ ପ୍ରବନ୍ଧ ଆକାରରେ ବିଭିନ୍ନ ସ୍ଥାନରେ ଛାପିଛି; କିନ୍ତୁ ସେଇ ପ୍ରବନ୍ଧକୁ ନେଇ ତାଙ୍କର ନିକଟବର୍ତ୍ତୀ ହେବାକୁ କେବେ ସୁଯୋଗ ପାଇ ନାହିଁ କିମ୍ବା ତାଙ୍କ କହିବା ଅନୁସାରେ ଆଲୋଚନା କରିବା ନିମନ୍ତେ ତାଙ୍କ ପାଖକୁ ଯିବାକୁ ସାହସ କରି ନାହିଁ।



# ଆମ ରାଇଜରେ ଅଜଣା ଜାନକୀବଲ୍ଲଭ

ସୁଭାଷ ଚନ୍ଦ୍ର ପଟ୍ଟନାୟକ

ସର୍ବଜନବିଦିତ ଦିବଂଗତ ଜନନାୟକ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସମ୍ପର୍କରେ ଓଡ଼ିଶାର ସବୁ ଲୋକ ପ୍ରାୟ ସବୁ କଥା ଜାଣନ୍ତି। ତାଙ୍କ ସଂପର୍କରେ ଜାଣିବାର ଉତ୍ସୁକତା ଏତେ ବ୍ୟାପକ ଯେ, କିଛି ଲୋକ ତହିଁର ସୁଯୋଗ ନେଇ ତାଙ୍କ ବିରୋଧରେ ମନଗଢ଼ା ମିଛ କଥା ବି କହନ୍ତି ଓ ଲୋକେ ତାହାକୁ ବି ବିଶ୍ୱାସ କରନ୍ତି। ସୁତରାଂ, ତାଙ୍କ ସଂପର୍କରେ ସତକଥା ଓ ମିଛକଥା– ଏପରି ସବୁକଥା ଆମ ରାଇଜରେ ସମସ୍ତଙ୍କୁ ଜଣା। ତେଣୁ କଅଣ କହି ମୁଁ ତାଙ୍କର ସ୍ମୃତିଚାରଣ କରିବି ?

ମୁଁ କେବଳ ଦି' ତିନୋଟି କଥା କହିବି, ଯାହା ଆମ ଲୋକଙ୍କୁ ପ୍ରାୟତଃ ଅଜଣା।

ଏକଦା ତାଙ୍କ ନିକଟତମ ବ୍ୟକ୍ତି ଭାବେ ଜଣାଶୁଣା ବସନ୍ତ କୁମାର ବିଶ୍ୱାଳ ସମୟର ଗଡ୍ଡଳିକାପ୍ରବାହରେ ତାଙ୍କ ବିରୋଧୀଭାବେ ଏକ ନୂଆ ପରିଚିତି ଅର୍ଜନ କରିଥିଲେ ଓ ଏହି ପର୍ଯ୍ୟାୟରେ ତାଙ୍କ ବୁଦ୍ଧିଦାତା ସାଜିଥିଲେ ସେତେବେଳେ ଶିକ୍ଷାମନ୍ତ୍ରୀ ଥିବା ଭାଗବତ ପ୍ରସାଦ ମହାନ୍ତି। ଦିନେ ହଠାତ୍ ଏକ ପ୍ରଭାବଶାଳୀ ଦୈନିକରେ ଏପରି ଏକ ଚିତ୍ର ପ୍ରକାଶ ପାଇଲା ଯାହା ସାରା ରାଜ୍ୟକୁ ଚମକାଇଦେଲା। ଚିତ୍ରଟିରେ ଭାଗବତବାବୁ ଜଣେ ଯୁବତୀଙ୍କ କୋଳରେ ମୁଣ୍ଡ ରଖି ଶୋଇଥିବାବେଳେ ଆଉ ଜଣେ ଯୁବତୀ ତାଙ୍କ ପାଦ ଆଉଁଶି ଦେଉଥିବା ଦେଖାଯାଉଥିଲା। ଚିତ୍ରଟି ତଳେ ଅତି କୁତ୍ସିତ ମନ୍ତବ୍ୟଟିଏ ଥିଲା।

ମୁଁ କେନ୍ଦ୍ରାପଡ଼ାର ସାମ୍ବାଦିକ ଚନ୍ଦ୍ରମଣି ମିଶ୍ରଙ୍କୁ ପଚାରିଲି ଓ ତାଙ୍କଠୁ ପ୍ରାଥମିକ ତଥ୍ୟ ପାଇ ମୋର କିଛି ନିର୍ଭରଯୋଗ୍ୟ ବନ୍ଧୁବାନ୍ଧବଙ୍କଠାରୁ ପ୍ରକୃତ କଥାଟି ଜାଣିବାକୁ ଚେଷ୍ଟା କଲି। ମୋର ହୃଦ୍‌ବୋଧ ହେଲା ଯେ ଫଟୋଟି ସତ ହେଲେ ମଧ୍ୟ, ତିନି ବର୍ଷ ତଳର, ୧୯୯୫ ନିର୍ବାଚନ ପରବର୍ତ୍ତୀ ଏକ ବଣଭୋଜି ବେଳର ଓ ଝିଅ ଦୁଇଟି ଭାଗବତବାବୁଙ୍କ କନ୍ୟାତୁଲ୍ୟା। ମୋର ମନେହେଲା ଖବରକାଗଜଟି ତିନି ବର୍ଷ ପରେ ତାହାକୁ ଛାପି ତା' ତଳେ ଯେଉଁ କୁତ୍ସିତ ପ୍ରସ୍ତାବନା ରଖିଥିଲା ତାହା ମୂଳରେ କିଛି ନା କିଛି ଦୁରଭିସନ୍ଧି ନିଶ୍ଚୟ ଥିବ। ମୁଁ ଦୈନିକ ସମ୍ବାଦରେ ସେତେବେଳେ ପ୍ରକାଶପାଉଥିବା ମୋ ସିଂହାବଲୋକନ ସ୍ତମ୍ଭରେ ତହିଁ ଉପରେ ଏକ ବିଶ୍ଳେଷଣ ରଖିଲି ଓ ତତ୍କାଳ ତାହା ପ୍ରକାଶ ପାଇଲା।

ସ୍ତମ୍ଭଟି ପଢ଼ିସାରି ଜଣେ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି, ଯେ କି ଜାନକୀବାବୁଙ୍କ ପ୍ରିୟପାତ୍ର ବି ଥିଲେ, ମୋତେ ଫୋନ୍ କରି କହିଲେ କି ସେପରି ଏକ ବିଶ୍ଳେଷଣ ରଖି ମୁଁ ଏପରି ଜଣେ

ବ୍ୟକ୍ତିଙ୍କୁ ଘଣ୍ଟ ଘୋଡ଼ାଇବାକୁ ଚେଷ୍ଟା କରିଛି, ଯାହାଙ୍କୁ ମନ୍ତ୍ରୀପଦରୁ ବିଦା କରିବାକୁ ଜାନକୀବାବୁ ଏକ ବାହାନା ଖୋଜୁଥିଲେ। ଏହାଶୁଣି ମୁଁ ସୁନିଶ୍ଚିତ ହୋଇଗଲି ଯେ, ଫଟୋଚିତ୍ରଟି ଏବଂ ତାହା ତଳେ ପ୍ରକାଶ ପାଇଥିବା କୁତ୍ସିତ ପ୍ରସ୍ତାବନା ନିଶ୍ଚୟ ଜାନକୀବାବୁଙ୍କ ଶିବିରର କାରସାଦି ଥିଲା। ମୁଁ ଭାବିଲି, ସଂପୃକ୍ତ କାଗଜଟି ଦଲାଲି ପାଇଁ ପ୍ରେସ ସ୍ୱାଧୀନତାର ସଂପୂର୍ଣ୍ଣ ଦୁରୁପଯୋଗ କରି ହଇଚଇ ସୃଷ୍ଟି କରାଇଛି। ତେଣୁ ମୁଁ ନୀତିଗତଭାବେ ସେହି ଫଟୋ-ସମ୍ବାଦ ଉପରେ ଏକ ଆକ୍ରମଣାତ୍ମକ ବ୍ୟାଖ୍ୟା ପ୍ରସ୍ତୁତ କଲି। ଯେହେତୁ ସମ୍ବାଦରେ ତାହା ପ୍ରକାଶ ପାଇବା ଆଉ ସମ୍ଭବ ନ ଥିଲା, ମୁଁ 'ସମୟ'ର ସଂପାଦକ ସାତକଡ଼ି ହୋତାଙ୍କ ପାଖକୁ ଲେଖାଟି ପଠାଇଦେଲି।

ତହିଁପର ଉତ୍ତର ନିଶାର୍ଦ୍ଧ। ଗଭୀର ନିଦରେ ଶୋଇଥିଲି। ଫୋନ୍ ରିଂ ମୋ ସ୍ତ୍ରୀଙ୍କୁ ଉଠାଇଲା। ସେ ଆସି ମୋତେ ହଲେଇ ହଲେଇ କହିଲେ, ଢେଙ୍କାନାଳରୁ ବୁଢ଼ାନା ଫୋନ୍ କରିଛନ୍ତି। ବୁଢ଼ାନନା ମୋର ମାଉସୀପୁଅ ଭାଇ, ଭଲ ନାମ ଜାନକୀବଲ୍ଲଭ ପଟ୍ଟନାୟକ। କ'ଣ ହେଲା ବୁଢ଼ାନା, ଏତେ ରାତିରେ କାହିଁକି ଫୋନ୍ କରିଛ ବୋଲି ନାନା ଆଶଙ୍କାବିହ୍ୱଳିତ କଣ୍ଠରେ ପଚାରିଲି। "ତେବେ ଆପଣଙ୍କ ବଡ଼ଭାଇ ବି ଜାନକୀବଲ୍ଲଭ ? ଭଲ ହେଲା। ମୁଁ କିନ୍ତୁ ଭୁବନେଶ୍ୱରରୁ କହୁଛି।" ମୁଁ ଚମକ ଖାଇଗଲି। ନିଜକୁ ବିଶ୍ୱାସ ବି କରିପାରିଲିନି। ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ। ଏତେ ରାତିରେ, ପୁଣି ମୋତେ ? ମାତ୍ର ତାହାହିଁ ଥିଲା ବାସ୍ତବତା, ସ୍ୱପ୍ନ ନ ଥିଲା। "ଏତେ ରାତିରେ ମୁଁ ଆପଣଙ୍କୁ ନିଦରୁ ଉଠେଇଦେଲି ବୋଲି ଦୁଃଖିତ; କିନ୍ତୁ ସମସ୍ତେ ଯିବାପରେ ହିଁ ମୁଁ ଆପଣଙ୍କୁ ଫୋନ୍ କରୁଛି", କହିଲେ ସେ। "ସାର୍ କାହିଁକି ?" ମୁଁ ପଚାରିଲି। "ଧନ୍ୟବାଦ ଦେବାକୁ। 'ସମୟ'ରେ ଆପଣଙ୍କ ଲେଖାଟି ଦେଖିଲି, ଭଲ ହୋଇଛି", କହିଲେ ଜାନକୀବାବୁ ଏବଂ କହିଲେ, "ମୁଁ ଏକ ନିଷ୍ପତ୍ତି ନେବାର ଥିଲା। ଆପଣଙ୍କ ଲେଖାଟି ପଢ଼ି ନ ଥିଲେ, ହୁଏତ ଭୁଲ୍ ନିଷ୍ପତ୍ତିଟିଏ ହିଁ ନିଆହୋଇଥାଆନ୍ତା।"

ଭାଗବତବାବୁ ମନ୍ତ୍ରୀ ପଦରୁ ବିତାଡ଼ିତ ନ ହୋଇ ରହିଗଲେ। ସେ ନିଜେ ବି ଜାଣନ୍ତିନି କିପରି ତାହା ହେଲା।

ଅଥଚ, ସେହି ଭାଗବତବାବୁ, ବସନ୍ତବାବୁଙ୍କ ଅଯୌକ୍ତିକ ମହତ୍ତ୍ୱାକାଂକ୍ଷାକୁ ସହାୟତା ଦେବାପାଇଁ, ଜାନକୀବାବୁଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ବିତାଡ଼ିତ କରାଇବା ସକାଶେ କୌଣସି ପଦକ୍ଷେପକୁ ଜଘନ୍ୟ ଭାବି ନ ଥିଲେ। ବସନ୍ତବାବୁଙ୍କ ସହ ସେ ହଠାତ୍ ଦିଲ୍ଲୀ ଯିବା ଓ ସେଠାରେ ଥିବାବେଳେ, ତାଙ୍କ ସହ ସର୍ବଦା ଦୃଶ୍ୟମାନ ସାମ୍ବାଦିକ ସୁତନୁ ଗୁରୁଙ୍କ ସହ ଅଞ୍ଜନା ମିଶ୍ର ଏକ ନିରୋଳା ରାତିରେ ବାରଙ୍ଗ ରାସ୍ତାରେ କଟକ ଯିବା ବାହାନାରେ ଯାଉ ଯାଉ ଧର୍ଷିତା ହେବା ଏବଂ ତହିଁପରଦିନ ସକାଳ ହେଉହେଉ ଏହି ଧର୍ଷଣ ସମ୍ବାଦ ଦିଲ୍ଲୀରେ ଲହଡ଼ି ଭାଙ୍ଗିବା ଓ କଂଗ୍ରେସର ତୁଙ୍ଗ ନେତୃତ୍ୱ ସମ୍ମୁଖରେ ରଖାଯାଇ ଜାନକୀବାବୁଙ୍କ ଶାସନର ଶେଷ ଯବନିକା ପତନ ପାଇଁ ପ୍ରୟୋଗ କରାଯିବା କେତେ ସୁଚିନ୍ତିତ ଥିଲା, ତାହା ଏ ଯାଏଁ ଆଇନତଃ ଆକଳିତ ନ ହୋଇଥିଲେ ମଧ୍ୟ ସୁତନୁ ଗୁରୁ ନିଶ୍ଚୟ ଜାଣିଥିବେ ପ୍ରକୃତ ଧର୍ଷଣକାରୀ କିଏ–ଯିଏ ଧର୍ଷଣ କଲେ, କି ଯିଏ ତାହା ଯୋଗାଡ଼ କରାଇଥିଲେ।

ଏହି ପ୍ରେକ୍ଷାପଟରେ ଯେତେବେଳ ୧୯୯୮ର ଫେବୃୟାରୀ ପ୍ରଥମ ସପ୍ତାହର ସେହି ମଧରାତ୍ରି ମୋର ମନେପଡ଼େ–ଯେତେବେଳେ ଭାଗବତବାବୁଙ୍କ ପ୍ରତି ଫିଙ୍ଗାଯାଇଥିବା ଉଦ୍ଦେଶ୍ୟପ୍ରଣୋଦିତ କୁହାକୁ ସମୟ କାଗଜରେ ମୁଁ ଅକାମୀ କରାଇଦେଇଥିବା ହେତୁ ଜାନକୀବାବୁ ମୋତେ ଫୋନ୍ ଯୋଗେ ଧନ୍ୟବାଦ ଦେଇଥିଲେ–ସେତେବେଳେ ମୋର ମନେହୁଏ, ଶତ୍ରୁ ପ୍ରତି ଉଦାରଚେତା ଏହି ଜନନେତା ଏବେବି ଓଡ଼ିଶାରେ ଅଜଣା।

ଶତ୍ରୁ ପ୍ରତି ଉଦାରତାର ଅନ୍ୟ ଏକ ନମୁନା ମୋ ଅଙ୍ଗେନିଭା ଅନୁଭୂତିରୁ ଦେଉଛି।

ଆଠଗଡ଼ରୁ ବିଧାନସଭାକୁ ଆସିବା ପାଇଁ ଉପନିର୍ବାଚନରେ ଜାନକୀବାବୁ ପ୍ରାର୍ଥୀ ହେବାବେଳେ ତାଙ୍କୁ ସ୍ୱାଗତ କରିବାକୁ ଉପସ୍ଥିତ ଜନତାକୁ ଉଦ୍‌ବୋଧନ ଦେଇ ଅତି ଅନାବଶ୍ୟକ ଭାବେ ସେ ଏପରି ଏକ ପ୍ରତିଶ୍ରୁତି ଦେଲେ, ଯାହା ସ୍ପଷ୍ଟତଃ ଥିଲା ଏକ ମିଥ୍ୟା ପ୍ରତିଶ୍ରୁତି। ମୋ ଅଞ୍ଚଳଟି ମୁଖ୍ୟମନ୍ତ୍ରୀଙ୍କ ନିର୍ବାଚନମଣ୍ଡଳୀ ହୋଇଗଲେ ତହିଁର ନିଶ୍ଚୟ ଉନ୍ନତି ହେବ–ଏପରି ଏକ ବିଶ୍ୱାସରେ ଉଲ୍ଲସିତ ହେଇ ତାଙ୍କୁ ସ୍ୱାଗତ କରିବାକୁ ମୁଁ ଛୁଟିଯାଇଥିଲି ଭୁବନେଶ୍ୱରରୁ ଆଠଗଡ଼। ମାତ୍ର ସେ ଏକ ମିଥ୍ୟା ପ୍ରତିଶ୍ରୁତି ଦେବା ଦେଖି ମନ ବିଷଣ୍ଣତାରେ ଭରିଗଲା।

ସେ ଭୋଟ ପାଇ ବିଧାନସଭାର ବିଧିବଦ୍ଧ ସଭ୍ୟ ହୋଇଯିବା ପରେପରେ ଆଠଗଡ଼ କଲେଜକୁ ସରକାରୀ କଲେଜ କରିଦେବେ ବୋଲି ନିଜ ଆଡୁ ପ୍ରତିଶ୍ରୁତି ଦେଲେ। ମୁଁ ପଚାରିଥିଲି– ମିଥ୍ୟା ପ୍ରତିଶ୍ରୁତି କାହିଁକି ଦେଉଛନ୍ତି ? ଆଠଗଡ଼ ପୂର୍ବରୁ ଗଢ଼ା ବହୁ ପ୍ରତିଷ୍ଠିତ ଘରୋଇ କଲେଜ ଥିବାବେଳେ ସେଗୁଡ଼ିକୁ ସରକାରୀ ନ କରି ଏହି କଲେଜଟିକୁ ସରକାରୀ କରିବା ଅସମ୍ଭବ ଓ ସେହେତୁ ଏପରି ମିଥ୍ୟା ପ୍ରତିଶ୍ରୁତି ଦେବା ଅନୁଚିତ ବୋଲି ମୁଁ କହିଲି। ଜାନକୀବାବୁ ମୁଖ୍ୟମନ୍ତ୍ରୀ ଭାବେ ସ୍ୱତନ୍ତ୍ରାଧିକାର ପ୍ରୟୋଗ କରି ଏହା କରିଦେବେ ବୋଲି କହିଲେ, ଯଦିଓ ସେ ଜାଣିଥିଲେ ଯେ ତାହା ସମ୍ଭବ ହେବ ନାହିଁ।

ମୁଖ୍ୟମନ୍ତ୍ରୀଙ୍କ ଏହି ଗୋଟିଏ ମିଥ୍ୟା ପ୍ରତିଶ୍ରୁତି ଏପରି ଏକ ସମୟ ସୃଷ୍ଟି କଲା ଯେ, ଭୁବନେଶ୍ୱର ଛାଡ଼ି ମୁଁ ଯାଇ ଆଠଗଡ଼ରେ ରହିଲି ଓ ତାଙ୍କ ବିରୋଧରେ ଗଢ଼ିତୋଳିଲି ଏକ ପ୍ରଚଣ୍ଡ ବିଦ୍ରୋହ। ମୋ ସ୍ତ୍ରୀ ସବିତାରାଣୀ ସେତେବେଳେ ଶୈଳବାଳା ମହିଳା ମହାବିଦ୍ୟାଳୟରେ ଅଧାପିକା। ସେ ଆସି ମୋ ସହ ଆଠଗଡ଼ରେ ରହିଲେ ଓ ସେଠାରୁ ପ୍ରତିଦିନ ବସ ଯୋଗେ କଟକ ଯା'ଆସ କଲେ। ୧୯୮୫ର ନିର୍ବାଚନ ବର୍ଷେ ଖଣ୍ଡେ ଆଗକୁ ଥାଏ, ସମଗ୍ର ଆଠଗଡ଼ ନିର୍ବାଚନମଣ୍ଡଳୀ ଆସିସାରିଥାଏ ଆପାତତଃ ମୋ କବ୍‌ଜାକୁ। ଜେଲ୍ ହୋଇଯାଇଥାଏ ଜୀବନ। ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଲାଲ୍ ପତାକା ଲହଡ଼ି ମାରୁଥାଏ ସମଗ୍ର ଅଞ୍ଚଳରେ। ନିର୍ବାଚନରେ ଜାନକୀବାବୁଙ୍କ ବିରୋଧରେ ମୁଁ ଯେତେବେଳେ ହାରିଗଲି, ଏବେ ଅବର୍ତ୍ତମାନ ନେତା ପ୍ରବୀର ପାଲିତ କହିଥିଲେ, ମୁଁ ଯଦି ସି.ପି.ଆଇ.ର ପ୍ରାର୍ଥୀ ନ ହୋଇ ସ୍ୱାଧୀନ ଭାବେ ଲଢ଼ିଥାନ୍ତି, ତେବେ ସେଠି ଇତିହାସ ସୃଷ୍ଟି ହୋଇଥାନ୍ତା।

ପରେ ଜାନକୀବାବୁ ମୋତେ ତାହାହିଁ କହିଥିଲେ ୧୯୯୦ରେ। ସେହି ନିର୍ବାଚନରେ ଆଠଗଡ଼ଗରେ ତାଙ୍କ ସ୍ଥାନରେ ମୋତେ କଂଗ୍ରେସର ପ୍ରାର୍ଥୀ କରିବାକୁ ରାଜୀବ ଗାନ୍ଧୀଙ୍କୁ ସେ

ପରାମର୍ଶ ଦେଇଥିଲେ। ତଦନୁଯାୟୀ ତାଙ୍କ ବଦଳରେ କଂଗ୍ରେସ ପାର୍ଟି ମୋତେ ହିଁ ଟିକଟ ଦେଇଥିଲା, ଯାହାକୁ ମୁଁ ପ୍ରତ୍ୟାଖ୍ୟାନ କରିଥିଲି। ଫଳରେ ୧୯୯୦ ନିର୍ବାଚନରେ କଂଗ୍ରେସର କୌଣସି ପ୍ରାର୍ଥୀ ଆଠଗଡ଼ ନିର୍ବାଚନମଣ୍ଡଳୀରେ ରହିଲେ ନାହିଁ। କଂଗ୍ରେସର ଅନ୍ତର୍ଦ୍ଦଳନ ସଂଘାତରେ ୧୯୯୮ ନଭେମ୍ବରରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ ମଧ୍ୟ ସେ ହିଁ କଂଗ୍ରେସର ଏକମାତ୍ର ଦିଗ୍‌ଗଜ ହୋଇ ରହିଥିଲେ ଓଡ଼ିଶାରେ। କଂଗ୍ରେସର ସ୍ୱାର୍ଥ ବିରୋଧରେ କ୍ଷଣକପାଇଁ ଯିବା ତାଙ୍କ ପକ୍ଷେ ସମ୍ଭବ ନ ଥିଲା। ସୁତରାଂ, କଂଗ୍ରେସର ଭୋଟବ୍ୟାଙ୍କ କାଳେ ଅନ୍ୟ କୌଣସି ଦଳଙ୍କ ହାତକୁ ଚାଲିଯିବ– ଏହି ଆଶଙ୍କାରେ ଜାନକୀବାବୁ ଉମାବଲ୍ଲଭ ରଥଙ୍କୁ ସ୍ୱାଧୀନ ପ୍ରାର୍ଥୀ କରାଇ, ନିଜ ହାତରୁ ପାଣ୍ଠି ଖର୍ଚ୍ଚ କରି, ସବୁ କଂଗ୍ରେସ ଭୋଟ ଯେପରି ମୋ ପାଖକୁ ବା ଅନ୍ୟ ଦଳକୁ ନ ଯାଇ ଉମାଙ୍କ ପାଖକୁ ଯାଏ ଓ ଗୋଷ୍ଠୀଭୁକ୍ତ ହୋଇ ରହେ, ତା' ପାଇଁ ଚେଷ୍ଟା କଲେ। କିନ୍ତୁ କଂଗ୍ରେସ ହାଇକମାଣ୍ଡ ନୀତିଗତ ଦୃଷ୍ଟିରୁ ମୋ ପ୍ରତି ସମର୍ଥନ ଜାରି ରଖିବାରୁ, ଆଠଗଡ଼ର ଆଗଧାଡ଼ିଆ କଂଗ୍ରେସ ନେତାମାନେ ଖୋଲାଖୋଲିଭାବେ ଉମାଙ୍କୁ ସାହାଯ୍ୟ କଲେ ନାହିଁ। ଏହି ଅଦ୍ଭୁତ ପରିସ୍ଥିତିରୁ ଫାଇଦା ଉଠାଇ, ରଣେନ୍ଦ୍ର ପ୍ରତାପ ସ୍ୱାଇଁ ନିର୍ବାଚନ ଜିତିଲେ।

ଏହି ବର୍ଣ୍ଣନାରେ ଦୁଇଟି ଅଜଣା ସତ୍ୟ ଖୋଦିତ। ପ୍ରଥମଟି ହେଲା– ରାଜନୈତିକ ବିରୋଧୀ ପ୍ରତି ଉଦାରତା ଓ ନିଜ ସ୍ଥାନରେ ନିଜର ଚରମ ବିରୋଧୀଙ୍କୁ ଜନସ୍ୱାର୍ଥର ମୂଲ୍ୟାୟନ ଭିତ୍ତିରେ କଂଗ୍ରେସର ଟିକଟ ଦିଆଇ ସେ ସେହି ଟିକଟ ପ୍ରତ୍ୟାଖ୍ୟାନ କରିବାରୁ, କଂଗ୍ରେସର ଭୋଟବ୍ୟାଙ୍କ ଅନ୍ୟ କୌଣସି ଦଳକୁ ଯେପରି ନ ଯାଏ, ସେଥିପାଇଁ ତାଙ୍କର ବ୍ୟକ୍ତିଗତ ଉଦ୍ୟମ। ଉଭୟଟିରେ ଜାନକୀବାବୁଙ୍କ ମହତ୍ତ୍ୱ ଓ ବୈଶିଷ୍ଟ୍ୟର ଯେଉଁ ସ୍ୱାକ୍ଷର ଖୋଦିତ ତାହା ଓଡ଼ିଶାରେ ଏବେବି ବହୁ ବ୍ୟକ୍ତି ଜାଣନ୍ତି ନାହିଁ।

କିନ୍ତୁ ରାଜନୈତିକ ବିରୋଧୀ ପ୍ରତି ଜାନକୀବାବୁଙ୍କର ଉଦାରତାର ଏପରି ଏକ ଦୃଷ୍ଟାନ୍ତ ଏଠାରେ ମୁଁ ରଖିବାକୁ ଚାହେଁ, ଯାହା ନ ରଖିବା ଅକୃତଜ୍ଞତା ହେବ। ୧୯୮୪ ମସିହା। ତାଙ୍କ ନିର୍ବାଚନମଣ୍ଡଳୀରେ ତାଙ୍କ ଦଳକୁ ମୁଁ ଅସ୍ତବ୍ୟସ୍ତ କରି ରଖିଥାଏ। ପୂର୍ବରୁ କହିଛି ଯେ ମୋ ସ୍ତ୍ରୀ ଆଠଗଡ଼ରେ ରହି ପ୍ରତ୍ୟହ କଟକ ଯାଉଥାନ୍ତି ଶୈଳବାଳା ମହିଳା କଲେଜରେ ପଢ଼ାଇବାପାଇଁ। ତାଙ୍କୁ ଦୂରକୁ ବଦଳି କରିଦେଲେ, ସେଠାରୁ ମୋ ଡେରା ଉଠିଯିବ ଭାବି କେହି କେହି କଂଗ୍ରେସ ନେତା ଶିକ୍ଷାମନ୍ତ୍ରୀଙ୍କୁ ପ୍ରଭାବିତ କରିଥିଲେ। ଜାନକୀବାବୁ ତହିଁରେ ରାଜି ନ ହେବାରୁ ବଦଳି ହେଲା ନାହିଁ ବୋଲି ମୋତେ କହିଥିଲେ ସେତେବେଳେ ଶିକ୍ଷା ନିର୍ଦ୍ଦେଶକ ଥିବା ମୋର ଜଣେ ଦୂରସଂପର୍କୀୟ, ଯେ କି କହିଥିଲେ; ସେ ତମ ପାଇଁ ଏତେ ଉଦାର, ଅଥଚ ତମେ ତାଙ୍କୁ କାହିଁକି ବିରୋଧ କରୁଛ ? ମୁଁ ତାହା ଉପରେ ଗୁରୁତ୍ୱ ଦେଇ ନ ଥିଲି। ଭାବିଥିଲି, ମୋ ମନଧୋଇବା (brainwashing) ପାଇଁ ସମ୍ଭବତଃ ଏହା ଥିଲା ଏକ ଚାଲ୍। କିନ୍ତୁ ଚମକିପଡ଼ିଲି ଯେତେବେଳେ ସେହି ଏକା କଥା ବହୁବର୍ଷ ପରେ ଗଙ୍ଗାଧର ମହାପାତ୍ର ମୋତେ କହିଲେ।

ମୋ ପଡ଼ିଶା ଥା'ନ୍ତି ଓଡ଼ିଶା ରାଜ୍ୟ ଫରେନ୍‌ସିକ୍ ଲାବୋରେଟରୀର ନିର୍ଦ୍ଦେଶକ ଥିବା ତାଙ୍କ ନିକଟ ସଂପର୍କୀୟ ଡାକ୍ତର ବ୍ରସନ୍ତ କୁମାର ଦାଶ। ଧର୍ମରେ ମୋର ଭିଣୋଇ। ତାଙ୍କରି ଘରେ ଗଙ୍ଗାଧରବାବୁଙ୍କ ସହ ଦେଖାହେଲା। କହିଲେ, "ତମ କରଣିଆଙ୍କର ବାହାରେ ଲଢ଼େଇ, ଭିତରେ କିନ୍ତୁ ଭାଇଚାରା।" ତାଙ୍କଠୁ ଏପରି କଥା ଶୁଣି, ମୁଁ ଆଶ୍ଚର୍ଯ୍ୟ ହୋଇଗଲି। ଜାଣିବାକୁ ଚାହିଁଲି, ତାଙ୍କ କଥାର ତାତ୍ପର୍ଯ୍ୟ। ସେ କହିଲେ, "ମୁଁ ଶିକ୍ଷାମନ୍ତ୍ରୀ ଥିଲି। ଆଠଗଡ଼ର କଂଗ୍ରେସ ନେତାଏ ଚାପ ପକାଇବାରୁ ଆପଣଙ୍କ ସ୍ତ୍ରୀଙ୍କୁ ଶୈଳବାଳାରୁ ସୁନ୍ଦରଗଡ଼ ବଦଳି କରିବାକୁ ଫାଇଲ ପ୍ରସ୍ତୁତ କରି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଲି; କାରଣ ସେ ରିଡ଼ର ଥିବା ହେତୁ ତାଙ୍କ ଅନୁମୋଦନ ଆବଶ୍ୟକ ଥିଲା। ଜାନକୀବାବୁ ମୋତେ ଡାକିଲେ ଓ ବିନା ମନ୍ତବ୍ୟରେ ଫାଇଲଟି ବଢ଼ାଇଦେଲେ। କହିଲେ, "ସୁଭାଷବାବୁ ତାଙ୍କ ନୀତିଦୃଷ୍ଟିରୁ ମୋତେ ବିରୋଧ କରୁଛନ୍ତି। ତାଙ୍କ ପାରିବାରିକ ଜୀବନରେ ଆମେ କାହିଁକି ହସ୍ତକ୍ଷେପ କରିବା ? ଫାଇଲଟି ମୋରି ପାଖରେ ସୃଷ୍ଟି ହୋଇ ମୋରି ପାଖରେ ମରିଗଲା।"

ଶ୍ରଦ୍ଧାରେ ସେଦିନ ଜାନକୀବାବୁଙ୍କ ପାଖରେ ନଇଁଯାଇଥିଲା ମୋର ମଥା। ବିରୋଧୀ ପ୍ରତି ଏ ଉଦାରତା ଓଡ଼ିଶାର ଅନ୍ୟ କୌଣସି ନେତାଙ୍କର କେବେ ଥିଲା ନା ଅଛି ? ତାଙ୍କର ଏହି ମହାନୁଭବତା ବହୁ ବ୍ୟକ୍ତିଙ୍କୁ ଅଜଣା।

ପ୍ରତିଦ୍ୱନ୍ଦ୍ୱୀଠାରୁ ଭଲ ପ୍ରସ୍ତାବ ପାଇଲେ ତାକୁ ଯଥୋଚିତ ଗୁରୁତ୍ୱ ଦେବା ଯଦି କୌଣସି ରାଜନେତାଙ୍କ ବୈଶିଷ୍ଟ୍ୟ ହୋଇଥାଏ, ତେବେ ସେ ନେତା ହିଁ ଜାନକୀବଲ୍ଲଭ ପଟ୍ଟନାୟକ। ମୁଣ୍ଡଳୀ ଆନିକଟରୁ ଧରି ରଖିଥିବା ସ୍ତମ୍ଭଗୁଡ଼ିକୁ ଉପରକୁ ଗଢ଼ିଆଣି ତହିଁ ଉପରେ ଏକ ପୋଲ ନିର୍ମାଣ କରିଦେଲେ ଭୁବନେଶ୍ୱର ସହ ଆଠଗଡ଼ ଲାଗିଯିବ ବୋଲି ଜଣେ ସ୍ଥାନୀୟ ଶ୍ରମଜୀବୀଙ୍କଠାରୁ ଏକ ଅଭିମତ ପାଇ ମୁଁ ତାହା ଜାନକୀବାବୁଙ୍କ କାନରେ ପକାଇଲି। ତାହାକୁ ସେ ଏତେ ଗୁରୁତ୍ୱ ଦେଲେ ଯେ ମୁଣ୍ଡଳୀ ପୋଲ ତୁରନ୍ତ ଆରମ୍ଭ ହେଲା ଓ ସେହେତୁ ଆଜି ଆଠଗଡ଼ ଭୁବନେଶ୍ୱର ସହ ପ୍ରାୟ ଯୋଡ଼ିହୋଇଆସିଲାଣି। ସେ କ୍ଷମତାରୁ ଚାଲିଗଲା ପରେ ତାଙ୍କ ମୂଲ୍ୟାୟନ କରିବାକୁ ଯାଇ, ଏହି ଉପାଖ୍ୟାନଟିକୁ ମୁଁ ସମ୍ବାଦକୁ ପଠାଇଥିଲି ଏବଂ ତାହା ତା. ୫.୩.୧୯୯୯ ରିଖରେ 'ସମ୍ବାଦ'ରେ ପ୍ରକାଶ ପାଇଥିଲା। ଅସତର୍କ ଭାବେ ସେହି ଲେଖାଟିରେ ମୁଣ୍ଡଳୀ ସ୍ଥାନରେ ନରାଜ ଲେଖିହୋଇଯାଇଛି; କିନ୍ତୁ ପ୍ରତିଦ୍ୱନ୍ଦ୍ୱୀର ଭଲ ପରାମର୍ଶ ପ୍ରତି ଉପଯୁକ୍ତ ଗୁରୁତ୍ୱ ଦେବାର ଯେଉଁ ମହାନୁଭବତା ଜାନକୀବାବୁଙ୍କର ଥିଲା ତହିଁର ତାହା ଏକ ଦସ୍ତାବିଜ ହୋଇରହିଛି। ତାଙ୍କର ଏହି କ୍ରାନ୍ତିକାରୀ ମହାନୁଭବତା ସମସ୍ତେ ଜାଣିବା ଉଚିତ।

ତାଙ୍କ କ୍ରାନ୍ତିକାରୀ ବ୍ୟକ୍ତିତ୍ୱର ଏପରି ଏକ ଦୃଷ୍ଟାନ୍ତ ଇତିହାସ ସାଇତି ରଖିଛି ତା'ର କୋଳରେ ଯେ, ତାହା କାଳଜୟୀ ହୋଇ ରହିଥିବ ସବୁକାଳେ। ଘଟଣାଟି ତାଙ୍କ ଆଫିସୀୟ ଜୀବନର ଶେଷ ପର୍ଯ୍ୟାୟର। ଆସାମରେ ରାଜ୍ୟପାଳ ଦାୟିତ୍ୱ ନେବାପରେ ସେଠିକାର ମହିଳାମାନଙ୍କୁ ସତ୍ର (ବୈଷ୍ଣବୀୟ ମଠ ମନ୍ଦିର)ରେ ପ୍ରବେଶ କରିବ ପୂଜାର୍ଚ୍ଚନା କରିବାକୁ ଅଧିକାର ଦେବାକୁ ସେ ନିଷ୍ପତ୍ତି କଲେ। ଆସାମର ବୈଷ୍ଣବଶ୍ରେଷ୍ଠ ଶ୍ରୀମନ୍ତ ଶଙ୍କରଦେବଙ୍କ

ପ୍ରତିଷ୍ଠିତ ଷୋଡ଼ଶ ଶତାବ୍ଦୀର ପବିତ୍ର ସତ୍ରର ସଂକୀର୍ତ୍ତନ ଘରକୁ ସୁଦ୍ଧା ମହିଳାମାନଙ୍କ ପ୍ରବେଶାଧିକାର ନ ଥିଲା। ଏହା ଏପରି କଡ଼ାକଡ଼ି ଥିଲା ଯେ, ପ୍ରଧାନମନ୍ତ୍ରୀ ଥିବାବେଳେ ବି ଶ୍ରୀମତୀ ଇନ୍ଦିରଗାନ୍ଧୀ ତହିଁ ଭିତରକୁ ପ୍ରବେଶପାଇଁ ଅନୁମତି ପାଇ ନ ଥିଲେ। ଏହି କଟକଣା ଉଠାଇଦେବାକୁ ବଦ୍ଧପରିକର ହେଲେ ଜାନକୀବାବୁ।

ରାଜ୍ୟପାଳଙ୍କ ଅଧିକାର ପ୍ରୟୋଗ କାମ ଦେବ ନାହିଁ ବୋଲି ସେ ଜାଣିଥିଲେ। ସୁତରାଂ ସତ୍ରାଧିପତିମାନଙ୍କ ସହ ତାତ୍ତ୍ୱିକ ଯୁକ୍ତିରେ ସଂପୃକ୍ତ ହୋଇ ସବୁଦିନ ପାଇଁ ସେହି ନାରୀ ବିରୋଧୀ କଟକଣାର ଅନ୍ତ ଘଟାଇବାକୁ ଚିନ୍ତାକରି ସେ ଆସାମ ସତ୍ର ମହାସଂଘ ସହ ତର୍କାଲୋଚନାରେ ଲିପ୍ତ ହେଲେ ୨୦୧୦ ମେ ମାସ ପ୍ରାରମ୍ଭରେ ଏବଂ ସର୍ବବିଧ ଶାସ୍ତ୍ରୀୟ ତର୍କରେ ସାବ୍ୟସ୍ତ କଲେ ଯେ, ଯେକୌଣସି ମଠ ମନ୍ଦିରର ଗର୍ଭଗୃହକୁ ଯାଇ ସେଠାରେ ପୂଜାର୍ଚ୍ଚନା କରିବାକୁ ମହିଳାମାନେ ଉଭୟ ଆଇନତଃ ଓ ଶାସ୍ତ୍ରୀୟତଃ ସମର୍ଥ। ଏଥିସହ ସମ୍ପୃକ୍ତ ଫଟୋଚିତ୍ରଟି ସେହି ମହାଧିବେଶନକୁ ସେ ଯାଉଥିବାର ଚିତ୍ର। ଏବେ ମୁମ୍ବାଇ ସହରର ମହିଳାମାନେ ହାଇକୋର୍ଟରୁ ସେମାନଙ୍କ ମନ୍ଦିର ପ୍ରବେଶ ସପକ୍ଷରେ ଏକ ନ୍ୟାୟିକ-ନିର୍ଦ୍ଦେଶ ହାସଲ କରିଛନ୍ତି। କିନ୍ତୁ ଶାସ୍ତ୍ରଜ୍ଞ ଜାନକୀବଲ୍ଲଭ ୨୦୧୦ରେ ଅତି ରକ୍ଷଣଶୀଳ ସତ୍ରାଧିପତିମାନଙ୍କୁ ତର୍କରେ ପରାଭୂତ କରି ମହିଳାମାନଙ୍କପାଇଁ ଯେଉଁ ତାତ୍ତ୍ୱିକ ବିଜୟ ହାସଲ କରିଥିଲେ ତାହା ସାରା ଭାରତରେ ଆଧାତ୍ମିକ ପାବନପୀଠଗୁଡ଼ିକୁ ପ୍ରବେଶ କରି ପୂଜାର୍ଚ୍ଚନା କରିବାପାଇଁ ମହିଳାମାନଙ୍କୁ ଦେଇଛି ଦୃଷ୍ଟାନ୍ତମୂଳକ ଅମୋଘ ଅସ୍ତ୍ର, ଯାହା ନ୍ୟାୟିକ-ଚିନ୍ତନକୁ ବି ମହିଳାମାନଙ୍କ ସପକ୍ଷରେ ପ୍ରଭାବିତ କରିବାକୁ ଚିରନ୍ତନୀ ଶକ୍ତିର ଏକ ଉତ୍ସ ହୋଇରହିବ। ଜାନକୀବାବୁଙ୍କ ଏହି ଉଜ୍ଜ୍ୱଳ ବୈଶିଷ୍ଟ୍ୟ ଓଡ଼ିଶାରେ ସମସ୍ତେ ଜାଣିବା ଉଚିତ।

ଆଉ ଏକ କଥା, ଓଡ଼ିଶାବାସୀ ନିଶ୍ଚୟ ଜାଣିବା ଆବଶ୍ୟକ। କାରଣ ଏହା ଜାଣିଲେ ହିଁ ନିଜ ରାଜ୍ୟକୁ ନିଜ ଭବିଷ୍ୟତ ବଂଶଧରମାନଙ୍କପାଇଁ ସାଇତି ରଖିହେବ। ସେଦିନ ତା. ୧.୮.୨୦୧୫ରିଖ। ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ପୋସ୍କୋ ପ୍ରୀତିରେ ଦୂରଦୃଷ୍ଟିହୀନତା ଲକ୍ଷ୍ୟକରି ଜାନକୀବାବୁ କହିଥିଲେ, "ମଧ୍ୟ-ପ୍ରାଚ୍ୟ ଦେଶମାନଙ୍କର ତୈଳ ପରି ଲୁହାପଥର ଆମର ମଞ୍ଜି ସମ୍ବଳ"। ତାହାକୁ ବାହାରକୁ ନେଇଯିବାପାଇଁ ପୋସ୍କୋକୁ ଅନୁମତି ଦିଆ ନ ଯାଉ। ପୋସ୍କୋ ସହ ସ୍ୱାକ୍ଷରିତ ବୁଝାମଣା ଅନୁସାରେ, ତାକୁ ଯେଉଁ ଲୁହାଖଣି ଦିଆଯିବ, ତହିଁରୁ ଉତ୍ପାଦିତ ଲୁହାପଥର ଉଚ୍ଚମାନର ନ ହୋଇଥିବା ହେତୁ ସେ ତହିଁର ଅଧା ନିଜ କୋରିଆ କାରଖାନାକୁ ନେଇଯିବ ଓ ସମପରିମାଣର ଲୁହାପଥର ଏଠାକୁ ଆମଦାନୀ କରିଆଣିବ। ଜାନକୀବାବୁ ଏହାକୁ ଘୋର ବିରୋଧ କରି ପଚାରିଥିଲେ, "ଯଦି (ପୋସ୍କୋ) ସେଠୁ ଲୁହାପଥର ଆଣିବ, ଏଠୁ ଲୁହାପଥର ନେବାର କାରଣ କଣ? (ପୋସ୍କୋ) ଯେଉଁ କହୁଛନ୍ତି, ୧୮ ମିଲିୟନ ଟନ୍ ପରିବର୍ତ୍ତେ ଆମେ ପୁଣି ୧୮ ମିଲିୟନ ଟନ୍ ଆଣୁଛୁ, ମୋର କହିବାର କଥା, ଆମର ଯେଉଁ ୧୮ ମିଲିୟନ୍ ଟନ୍ ଲୁହାପଥର ଅଛି ସେ ଆଉ, ଯଦି ତୁମେ (ପୋସ୍କୋ) ଏଇଟା କରିବାକୁ ଚାହୁଁଛ, ତମର ଆବଶ୍ୟକତା ଅନୁଯାୟୀ ସେହି ୧୮ ମିଲିୟନ୍ ଟନ୍ ଲୁହାପଥର ଅନ୍ୟ ଦେଶରୁ ଆଣ।" ଏହି ଐତିହାସିକ ଭାଷଣରେ ଜାନକୀବାବୁ

କିପରି ପୋସ୍କୋର ବଚସ୍କର ସାଜିଥିବା ନବୀନ ପଟ୍ଟନାୟକ ଓଡ଼ିଶା ସମ୍ମୁଖରେ ରଖିଥିବା ମାୟାକୁହେଳିକାକୁ ତଥ୍ୟଭିତ୍ତିରେ ଧ୍ୱସ୍ତବିଧ୍ୱସ୍ତ କରିଦେଇଥିଲେ, ମୁଁ ତା' ଭିତରକୁ ଯାଉନି। କିନ୍ତୁ କାହିଁକି ତାଙ୍କର ସେଦିନର କଥା ଏବେବି ଗଭୀର ଗୁରୁତ୍ୱର ଅଧିକାରୀ ତାହା ଓଡ଼ିଶା ଜାଣିବା ଆବଶ୍ୟକ।

ସେ କହିଥିଲେ, ଆମ ମଞ୍ଜ ସମ୍ବଳ ଲୁହାପଥରକୁ ଆମେ କିପରି ଉପଯୋଗ କରିବା ତାହା ଧାର୍ଯ୍ୟ ହେଉ। "ଯେଉଁମାନେ (ପୋସ୍କୋ ପରି) ଆସୁଛନ୍ତି, ସେମାନେ ଯାହା କହୁଛନ୍ତି, କୌଣସି ସର୍ତ୍ତ ପ୍ରତି ଦୃଷ୍ଟି ନଦେଇ ଆଖିବୁଜି ତାଙ୍କ କଥାରେ ରାଜି ହୋଇ ଆମେ ଆମର ଲୁହାଖଣି ଦେଇଦେବା? ତେଣୁ ଆମର ସ୍ୱଚ୍ଛ ଲୁହାଖଣି ନୀତି ହେଉ। ଏ ନୀତିରେ ପରିଷ୍କାରଭାବରେ ଦେଶରୁ ଲୁହାପଥର ରପ୍ତାନି ବନ୍ଦ କରାଯାଉ।"

ସେ କହିଥିଲେ, ପ୍ରକୃତି ଦୟାପରବଶ ହୋଇ ଆମକୁ ଯେତେ ଅଧିକ ଲୁହାପଥର ଦେଇଥିଲେ ମଧ୍ୟ, ଯେଉଁ ହାରରେ ନବୀନ ପଟ୍ଟନାୟକଙ୍କ ସରକାର ତାହା ଉଡ଼ାଇଦେବାରେ ଲାଗିଛି, ସେପରି ଚାଲିଲେ, ସରକାର ଉପସ୍ଥାପନ କରିଥିବା ପରିସଂଖ୍ୟାନ ମତେ, "ତିରିଶ ବର୍ଷ ପରେ ଓଡ଼ିଶା ଏଭଳି ଏକ ରାଜ୍ୟରେ ପରିଣତ ହେବ, ଯେଉଁଠିକି କିଛି କଞ୍ଚାମାଲ ଆଉ ନଥିବ। ଖଣିଜଦ୍ରବ୍ୟ ସବୁ ଯଦି ଶେଷ ହୋଇଯିବ, ବିଶେଷଭାବେ ଲୁହାପଥର ଯଦି ଶେଷ ହୋଇଯିବ, କାରଖାନାଗୁଡ଼ିକର ସର୍ବୋଚ୍ଚ ୩୦ ବର୍ଷ ଆୟୁଭୋଗ ପରେ, ଭାରତ ସରକାରଙ୍କ ଶିଳ୍ପନୀତି ମାନି, ଆଉ ୨୦ ବର୍ଷ ସେମାନଙ୍କୁ ନବୀକରଣ କରାଯାଇ, କେଉଁଠୁ କଞ୍ଚାମାଲ ଦିଆଯିବ ବୋଲି ପ୍ରଶ୍ନ କରି ସେ ଚୀନ ଦେଶର ଉଦାହରଣ ଦେଇଥିଲେ। ସେ ଦେଶରେ ପ୍ରଚୁର ଲୁହାପଥର ଥିଲେ ମଧ୍ୟ "ଚୀନ୍ ବର୍ତ୍ତମାନ ବିଭିନ୍ନ ରାଷ୍ଟ୍ରରୁ ଲୁହାପଥର ଆଣି ଜମା ରଖୁଛି। କାରଣ ଭବିଷ୍ୟତରେ ତାଙ୍କର ଯାହା ଖଣିଜ ଅଛି, ତାହା ଯେପରି ନ ସରେ ଏବଂ ବହୁକାଳ ପର୍ଯ୍ୟନ୍ତ ତାଙ୍କର ଇସ୍ପାତ ଶିଳ୍ପ ଯେପରି କାର୍ଯ୍ୟ କରେ। କିନ୍ତୁ ଓଡ଼ିଶାରୁ ସବୁ ଦେଇ ଆମେ ଠୋ ଠୋ ମଦନ ଗୋପାଳ! ଯେତେବେଳେ ଆମର କିଛି ନ ଥିବ, ଆମେ ଯେଉଁ ଦରିଦ୍ରକୁ ସେହି ଦରିଦ୍ର; ଯେଉଁ ତିମିରେକୁ ସେହି ତିମିରେ। ବର୍ତ୍ତମାନ ଖୁବ୍ ଭଲ ଦେଖାଯିବ, ଏତେ ହଜାର କୋଟି ଟଙ୍କାର ଶିଳ୍ପ ଆସୁଛି, ଓଡ଼ିଶାର ଚିତ୍ର ବଦଳିଯିବ, ଘିଅ ମହୁରେ ରାଜ୍ୟ ଭାସିବ। ଆଜି ଘିଅମହୁ ଖାଇବା, କାଲି ନିର୍ଜଳା ଉପବାସ। ଏଭଳି ଅବସ୍ଥା ବର୍ତ୍ତମାନ ଓଡ଼ିଶାରେ ହେବାକୁ ଯାଉଛି। ସରକାରଙ୍କର ଯାହା ସବୁ ନିଜର ତଥ୍ୟ, ସେହି ତଥ୍ୟକୁ ଭିତ୍ତିକରି ମୁଁ ଏକଥା କହୁଛି।"

ଏହା ଓଡ଼ିଶା ଜାଣିବା ଉଚିତ ଏବଂ ଓଡ଼ିଆ ଲୋକେ ନିଜ ଭବିଷ୍ୟ ବଂଶଧରମାନଙ୍କ ପାଇଁ ଓଡ଼ିଶାର କ୍ଷୟିଷ୍ଣୁ ପ୍ରାକୃତିକ ସମ୍ବଳକୁ ସାଇତି ରଖିବାକୁ ଚଳିତ ବଦଖର୍ଚ୍ଚୀ ସରକାରକୁ ବାଧ୍ୟ କରିବା ଆବଶ୍ୟକ।



# ଶ୍ରେଷ୍ଠ ସମ୍ମାନ

ଗୁମ୍‌ଝୁମ୍ ନାୟକ

ମୋର ନିଜସ୍ୱ ଅସହାୟତା ମୋ ଆଖି ଆଗରେ ତାଙ୍କ ଜୀବନ ଶରୀରକୁ ଛାଡ଼ି ଚାଲିଯିବାଟାକୁ ବିଶ୍ୱାସ କରିପାରି ନ ଥିଲା। ମତେ ଲାଗିଲା ସତେ ଯେପରି କଳା ଛାଇଟିଏ ଗୋଟେ ଅଖଣ୍ଡ ରାତିହୋଇ ସେଇ ମୁହୂର୍ତ୍ତକୁ ଗ୍ରାସ କରିବସିଛି। ବୟସ ହେଲେ ମୃତ୍ୟୁ ତ ନିଶ୍ଚୟ ଆସିବ, କିନ୍ତୁ ଏମିତି ଅପ୍ରତ୍ୟାଶିତ ମୃତ୍ୟୁ ପିତାମହ ଭୀଷ୍ମଙ୍କ ପରି ଇଚ୍ଛାମୃତ୍ୟୁ ନୁହେଁ ତ ଆଉ କ'ଣ!

ସକାଳୁ ସକାଳୁ ଟିଭି ଖୋଲିଲା ପରର ଦୃଶ୍ୟ ଦେଖି ମୋ ନିଜ ଆଖି ଉପରେ ବିଶ୍ୱାସ ତୁଟିଆସିଲା। ଛାତି ଭିତରେ ଧଡ଼ଧଡ଼ ହୋଇ ସବୁ ହାଡ଼ ଚୂନା ହେଇଗଲାପରି ଲାଗିଲା। ମତେ ଲାଗିଲା, ମୁଁ ପୁଣିଥରେ ଅନାଥ ହେଇଗଲି, ମୋ ବାବା ଚାଲିଯିବାର ପନ୍ଦରବର୍ଷ ପରେ। ରୋକିପାରୁ ନ ଥିଲି ଲୁହକୁ, କି ସମ୍ପର୍କରେ ସମ୍ପର୍କିତ ମୁଁ ତାଙ୍କ ସହିତ? ଜଣେ ଦକ୍ଷ ରାଜନୀତି ବିଶାରଦ, ପ୍ରଚଣ୍ଡ ଧୀଶକ୍ତିସମ୍ପନ୍ନ ଜ୍ଞାନୀ, ଗୁଣୀ, ଭାଷାବିତ୍, ଅସଂଖ୍ୟ ଅନନ୍ୟ ସୃଷ୍ଟିର ସଫଳ ସ୍ରଷ୍ଟା, ମହାଭାରତ, ରାମାୟଣ, ଶ୍ରୀମଦ୍ ଭଗବଦ୍‌ଗୀତାର ଗଦ୍ୟାନୁବାଦ କରିସାରିଥିବା ବିଦ୍ୱାନ୍, ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ, ଆସାମର ମହାମହିମ ପୂର୍ବତନ ରାଜ୍ୟପାଳ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହିତ ମୋ ପରି ଜଣେ ସାଧାରଣ ସ୍ତ୍ରୀଟିର କି ସମ୍ପର୍କ? ମୋ ମନର ଦୁଃଖ, ମୋ ଲୁହର କାରଣ, ମୋ ଅସହାୟତାର କାହାଣୀ କେବଳ ଈଶ୍ୱର ଜାଣନ୍ତି। ଏତେ ଭକ୍ତି, ଏତେ ସମ୍ମାନ, ଏତେ ବ୍ୟାକୁଳତା ବୋଧେ, ମୋ ବାବା ସ୍ୱର୍ଗତ ପ୍ରଫୁଲ୍ଲ କୁମାର ଧଳଙ୍କ ପରେ କେବଳ ତାଙ୍କପାଇଁ ଥିଲା। ମୋ ପ୍ରତି ତାଙ୍କର ପ୍ରଗାଢ଼ ସ୍ନେହ, ଆନ୍ତରିକତା ଏବଂ ଆର୍ଶୀବାଦ ମୁଁ କେବଳ ଅନୁଭବ କରି ନ ଥିଲି, ତାହା ମୋ ଜୀବନର ସର୍ବଶ୍ରେଷ୍ଠ ସଞ୍ଚୟ ଥିଲା। କେତେ ଆଦର କେତେ ଆନ୍ତରିକତା ଥିଲା ମୋପାଇଁ, ମୋ ପରିବାର ପାଇଁ କେହି ବୁଝିପାରିବେନି କିମ୍ବା ମୁଁ ବୁଝେଇବାକୁ ଚାହେଁ ନାହିଁ। ସେ କେବଳ ମୋର ପିତୃତୁଲ୍ୟ ନ ଥିଲେ, ପିତାଙ୍କର କନ୍ୟା ପାଖରୁ କିମ୍ବା କନ୍ୟାର ପିତା ପାଖରୁ କିଛି ଆଶା ବା ଆକାଂକ୍ଷା ଥାଏ। ମୋର ଆତ୍ମାରେ, ହୃଦୟରେ, ପ୍ରାଣରେ ମୁଁ ତାଙ୍କୁ ଅଜସ୍ର ଭକ୍ତି କରୁଥିଲି ମୋ ବାବାଙ୍କ ପରି ଏବଂ ତା' ବଦଳରେ ତାଙ୍କର ମୋ ପ୍ରତି ଅଜସ୍ର ସ୍ନେହାଶୀର୍ବାଦ ଥିଲା। ମୁଁ ଭାବିପାରେନି ମୋ ଲେଖାର ପ୍ରତିଶବ୍ଦ, ବାକ୍ୟ, ପୃଷ୍ଠା, ମୋ ଗପର ଏବଂ ବହିର ନାଁ ସହିତ ମୋ ଗଳ୍ପର ଚରିତ୍ରମାନଙ୍କ ବିଷୟରେ ମୋ ସହିତ ଆଲୋଚନା କଲାବେଳେ ମୁଁ ମନେ ମନେ ଗର୍ବ ଅନୁଭବ କରେ। କିନ୍ତୁ ମୋ ମନ ଭିତରେ ଶଂକାଟିଏ

ଲୁଚି ରହିଥାଏ ମୁଁ ସତରେ କ'ଣ ଭଲ ଲେଖେ ? ନା ମତେ ଖୁସି କରିବାକୁ ତୁ ଭଲ ଲେଖୁ ବୋଲି ସେ କୁହନ୍ତି।

ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ମୋର ଗୋଟେ ଏବଂ ଆସାମ ରାଜ୍ୟପାଳ ଥିଲାବେଳେ ଦୁଇଟି ବହି ସେ ଉନ୍ମୋଚନ କରିଥିଲେ। ଦୁଇ ମାସ ପୂର୍ବରୁ ପୂରା ପାଣ୍ଡୁଲିପି ମତେ ପଠେଇବାକୁ କୁହନ୍ତି। ପଠେଇସାରିଲାପରେ ପ୍ରତି ମୁହୂର୍ତ୍ତ ମୋ ଉପରେ ଭାରୀ ହୋଇପଡ଼େ। କିନ୍ତୁ କିଛିଦିନ ପରେ ତାଙ୍କ ପାଖରୁ ଫୋନ ଆସେ। ବେଳେବେଳେ ମୋ ଗପର ପ୍ଲଟ୍ ତ କେତେବେଳେ ଭାଷାର ପୁଣି କେତେବେଳେ ମୋ ଲେଖାର ଶୈଳୀର ପ୍ରଶଂସା କରନ୍ତି। "ତୁ ଖୁବ୍ ଭଲ ଲେଖୁଛୁ, ମଣିଷର ଜୀବନକୁ ଖୁବ୍ ପାଖରୁ ଅନୁଭବ କରି ଲେଖୁଛୁ। ତୋ ଗପ ପଢ଼ିଲେ ଆରମ୍ଭ କରି ଶେଷ ନ କରି ଛାଡ଼ି ହେଉନି। ସବୁ ଗପରେ ଗୋଟେ ସମାଧାନର ସୂତ୍ର ଅଛି।" ସେତିକିରେ ମୁଁ ଖୁସିରେ ଆତ୍ମହରା ହେଇଯାଏ। ପୁଣି ଆଉ ଗୋଟେ ନୂଆ ଗପବହି ଲେଖିବାର ସ୍ୱପ୍ନରେ ବିଭୋର ହେଇଯାଏ। ମୋର ତୃତୀୟ ଗଳ୍ପ ସଂକଳନ 'ଥରେ ସକାଳ ହଜିଗଲେ'ର ଉନ୍ମୋଚନ ସାରଳା ଭବନରେ ଥିଲା। ସେଇଠି ସର୍ବସମକ୍ଷରେ ମୋ ବହିର ଆଲୋଚନା କଲେ। ତା' ଭିତରେ କହିଲେ, "ଝୁମ୍‌ଝୁମ୍ ତା'ର ଗୋଟେ ଗପରେ ଲେଖିଛି ଅକୃତଜ୍ଞ ପଲ୍‌ଟିସିଆନ୍। ତା' ଗପର ନାୟକ ଜଣେ ଡାକ୍ତର ପରେ ପଲ୍‌ଟିକ୍‌ସରେ ଜଏନ୍ କରିଛନ୍ତି।" ମୋ ଆଡ଼କୁ ଥରେ ପୁଣି ଭରା ସଭା ଆଡ଼କୁ ଚାହିଁ କହିଲେ ସବୁ ପଲ୍‌ଟିସିଆନ୍‌ମାନେ କ'ଣ ଅକୃତଜ୍ଞ ?

ସେ ସେଦିନ କହିଲେ, "ତା' ବାପା, ତା' ପରିବାର, ତା' ସ୍ୱାମୀ ଧରଣୀଧର ନାୟକ ସମସ୍ତଙ୍କ ସହିତ ମୋର ସମ୍ପର୍କ। ମୋର ଏତେ ବ୍ୟସ୍ତତା ଭିତରେ ମଧ୍ୟ ମୁଁ ତା'ର ପ୍ରତିଟି ବହି ଉନ୍ମୋଚନ କରିବାକୁ ଆସେ। ତା' ମନ କଷ୍ଟ ହେଉ ମୁଁ ଚାହେନା। ତା' ବାପା ପ୍ରଫୁଲ୍ଲବାବୁଙ୍କ ସହିତ ମୋର ଅନେକ ଦିନର ଘନିଷ୍ଠତା। ସେ ଦୃଷ୍ଟିରୁ ସେ ମୋର କନ୍ୟାତୁଲ୍ୟା। ତା' ଖୁସିରେ ମୁଁ ଖୁସି ହୁଏ। ଆପଣମାନେ ସମସ୍ତେ ତା' ବହି ପଢ଼ିବେ। ସେ ଖୁବ୍ ଭଲ ଲେଖିକା। ତା'ର ଏକ ସୁନ୍ଦର ସାରସ୍ୱତ ଭବିଷ୍ୟତ ଅଛି। ମୁଁ ତା' ପାଣ୍ଡୁଲିପିରେ ଅଣ୍ଡରଲାଇନ୍ କରିଦେଇଥିଲି ରେଡ୍ ପେନ୍‌ରେ ଏବଂ ସେ ଲାଇନ୍‌ଟା କାଟିଦେବୁ ବୋଲି ଲେଖିଥିଲି। କିନ୍ତୁ ତା' ବହିରେ ସେ ଲାଇନ୍‌ଟା ସେ କାଟିନି। 'ଅକୃତଜ୍ଞ ପଲ୍‌ଟିସିଆନ୍'। ହେଉ ମୁଁ ଅପେକ୍ଷା କରିଛି ଯେଉଁଦିନ ଧରଣୀବାବୁ ପଲ୍‌ଟିକ୍‌ସକୁ ଆସିବେ, ସେଦିନ କ'ଣ ଝୁମ୍‌ଝୁମ୍ ଏମିତି ଲେଖିବ ?"

ଏବେ ମୋ ଆଖି ଭରିଆସେ, ତାଙ୍କ କଥା ଅନୁସାରେ ମୋ ମିଷ୍ଟର ପଲିଟିକ୍ସରେ ଜଏନ୍ କରିଛନ୍ତି, କିନ୍ତୁ ସେ ଶବ୍ଦଟି ମୁଁ ଆଉ କୌଣସି ଗପରେ ବ୍ୟବହାର କରିନି ! ମୋର ସୌଭାଗ୍ୟ ଆଉ ଭାଗ୍ୟ ଦୁଇଟି ସମାନ୍ତରାଳ ସରଳରେଖା ଥିଲା ତାଙ୍କ ବୟାନ ଏବଂ ତାଙ୍କ ଆଶୀର୍ବାଦ ପରି।

ଯେବେବି ଯେଉଁଦିନ ଯେଉଁଠି ତାଙ୍କ ସାଙ୍ଗରେ ଭେଟ ହେଇଚି ଦୁଇ ଚାରିଟି ବାକ୍ୟ ଭିତରୁ ଗୋଟିଏ ନିଶ୍ଚିତ ଭାବରେ ଥାଏ, ମୋ ପିଲାମାନେ ଓ ଇଏ କେମିତି ଅଛନ୍ତି,

ଦ୍ୱିତୀୟତଃ ତୋ ବାବାଙ୍କ ପରେ ତାଙ୍କ ଅବର୍ତ୍ତମାନରେ ଘରଲୋକ କିଛି ଅସୁବିଧାର ପଡ଼ି ନାହାନ୍ତି ତ ? ଆଉ ତୃତୀୟରେ, "ଆଉ କ'ଣ ଲେଖିଲୁଣି ?"

ଏତେ ସଂପର୍କ ଭିତରେ କେବେ ତାଙ୍କଠୁ କିଛି ଚାହିଁନି, କେବଳ ଆଶୀର୍ବାଦ ଛଡ଼ା, ଯାହା ସେ ଅଯାଚିତ ଭାବରେ ଦେଇଛନ୍ତି। ତାଙ୍କ ସହିତ ଆମ ପରିବାରର ସଂପର୍କ ଈଶ୍ୱରଦତ୍ତ। ଅନେକ ଛୋଟବଡ଼ ସ୍ମୃତି ମୋ ଚାରିକଡ଼ରେ, ମୁହୂର୍ତ୍ତ ସବୁ ମୁକ୍ତାପରି। ମୁଁ ଗୁନ୍ଥିଛି ମୋ ଭକ୍ତି ଆଉ ସମ୍ମାନର ସୂତାଖିଅରେ ସାରା ଜୀବନପାଇଁ। ତାଙ୍କ ଆଶୀର୍ବଚନ ହିଁ ମତେ ଜଣେ ସାଧାରଣ ସ୍ତ୍ରୀଟିଏ ରୁ ଲେଖିକାର ମର୍ଯ୍ୟାଦା ପ୍ରଦାନ କରିଛି। ମୋ ଚତୁର୍ଥ ଗଳ୍ପ ସଂକଳନ ଉନ୍ମୋଚନ ଉତ୍ସବରେ ତାଙ୍କୁ ତାଙ୍କ ସହୃଦୟ ପାଠକ ଏବଂ ସାହିତ୍ୟିକମାନେ ପ୍ରଶ୍ନ କରିଥିଲେ, "ସାର୍, ପୁଣି କେବେ ଓଡ଼ିଶା ଆସିବେ ?" ସୁନ୍ଦର ନିର୍ମଳ ଛୋଟ ହସର ଧାରଟିଏ ଓଠରେ ଏ କଡ଼ରୁ ସେକଡ଼କୁ ଖେଳେଇ ମୋ ଆଡ଼କୁ ଚାହିଁ କହିଥିଲେ, ଆସାମର ମହାମହିମ ରାଜ୍ୟପାଳ ଜାନକୀବଲ୍ଲଭ ପଟ୍ଟନାୟକ 'ପୁଣି ରୁମ୍‌ଝୁମ୍‌ର ନୂଆ ବହି ଉନ୍ମୋଚନରେ'। ଗାଡ଼ିରେ ବସିବାପୂର୍ବରୁ ପାଦଛୁଇଁ ପ୍ରଣାମ କରିଥିଲି। ମୋ ମଥା ଉପରେ ହାତରଖି କହିଥିଲେ, 'ଆଜିଠୁ ନୂଆ ବହିର ପ୍ରଥମ ଗଳ୍ପଲେଖା ଆରମ୍ଭ କର।'

ଅନିବାର୍ଯ୍ୟ କାରଣବଶତଃ ମୁଁ ଆଉ ନୂଆ ବହି ପୂରଣ କରିପାରି ନ ଥିଲି। କିନ୍ତୁ ମୋ ଚତୁର୍ଥ ଗଳ୍ପ ସଂକଳନ 'ଜୀବନ ଯେଉଁଠି କଥାକୁହେ'ର ମୁଖବନ୍ଧରେ ସେ ଯେଉଁ ଆଶୀର୍ବଚନ ଲେଖିଥିଲେ, ତାହାହିଁ ମୋ ଜୀବନର ସର୍ବଶ୍ରେଷ୍ଠ ଆଶୀର୍ବାଦ ଏବଂ ଶେଷ ଜୀବନ ପର୍ଯ୍ୟନ୍ତ ତାଙ୍କ ହାତଲେଖା ଅକ୍ଷର ମୋର ସାହିତ୍ୟିକ ଜୀବନର ଅକ୍ଷୟ ସଞ୍ଚୟ।

ଅପ୍ରେଲ୍ ୨୧ ତାରିଖ ସକାଳଟା ଏକ ଅନ୍ଧକାରାଚ୍ଛନ୍ନ ସକାଳ ଥିଲା ଆମ ଦୁଇଜଣଙ୍କ ପାଇଁ। ଟିଭିର ପରଦା ସେକଡ଼େ କାଚବାକ୍ସ ଭିତରେ ଆଖି ବନ୍ଦ୍ କରି ଚିର ନିଦ୍ରାରେ ଶୋଇଥିଲେ ଓଡ଼ିଶାର ମହାନ୍ ଜନନାୟକ। ତାଙ୍କ ମରଶରୀରର ସର୍ବଶେଷ ଅସ୍ଥି ଅଗ୍ନିରେ ନିର୍ବାପିତ ହେବା ପର୍ଯ୍ୟନ୍ତ ଚାହିଁ ରହିଥିଲି ଅଶ୍ରୁପ୍ଲୁତ ଆଖିରେ। ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିଥିଲି–

"ଗୀତାର୍ଥମେକପାଦଞ୍ଚ ଶ୍ଲୋକ ମଧ୍ୟାୟ ମେଦଚ,
ସ୍ମରସ୍ତ୍ୟାକ୍ତ୍ୱାଜନୋ ଦେହଂ ପ୍ରୟାତି ପରମଂ ପଦ।"

ଯେ ପ୍ରତିଦିନ ଗୀତାର ଗୋଟିଏ ପଦ ପଢ଼େ ସେ ପରଂବ୍ରହ୍ମ ପ୍ରାପ୍ତ ହୁଏ। ସେ ତ ସମଗ୍ର ବିଷ୍ଣୁ ସହସ୍ରନାମ ପାଠ କରି କରି ପରଲୋକ ଯାତ୍ରା କରିଛନ୍ତି। ସେ ଅମର ପୁଣ୍ୟାତ୍ମା ନିଶ୍ଚିତ ଭାବରେ ବିଷ୍ଣୁଲୋକ ପ୍ରାପ୍ତ ହେଇଥିବେ।



# ନିଗମ ଜଗତପାଇଁ ଜାନକୀବାବୁ ଅମର

ରମାକାନ୍ତ ଜେନା

ପ୍ରଥମେ ନିଗମ ଜଗତ ସଂପର୍କରେ ସୂଚନା ପ୍ରଦାନ କରିବାପରେ ଜନନାୟକ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ନିଗମ ଜଗତ ସହ ସଂପୃକ୍ତି ତଥା ତାଙ୍କର ଯେଉଁ ହାର୍ଦ୍ଦିକ ସହଯୋଗ ଯୋଗୁଁ ସେ ନିଗମ ଜଗତରେ ଅମର ହୋଇରହିଛନ୍ତି, ତାହା ଅବତାରଣା କରିବି।

ନିଗମ ଜଗତର କେନ୍ଦ୍ର ହେଉଛନ୍ତି ସଦ୍‌ଗୁରୁ ଶ୍ରୀମତ୍ ସ୍ୱାମୀ ନିଗମାନନ୍ଦ ସରସ୍ୱତୀ ଦେବ। ତାଙ୍କ ଦ୍ୱାରା ପ୍ରତିଷ୍ଠିତ ମଠ, ଆଶ୍ରମସମୂହ, ସଂଘ ଓ ଶିଷ୍ୟ-ଭକ୍ତମାନଙ୍କୁ ନେଇ ଏହି ନିଗମ ଜଗତ ପରିବ୍ୟାପ୍ତ।

ପରମହଂସ ଶ୍ରୀମତ୍ ନିଗମାନନ୍ଦ ସରସ୍ୱତୀଦେବ ଅଧୁନା ବଙ୍ଗଳା ଦେଶର ମେହେରପୁର ଜିଲ୍ଲାନ୍ତର୍ଗତ କୁତବପୁର ଗ୍ରାମରେ ୧୮୮୦ ଅଗଷ୍ଟରେ ଜନ୍ମଗ୍ରହଣ କରିଥିଲେ। ଢାକା ଇଞ୍ଜିନିୟରିଂ ସ୍କୁଲରୁ ଓଭରସିଅରିଂ ପାସ୍ କରି ତାଙ୍କ କର୍ମକ୍ଷେତ୍ର ନାରାୟଣପୁରରେ ଥିବାବେଳେ ତାଙ୍କ ମୃତା ପତ୍ନୀ ସୁଧାଂଶୁବାଳାଙ୍କ ଛାୟାମୂର୍ତ୍ତି ଦେଖି ସେ ପରଲୋକ ବିଷୟରେ ଅନୁସନ୍ଧାନ କରିବାକୁ ଲାଗିଲେ। ଗୁରୁକୃପା ବ୍ୟତୀତ ପରଲୋକତତ୍ତ୍ୱ ଅବଗତ ହେବା ସମ୍ଭବ ନୁହେଁ ଜାଣି ବହୁ ସ୍ଥାନ ଘୂରିବୁଲି ତାରିଣୀପୀଠର ତନ୍ତ୍ରସିଦ୍ଧ ବାମାକ୍ଷେପାଙ୍କ ଠାରୁ ତନ୍ତ୍ର, ପୁଷ୍କର କ୍ଷେତ୍ରର ଜ୍ଞାନସିଦ୍ଧ ମହାପୁରୁଷ ସ୍ୱାମୀ ସଚ୍ଚିଦାନନ୍ଦଜୀଙ୍କ ନିକଟରୁ ଜ୍ଞାନ, ଯୋଗସିଦ୍ଧ ସୁମେରୁ ଦାସଙ୍କଠାରୁ ଯୋଗ ଓ ପ୍ରେମସିଦ୍ଧ ଗୌରୀ ମା'ଙ୍କ ଠାରୁ ପ୍ରେମସିଦ୍ଧା ମାତ୍ର ତିନିବର୍ଷରେ ଲାଭ କରିଥିଲେ।

ସେ ୧୯୧୨ ମସିହା ଅକ୍ଷୟତୃତୀୟାରେ ଆସାମ ଜୋରହାଟ ନିକଟବର୍ତ୍ତୀ କୋକିଳାମୁଖ ଗ୍ରାମରେ 'ସାରସ୍ୱତ ମଠ' ସ୍ଥାପନ କରିଥିଲେ। ଏହି ସାରସ୍ୱତ ମଠର 'ଶତବାର୍ଷିକୀ ଉତ୍ସବ' ୨୦୧୧ ମେ ୬ ତାରିଖରେ ଉଦ୍‌ଘାଟନ କରିବାକୁ ମଠ ପକ୍ଷରୁ ଆସାମର ତତ୍କାଳୀନ ରାଜ୍ୟପାଳ ମାନ୍ୟବର ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ନିମନ୍ତ୍ରଣ କରାଯାଇଥିଲା। ଯଥାସମୟରେ ଉତ୍ସବରେ ଯୋଗଦେବାପାଇଁ ଯିବାବେଳେ ଜୋରହାଟଠାରୁ ମଠ ପର୍ଯ୍ୟନ୍ତ ରାସ୍ତାର ଶୋଚନୀୟ ଅବସ୍ଥା ଦେଖି ଉକ୍ତ ରାସ୍ତାର ଉନ୍ନତୀକରଣ କରାଇବା ପାଇଁ ଉତ୍ସବରେ ରାଜ୍ୟପାଳ ନିଜ ଆଡୁ ପ୍ରତିଶ୍ରୁତି ଦେଇଥିଲେ। ଗୌହାଟୀ ରାଜଭବନକୁ ଫେରିଆସି ତତ୍କାଳୀନ କେନ୍ଦ୍ରମନ୍ତ୍ରୀ ଶ୍ରୀ. କେ.କେ. ହାଣ୍ଡିକଙ୍କୁ ପ୍ରଭାବିତ କରି ନଅକୋଟି ଟଙ୍କା ମଞ୍ଜୁର କରାଇଥିଲେ। ସେହି ଅର୍ଥରେ ନିର୍ଦ୍ଧାରିତ ସମୟ ମଧ୍ୟରେ ଏକ କଂକ୍ରିଟ ରାସ୍ତା କୋକିଳାମୁଖ ପର୍ଯ୍ୟନ୍ତ ନିର୍ମିତ ହୋଇଥିଲା। ଏହା ହେଉଛି ତାଙ୍କର ପ୍ରତିଶ୍ରୁତି ରକ୍ଷା ତଥା ନିଗମ ଜଗତକୁ ପ୍ରଥମ ଅବଦାନ।

ନିଗମ ଜଗତକୁ ତାଙ୍କର ଦ୍ୱିତୀୟ ତଥା ବିଶିଷ୍ଟ ଅବଦାନ ହେଉଛି ଗୌହାଟୀସ୍ଥ କାମାକ୍ଷା ପାହାଡ଼ରେ ଥିବା ନିର୍ବିକଳ୍ପ ସିଦ୍ଧିସ୍ଥଳର ପୁନରୁଦ୍ଧାର ତଥା ତାହାର ପୂର୍ଣ୍ଣାଙ୍ଗୀକରଣ। ଶ୍ରୀମତ୍ ସ୍ୱାମୀ ନିଗମାନନ୍ଦଦେବ ପୂର୍ବବର୍ଣ୍ଣିତ ୪ଟି ଯାକ ସାଧନ ପଥରେ ସର୍ବୋଚ୍ଚ ସିଦ୍ଧି ଲାଭ କରିବା ଅବସରରେ କାମାକ୍ଷା ପାହାଡ଼ରେ ଭୁବନେଶ୍ୱରୀ ମନ୍ଦିର ସନ୍ନିକଟ ଏକ ପ୍ରକାଣ୍ଡ ପ୍ରସ୍ତର ଉପରେ ଧ୍ୟାନସ୍ଥ ହୋଇ ନିର୍ବିକଳ୍ପ ସିଦ୍ଧି ଲାଭ କରିଥିଲେ ୧୯୦୫ ମସିହା ଜାନୁଆରୀ ୧ ତାରିଖରେ। ଶ୍ରୀ ଶ୍ରୀ ନିଗମାନନ୍ଦଦେବଙ୍କ ସ୍ୱ-ପ୍ରତିଷ୍ଠିତ ନୀଳାଚଳ ସାରସ୍ୱତ ସଂଘ, ପୁରୀର ବହୁ ଭକ୍ତ ୧୯୮୯ ଡିସେମ୍ବରରେ କୋକିଳାମୁଖ ମଠରେ ଅନୁଷ୍ଠିତ ସାର୍ବଭୌମ ଭକ୍ତ ସମ୍ମିଳନୀରେ ଯୋଗଦେଇ ଫେରିବାବେଳେ ନିର୍ବିକଳ୍ପ ସିଦ୍ଧିସ୍ଥଳ ପ୍ରସ୍ତରଟି ଦର୍ଶନ କରିବାପରେ ଉକ୍ତ ପ୍ରସ୍ତରଟି ଆଗାମୀ ୫୦ ବର୍ଷ ମଧ୍ୟରେ ସ୍ଥାନଚ୍ୟୁତ ହୋଇଯିବ ବୋଲି ଏହା ଅନୁଭବ କଲେ। ସେତେବେଳେ ଆସାମରେ ରାଜ୍ୟପାଳ ଥାଆନ୍ତି ଓଡ଼ିଶାର ଅନ୍ୟତମ ବିଶିଷ୍ଟ ଜନନାୟକ ଲୋକନାଥ ମିଶ୍ର। ତାଙ୍କ ସହଯୋଗରେ ୧୯୯୩ ମସିହାରେ ଆସାମ ସରକାରଙ୍କଠାରୁ ନୀଳାଚଳ ସାରସ୍ୱତ ସଂଘକୁ ଚିହ୍ନିତ ନିର୍ବିକଳ୍ପ ସିଦ୍ଧିସ୍ଥଳଟି ଲିଜ୍ ମିଳିଲା। ସଂଘ ପକ୍ଷରୁ ୧୯୯୪ ଅଗଷ୍ଟରେ ପ୍ରସ୍ତର ସଂରକ୍ଷଣ ନିମିତ୍ତ କିଛି କାର୍ଯ୍ୟ କରାଗଲା। କିନ୍ତୁ କାମାକ୍ଷା ଦେବୋତ୍ତର ଟ୍ରଷ୍ଟ ବୋର୍ଡର ତୀବ୍ର ବିରୋଧ ଯୋଗୁଁ ଉକ୍ତ କାର୍ଯ୍ୟ ବନ୍ଦ ରହିଲା ଦୀର୍ଘ ୧୮ ବର୍ଷ।

ଆମର ସୌଭାଗ୍ୟକୁ ଓଡ଼ିଶାର ବରପୁତ୍ର ଜାନକୀବଲ୍ଲଭ ପଟ୍ଟନାୟକ ଆସାମର ମହାମହିମ ରାଜ୍ୟପାଳ ପଦରେ ଆସୀନ ହେଲେ। ୨୦୧୧ରେ ମଠ ଶତବାର୍ଷିକୀ ଉତ୍ସବରେ ଶ୍ରୀଶ୍ରୀ ଠାକୁର ନିଗମାନନ୍ଦଙ୍କ ଅନୁଷ୍ଠାନ ପ୍ରତି ତାଙ୍କର ସହଯୋଗ ଦେଖି ନୀଳାଚଳ ସାରସ୍ୱତ ସଂଘ ପକ୍ଷରୁ ତାଙ୍କୁ ଆବେଦନ କରାଯାଇ ନିର୍ବିକଳ୍ପ ସିଦ୍ଧିସ୍ଥଳର ପୁନରୁଦ୍ଧାରରେ ସହଯୋଗ ଲୋଡ଼ାଗଲା। ତାଙ୍କ ନିର୍ଦ୍ଦେଶାନୁସାରେ ୨୦୧୧ ଜୁଲାଇ ୨୫ରେ ଗୌହାଟୀ ରାଜଭବନରେ ସଂଘ ପକ୍ଷରୁ ଶ୍ରୀ ସନ୍ତୋଷ କୁମାର ମହାନ୍ତି ଓ ମୁଁ ସାକ୍ଷାତ କଲୁ। ସେ ୨୦୧୧ ଅଗଷ୍ଟ ୩ ତାରିଖରେ ରାଜଭବନରେ ଏକ ସ୍ୱତନ୍ତ୍ର ବୈଠକ ଡକାଇଲେ। ସେଥିରେ କାମାକ୍ଷା ଟ୍ରଷ୍ଟବୋର୍ଡର କର୍ମକର୍ତ୍ତା ଓ ସମସ୍ତ ଟ୍ରଷ୍ଟୀବୃନ୍ଦଙ୍କ ସମେତ ସରକାରଙ୍କ ଉଚ୍ଚପଦାଧିକାରୀ ଉପସ୍ଥିତ ରହିଲେ। ରାଜ୍ୟପାଳ ବୈଠକରେ ସମସ୍ତ ଟ୍ରଷ୍ଟିଙ୍କୁ ଏପରି ବୁଝାଇଦେଲେ ଯେ ସେମାନେ ଏଥିରେ ସମ୍ମତ ହେଲେ। ୨୦୧୧ରେ ରାଜଭବନରେ ପରବର୍ତ୍ତୀ ବୈଠକ ହୋଇଥିଲା। ବୈଠକରେ ସମସ୍ତଙ୍କ ଉପସ୍ଥିତିରେ ରାଜ୍ୟପାଳ ପଚାରିଲେ, 'ତମ ଗୁରୁଙ୍କ କାମରେ କେତେ ଟଙ୍କା ଖର୍ଚ୍ଚ କରିବ?' ମୁଁ କହିଲି, 'ପ୍ରାୟ ୫/୧୦ ଲକ୍ଷ ଟଙ୍କା'। ସେ ମହାଶୟ ମୋ କଥାଶୁଣି ଜୋର୍‌ରେ ହସି, ଉପସ୍ଥିତ ସମସ୍ତଙ୍କୁ ଲକ୍ଷ୍ୟ କରି କହିଲେ, 'ଦେଖନ୍ତୁ, ତାଙ୍କ ଗୁରୁଙ୍କ କାର୍ଯ୍ୟ କରିବେ ୫/୧୦ ଲକ୍ଷ ଟଙ୍କାରେ। ଏତିକି ଟଙ୍କାରେ କ'ଣ କାମ ହୋଇପାରିବ?' ସେ ଆସାମ ରାଜ୍ୟର ପୂର୍ବ କମିଶନରଙ୍କୁ କହିଲେ, 'ଆମେ ତାଙ୍କ ଟଙ୍କା ନେବା ନାହିଁ। ଆମ ସରକାର ସମସ୍ତ ଟଙ୍କା ଖର୍ଚ୍ଚ କରି ନିର୍ବିକଳ୍ପ ସିଦ୍ଧିସ୍ଥଳର ପୁନରୁଦ୍ଧାର କରିବେ। ଏହା ଆସାମର ଏକ ବିଶିଷ୍ଟ ପର୍ଯ୍ୟଟନସ୍ଥଳ ହେବ। ଆପଣ ପ୍ଲାନ୍ ଏଷ୍ଟିମେଟ୍ ତୁରନ୍ତ ପ୍ରସ୍ତୁତ

କରନ୍ତୁ।' ମୁଁ ଅନୁଭବ କଲି, ପ୍ରବୀଣ ରାଜନେତା ଜାନକୀବଲ୍ଲଭ କିପରି କୌଶଳରେ ତାଙ୍କ ଇଚ୍ଛାକୁ କାର୍ଯ୍ୟକାରୀ କରାଇନେଉଛନ୍ତି। ଏହା ଠାକୁରଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଭକ୍ତିର ପରିଚାୟକ। ଏହିପରିଭାବେ ଦୀର୍ଘ ୧୮ବର୍ଷ ଧରି ବନ୍ଦ ହୋଇଥିବା ପୁନରୁଦ୍ଧାର କାର୍ଯ୍ୟ ଜାନକୀବାବୁଙ୍କ ଯୋଗୁଁ ଆରମ୍ଭ ହୋଇଥିଲା। କାମଟିକୁ ସୁଚାରୁରୂପେ ନିର୍ଦ୍ଧାରିତ ସମୟରେ ସାରିବାକୁ ମଝିରେ କାର୍ଯ୍ୟ ତଦାରଖ କରିବାକୁ ଓ ଆବଶ୍ୟକସ୍ଥଳେ ରାଜ୍ୟପାଳଙ୍କୁ ଅବଗତ କରେଇବାକୁ ସେ ଆମ୍ଭମାନଙ୍କୁ ପରାମର୍ଶ ଦେଉଥାନ୍ତି। ସେଥିପାଇଁ ମୁଁ ଗୌହାଟୀରେ ରହୁଥିବା ମୋ ଝିଅ-ଜ୍ୱାଇଁଙ୍କ ଜାଲିଗାଓଁସ୍ଥିତ ସରକାରୀ ବଙ୍ଗଳାରେ ଓଡ଼ିଶାରୁ ଯାଇ ମଝିରେ ମଝିରେ ରହୁଥାଏ। ବହୁ ସମୟରେ ରାଜଭବନ ଯାଏ, ରାଜ୍ୟପାଳଙ୍କ ସହ ସାକ୍ଷାତ କରେ। ସେ ଶ୍ରଦ୍ଧାର ସହିତ ସାକ୍ଷାତପାଇଁ ଅନୁମତି ଦିଅନ୍ତି। ଆଲୋଚନାରେ ତାଙ୍କର ବହୁ ବିଷୟରେ ଅମାପ ଜ୍ଞାନ, ବେଦ, ପୁରାଣ ପ୍ରଭୃତିରେ ଗଭୀର ପ୍ରବେଶ ତଥା ଓଡ଼ିଶାର ସର୍ବାଙ୍ଗୀଣ ଉନ୍ନତି ପାଇଁ ତାଙ୍କର ଏ ଅବଦାନ ତଥା ସ୍ୱପ୍ନ କଥା ଶୁଣି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୁଏ।

ଥରେ ତାଙ୍କୁ କହିଲି, 'ଆପଣଙ୍କ ଯୋଗୁଁ ନିର୍ବିକଳ୍ପ ପ୍ରୋଜେକ୍ଟଟି ଆସାମ ସରକାର କରୁଛନ୍ତି। କିନ୍ତୁ ଏହା ଆମ ଗୁରୁଦେବଙ୍କ କାର୍ଯ୍ୟ। ଆସ ସଂଘର କିଛି ଆର୍ଥିକ ଯୋଗଦାନ ପାଇଁ ଅନୁମତି ଦିଅନ୍ତୁ।' ସେ କହିଲେ, 'ତମ ସଂଘ ଏତେ ଟଙ୍କା କେଉଁଠୁ ପାଇବ? ଯାହା ସଂଘର ପାଣ୍ଠି ଅଛି, ସେଥିରୁ କିଛି ସମାଜର ସେବା କର। ପୁଣି ନିର୍ମାଣ ସରିବା ପରେ ସବୁଦିନ ତମ ସଂଘ ତ ତାହାର ରକ୍ଷଣାବେକ୍ଷଣ କରିବ। ଏବେ ମୁଁ ତ ଏଠାରେ ଅଛି, ଯଦି ମୋ ଦ୍ୱାରା ଠାକୁରଙ୍କର କିଛି କାର୍ଯ୍ୟ ହୋଇପାରେ ତେବେ ମୁଁ ନିଜକୁ ଧନ୍ୟ ମଣିବି।' ଏହା ତାଙ୍କର ଗଭୀର ଆଧ୍ୟାତ୍ମିକ ଭାବର ଓ ଠାକୁରଙ୍କ ପ୍ରତି ସମର୍ପଣ ଭାବର ପରିଚାୟକ।

ନଭେମ୍ବର ୨୦୧୨ ସୁଦ୍ଧା ନିର୍ମାଣ କାର୍ଯ୍ୟ ପ୍ରାୟ ସରିଆସୁଥାଏ। ଉଦ୍‌ଘାଟନ ଦିନ ସଭାସ୍ଥଳ ଭୁବନେଶ୍ୱରୀ ମନ୍ଦିର ପାଖରେ ହେବ ବୋଲି ସ୍ଥିର ହୋଇଥାଏ। ଯଦି ସ୍ଥଳ ସାମ୍ନା ପିଚୁ ରାସ୍ତାଟି ଓସାରିଆ ହୋଇପାରନ୍ତା ତେବେ ଏହିଠାରେ ସଭା କଲେ ଭଲ ହୁଅନ୍ତା ବୋଲି ଆମ୍ଭେମାନେ ଚିନ୍ତା କଲୁ। ରାଜ୍ୟପାଳଙ୍କୁ ଏ କଥା ଜଣାଇଲି। ସେ ପୂର୍ତ୍ତ କମିସନରଙ୍କୁ ସେପରି ନିର୍ଦ୍ଦେଶ ଦେଲେ। ରାସ୍ତାଟି ଓସାରିଆ କରାଗଲା ଓ ସେଠାରେ ଉଦ୍‌ଘାଟନ ଦିନ ସଭା ହେଲା।

୨୦୧୨ ଡିସେମ୍ବର ୨୦ ତାରିଖ ଉଦ୍‌ଘାଟନ ଦିବସ ପାଖେଇ ଆସୁଥାଏ। ଆମେସବୁ ଆୟୋଜନରେ ଲାଗିଥାଉ। ୧୮ ଡିସେମ୍ବର ୨୦୧୨ରେ ଆସାମରେ ପଞ୍ଚାୟତ ନିର୍ବାଚନ ପାଇଁ ଘୋଷିତ ହୋଇଗଲା। ଏଣୁ ପୂର୍ତ୍ତ କମିସନର, ରାଜ୍ୟପାଳଙ୍କ ସଚିବ ପ୍ରଭୃତି ଉତ୍ସବ ତାରିଖ ଘୁଞ୍ଚାଇ ଦେବାକୁ ଆମ ଉପରେ ଚାପ ପକାଉଥାଆନ୍ତି। ଓଡ଼ିଶାର ପ୍ରାୟ ୪୦୦ ଭକ୍ତ ଉତ୍ସବରେ ଯୋଗଦେବାକୁ ଆସାମ ଆସୁଥାନ୍ତି। ଉପାୟ ନ ପାଇ ରାଜ୍ୟପାଳଙ୍କୁ ଭୁବନେଶ୍ୱରର ସନ୍ତୋଷ କୁମାର ମହାନ୍ତି ଓ ମୁଁ ଭେଟି ଆମ ଦୁଃଖ ଜଣାଇଲୁ। ସେ ସବୁ କଥା ଶୁଣି ପୂର୍ତ୍ତ କମିସନରଙ୍କୁ କହିଲେ, "My programme stands. I will inaugurate at 11a.m. on 20th." ଡିସେମ୍ବର ୨୦ ତାରିଖ ଯଥାସମୟରେ ମାନ୍ୟବର ରାଜ୍ୟପାଳ ଜାନକୀବଲ୍ଲଭ

ପଟ୍ଟନାୟକ ନିର୍ବିକଳ୍ପ ସିଦ୍ଧିସ୍ଥଳ ଉଦ୍‌ଘାଟନ କଲେ। ସଭାରେ ସପତ୍ନୀକ ଯୋଗଦେଇ ଭାବଗର୍ଭକ ଅଭିଭାଷଣ ପ୍ରଦାନ କରି ସମସ୍ତଙ୍କୁ ମୁଗ୍ଧଚକିତ କରିଥିଲେ।

ନିର୍ବିକଳ୍ପ ସିଦ୍ଧିସ୍ଥଳର ନିର୍ମାଣ କାର୍ଯ୍ୟ ୨୦୧୨ ମସିହାରୁ ଆରମ୍ଭ ହୋଇ ୨୦୧୫ରେ ପୂର୍ଣ୍ଣାଙ୍ଗ ହୋଇଛି। ଏହି କାର୍ଯ୍ୟଟି ନିଗମ ଭକ୍ତ ସମାଜ ପାଇଁ ଏହି ମହାନ୍ ଉପଲବ୍ଧି। ଏହି ନିର୍ମାଣ କାର୍ଯ୍ୟରେ ଆସାମ ସରକାର ପ୍ରାୟ ୧ କୋଟି ୫୩ ଲକ୍ଷ ଟଙ୍କା ବିନିଯୋଗ କରିଛନ୍ତି ଏବଂ ଏହା ହେଉଛି ନିଗମାନନ୍ଦ ଓ ଭକ୍ତ ସମାଜପ୍ରତି ଶୁଦ୍ଧପ୍ରାଣ ଓ ଶ୍ରଦ୍ଧାପ୍ରାଣ ଜନନାୟକ ଜାନକୀବଲ୍ଲଭଙ୍କର ସହଯୋଗର ନିଚ୍ଛକ ନିଦର୍ଶନ।

ଭକ୍ତ ସମାଜର ଅନୁରୋଧକୁ ଏଡ଼େଇ ନ ପାରି ୨୦୧୪ ଫେବୃଆରୀ ମାସରେ ଭଦ୍ରକଠାରେ ଅନୁଷ୍ଠିତ ଉତ୍କଳ ପ୍ରାଦେଶିକ ସମ୍ମିଳନୀରେ ଆସାମ ରାଜ୍ୟପାଳ ଜାନକୀବଲ୍ଲଭ ପଟ୍ଟନାୟକ ଆସାମରୁ ଆସି ଅତିଥି ଭାବରେ ଯୋଗଦେଇଥିଲେ। ସେଠାରେ ସେ କହିଥିଲେ, 'ମୁଁ ଯେତେଦିନ ଯାଏ ବଞ୍ଚିଛି ନିଜକୁ ଠାକୁର ନିଗମାନନ୍ଦଙ୍କ ସେବାରେ ସମର୍ପଣ କରୁଛି।'

ଆଜି ମନେପଡୁଛି, ୧୯୯୭ ମସିହା ଫେବୃଆରୀରେ ବାରିପଦାରେ ଅନୁଷ୍ଠିତ ଭକ୍ତ ସମ୍ମିଳନୀରେ ସର୍ଟ୍‌ସର୍କିଟ୍ ଯୋଗୁଁ ଘଟିଥିବା ଅଗ୍ନିକାଣ୍ଡର ଅଭୁଲା ଦୁଃଖ। ସେ ଥାଆନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ। ଆହତମାନଙ୍କୁ ମେଡିକାଲରେ ସାକ୍ଷାତ କରି ଆଶ୍ୱାସନା ପ୍ରଦାନ କରିବା ସହିତ ଉପଯୁକ୍ତ ଚିକିତ୍ସାପାଇଁ ସଂପୃକ୍ତ ଡାକ୍ତରମାନଙ୍କୁ ସେ କଡ଼ା ନିର୍ଦ୍ଦେଶ ଦେଇଥିଲେ। ଏହା ତାଙ୍କର ଦରଦୀ ମଣିଷପଣିଆର ଏକ ସ୍ୱତନ୍ତ୍ର ନିଦର୍ଶନ।

ବାସ୍ତବରେ ସେ ଜନନାୟକ ଅମର ଏବଂ ନିଗମ ଜଗତ ସବୁଦିନ ପାଇଁ ତାଙ୍କଠାରେ କୃତଜ୍ଞ ରହିଥିବ।



# ଜାନକୀବଲ୍ଲଭ : ଯୁବପିଢ଼ି ପାଇଁ ପ୍ରେରଣାର ଉତ୍ସ

ବିଶ୍ୱରଂଜନ ମହାନ୍ତି

୧୯୯୧-୯୨ ମସିହା ବେଳର କଥା। ଆମେମାନେ ନୂଆ ନୂଆ କଲେଜରେ ପାଠ ପଢୁଥାଉ ଓ ଛାତ୍ର ରାଜନୀତି ପ୍ରତି ମନରେ ଖୁବ୍ ଆଗ୍ରହ ଥାଏ। ସେତେବେଳେ ରାଜ୍ୟରେ ବିଜୁପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଅଣ-କଂଗ୍ରେସ ସରକାର ଚାଲିଥାଏ। ଜାନକୀବଲ୍ଲଭ ପଟ୍ଟନାୟକ କଂଗ୍ରେସର ନେତା। ସେ କଂଗ୍ରେସକୁ ଦୃଢ଼ ଭାବରେ ସଂଗଠିତ କରୁଥାନ୍ତି- ସାରାରାଜ୍ୟ ଗସ୍ତ କରୁଥାନ୍ତି। ୧୯୯୦ ମସିହାରେ ପରାଜୟ ହେତୁ କଂଗ୍ରେସ ଲୋକଙ୍କର ଭାଙ୍ଗିଯାଇଥିବା ମନୋବଳକୁ ବୃଦ୍ଧି କରିବାପାଇଁ ବିଭିନ୍ନ ସଭାରେ ସେତେବେଳେ ତାଙ୍କର ଓଜସ୍ୱିନୀ ବକ୍ତୃତା ଶୁଣି ମୁଁ ତାଙ୍କ ବ୍ୟକ୍ତିତ୍ୱ ପ୍ରତି ପ୍ରଥମେ ଆକର୍ଷିତ ହୋଇଥିଲି ଏବଂ ରାଜନୀତି ପ୍ରତି କ୍ରମଶଃ ଟାଣି ହୋଇ ଆସିଥିଲି। ସେତେବେଳେ ରାଜ୍ୟ କଂଗ୍ରେସରେ ଗୋଷ୍ଠୀ ବିବାଦ ଉଗ୍ରଭାବରେ ଥିଲା ଏବଂ ଯେଉଁଥିପାଇଁ ୧୯୯୦ ନିର୍ବାଚନରେ ମୁଖ୍ୟତଃ କଂଗ୍ରେସ ପରାଜିତ ହୋଇଥିଲା। ଅଭିଜ୍ଞ ରାଜନେତା କଂଗ୍ରେସ ନେତାମାନଙ୍କୁ ଏକତ୍ର କରିବାରେ ସଫଳ ହୋଇଥିଲେ; ଯାହାକି ତାଙ୍କ ବ୍ୟକ୍ତିତ୍ୱର ଏକ ଉଲ୍ଲେଖନୀୟ ଦିଗ। ସମସ୍ତଙ୍କୁ ସାଙ୍ଗରେ ନେଇ କାମ କରିବାର କଳା ଓ ଦକ୍ଷତା ତାଙ୍କଠାରେ ଭରପୂର ଥିଲା। ପ୍ରତ୍ୟକ୍ଷ ରାଜନୀତିରେ ପ୍ରବେଶ ଦିନଠାରୁ ବିଭିନ୍ନ ସମୟରେ ସେ ତାହା ବାରମ୍ବାର ପ୍ରମାଣିତ କରିଯାଇଛନ୍ତି। ତାଙ୍କରି ଦୃଢ଼ ନେତୃତ୍ୱ ଓ ସାଙ୍ଗଠନିକ ବିଚକ୍ଷଣତା ଯୋଗୁଁ ୧୯୯୫ ମସିହାରେ ରାଜ୍ୟରେ କଂଗ୍ରେସ ଦଳ ତା'ର ପୂର୍ବ ଗୌରବ ଫେରିପାଇଲା ଓ ବହୁ ମତରେ ସରକାର ଗଠନ କଲା। ୧୯୮୦ ଏବଂ ୧୯୮୫ ମସିହାରେ ସେ ଯେପରି ଶିକ୍ଷିତ ଯୁବକମାନଙ୍କୁ ବହୁସଂଖ୍ୟାରେ କଂଗ୍ରେସରେ ସାମିଲ କରିଥିଲେ ଏବଂ ନିର୍ବାଚନ ଲଢ଼ିବାର ସୁଯୋଗ ଦେଇଥିଲେ; ୧୯୯୫ ମସିହାରେ ତା'ର ପୁନରାବୃତ୍ତି ଘଟିଥିଲା। ରାଜନୀତିରେ ଯୁବକମାନଙ୍କୁ ଓ ଶିକ୍ଷିତ ଲୋକମାନଙ୍କୁ ପ୍ରାଧାନ୍ୟ ଦେବା ଜାନକୀବଲ୍ଲଭଙ୍କ ଚରିତ୍ରର ଏକ ବିଶେଷ ବୈଶିଷ୍ଟ୍ୟ।

୧୯୯୯ ମସିହାରୁ ତାଙ୍କ ସହିତ ନିକଟତର ହୋଇ କାମ କରିବାର ସୁଯୋଗ ପାଇଥିଲି। ସେତେବେଳେ ମୁଁ ନୂଆଦିଲ୍ଲୀସ୍ଥିତ ଜବାହରଲାଲ ନେହରୁ ବିଶ୍ୱବିଦ୍ୟାଳୟର ଛାତ୍ର ଥାଏ। କ୍ଷମତାରେ ଥିବାବେଳେ ଓ କ୍ଷମତାରୁ ବାହାରେ ଥିବାବେଳେ ତାଙ୍କର ବ୍ୟବହାର ଓ ଆଚରଣ ସମାନ ଥିଲା। ସେ ସମୟରେ ସେ ଜେ.ଏନ୍.ୟୁ. ଓ ଦିଲ୍ଲୀ ବିଶ୍ୱବିଦ୍ୟାଳୟକୁ

ଏକାଧିକ ଥର ଯାଇଛନ୍ତି ଓ ଅତିଥି ହୋଇ ଓଡ଼ିଆ ଛାତ୍ରମାନଙ୍କ ଗହଣରେ ଖୁବ୍ ପ୍ରଭାବଶାଳୀ ବକ୍ତୃତା ଦେଇ ବକ୍ତବ୍ୟ ରଖିଥିଲେ ଯେ ଯାହା ସେ ସମୟରେ ତାଙ୍କ ବିରୋଧରେ ମତ ଦେଉଥିବା ଛାତ୍ରନେତା ଓ ଛାତ୍ରଛାତ୍ରୀମାନେ ତାଙ୍କ ପ୍ରଶଂସା କରିବାକୁ ପଛେଇ ନ ଥିଲେ। ୨୦୦୪ ମସିହାରେ ସେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ହେଲେ। ମୋତେ ତାଙ୍କର ରାଜନୀତିକ ସଚିବ ରୂପେ କାମ କରିବାର ସୁଯୋଗ ମିଳିଥିଲା। ଅତି ପାଖରୁ ତାଙ୍କ କାର୍ଯ୍ୟଶୈଳୀ ଓ ନିଷ୍ଠାକୁ ଦେଖିଛି ଏବଂ ତାଙ୍କୁ ବୁଝିବାକୁ ଚେଷ୍ଟା କରିଛି। ନିଜର ବ୍ୟକ୍ତିଗତ ଅନୁଭବରୁ ଯାହା ଜାଣିଛି, ସେ ଅତ୍ୟନ୍ତ ସରଳ ବ୍ୟକ୍ତିତ୍ୱ ଥିଲେ ଓ ଗାନ୍ଧିବାଦୀ ଚିନ୍ତାଧାରାର ବ୍ୟକ୍ତି ଥିଲେ। ସେ ଜୀବନରେ ଅଜସ୍ର ସଂଘର୍ଷକୁ ସାମ୍ନା କରିଛନ୍ତି। କିନ୍ତୁ ସେ କଦାପି ବିଚଳିତ ହୁଅନ୍ତି ନାହିଁ। ହିଂସାର ଭାବନା ତାଙ୍କ ମନରେ କେବେବି ନ ଥାଏ। ଶତ୍ରୁ ରୂପରେ ବିବେଚନା କରି କାହା ପ୍ରତି ପ୍ରତିଶୋଧ ପରାୟଣ ସେ ହୁଅନ୍ତି ନାହିଁ। ଯୋଗ୍ୟ ବ୍ୟକ୍ତିଙ୍କୁ ସବୁବେଳେ ସୁଯୋଗ ଦେବା ପାଇଁ ଚେଷ୍ଟା କରନ୍ତି। ନିଜର ଭୁଲ୍‌କୁ ସର୍ବସମ୍ମୁଖରେ ସ୍ୱୀକାର କରିବାର ଶକ୍ତି ମଧ୍ୟ ତାଙ୍କ ପାଖରେ ମୁଁ ବହୁତ ସମୟରେ ଦେଖିଛି। ସେ ଅତ୍ୟନ୍ତ ବିଚାରବନ୍ତ ବ୍ୟକ୍ତି ଥିଲେ ଓ ତାଙ୍କର ଦୁଃଖ ସମୟର ବନ୍ଧୁକୁ ପ୍ରକୃତ ବନ୍ଧୁ ବୋଲି ସଦାସର୍ବଦା ବିଚାର କରନ୍ତି।

ସେ କୁହନ୍ତି ଯୁବକମାନେ ସମାଜରେ ପରିବର୍ତ୍ତନ ଆଣିପାରିବେ, ଏମାନଙ୍କ ସ୍ୱର ସାମାଜିକ ପରିବର୍ତ୍ତନର ସୂତ୍ରଧର ହୋଇପାରିବ। ଜାନକୀବଲ୍ଲଭଙ୍କ ବ୍ୟକ୍ତିତ୍ୱ ଓ ତାଙ୍କ ପ୍ରେରଣାଦ୍ୱାରା ମୁଁ ପ୍ରତ୍ୟକ୍ଷ ରାଜନୀତିକୁ ଆସିଛି। ଅସୀମ ଧୈର୍ଯ୍ୟ ହିଁ ଲକ୍ଷ୍ୟ ସାଧନର ମୁଖ୍ୟ ପନ୍ଥା ବୋଲି ସେ କୁହନ୍ତି। ଅଧୈର୍ଯ୍ୟ ହେଲେ ଲକ୍ଷ୍ୟସ୍ଥଳରେ ପହଞ୍ଚିପାରିବନି ବୋଲି ସେ କହୁଥିଲେ। ଯେକୌଣସି ସଫଳତାପାଇଁ ପ୍ରତିକୂଳ ଲହଡ଼ିରେ ପହଁରା ଶିଖିବାକୁ ହେବ ଏବଂ ଅଭ୍ୟାସ କରିବାକୁ ହେବ ବୋଲି ସେ କହୁଥିଲେ। କଠିନ ସମୟକୁ ଧୈର୍ଯ୍ୟର ସହ ସାମ୍ନା କରିବାକୁ ପ୍ରତ୍ୟେକ ଯୁବକ ଶିଖିବା ଉଚିତ ବୋଲି ସେ କୁହନ୍ତି। ସେ ରାଜନୀତିରେ ଯେଉଁ ଯୁବ ପ୍ରତିଭାଙ୍କୁ ସୁଯୋଗ ଦେଉଥିଲେ, କେବେକି ସେମାନଙ୍କ ଆର୍ଥିକ ସ୍ଥିତି କ'ଣ, ସେ କେଉଁ ଜାତି, ଧର୍ମ, ବର୍ଣ୍ଣ ଓ ତା'ର ଆଧିପତ୍ୟ ଓ ପାରିବାରିକ ପରିଚୟ କ'ଣ, ସେଥିପ୍ରତି ଗୁରୁତ୍ୱ ଦେଉ ନ ଥିଲେ। କିନ୍ତୁ ତାଙ୍କ ମୁହଁରୁ ତାଙ୍କ ଜୀବନର ଅନେକ ସଂଘର୍ଷମୟ ସମୟର କଥା ମୁଁ ଶୁଣିଛି କେବେବି ପଛଘୁଞ୍ଚା ଦେଇ ନାହାନ୍ତି ନିଜ ଲକ୍ଷ୍ୟସ୍ଥଳରୁ। ସେ ବନାରସରେ ପଢ଼ିବା ସମୟ ହେଉ କିମ୍ବା ପ୍ରଜାତନ୍ତ୍ର ଛାଡ଼ି ସଂଘର୍ଷମୟ ଜୀବନରେ 'ପୌରୁଷ' ପ୍ରକାଶ କରିବାର ସମୟ ହେଉ। ରାଜନୀତିରେ ସାଧୁତାକୁ ଜାନକୀବଲ୍ଲଭ ଗୁରୁତ୍ୱ ଦେଉଥିଲେ।

ସେ ସରଳ ଜୀବନଯାପନ କରୁଥିଲେ। ମୁଁ ତାଙ୍କ ସହିତ ଦିଲ୍ଲୀରେ ବହୁତ ସମୟରେ ବଜାର ଯାଇଛି। ସେ ଅତି କମ୍ ଦାମ୍‌ର ଚପଲ, କପଡ଼ା ଏବଂ ବ୍ୟବହାର ସାମଗ୍ରୀ କିଣନ୍ତି ଏବଂ ଏହା ତାଙ୍କର ପସନ୍ଦ ଥିଲା। ସେ କୁହନ୍ତି ରାଜନୀତିକ ବ୍ୟକ୍ତି ଅତ୍ୟନ୍ତ ସରଳ

ଜୀବନଯାପନ କରିବା ଉଚିତ୍, ଏହାଦ୍ୱାରା ସେ ଜନସାଧାରଣଙ୍କ ଆସ୍ଥା ଓ ବିଶ୍ୱାସଭାଜନ ହୋଇପାରିବ ଏବଂ ନିଜର ମନୋବଳ ବୃଦ୍ଧିପାଇବ। ଏହା ଆମ ସମସ୍ତଙ୍କପାଇଁ ବିଶେଷକରି ରାଜନୀତିକ ବ୍ୟକ୍ତିମାନଙ୍କପାଇଁ ପ୍ରଣିଧାନଯୋଗ୍ୟ।

ସେ ମୋର ରାଜନୈତିକ ଗୁରୁ ଥିଲେ। ବ୍ୟକ୍ତିତ୍ୱ ଗଠନର ଆଧାର ଓ ପ୍ରେରଣା ଥିଲେ। ତାଙ୍କରିପାଇଁ ମଧ୍ୟବିତ୍ତ ଶ୍ରେଣୀର ଯୁବକ ରାଜନୈତିକ ପରିଚୟ ପାଇଛି। ତାଙ୍କ ନୀତିରୁ ଓ ବ୍ୟକ୍ତିତ୍ୱରୁ ବହୁତ କିଛି ଶିକ୍ଷାଲାଭ କରିଛି କିନ୍ତୁ ଆହୁରି ବହୁତ କିଛି ଶିଖିବାର ଥିଲା। ସମ୍ଭବ ହେଲା ନାହିଁ, ସେ ଚାଲିଗଲେ ବୈକୁଣ୍ଠଧାମକୁ। ମୋର ସୌଭାଗ୍ୟ ଶେଷ ସମୟରେ ମୁଁ ମଧ୍ୟ ତାଙ୍କ ସହିତ ତିରୁପତି ଯାଇଥିଲି। ସେ ଚାଲିଗଲେ ସତ କିନ୍ତୁ ପ୍ରତ୍ୟେକ କଠିନ ସମୟରେ କିଭଳି ଆତ୍ମବିଶ୍ୱାସଦ୍ୱାରା କାର୍ଯ୍ୟ ସମ୍ଭବ ତାହା ଶିକ୍ଷା ଦେଇଛନ୍ତି। ଆମଭଳି ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଯୁବକମାନଙ୍କୁ କଠିନ ପରିଶ୍ରମ, ସଚ୍ଚୋଟତା ଓ ଅଧ୍ୟବସାୟ ବଳରେ ସବୁକିଛି ସମ୍ଭବ କରିପାରିବାର ଶିକ୍ଷା ସେ ଦେଇଛନ୍ତି। ପାଖ ଅନୁଭବରୁ ଲାଗେ ସେ ଜଣେ ସଚ୍ଚୋଟ, ଗାନ୍ଧିବାଦୀ ଓ ସରଳ ବ୍ୟକ୍ତିତ୍ୱ ଥିଲେ ଏବଂ ଯୁବବର୍ଗଙ୍କ ପାଇଁ ସବୁଦିନ ନିମନ୍ତେ ପ୍ରେରଣାର ଉତ୍ସ ହୋଇ ରହିବେ।



# ତାଙ୍କ ଆଦର୍ଶର ମୃତ୍ୟୁ ନାହିଁ

ଆକାଶ ଭୂୟାଁ

ଏପ୍ରିଲ ୨୧, ୨୦୧୫। ଭୋର୍ ୪ଟା ପାଖାପାଖି। ତିରୁପତିରୁ ଫୋନ୍‌ରେ ଖବର ପାଇ ବାପା ତଳ ଘର ଶିଡ଼ିରେ ମୋତେ ଓ ଭାଇକୁ ବଡ଼ ପାଟିରେ ଡାକିଡାକି ଉପରକୁ ଆସୁଥାଆନ୍ତି। ମୁଁ କବାଟ ଖୋଲେ ତ ବାପାଙ୍କ ମୁହଁରୁ ଦୁଇଟି ଶବ୍ଦ–'ସାର୍ ଚାଲିଗଲେ'। ଆମେ ସ୍ତବ୍ଧ ହୋଇ ପ୍ରାୟ ଘଣ୍ଟାଏ କାଳ ଉପର ବାଲକୋନିରେ ବସିଲୁ। ବାପାଙ୍କ ପାଖକୁ ଆସାମ ଓ ଓଡ଼ିଶାର ବିଭିନ୍ନ ସ୍ଥାନରୁ ଘନ ଘନ ଫୋନ୍ ଆସୁଥାଏ। ସାରା ଦେଶରେ ଶୋକର ଛାୟା।

ସାହିତ୍ୟ ଓ ରାଜନୀତି ସହିତ ଆମ ପରିବାରର ସମ୍ପର୍କ ରହିଛି। ଅତି ଛୋଟ ବୟସରୁ ଆମ ଘରକୁ ବହୁ ତୁଙ୍ଗ ରାଜନେତା ଓ ବିଶିଷ୍ଟ ସାହିତ୍ୟିକ ବିଭିନ୍ନ ସାମାଜିକ, ସାଂସ୍କୃତିକ ଓ ରାଜନୀତିକ କାର୍ଯ୍ୟକ୍ରମରେ ଆସିଛନ୍ତି। ମୁଁ ସେମାନଙ୍କ ନିକଟ ସଂସ୍ପର୍ଶରେ ଆସିବାର ସୌଭାଗ୍ୟ ପାଇଛି। ସେମାନଙ୍କଠାରୁ ପ୍ରଚୁର ପ୍ରେରଣା ପାଇଛି। ଶ୍ରୀ ପଟ୍ଟନାୟକ ଓ ଶ୍ରୀମତୀ ପଟ୍ଟନାୟକଙ୍କ ପାଦ ଆମ ଘରେ ଏକାଧିକବାର ପଡ଼ିଛି। ସେ ପରିବାର ସହିତ ମୋ ବାପା ଡକ୍ଟର ଗୋବିନ୍ଦ ଭୂୟାଁଙ୍କର ନିବିଡ଼ ସଂପର୍କ। ବୟସ ବଢ଼ିବା ସହିତ ତାଙ୍କ ରଚିତ କେତେକ ପୁସ୍ତକ ପଢ଼ି ଓ ବିଭିନ୍ନ ସଭାସମିତିରେ ଭାଷଣ ଶୁଣି ମୋର ତାଙ୍କ ପ୍ରତି ଆକର୍ଷଣ ଓ ସମ୍ମାନ ବଢ଼ି ବଢ଼ି ଚାଲିଥାଏ। ମନେମନେ ତାଙ୍କୁ ଆଦର୍ଶ ପୁରୁଷ ଭାବରେ ଦେଖିଆସୁଥିଲି। ସମାଜ ସେବାପାଇଁ ମୋ ମନ ତଳେ କେଉଁଠି ଏକ ସୂକ୍ଷ୍ମ ଆବେଗ ଛପି ରହିଥିବାର ମୁଁ ବେଳେବେଳେ ଅନୁଭବ କରୁଥାଏ।

୨୦୧୨ ମସିହା ସେପ୍ଟେମ୍ବର ମାସର ଏକ ସୁନ୍ଦର ସନ୍ଧ୍ୟା। ମୁଁ ଏରିକ୍‌ସନ କମ୍ପାନୀରେ ଚାକିରି କରୁଥାଏ। ଆସାମରୁ ଆସି ଜାନକୀବଲ୍ଲଭ ପଟ୍ଟନାୟକ ନୂଆଦିଲ୍ଲୀର ଆସାମ ଭବନରେ ଅବସ୍ଥାନ କରୁଥାଆନ୍ତି। ମୁଁ ଜର୍ମାନୀରୁ ଫେରି ଦିଲ୍ଲୀରେ ଥାଏ। ବାପାଙ୍କ ପ୍ରସ୍ତାବରେ ତାଙ୍କୁ ଦେଖା କରିବାକୁ ଆସାମ ଭବନ ଯାଇଥାଏ। ବାପାଙ୍କ ଯୋଗୁଁ ତାଙ୍କ ସହିତ ମୋର ପୂର୍ବରୁ ଅନେକ ଥର ସାକ୍ଷାତ ହୋଇଛି; କିନ୍ତୁ ରାଜନୀତି ସଂପର୍କରେ ତାଙ୍କ ସହିତ ଆଲୋଚନା କରିବାର ସୁଯୋଗ ଓ ସାହସ ମୁଁ କେବେ ପାଇ ନ ଥିଲି। ସେଦିନ ବିଭିନ୍ନ ବିଷୟ ଆଲୋଚନା ସମୟରେ ମୋ ମନରେ ରାଜନୀତି ପ୍ରତି ଥିବା ପ୍ରଗାଢ଼ ଦୁର୍ବଳତା ସେ ବେଶ୍ ବାରି ପାରିଥିଲେ। କଥା ପ୍ରସଙ୍ଗରେ ସେ ମୋତେ ସିଧା ପ୍ରଶ୍ନ କଲେ–'ତୁ ରାଜନୀତି କରିବୁ କି ?' ଏତେ ବଡ଼ ଲୋକଙ୍କୁ ପୁଣି ଏଡ଼େ ବଡ଼ ପ୍ରଶ୍ନର ମୁଁ ବା କି ଉତ୍ତର ଦେଇଥାଆନ୍ତି ?

ମୋ ପାଇଁ ବାପା ଉତ୍ତର ଦେଲେ। ଆପଣ ଚାହିଲେ, ସେ ରାଜନୀତିକୁ ଆସିବ। ସେ କହିଲେ, "ରାଜନୀତି ବା ସମାଜସେବା ଏତେ ସହଜ ନୁହେଁ। ଭାରି କଠିନ। ତେବେ ଚାକିରି ଛାଡ଼ିବାକୁ ହେବ। ଏତେ ଉଚ୍ଚା ଦରମାର ଚାକିରି ଛାଡ଼ିବୁ ତ ? ଚାକିରି ଓ ରାଜନୀତି ଏକ ସଙ୍ଗେ କରିହୁଏ ନାହିଁ। ରାଜନୀତି ହେଉଛି ଶ୍ରେଷ୍ଠ ନୀତି। ସେଥିରେ ସଫଳତା କ୍ୱଚିତ୍ ଆସେ। ଧୈର୍ଯ୍ୟ ଓ ନିଷ୍ଠାର ସହ ସମାଜସେବାକୁ ବ୍ରତ ଭାବରେ ଗ୍ରହଣ କରିବାକୁ ପଡ଼ିବ। ବର୍ତ୍ତମାନ ସମୟରେ ତୋ ପରି ଶିକ୍ଷିତ ଯୁବକମାନେ ଅଧିକ ସଂଖ୍ୟାରେ ରାଜନୀତିକୁ ଆସିବା ନିହାତି ଦରକାର।" ମୁଁ ଚାକିରି ଛାଡ଼ି ଓଡ଼ିଶା ଆସିଲିଣି କି ନାହିଁ ସେ ବାପାଙ୍କୁ ବାରମ୍ବାର ପଚାରି ବୁଝନ୍ତି। ଛ'ମାସ ପରେ ମୁଁ ଚାକିରି ଛାଡ଼ିଲି। ସେହିଦିନଠାରୁ ଲୋକଙ୍କ ସାଙ୍ଗରେ ଅଛି।

୨୦୧୩ ମସିହାରେ ଦିଲ୍ଲୀର ରାଷ୍ଟ୍ରପତି ଭବନରେ ତାଙ୍କ ସଂପର୍କରେ ଏକ ଇଂରାଜୀ ପୁସ୍ତକ ଉନ୍ମୋଚନ ହେଉଥାଏ। ଦେଶର ଓ ଆମ ରାଜ୍ୟର ବହୁ ବଡ଼ ବଡ଼ ମଣିଷଙ୍କ ସହ ସେ ଐତିହାସିକ ସଭାରେ ମୁଁ ଉପସ୍ଥିତ ଥିଲି। ମହାମହିମ ରାଷ୍ଟ୍ରପତି ଶ୍ରୀ ପ୍ରଣବ ମୁଖାର୍ଜୀଙ୍କ ମୁହଁରୁ ଜାନକୀବଲ୍ଲଭଙ୍କ ଭୂରିଭୂରି ପ୍ରଶଂସା ଶୁଣି ମୁଁ ଅଭିଭୂତ ହୋଇଯାଇଥିଲି। ତାଙ୍କ ପ୍ରତି ଥିବା ସମ୍ମାନ ମୋର ବହୁଗୁଣିତ ହୋଇଯାଇଥିଲା।

ସେହି ଯୋଗଜନ୍ମା ହଠାତ୍ ସ୍ୱର୍ଗକୁ ଚାଲିଗଲେ। ତାଙ୍କ ବିୟୋଗ 'ବିନା ମେଘରେ ବ୍ରଜପାତ' ପରି ଲାଗୁଛି। ଏବେ ମୁଁ ସାଧାରଣ ଜୀବନରେ ରହିଛି। ମୁଁ ଲକ୍ଷ୍ୟ କରିଛି ମୋର ଅଧିକାଂଶ ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନ ଚାକିରି ଛାଡ଼ି ସମାଜସେବାକୁ ଆଦରି ନେବାଟାକୁ ସହଜ ଭାବରେ ଗ୍ରହଣ କରିପାରୁ ନାହାନ୍ତି। ତେବେ ଲୋକଙ୍କର ସୁଖଦୁଃଖରେ ଏକାଠି ହେଲେ, ଯେଉଁ ଟିକିଏ ଆନନ୍ଦ ମିଳୁଛି, ତାହା ଯଥେଷ୍ଟ ପ୍ରେରଣା ଓ ଆତ୍ମବିଶ୍ୱାସ ଦେଉଛି। ଜାନକୀବଲ୍ଲଭ ହିଁ ମୋର ଆଦର୍ଶ ଓ ତାଙ୍କ ଆଦର୍ଶକୁ ସମ୍ବଳ କରି ବାଟ ଚାଲିବି। ତାଙ୍କର ସିନା ମୃତ୍ୟୁ ହେଲା, କିନ୍ତୁ ତାଙ୍କର ଆଦର୍ଶର ମୃତ୍ୟୁ କାହିଁ ? ଏକଲବ୍ୟ ପରି ତାଙ୍କୁ ଆଖି ଆଗରେ ଥାପି ମୁଁ ତାଙ୍କଠୁ ହିଁ ଶିଖିବି।



# ସାର୍ଥକ ସାରଥି ଜାନକୀବଲ୍ଲଭ : ଏକ ବିହଙ୍ଗାବଲୋକନ

ସୁଲୋଚନା ଦାସ

ସଂସ୍କୃତି, ସାହିତ୍ୟ ଓ ରାଜନୀତିର–ତ୍ରିବେଣୀ ସଂଗମ ଦିବଂଗତ ଜାନକୀବଲ୍ଲଭ ପଟ୍ଟନାୟକ। ଲୋକସଭା ସଦସ୍ୟ, କେନ୍ଦ୍ରମନ୍ତ୍ରୀ, ଓଡ଼ିଶାର ମୁଖ୍ୟମନ୍ତ୍ରୀ, ବିରୋଧୀଦଳର ନେତା, ଆସାମର ରାଜ୍ୟପାଳ–ଜାନକୀବଲ୍ଲଭଙ୍କୁ ଅତି ନିକଟରୁ ଦେଖିବାର ସୌଭାଗ୍ୟ ଲାଭ କରିଥିବା ଡକ୍ଟର ଗୋବିନ୍ଦ ଭୂୟାଁଙ୍କ 'ସାର୍ଥକ ସାରଥି ଜାନକୀବଲ୍ଲଭ' ଗ୍ରନ୍ଥଟି ଏକ ଐତିହାସିକ ଦଲିଲ କହିଲେ ଭୁଲହେବ ନାହିଁ। ତାଙ୍କ ବ୍ୟକ୍ତିତ୍ୱ ଆକଳନ କରିବା ସମୟରେ ସେ ସାମାଜିକ ଜୀବନଚର୍ଯ୍ୟା ମଧ୍ୟରେ ସୀମାବଦ୍ଧ ହୋଇ ନାହାନ୍ତି, ବରଂ ଓଡ଼ିଶାର ସମକାଳୀନ ଶାସନବ୍ୟବସ୍ଥା, ଜନଜୀବନ ଓ ବିକାଶର ଭିନ୍ନ ଭିନ୍ନ ଦିଗ ଉପରେ ଆଲୋକପାତ କରିବାର ପ୍ରୟାସ କରିଛନ୍ତି। ଡକ୍ଟର ଭୂୟାଁଙ୍କ ସୃଜନ ମନୀଷାରେ ଗଭୀର ଅନୁଶୀଳନ, ଅନୁସନ୍ଧିତ୍ସା, ଅନୁରକ୍ତି ପ୍ରକଟିତ। ପରିଚ୍ଛେଦ ବିନ୍ୟାସରୁ ହିଁ ଯେ କୌଣସି ପାଠକ ଏହି ଗ୍ରନ୍ଥଟିର କଳାକୋଟୀ ସମ୍ପର୍କରେ ସୂଚନା ଲାଭ କରିପାରିବ। ପ୍ରଥମ ତରଙ୍ଗରେ ରହିଛି 'ଉନ୍ମେଷ, ସାଧନା ଓ ଉତ୍ତରଣ'।

ପ୍ରଥମ ପରିଚ୍ଛେଦରେ ବଂଶାବଳୀ ବର୍ଣ୍ଣନା ଅବସରରେ ଲେଖକ ଡଃ ଭୂୟାଁ ଜାନକୀବଲ୍ଲଭଙ୍କ ପିତୃପୁରୁଷ, ଗ୍ରାମର ପରିବେଶ, ଚଳଣି, ପରମ୍ପରା, ଲୋକବିଶ୍ୱାସୀ କିମ୍ବଦନ୍ତୀକୁ ଆଧାର କରି ଏକ ଚମତ୍କାର କାନ୍‌ଭାସଟିଏ ନିର୍ମାଣ କରିଛନ୍ତି। ଯେଉଁ ଭାବକଳ୍ପର ଅଙ୍କୁରୋଦ୍‌ଗମ ଘଟିଛି ଏହି ଗ୍ରାମ୍ୟ ମନୋଭୂମିର ସକଳ ଆର୍ଦ୍ରତାରେ। କିମ୍ବଦନ୍ତୀ କୁହେ 'ପ୍ରଭୁ ରାମଚନ୍ଦ୍ର ବନବାସ କାଳରେ ଏହି ପବିତ୍ର ମନ୍ଦାକିନୀରୂପିଣୀ ମଲାଗୁଣୀ ତଟଦେଶରେ କିଛିକାଳପାଇଁ କ୍ଳାନ୍ତି-ବିନୋଦନ ନିମିତ୍ତ ଅବସ୍ଥାନ କରିଥିଲେ। ନଦୀରେ ସ୍ନାନ ସାରି ସେ ଏଠାରେ ଏକ ଶିବଲିଙ୍ଗ ସ୍ଥାପନା କରିଥିଲେ। ରାମଚନ୍ଦ୍ରଙ୍କର ଏହି ସ୍ମାରକୀ ବହନ କରି ସ୍ଥାନଟିର ନାମ ରହିଛି 'ରାମେଶ୍ୱର'।

ଏହି ରାମେଶ୍ୱରର ଆଧ୍ୟାତ୍ମିକ ପରିବୃତ୍ତ ମଧ୍ୟରେ ଜନ୍ମ ହୁଏ ଜାନକୀବଲ୍ଲଭଙ୍କର; ତାହା ପୁଣି ଚାରୋଟି ପୁତ୍ର ସନ୍ତାନ ଓ ପ୍ରଥମାପତ୍ନୀଙ୍କୁ ଅକାଳରେ ହରାଇଥିବା ଦୁଃଖୀ ଗୋକୁଳାନନ୍ଦ ପଟ୍ଟନାୟକଙ୍କର ଗଭୀର ଈଶ୍ୱରନିଷ୍ଠା, ଐକାନ୍ତିକ ଭକ୍ତି ଓ ଆତ୍ମନିବେଦନର ଚରୁଅନ୍ନସ୍ୱରୂପ। ସଂକଳ୍ପ ଥିଲା ସେ ପୁତ୍ରସନ୍ତାନ ଲାଭକଲେ ପୁତ୍ରର ନାମ ଦେବେ ଜାନକୀବଲ୍ଲଭ ଓ ଶ୍ରୀରାମକାବ୍ୟ ରଚନା କରିବେ। ବିଧାତାଙ୍କର ଆଶୀର୍ବାଦସ୍ୱରୂପ ଭୂମିଷ୍ଠ ହେଲେ ଜାନକୀବଲ୍ଲଭ। କାବ୍ୟ ବି ରଚିତ ହେଲା। 'ଜାନକୀବଲ୍ଲଭ ବିଳାସ' କାବ୍ୟଟି କେବଳ ମାନସିକ ପୂରଣ କଲା ନାହିଁ। ବରଂ ବହୁ ରାଗରାଗିଣୀର ମନୋଜ୍ଞ ସମନ୍ୱୟ ରୂପେ ଶ୍ରୀରାମଙ୍କର କୀର୍ତ୍ତି, କୃତି ଓ କରୁଣାର ଅଭିନବ ଲୀଳାବିଳାସର କାବ୍ୟରୂପାମୋଦୀ ପାଠକ ସମାଜକୁ ମୁଗ୍ଧ-ବିଭୋର କଲା। ଈଶ୍ୱରୀୟ

ବିଭୂତିର ଶାବ୍ଦିକ ପ୍ରକାଶ ଏହି ଗ୍ରନ୍ଥଟି ସ୍ମରଣ କରେଇଦିଏ; ତାଙ୍କ ଜନ୍ମଜାତକର ଅନ୍ତରାଳରେ ଥିବା ଏହି ସତ୍ୟାନୁଭୂତିକୁ। ଏହି ଘଟଣାଟିକୁ ଲେଖକ ଅତି ସୁନ୍ଦର ଉଦ୍ଧୃତି ମାଧ୍ୟମରେ ପ୍ରତିପାଦନ କରିଛନ୍ତି।

"ନିବେଦିଲି ଦେବେ          ଏ ଭବ ମାନବେ

ପୁତ୍ର ଯଶ ଅରଜିବ

ଗୁଣବନ୍ତ ହୋଇ          ପରଶ୍ରୀକାତର

ଆଦି ଦୋଷ ବରଜିବ।"

(ଜାନକୀବଲ୍ଲଭ ବିଳାସ)

ଈଶ୍ୱରଙ୍କ ଆଶୀର୍ବାଦରୁ ଯାହାର ଜନ୍ମ ସେ ତ ସୌଭାଗ୍ୟ ସୂର୍ଯ୍ୟଙ୍କୁ ନିଜ କରକମଳରେ ଧାରଣ କରିବା ଥିଲା ବିଧିନିର୍ଦ୍ଦିଷ୍ଟ। ଲେଖକ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବାଲ୍ୟକାଳର ବହୁ ମଧୁର ସ୍ମୃତିର ରୋମନ୍ଥନ କରିଛନ୍ତି ନିଜସ୍ୱ ବର୍ଣ୍ଣନାଶୈଳୀରେ। ସେଗୁଡ଼ିକ ଅତ୍ୟନ୍ତ ରସାଳ ଓ ପ୍ରାଣମୟ। ଜଣେ ସତ୍‌ବାକ୍ ମନୁଷ୍ୟର ବାକ୍ୟ କେବେ ନିଷ୍ଫଳ ହୁଏ ନାହିଁ। ବ୍ୟର୍ଥ ଯାଏନି ଈଶ୍ୱର ଆରାଧନାର ଦିବ୍ୟଦ୍ୟୁତି। 'ମୋ ମାଆ' ଶିରୋନାମରେ ନିଜେ ଜାନକୀବଲ୍ଲଭ କୁହନ୍ତି– "ମୋ ବୋଉ ଥିଲା ପ୍ରଚଣ୍ଡ ସ୍ୱାଭିମାନ ଓ ଶ୍ରଦ୍ଧାର ଏକ ମିଶାମିଶି ମଣିଷ। ××× ମୃତ୍ୟୁବେଳେ ମୋ ବାପା ବୋଉକୁ କହିଥିଲେ, ତୁ ବ୍ୟସ୍ତ ହେବୁନି, ତୋ ପାଇଁ ଗୋଟେ ସୁନାମୁଣ୍ଡା ରଖିକରିଯାଉଛି। ସେ ହିଁ ତୋ ସମ୍ମାନ ବଢ଼େଇବ।" ମହାକାଳର କଷଟିରେ ପରୀକ୍ଷିତ ହେଲା ଏହି ପାରମାର୍ଥିକ ବ୍ୟକ୍ତିଙ୍କର ଭବିଷ୍ୟବାଣୀ। ଜୀବନର ସକଳବିଧ ଝଡ଼ଝଞ୍ଜା, ପ୍ରତିବନ୍ଧକ, ବିରୋଧ, ସମାଲୋଚନା, ପ୍ରତିକୂଳ ପରିସ୍ଥିତିର ହିଡ଼ ଡେଇଁ ଡେଇଁ ସେ ଅନନ୍ୟ ସୌଭାଗ୍ୟର ଅଧିକାରୀ ହୋଇପାରିଥିଲେ। ସଫଳତାର ସୋପାନ ପରେ ସୋପାନ ଚଢ଼ି ଚାଲିଥିଲେ। ଏପରି ଯଶସ୍ୱୀ ହେବାର ଭାଗ୍ୟ ବା କେତେଜଣଙ୍କୁ ମିଳିଥାଏ! କ୍ଷମତା ପ୍ରତିପତ୍ତି, ମାନ-ସମ୍ମାନ, ଯଶକୀର୍ତ୍ତି ତାଙ୍କ ପାଦତଳେ ଲୋଟିଗଲା।

ଜାନକୀବଲ୍ଲଭଙ୍କ ବାଲ୍ୟକାଳ ବର୍ଣ୍ଣନା ଅବସରରେ ଲେଖକ ତାଙ୍କ ବିରଳ ପ୍ରତିଭା କିପରି ତୁଳସୀ ଦୁଇପତ୍ରରୁ ବାସିଲାପରି ମହକି ଉଠିଥିଲା, ତା'ର କିଛି ଦୃଷ୍ଟାନ୍ତ ଦେଇଛନ୍ତି। ନିଜେ ଜାନକୀବଲ୍ଲଭ ତାଙ୍କ ପିତାଙ୍କର ଦୃଢ଼ବିଶ୍ୱାସ ସମ୍ପର୍କରେ ଉଲ୍ଲେଖ କରିବାକୁ ଯାଇ ତୃତୀୟ ଶ୍ରେଣୀ ବୃତ୍ତି ପରୀକ୍ଷା କଥା ବର୍ଣ୍ଣନା କରିଛନ୍ତି। ବାଣପୁର ଶିକ୍ଷା ସର୍କଲରେ ବୃତ୍ତି ପରୀକ୍ଷାରେ ସେ ପ୍ରଥମ ଓ (ଦିବଂଗତ) ଜଷ୍ଟିସ୍ ରଙ୍ଗନାଥ ମିଶ୍ର ଦ୍ୱିତୀୟ ହୋଇଥିଲେ। ବାଲ୍ୟବନ୍ଧୁ ରଙ୍ଗନାଥ ମିଶ୍ରଙ୍କ ସହିତ ସେଇଦିନୁ ତାଙ୍କ ଅନ୍ତରଙ୍ଗତା ଗଢ଼ି ଉଠିଥିଲା। ପିତାଙ୍କ ସ୍ମୃତିଚାରଣ ଅବସରରେ ସେ କହିଛନ୍ତି–"ସେଦିନ ବାପାଙ୍କର ଯେଉଁ ଆତ୍ମବିଶ୍ୱାସ ମୁଁ ଦେଖିଥିଲି, ଜୀବନରେ ତାହା ମତେ ବହୁତ ସାହାଯ୍ୟ କରିଛି।" (ପୃ.୨୦)

ତେର ବର୍ଷ ବୟସରେ କିପରି ଜାନକୀବଲ୍ଲଭଙ୍କ କବିତ୍ୱର ସ୍ଫୁରଣ ହୋଇଥିଲା ତାହା ଅତି ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି ଲେଖକ। ଜୀବନୀଟିଏ ରଚନା କରିବା ସମୟରେ

ଲେଖକଙ୍କ ଗଭୀର ଅନ୍ତର୍ଦୃଷ୍ଟି ପ୍ରକଟିତ ହୋଇଥାଏ ତାଙ୍କ ବ୍ୟକ୍ତିତ୍ୱ ଅନୁଶୀଳନ ପ୍ରକ୍ରିୟାରୁ, କେତେବେଳେ ଏହା ତୀର୍ଯ୍ୟକ କେବେ ସରଳ ସାବଲୀଳ, କେବେ ପୁଣି ବ୍ୟଞ୍ଜନାତ୍ମକ ଶୈଳୀ ପ୍ରୟୋଗ ମାଧ୍ୟମରେ ଘଟଣାଗୁଡ଼ିକର ଅବତାରଣା ପାଠକପାଇଁ ସ୍ୱାଦ୍ୟ ହୋଇଥାଏ। କେବଳ ଘଟଣାକ୍ରମକୁ ସିଧା ସିଧା ଲେଖିଦେଲେ ତାହାର କଳାତ୍ମକ ଦିଗ ଉପେକ୍ଷିତ ହୋଇଥାଏ; ସେଥିପାଇଁ ଶୈଳୀରେ ନୂତନ କୋଟୀ ନିର୍ମାଣ ହିଁ ସ୍ରଷ୍ଟାମାନସର ସ୍ୱାତନ୍ତ୍ର୍ୟ ହୋଇ ଫୁଟିଉଠେ। ରୂପଗତ ଓ ଭାବଗତ ଉଭୟ ଦୃଷ୍ଟିକୋଣରୁ ବିଚାରକଲେ 'ସାର୍ଥକ ସାରଥି ଜାନକୀବଲ୍ଲଭ' ଏକ ଅନନ୍ୟ ସାରସ୍ୱତ ମର୍ଯ୍ୟାଦା ଦାବି କରିଥାଏ। ଜାନକୀବଲ୍ଲଭଙ୍କ ଆଦ୍ୟ ସୃଷ୍ଟି ସଂପର୍କରେ ବର୍ଣ୍ଣନା କଲାବେଳେ ସ୍ରଷ୍ଟା ଡଃ ଭୂୟାଁ କହନ୍ତି– "ପ୍ରଥମ ସ୍ଫୁରଣ 'ଅଶୋକ' ଶୀର୍ଷକରେ ଖୋର୍ଦ୍ଧା ସ୍କୁଲର ପତ୍ରିକା 'ଅବକାଶ'ରେ ପ୍ରକାଶ ପାଇଥିଲା। ××× ଜାତିପ୍ରୀତି, ବୀରତ୍ୱ ପ୍ରତି ଶ୍ରଦ୍ଧା ଓ ଧର୍ମାନୁରାଗ ଜାନକୀବଲ୍ଲଭଙ୍କଠାରେ କିଶୋରକାଳରୁ ବିକଶିତ ହୋଇଥିବା ଏହି କବିତା ରଚନାରୁ ପ୍ରତୀତ ହୋଇଥାଏ।" (ପୃ୨୩) ଗୋଟେ ଉଦୟମାନ ଦୀପ୍ତିମନ୍ତ ପ୍ରତିଭାର ବିକାଶପାଇଁ ଶିକ୍ଷକ ଓ ଶିକ୍ଷାନୁଷ୍ଠାନର ମହତ୍ତ୍ୱ କେତେ ଗୁରୁତ୍ୱପୂର୍ଣ୍ଣ, ତାହା ମନୋଜ୍ଞ ରୀତିରେ ବର୍ଣ୍ଣନା କରିଛନ୍ତି ସ୍ରଷ୍ଟା। କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ, ମାୟାଧର ମାନସିଂହ, ସଚ୍ଚି ରାଉତରାୟଙ୍କ ପରି ମହାନ୍ ପ୍ରତିଭାଧର ବ୍ୟକ୍ତିଙ୍କର ପ୍ରେରଣା କିପରି ତାଙ୍କ ବ୍ୟକ୍ତିତ୍ୱ ବିକାଶରେ ପ୍ରେରଣାଦାୟୀ ହୋଇଥିଲା ତା'ର ଆଲେଖ୍ୟ ଫୁଟିଉଠିଛି, 'ଉନ୍ମେଷ, ସାଧନା ଓ ଉତ୍ତରଣ' ପର୍ଯ୍ୟାୟରେ।

ଉତ୍ତରଣର ସୋପାନରେ ପାଦ ଥାପିଲାବେଳେ ପାଖୁଡ଼ା ପାଖୁଡ଼ା ପଦ୍ମ ଉନ୍ମୋଚିତ ହେବାପରି ଜାନକୀବଲ୍ଲଭଙ୍କ ବହୁମୁଖୀ ପ୍ରତିଭା ବିକଶିତ ହୋଇଛି। ସର୍ଜନାକର୍ମ ପରି ରାଜନୈତିକ ଆସ୍ପୃହା ତାଙ୍କ କୈଶୋରରୁ ଉଦ୍‌ଭାସିତ ହୋଇଉଠିଥିଲା। ଏହି ବିସ୍ତାର ପ୍ରକ୍ରିୟା ତାଙ୍କ ଜୀବନର ବିଶେଷତ୍ୱ; ଯାହା ଅନ୍ୟତ୍ର ବିରଳ। ଏହା ସହ ସମନ୍ୱିତ ହୋଇଛି ତାଙ୍କ ଜୀବନ ସଂବେଦୀ ମାନବବାଦୀ ଦୃଷ୍ଟିଭଙ୍ଗୀ। ଅରୁଣସୂର୍ଯ୍ୟର ଉଦୟଉତ୍ସବ ସମ ସେ ଉଜ୍ଜ୍ୱଳ ମନସ୍ୱିତାକୁ ଧାରଣ ଓ ପ୍ରକାଶ କରିଥିଲେ ଖୁବ୍ କମ୍ ବୟସରୁ। ଗୀତାର କର୍ମଯୋଗୀ ପରି ସେ କର୍ମତପସ୍ୟାରେ ବ୍ରତୀ ହୋଇଥିଲେ ଆଦ୍ୟ କୈଶୋରରୁ। ପ୍ରଜ୍ଞାସହ ଅସୀମଧୈର୍ଯ୍ୟ, ଗଭୀର ମନନଶୀଳତା, ଅଦ୍ଭୁତ ସ୍ମରଣଶକ୍ତି, ଅଧ୍ୟୟନ ପିପାସା, ସ୍ୱାଭିମାନ, ଉଜ୍ଜ୍ୱଳ ଅସ୍ମିତା, ଅସାଧାରଣ ବାଗ୍ମିତା, ସର୍ବୋପରି ନିରହଂକାର ବ୍ୟକ୍ତିତ୍ୱର ଅଧିକାରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଜୀବନ, ସଫଳତା, ସଂଘର୍ଷ ଓ ସିଦ୍ଧି ପ୍ରଭୃତିର ଐତିହାସିକ ତଥା କଳାତ୍ମକ ଆଲେଖ୍ୟ ଏହି ଗ୍ରନ୍ଥ। ବର୍ଣ୍ଣନାକ୍ରମରେ ଲେଖକ ଛାତ୍ରନେତା ଜାନକୀବଲ୍ଲଭଙ୍କର ସ୍ୱଦେଶାନୁରାଗ ଓ ଚେତନାର ଉଦ୍‌ବର୍ତ୍ତନ ସଂପର୍କରେ ଉଲ୍ଲେଖ କରିଛନ୍ତି। ତଥ୍ୟଭିତ୍ତିକ ଓ ପ୍ରମାଣସିଦ୍ଧ ଏଗୁଡ଼ିକ।

ରେଭେନ୍ସା କଲେଜରେ ଅଧ୍ୟୟନ କରୁଥିବାବେଳେ ଛଅ ଜଣ ବନ୍ଧୁ ମିଶି ବିଦେଶୀ ସରକାରଙ୍କର 'ୟୁନିୟନ ଜ୍ୟାକ୍' ପତାକାକୁ କାଢ଼ି ଦେଇ ସେଠାରେ ତ୍ରିରଙ୍ଗା ପତାକା ଉଡ଼ାଇଥିଲେ। ଏଥିରେ ଅନ୍ୟତମ ପ୍ରମୁଖ ନେତା ଥିଲେ ଶ୍ରୀ ରବି ରାୟ, ଶ୍ରୀ ପ୍ରଦୀପ୍ତ କିଶୋର ଦାସ, ଶ୍ରୀ କୁଳମଣି ମହାପାତ୍ର। କର୍ତ୍ତୃପକ୍ଷଙ୍କ କୋପଦୃଷ୍ଟିର ଶିକାର ହୋଇ କଲେଜରୁ ବହିଷ୍କୃତ ହେଲେ ସମସ୍ତେ। ପ୍ରତିବାଦସ୍ୱରୂପ କଟକର ସବୁ ଶିକ୍ଷାନୁଷ୍ଠାନରେ ଛାତ୍ର ଆନ୍ଦୋଳନ ଚେଇଁଉଠିଲା।

ମୁଣ୍ଡ ନୋଇଁଲା ପ୍ରଶାସନ। ଆଇନସିଦ୍ଧ ହେଲା ଏହି ସ୍ୱଦେଶପ୍ରୀତିର ମହିମାଦୀପ୍ତ କାର୍ଯ୍ୟଟି। କଲେଜରେ ଏଣିକି ତ୍ରିରଙ୍ଗା ଉଡ଼ିବ ବୋଲି କଲେଜ କର୍ତ୍ତୃପକ୍ଷ ଓ ସରକାର ସ୍ୱୀକୃତି ପ୍ରଦାନ କଲେ। ଆରମ୍ଭ ହେଲା ଗୋଟେ ଜୟଯାତ୍ରା। ରାଜନୈତିକ ଜୀବନର ପ୍ରଥମ ସଫଳତା। ଯାହା ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଅବାରିତ ଥିଲା।

ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ଦେଶ ସ୍ୱାଧୀନ ହେଲା। ଜଣେ ଜାତ୍ୟାଭିମାନୀ ଯୁବକଙ୍କ ପ୍ରାଣସ୍ପନ୍ଦନକୁ ଉଚ୍ଚାଟିତ କରିଥିଲା ସ୍ୱାଧୀନତାର ପ୍ରଥମ ଓଁକାର ଧ୍ୱନି। ଏହାର ଆଲେଖ୍ୟ ବାଢ଼ିଛନ୍ତି ଲେଖକ ଡଃ ଗୋବିନ୍ଦ ଭୂୟାଁ– "ଅଗଷ୍ଟ ୧୫ରେ ଦେଶ ସ୍ୱାଧୀନ ହେଲା। ଜାନକୀବଲ୍ଲଭ ସେତେବେଳେ ବନାରସରେ। ଜନତାଙ୍କ ମଧ୍ୟରେ ଅପୂର୍ବ ଭାବୋଚ୍ଛ୍ୱାସ–ଅଫୁରନ୍ତ ଉନ୍ମାଦନା। ବନାରସର ଗାଁ ଗଣ୍ଡାରୁ ହଜାର ହଜାର ଲୋକ ଉତ୍‌ଫୁଲ୍ଲିତ ହୋଇ ସହରକୁ ମାଡ଼ି ଆସୁଥାନ୍ତି। କେହି କାହାକୁ ଡାକୁ ନ ଥାନ୍ତି। ମନକୁ ମନ ଜନଗଣଙ୍କର ଏକ ବିରାଟ ପଟୁଆର ଚାଲୁଥାଏ–ହାତରେ ତ୍ରିରଙ୍ଗା–ମୁଣ୍ଡରେ ଗାନ୍ଧିଟୋପି। ମୁଣ୍ଡରେ ଠେକା, ହାତରେ ବାଡି, ମୁହଁରେ ଉଚ୍ଛୁଳି ଉଠୁଥାଏ–ସ୍ୱାଧୀନ ଭାରତ କି ଜୟ। ଭାରତମାତାକୀ ଜୟ। ଉଦ୍‌ବୁଦ୍ଧ ଜାନକୀବଲ୍ଲଭ ମଧ୍ୟ ଏହି ଜନସ୍ରୋତରେ ମିଶି ଯାଇଥିଲେ।" (ପୃ.୨୮)

ଆଉ ଗୋଟିଏ ବିଶେଷ ଘଟଣା ଜାନକୀବଲ୍ଲଭଙ୍କ ହୃଦୟକୁ ଦୁଃଖରେ ଦୋହଲାଇ ଦେଇଥିଲା। ଆତତାୟୀ ଗୁଳିରେ ଜାତିର ପିତା ଗାନ୍ଧିଜୀ ପ୍ରାଣ ବିସର୍ଜନ କଲେ। ଏହି ଦାରୁଣ ଦୁଃସମ୍ବାଦ ବ୍ୟଥାହତ ଜାନକୀବଲ୍ଲଭଙ୍କୁ ଅଶ୍ରୁସ୍ନାନ କରିଥିଲା। ଗାନ୍ଧିଜୀଙ୍କ ଚିତାଭସ୍ମକୁ ଗଙ୍ଗା ଯମୁନାର ସଂଗମ ସ୍ଥଳରେ ଏକାଦଶାହରେ ବିସର୍ଜନ କରାଯାଇଥିଲା। ପ୍ରିୟ ବାପୁଙ୍କୁ ଭକ୍ତିପୂତ ଶ୍ରଦ୍ଧା ନିବେଦନ କରିବାକୁ ଅଗଣିତ ଜନତାଙ୍କ ମଧ୍ୟରେ ସାମିଲ ହୋଇଥିଲେ ଜାନକୀବଲ୍ଲଭ। ସେଇଠି ମନେ ମନେ ସଂକଳ୍ପ କରିଥିଲେ–ଦେଶମାତୃକା ଉନ୍ନତିବିଧାନ ପାଇଁ ସେ ନିଜକୁ ଉତ୍ସର୍ଗ କରିବେ। ସରକାରୀ ବୃତ୍ତି ନୁହେଁ, ଦେଶସେବା ହେବ ତାଙ୍କ ଜୀବନଧର୍ମ, ତାଙ୍କ ପ୍ରାଣ ପ୍ରବୃତ୍ତି, ତାଙ୍କ ତପସ୍ୟା। ଦେଶମାତୃକାର ସେବା ହେବ ତାଙ୍କ ମନ୍ତ୍ରପାଠ।

ଅଧ୍ୟୟନ ସମୟର ବହୁ ରୋମାଞ୍ଚକ ସ୍ମୃତି ମଧ୍ୟରେ ସନ୍ତରଣପ୍ରିୟ ଜାନକୀବଲ୍ଲଭ କିପରି ଦୀର୍ଘ ଚାରିମାଇଲ ଚାଲି ଚାଲି ଯାଇ ଗଙ୍ଗାରେ ସନ୍ତରଣ କରୁଥିଲେ ଓ ସୂର୍ଯ୍ୟ ଉପାସନା କରୁଥିଲେ ତା'ର ଚିତ୍ରପଟ ଉନ୍ମୋଚିତ ହୋଇଛି ଗ୍ରନ୍ଥରେ। ଏସବୁଥିରୁ ଜାନକୀବଲ୍ଲଭଙ୍କ ଆଦ୍ୟ ଯୌବନକାଳର ବ୍ୟକ୍ତିସତ୍ତାକୁ ଆକଳନ କରାଯାଇପାରେ। ସରିଗଲା ଅଧ୍ୟୟନର ପ୍ରାରମ୍ଭିକ ପର୍ଯ୍ୟାୟ। ଯେଉଁ ଅଧ୍ୟୟନ ଓ ଅନ୍ୱେଷା ତାଙ୍କ ଅନ୍ତଃପ୍ରକୃତିରେ ଅନ୍ତଃସଲିଳା ଫଲ୍‌ଗୁ ପରି ନିରନ୍ତର ପ୍ରବାହିତ ହେଉଥିଲା ଓ ତାଙ୍କୁ ଜଣେ ପ୍ରାଜ୍ଞବ୍ୟକ୍ତି ଭାବରେ ପରିଚିତ କରାଉଥିଲା।

ଆରମ୍ଭ ହେଲା କର୍ମମୟ ଜୀବନର ପ୍ରଥମ ସୋପାନ। ବହୁ ବହୁ ମନୀଷୀଙ୍କ ପ୍ରାଣ ପ୍ରଚେଦନାରେ ଉତ୍ସାହିତ ଓ ଅନୁପ୍ରାଣିତ ଜାନକୀବଲ୍ଲଭ ପ୍ରତ୍ୟକ୍ଷ ରାଜନୀତିରେ ଯୋଗ ଦେଲେ। ଲେଖକଙ୍କ ଭାଷାରେ–"ଜଣେ ପ୍ରତିଭାଧର ଓ ଉଚ୍ଚଶିକ୍ଷିତ ଯୁବକ ଛାତ୍ର କଂଗ୍ରେସର ନେତୃତ୍ୱ ନେବା ଫଳରେ ବହୁ ଶିକ୍ଷିତ ଯୁବକ ଛାତ୍ର କଂଗ୍ରେସର କାର୍ଯ୍ୟକ୍ରମରେ ସାମିଲ ହେଲେ। ୧୯୫୦ ମସିହାରେ ସେ ରାଜ୍ୟ ଯୁବ କଂଗ୍ରେସର ସଭାପତି ଦାୟିତ୍ୱ ଗ୍ରହଣ କରିଥିଲେ।" (ପୃ.୩୧)

ମଣିକାଞ୍ଚନର ସଂଯୋଗ ଘଟିଲା, ଯେତେବେଳେ ଉଚ୍ଚାଭିଳାଷୀ ଓ ସ୍ୱାଧୀନଚେତା ଯୁବକ ଜାନକୀବଲ୍ଲଭ ଦୈନିକ ଖବରକାଗଜ 'ପ୍ରଜାତନ୍ତ୍ର' ଓ 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର ସଂପାଦକ ଦାୟିତ୍ୱ ବହନ କଲେ ଡକ୍ଟର ହରେକୃଷ୍ଣ ମହତାବଙ୍କ ଆମନ୍ତ୍ରଣ କ୍ରମେ। ଜଣେ ଶିକ୍ଷାନବିସ ପରି ସେ ରାଜନୀତିର ବହୁ କଳାକୌଶଳ ଶିକ୍ଷା କଲେ ଏହି ପ୍ରବୀଣ ରାଷ୍ଟ୍ରନୀତିଜ୍ଞ ଡକ୍ଟର ମହତାବଙ୍କ ନିକଟରୁ, ଯାହା ତାଙ୍କ ପରବର୍ତ୍ତୀ ଜୀବନଚର୍ଯ୍ୟାକୁ ଓ ଚିନ୍ତାଧାରାକୁ ଗଭୀର ଭାବରେ ପ୍ରଭାବିତ କରିଥିଲା।

ଈଶ୍ୱରଙ୍କ କରୁଣାର ଅଭୟ ବରଦହସ୍ତ ଯାହା ମୁଣ୍ଡ ଉପରେ, କୌଣସି ପାର୍ଥିବ ଦୁଃଖ, ଦୈନ୍ୟ, ଅଭାବ ଅନଟନ, ସମସ୍ୟା, ସଂଘର୍ଷ କଦାପି ତା'ର ଗତିରୋଧ କରିପାରିବ କାହିଁ। ଆଖି ଆଗରେ ଖୋଲି ଖୋଲି ଯାଉଥିବ ଆଲୋକମୟ ସରଣୀ। ନିୟତି ବାଟ କଢ଼ାଇ ନେଉଥିବ ସକଳ ସଂଭାବନା ଅଭିମୁଖେ। ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକଙ୍କୁ ବିବାହ କରନ୍ତି ଜାନକୀବଲ୍ଲଭ। ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ ସତ୍ୟାଗ୍ରହୀ ନିରଞ୍ଜନ ପଟ୍ଟନାୟକ ଜୟନ୍ତୀଙ୍କ ପିତା। ଯାହାଙ୍କ ସମଗ୍ର ଜୀବନ ଓ କର୍ମ ଦେଶମାତୃକାର ସେବାପାଇଁ ଉତ୍ସର୍ଗୀକୃତ ଥିଲା। ଜୟନ୍ତୀଙ୍କ ଶରୀରରେ ପ୍ରବାହିତ ହେଉଥିଲା ସେଇ ତ୍ୟାଗ ଓ ଦେଶଭକ୍ତିର ରକ୍ତ। ତାଙ୍କ ଅସ୍ଥି, ମଜ୍ଜା, ସ୍ୱେଦ, ପ୍ରତ୍ୟେକଟି ଲୋମକଣିକାରେ ଥିଲା ପିତାମାତାଙ୍କର ଆଦର୍ଶ, ମହାନୁଭବତା, ଉଦାରତା ଓ ମାଟି ପ୍ରତି ଗଭୀର ମମତ୍ୱବୋଧ। ସଂଗ୍ରାମୀ ପରିବାରର କନ୍ୟା ଜୟନ୍ତୀଦେବୀ ପାଦ ଥାପିଲେ ଜାନକୀବଲ୍ଲଭଙ୍କ ଜୀବନାୟନରେ। ରେଳରେ ଯାତ୍ରା କରୁଥିବା ଯାତ୍ରୀ ଯେମିତି ଅନୁଭବ କରେ ସ୍ଥିର ଥିବା ଗଛବୃଛ, ପାହାଡ଼ ଜଙ୍ଗଲ, ଜନପଦ, ସହର ବଜାର ତୀବ୍ରବେଗରେ ଧାଉଁଥାନ୍ତି ପଛକୁ ପଛକୁ; ଠିକ୍ ସେପରି ଏକ ମନ, ଏକ ପ୍ରାଣ, ଏକ ଆଦର୍ଶ ଓ ଅନୁଚିନ୍ତନରେ ଏକାତ୍ମ ହୋଇ ସଫଳତାର ସୋପାନ ଚଢ଼ି ଚାଲିଥିଲେ ଦୁହେଁ; ପଛରେ ରହି ଯାଉଥିଲେ ଯାବତୀୟ ସାଂସାରିକ ପ୍ରତିବନ୍ଧକ।

ସାହିତ୍ୟ, ସଂସ୍କୃତି, ରାଜନୀତି–ପ୍ରତ୍ୟେକ କ୍ଷେତ୍ରରେ ଉଭୟ ଉଭୟର ପରିପୂରକ। କାୟମନୋବାକ୍ୟରେ ସ୍ୱାମୀଙ୍କର ଅନୁଗାମିନୀ ଜୟନ୍ତୀ ଦେବୀଙ୍କ ସମ୍ପର୍କରେ ଲେଖକ କୁହନ୍ତି– "ଶ୍ରୀମତୀ ଜୟନ୍ତୀ ଏହି ଗୁରୁତ୍ୱପୂର୍ଣ୍ଣ ଓ ସମ୍ମାନଜନକ ଜାତୀୟ ମହିଳା କମିସନର ପ୍ରଥମ ଅଧ୍ୟକ୍ଷା ଭାବରେ ନିଯୁକ୍ତ ହୋଇ ଓଡ଼ିଶାର ଗୌରବ ବୃଦ୍ଧି କରିଛନ୍ତି। ଏହି ପଦବୀରେ ତିନି ବର୍ଷ ପାଇଁ ସେ ଖୁବ୍ ଦକ୍ଷତାର ସହିତ ନାନା ପ୍ରଗତିଶୀଳ ଓ ଗଠନମୂଳକ ପଦକ୍ଷେପ ଗ୍ରହଣକରି ଜାତୀୟ ମହିଳା ଜଗତରେ ସ୍ୱତନ୍ତ୍ର ଆସନର ଅଧିକାରିଣୀ ହୋଇଛନ୍ତି। ଭାରତବର୍ଷର ପ୍ରତିନିଧି ଭାବରେ ସେ ବହୁବାର ବିଶ୍ୱର ନାନା ରାଷ୍ଟ୍ର ଭ୍ରମଣ କରି ବିଭିନ୍ନ ଆଲୋଚନା ଓ ବିଚାର-ବିମର୍ଶରେ ଅଂଶ ଗ୍ରହଣ କରିଛନ୍ତି। ସେ ଜଣେ ସୁବକ୍ତା। ବକ୍ତବ୍ୟ ତାଙ୍କର ତତ୍ତ୍ୱନିଷ୍ଠ, ତଥ୍ୟବ୍ୟଞ୍ଜକ, ସ୍ପଷ୍ଟ। ମାତୃଭାଷା ଓଡ଼ିଆ ବ୍ୟତୀତ ବଙ୍ଗଳା, ଇଂରାଜୀ ଓ ହିନ୍ଦୀ ଭାଷାରେ ତାଙ୍କର ବ୍ୟୁତ୍ପତ୍ତି ରହିଛି।" (ପୃ.୩୭)

ପୌରୁଷର ସମ୍ପାଦିକା, କୃଷ୍ଣାବତାର ପରି ଉଚ୍ଚମାନର ଗ୍ରନ୍ଥଗୁଡ଼ିକର ଅନୁବାଦିକା, ଓ ଜଣେ ସାହିତ୍ୟ ସଂଗଠିକା ଭାବେ ତାଙ୍କ କୃତି ଓ କୀର୍ତ୍ତି କାଳଜୟୀ ପ୍ରତିଷ୍ଠା ଦାବି କରିଥାଏ।

ଲୋକସଭାର ସାଂସଦ ଭାବରେ ମଧ୍ୟ ସେ ରାଜନୀତି କ୍ଷେତ୍ରରେ ତାଙ୍କ ମନୀଷାର ଗଭୀର ଛାପ ଛାଡ଼ିପାରିଛନ୍ତି । ଲେଖକ ତାଙ୍କୁ ଜଣେ ସ୍ନେହୀ, ଦରଦୀ ତଥା ଆଦର୍ଶ ପତ୍ନୀ, ଗୃହିଣୀ ଓ ଜନନୀ ଭାବରେ ଚିତ୍ରଣ କରିଛନ୍ତି ତାଙ୍କ ଲେଖନୀ ମୁନରେ ।

ଗ୍ରନ୍ଥର ଦ୍ୱିତୀୟ ତରଙ୍ଗର ନାମକରଣ ହୋଇଛି ଏହିପରି; ‘ଅନ୍ୱେଷା, ଜିଜ୍ଞାସା ଓ ସତ୍ୟସନ୍ଧାନ’ । ପ୍ରାଚ୍ୟ ଦର୍ଶନରେ ଅନୁରାଗୀ ଜାନକୀବଲ୍ଲଭଙ୍କ ଚିନ୍ତା ଓ ଚେତନାରେ ଭାରତୀୟ ସଂସ୍କୃତି, ସାହିତ୍ୟ, ଐତିହ୍ୟ, ପରମ୍ପରା, ଆଧ୍ୟାତ୍ମିକତା ଓ ବିଶ୍ୱତୋମୁଖୀ ମାନବବାଦର ପରିସ୍ଫୁଟନ ହୋଇଛି ଅତି ମାର୍ମିକ ଭାବରେ । ବ୍ୟକ୍ତିଗତ ସ୍ତରରୁ ଊର୍ଦ୍ଧ୍ୱକୁ ଯାଇ ସେ ସର୍ବମାନବର ମର୍ମବେଦନାକୁ ଗଭୀର ଭାବରେ ଅନୁଭବ କରିଛନ୍ତି । ତାଙ୍କ ସମଗ୍ର ସାରସ୍ୱତ ସୃଷ୍ଟିର ଆଧାରଶିଳା ହେଉଛି ଏଇ ବିଶ୍ୱମାନବାତ୍ମା ପ୍ରତି ପ୍ରଗାଢ଼ ଅନୁରାଗ ଓ ଭାରତୀୟ ଚେତନାର ଐଶ୍ୱର୍ଯ୍ୟ ସଂସ୍କୃତରେ ରଚିତ ଅଧ୍ୟାତ୍ମଗ୍ରନ୍ଥଗୁଡ଼ିକୁ ଓଡ଼ିଆରେ ନିଜସ୍ୱଶୈଳୀରେ ଅନୁସୃଜନ କରି ତା'ର ଭାବକଳ୍ପକୁ ସାଧାରଣ ପାଠକମାନଙ୍କ ନିକଟରେ ପହଞ୍ଚାଇବା । ତାଙ୍କ ସାରସ୍ୱତ ସାଧନା ପୁଷ୍ପିତ ପଲ୍ଲବିତ ହୋଇଛି ପ୍ରଜାତନ୍ତ୍ରର ସମ୍ପାଦକୀୟରୁ । କିନ୍ତୁ ସଂସ୍କୃତ ମହାଭାରତ, ରାମାୟଣ, ଶ୍ରୀମଦ୍‌ଭାଗବତ, ବୈରାଗ୍ୟଶତକ, ନୀତିଶତକ, ଶୃଙ୍ଗାରଶତକ ପ୍ରଭୃତିର ଓଡ଼ିଆ ଅନୁସୃଜନ ଓଡ଼ିଆ ସାରସ୍ୱତ ନଭୋମଣ୍ଡଳକୁ ଦୀପ୍ତିମନ୍ତ କରିଛି ସ୍ୱକୀୟ ପ୍ରଭାରେ । ଶୁଦ୍ଧ ଅନ୍ତଃକରଣରେ ସେ ମାତୃଭାଷା ପ୍ରୀତି ପ୍ରକଟ କରିଛନ୍ତି ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ । ଦୀର୍ଘ ପନ୍ଦରବର୍ଷ କାଳ ମୁଖ୍ୟମନ୍ତ୍ରୀ ଥିବା ଅବସରରେ ଓଡ଼ିଶାକୁ ସେ ସରକାରୀ ଭାଷା କରିବାପାଇଁ ଆଇନ କରିବା ଥିଲା ଏକ ଯୁଗାନ୍ତକାରୀ ତଥା ଐତିହାସିକ ପଦକ୍ଷେପ । ଏହାସତ୍ତ୍ୱେ ସଂସ୍କୃତ, ହିନ୍ଦୀ, ବଙ୍ଗଳା ଓ ଇଂରେଜୀ ଭାଷାରେ ତାଙ୍କର ଗଭୀର ପାଣ୍ଡିତ୍ୟ ଓ ଦକ୍ଷତା ଥିଲା । ସେଥିପାଇଁ ସେ ଏତେଗୁଡ଼ିଏ କ୍ଲାସିକ୍ ସୃଷ୍ଟିର ଅନୁବାଦ କରିବାପାଇଁ ସମର୍ଥ ହୋଇପାରିଥିଲେ ।

ଭାଷା ସମ୍ପର୍କରେ ଜାନକୀବଲ୍ଲଭ କୁହନ୍ତି– "ରାଷ୍ଟ୍ରଭାଷା ଦୃଷ୍ଟିରୁ ହିନ୍ଦୀ ଭାଷା ଶିଖିବା ପ୍ରତ୍ୟେକ ଭାରତୀୟ ଛାତ୍ରର କର୍ତ୍ତବ୍ୟ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ହିନ୍ଦୀଭାଷାକୁ ପ୍ରବର୍ତ୍ତନ କଲାବେଳେ କୌଣସି ଭାବପ୍ରବଣତାର ବଶବର୍ତ୍ତୀ ହୋଇ କାର୍ଯ୍ୟ କରିବା ଉଚିତ ନୁହେଁ । ହିନ୍ଦୀ ରାଷ୍ଟ୍ରଭାଷା ହେଲେ ମଧ୍ୟ ଆନ୍ତର୍ଜାତିକ କ୍ଷେତ୍ରରେ ଇଂରେଜୀ ଭାଷାର ସ୍ଥାନ ଅଧିକାର କରିପାରିବ ନାହିଁ । ସାହିତ୍ୟ ଦୃଷ୍ଟିରୁ ଇଂରାଜୀ ସାହିତ୍ୟ ପୃଥିବୀର ସବୁ ସାହିତ୍ୟଠାରୁ ବିଭବଶାଳୀ । ଆନ୍ତର୍ଜାତିକ ଭାବ ବିନିମୟ ପାଇଁ ସ୍ୱାଧୀନ ଭାରତ ତା'ର ଦ୍ୱାର ଉନ୍ମୋଚନ ନ କଲେ ତା'ର ପ୍ରଗତି ଅସମ୍ଭବ । ତେଣୁ ଭାବପ୍ରବଣତାର ବଶବର୍ତ୍ତୀ ହୋଇ ଆମେ ଯଦି ଇଂରାଜୀ ଭାଷାକୁ ବିଦାୟ ଦେଇଦେଉ, ତା'ହେଲେ ବିଶ୍ୱବିଦ୍ୟାଳୟ କମିସନଙ୍କ ଭାଷାରେ ଆମକୁ ପୃଥିବୀର କ୍ରମବର୍ଦ୍ଧିଷ୍ଣୁ ଜ୍ଞାନଧାରାଠାରୁ ବିଚ୍ଛିନ୍ନ ହେବାକୁ ପଡ଼ିବ ।" (ପୃ.୪୨)

ଓଡ଼ିଆ ଭାଷା ସାହିତ୍ୟ ବିଷୟରେ ସେ ସ୍ପଷ୍ଟ ମତ ବ୍ୟକ୍ତ କରିଛନ୍ତି । ଏହା ତାଙ୍କ ପ୍ରସାରିତ ଦୃଷ୍ଟିଭଙ୍ଗୀର ପରିଚୟ ବହନ କରିଥାଏ । ଜାନକୀବଲ୍ଲଭ କବିତା, ଜୀବନୀ, ଅନୁବାଦ, ଗଳ୍ପ, ପ୍ରବନ୍ଧ ପ୍ରଭୃତି ସାହିତ୍ୟର ବହୁ ବିଭାଗରେ ଲେଖନୀ ଚାଳନା କରି ସିଦ୍ଧି ଲାଭ କରିଛନ୍ତି । ତାଙ୍କ

କବିତାଗ୍ରନ୍ଥ 'ସିନ୍ଧୁ ଉପତ୍ୟକା' ତାଙ୍କ ପାଣ୍ଡିତ୍ୟ, କବିତ୍ୱ, ଜୀବନଦର୍ଶନ ଓ ବିଶ୍ୱମୟ ଅନୁଚିନ୍ତନର କଳାତ୍ମକ ଅଭିଳିପି। ତାଙ୍କର ବହୁ ସମ୍ପାଦକୀୟ ଓ ସମୀକ୍ଷାରେ ତାଙ୍କ ବିଦ୍‌ବତ୍ତା ଓ ବହୁଶାସ୍ତ୍ରଦର୍ଶିତାର ପରିଚୟ ମିଳିଥାଏ। ରାଜ୍ୟସ୍ତରୀୟ, ଜାତୀୟ, ଅନ୍ତର୍ଜାତୀୟ, ବିଜ୍ଞାନ, କଳା, ରାଜନୀତି, ସଂସ୍କୃତି ଓ ସମାଜର ବିଭିନ୍ନ ସମସ୍ୟା ସମ୍ପର୍କରେ ସେ ସୁଚିନ୍ତିତ ମତ ଦେଇଛନ୍ତି ତାଙ୍କର ବହୁ ଉଚ୍ଚକୋଟୀର ପ୍ରବନ୍ଧରେ। ବସ୍ତୁତଃ ଜୀବନ ଓ ଜଗତର ଏପରି କୌଣସି କଥା ନାହିଁ ଯାହା ତାଙ୍କ ମଗ୍ନଚୈତନ୍ୟକୁ ସ୍ପର୍ଶ କରି ନାହିଁ। ବହୁ ଶାସ୍ତ୍ର ଅଧ୍ୟୟନ ତାଙ୍କ ଜୀବନଚର୍ଯ୍ୟାର ଅବିଚ୍ଛେଦ ଅଙ୍ଗ ଥିଲା। ସେଥିପାଇଁ ସମକାଳୀନ ଘଟଣାବଳୀ ପ୍ରତି ସେ ତାଙ୍କର ସୁଚିନ୍ତିତ ମତ ଅତି ସ୍ପଷ୍ଟ ଓ ନିର୍ଭୀକ ଭାବରେ ଦେଇପାରୁଥିଲେ। ଏସବୁ ରଚନାରେ ଆବେଗ ଅପେକ୍ଷା ଯୁକ୍ତିନିଷ୍ଠତା, ବାସ୍ତବ ଆଭିମୁଖ୍ୟ, ସତ୍ୟ ସନ୍ଧାନ କରିବାର ଅନ୍ତରଙ୍ଗ ପ୍ରୟାସ, ପ୍ରବନ୍ଧ ଉପଯୋଗୀ ଭାଷା ଓ ଶୈଳୀର ବ୍ୟବହାର ଓ ମାନବବାଦୀ ଦୃଷ୍ଟିକୋଣ ଉତ୍‌କୀର୍ଣ୍ଣ। ମହାଶୂନ୍ୟକୁ ଯାତ୍ରା କରିଥିବା ବୈଜ୍ଞାନିକ 'ମହାଶୂନ୍ୟ ବିଜୟୀ ଇଉରିଗାଗାରିନ' ଶୀର୍ଷକରେ ସେ ଯେଉଁ ତାତ୍ତ୍ୱିକ ଆଲୋଚନା କରିଛନ୍ତି ତାହାର ପଟାନ୍ତର ନାହିଁ। "ଗାଗାରିନ ଯେତେବେଳେ ଅଭିଯାନ ଆରମ୍ଭ କଲେ, ତାଙ୍କ ଆଗରେ ଥିଲା ଏକ ବିରାଟ ଅନିଶ୍ଚିତତା। ସେ ଯେ ସ୍ୱଦେହରେ ପୃଥିବୀକୁ ଫେରି ଆସିବେ, ନିଜର ପୁଅଝିଅ, ଆତ୍ମୀୟସ୍ୱଜନଙ୍କୁ ଦେଖିବେ, ତାହାର ନିଶ୍ଚୟତା ତାଙ୍କ ଆଗରେ ନ ଥିଲା। ମାତ୍ର ମନୁଷ୍ୟକୁ ଆମର ଉପନିଷଦକାର କହିଛନ୍ତି 'ଅମୃତସ୍ୟ ପୁତ୍ରାଃ'– ମୃତ୍ୟୁ ଯାହାକୁ ଜୟ କରିପାରେ ନାହିଁ। ସେଇ ଅମୃତର ସନ୍ତାନ ଇଉରିଗାଗାରିନ ଏହି ଅମୃତତ୍ୱର ଚରମ ନିଦର୍ଶନ।" (ପୃ.୬୨)

ଜାନକୀବଲ୍ଲଭଙ୍କ ଅଧିକାଂଶ କାଳଜୟୀ ସୃଷ୍ଟି ସଂପର୍କରେ ଲେଖକ ଡକ୍ଟର ଭୂୟାଁ ବିଶଦ ଆଲୋଚନା କରିଛନ୍ତି ତାଙ୍କର ଏହି ଗ୍ରନ୍ଥଟିରେ। ତାଙ୍କ ବିଶ୍ୱଦୃଷ୍ଟିର ପରିଚୟ ଦେବାକୁ ଯାଇ ସେ କହନ୍ତି– "ସେହିପରି ଲିଖିତ ବିଷୟଗୁଡ଼ିକର ଶିରୋନାମର ବ୍ୟଞ୍ଜନା ମଧ୍ୟ ପ୍ରାୟ ସର୍ବତ୍ର କାବ୍ୟିକ ଓ ଚିତ୍ରଗ୍ରାହୀ। ଅନେକ ସ୍ଥାନରେ ଏହା ପ୍ରତୀକାତ୍ମକ ଓ ଆକର୍ଷଣୀୟ। ××× ଏହି ଆନ୍ତର୍ଜାତିକ ରଚନାଗୁଡ଼ିକ ପାଠକଲେ ଯେକୌଣସି ସଚେତନ ବ୍ୟକ୍ତି ଜାନକୀବଲ୍ଲଭଙ୍କ ଜ୍ଞାନର ଦିଗନ୍ତ ଦେଖି ଅଭିଭୂତ ହେବେ। ଖୁବ୍ କମ୍ ବୟସରେ ରାଷ୍ଟ୍ରନୀତି ଓ କୂଟନୀତି ବିଷୟରେ ତାଙ୍କର ଗଭୀର ପ୍ରବେଶ ଓ ଧୁରୀଣତା ପାଠକଙ୍କୁ ଚମତ୍କୃତ କରେ।" (ପୃ.୭୩) ଡଃ ଭୂୟାଁଙ୍କ ମତରେ "ଜ୍ଞାନ, ଉଚ୍ଚକାଂକ୍ଷା ଓ ଜନସମ୍ପୃକ୍ତିକୁ ପୁଞ୍ଜି କରି ସେ ନିର୍ଭୀକ ଭାବରେ ଲମ୍ଫ ଦେଇଛନ୍ତି ରାଜନୀତିକୁ। ଉପଯୁକ୍ତ ବ୍ୟକ୍ତିତ୍ୱ ଓ ଅନୁଭବ ଥିଲେ କେବଳ ମୂଲ୍ୟବୋଧ ଓ ମନୋବଳକୁ ଆୟୁଧ କରି ଦେଶ ଗଠନରେ ଜଣେ ସାର୍ଥକ ସାରଥି ଭାବରେ ପ୍ରତିଷ୍ଠିତ ହୋଇପାରିବ–ଏକଥା ନିର୍ବିବାଦରେ ପ୍ରତିପାଦନ କରିପାରିଛନ୍ତି ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ।" କହିବାକୁ ଗଲେ ଜାନକୀବଲ୍ଲଭ ସମଗ୍ର ଜୀବନ ବିତିଛି ଅନ୍ୱେଷଣରେ। ଏ ଅନ୍ୱେଷା ଅମୃତର ସନ୍ଧାନ, ଜିଜ୍ଞାସା ପୁଣି ଅଦୃଶ୍ୟର ରହସ୍ୟ ଉପଲବ୍ଧି, ଆଉ ସତ୍ୟସନ୍ଧାନପାଇଁ ଏକନିଷ୍ଠ ତପସ୍ୟା ଓ ସାଧନା। ଯାହା ଦର୍ଶାଇଛନ୍ତି ଶ୍ରୀଯୁକ୍ତ ଭୂୟାଁ।

ଗ୍ରନ୍ଥଟିର ତୃତୀୟ ତରଙ୍ଗର ଶିରୋନାମ ରହିଛି–'ସ୍ୱପ୍ନ, ସଂକଳ୍ପ ଓ ସିଦ୍ଧି'। ଏହି ପର୍ଯ୍ୟାୟରେ ସେ ଜାନକୀବଲ୍ଲଭଙ୍କ ରାଜନୈତିକ ଜୀବନର ସଫଳତା ଓ କୃତିତ୍ୱକୁ ତନ୍ନ ତନ୍ନ

କରି ବିଶ୍ଳେଷଣ କରିଛନ୍ତି। ଏସବୁକୁ ପ୍ରମାଣସିଦ୍ଧ କରିବାପାଇଁ ସେ ବହୁ ସରକାରୀ ନଥିର ନଜିର ଦେଇଛନ୍ତି। ଉଦ୍ଧୃତିଗୁଡ଼ିକ ବିଭିନ୍ନ ସମ୍ବାଦପତ୍ରରୁ ମଧ୍ୟ ସଂଗୃହୀତ ହୋଇଛି। କେନ୍ଦ୍ରମନ୍ତ୍ରୀ, ଓଡ଼ିଶାର ମୁଖ୍ୟମନ୍ତ୍ରୀ, ରାଜ୍ୟପାଳ ପ୍ରଭୃତି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନିର୍ବାହ କରିବା ଅବସରରେ ସେ ଓଡ଼ିଶା ପାଇଁ କି କି ସ୍ୱପ୍ନ ଦେଖିଛନ୍ତି ତା'ର ବିଶଦ ବିବରଣୀ ଦେଇଛନ୍ତି ଲେଖକ। ବାସ୍ତବରେ ଶ୍ରୀମଦ୍ ଭଗବଦ୍‌ଗୀତାରେ କର୍ମଯୋଗୀର ବ୍ୟାଖ୍ୟା ଯେପରି କରାଯାଇଛି ଜାନକୀବଲ୍ଲଭ ଜଣେ ଯଥାର୍ଥ କର୍ମଯୋଗୀ ଏଥିରେ ଦ୍ୱିରୁକ୍ତି ନାହିଁ। ସିଦ୍ଧାନ୍ତ ଓ ସାଧନର ମଧୁର ସମନ୍ୱୟ ହିଁ ଯୋଗ। ଜାନକୀବଲ୍ଲଭ ସ୍ୱପ୍ନ ଦେଖିଛନ୍ତି। ସଂକଳ୍ପ ନେଇଛନ୍ତି। ନିଷ୍ପାପର ଭାବରେ ତାକୁ ଫଳବତୀ କରିବାପାଇଁ ପ୍ରୟାସ କରିଛନ୍ତି। ଏହି ସ୍ୱପ୍ନମାନଙ୍କ ମଧ୍ୟରେ ରହିଛି, ହଜାରେ ଦିନରେ ହଜାରେ ଶିଳ୍ପ, କୃଷି ଓ କୃଷକର ବିକାଶ, ବିଶୁଦ୍ଧ ପାନୀୟ ଜଳ ଯୋଗାଣ, ବିଦ୍ୟୁତ୍ ଉତ୍ପାଦନରେ ଅଗ୍ରଗତି, ଓଡ଼ିଆ ଭାଷାକୁ ସରକାରୀ ଭାଷାର ମାନ୍ୟତା ପ୍ରଦାନ, ପର୍ଯ୍ୟଟନ ଶିଳ୍ପର ବିକାଶ, ସ୍ୱାସ୍ଥ୍ୟର ବିକାଶ, ପୂଜାପୂଜାର ବିପୁଳ ସମ୍ଭାର, ଦୁର୍ବଳଙ୍କୁ ସହାୟତା, ଶିକ୍ଷାର ପ୍ରଗତି ପ୍ରଭୃତି ଯାବତୀୟ ଜନକଲ୍ୟାଣମୂଳକ କାର୍ଯ୍ୟ। ଏ ସଂପର୍କରେ ଲେଖକ ବିସ୍ତୃତ ଆଲୋଚନା କରିଛନ୍ତି। ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ସେ କର୍ମତତ୍ପର ଥିଲେ। ଦୀର୍ଘକାଳ ରାଜନୈତିକ ଜୀବନରେ ଯୁବକମାନଙ୍କୁ ନେଇ ସେ ସ୍ୱପ୍ନ ଦେଖିଛନ୍ତି। ସେ ସ୍ୱପ୍ନ ତାଙ୍କ ପୁରୋଦୃଷ୍ଟିର ପରିଚୟ।

ରାଜନୈତିକ ଜୀବନର ତିମି-ତିମିଙ୍ଗଳପୂର୍ଣ୍ଣ ଗଭୀର ସାଗରରେ ସେ ବୁଡ଼ ମାରିଛନ୍ତି ଜଣେ ପୋଖତବୁଡ଼ାଳି ଭଳି। କୌଣସି ଦୁଃସ୍ଥିତି ପାଖରେ ହାର ମାନି ନାହାନ୍ତି। ଝଡ଼ଝଞ୍ଜା ବୋହିଛି। ରାସ୍ତା କଣ୍ଟକିତ। ଘନ ଅରଣ୍ୟର ଦୁର୍ବହ ଅନିଶ୍ଚିତତା। ପୁଣି ସମୟର ଉଠାଣି ଗଡ଼ାଣି। କେତେବେଳେ ଜରୁରିକାଳୀନ ପରିସ୍ଥିତିର ଅନିଶ୍ଚିତତା, ଇଲଷ୍ଟ୍ରେଟେଡ ଉଇକ୍ଲିର ସମସ୍ୟା ଓ କେବେ ପୁଣି ବିରୋଧୀଦଳର ଶାଣିତ ବାକ୍ୟବାଣ, ତୀକ୍ଷ୍ଣାସ୍ତ୍ର ନିକ୍ଷେପ... କେଉଁଥିରେ ଜୀବନବିମୁଖ ହୋଇ ନାହାନ୍ତି ଜାନକୀବଲ୍ଲଭ। ପଛଘୁଞ୍ଚା ଦେଇ ନାହାନ୍ତି। ଓହରି ଯାଇ ନାହାନ୍ତି ରାଜନୈତିକ ପ୍ରବାହରୁ। ଗଭୀର ଆତ୍ମପ୍ରତ୍ୟୟ, ଅସୀମ ଧୈର୍ଯ୍ୟ ଓ ଆତ୍ମବିଶ୍ୱାସ। ନିରୁଦ୍‌ବିଗ୍ନ, ଧୀର, ଶାନ୍ତ, ସ୍ଥିର ଗୀତାର ସ୍ଥିତପ୍ରଜ୍ଞ ପରି। ଘନ କୁହେଳିପରି ଚତୁର୍ଦ୍ଦିଗରୁ ମାଡି ଆସୁଥିବା ବିପଦ ଅପସରି ଯାଇଛନ୍ତି ତାଙ୍କ ତୀକ୍ଷ୍ଣ ବୁଦ୍ଧି ଓ ପ୍ରଜ୍ଞାର ଆଲୋକ ଉଦ୍‌ଭାସରେ। ମହାଭାରତର କୂଟନୀତି, ରାଜନୈତିକ ଦର୍ଶନ, ଶାସନ ବ୍ୟବସ୍ଥାରେ ନୀତିଆଦର୍ଶ ତାଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଛି। ପ୍ରଭାବିତ କରିଛି ତାଙ୍କ ରାଜନୈତିକ ବ୍ୟକ୍ତିସତ୍ତାକୁ। ସେଥିପାଇଁ ସେ ଏତେ ସଫଳ। ବୁଦ୍ଧି ଓ ହୃଦୟବତ୍ତାର ମନୋଜ୍ଞ ସମାହାର ତାଙ୍କ ରାଜପୁରୁଷର ସତ୍ତା। ଲେଖକ ତାଙ୍କ ବିଭିନ ଭୂମିକାକୁ ସାମ୍ପ୍ରତିକ ରାଜନୀତି ପରିପ୍ରେକ୍ଷୀରେ ଆକଳନ କରିଛନ୍ତି। ତାଙ୍କ ସମଗ୍ରକାଳ ମଧ୍ୟରେ ନିର୍ବାଚନ ରାଜନୀତିରେ ସେ ଯେଉଁ ସଫଳତା ହାସଲ କରିଛନ୍ତି ସେସବୁ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଛନ୍ତି ଡକ୍ଟର ଭୂୟାଁ।

ପ୍ରତ୍ୟକ୍ଷ ରାଜନୀତିରେ ସେ ଚଢ଼ିଛନ୍ତି ଅନେକ ଉତ୍ତରଣର ସୋପାନ। ଲୋକସଭା ସାଂସଦ, କେନ୍ଦ୍ର ମନ୍ତ୍ରିପରିଷଦର ସଭ୍ୟ, ପ୍ରଦେଶ କଂଗ୍ରେସ କମିଟିର ସଭାପତି, କେନ୍ଦ୍ର କ୍ୟାବିନେଟ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ (୩ଥର) ସର୍ବଶେଷରେ ଆସାମର ରାଜ୍ୟପାଳ–ଏପରି ଦୀର୍ଘକାଳ ଧରି

ରାଜନୈତିକ ଦିଗ୍‌ବଳୟକୁ ଦୀପ୍ତିମନ୍ତ କରିଥିବା ଜାନକୀବଲ୍ଲଭଙ୍କ ରାଜନୈତିକ ଆଭିମୁଖ୍ୟ, ଦୋଷ-ଦୁର୍ବଳତା, ଉତ୍ଥାନପତନ ପ୍ରଭୃତି ଯାବତୀୟ ବିଷୟକୁ ଲେଖକ ଚମତ୍‌କାର ଭାବରେ ବର୍ଣ୍ଣନା କରିଛନ୍ତି। ଜୀବନୀ ଲେଖିବା ଏକ ସାଧାରଣ କଳା ନୁହେଁ। ଜଣେ ବ୍ୟକ୍ତିଙ୍କୁ ଅତି ଗଭୀର ଭାବରେ ଅନୁଶୀଳନ କରିବା ପ୍ରୟାସରେ ବ୍ୟକ୍ତିଙ୍କର ଅନ୍ତଃପ୍ରଦେଶରେ ପ୍ରବେଶ କରିବାକୁ ହୋଇଥାଏ। ଡଃ ଗୋବିନ୍ଦ ଭୂୟାଁଙ୍କର ଜାନକୀବଲ୍ଲଭଙ୍କ ସହିତ ଯେଉଁ ନିବିଡ଼ ସଂପୃକ୍ତି ରହିଥିଲା ତାହାର ଚରୁଅନ୍ନ ହେଉଛି ଏହି ଗ୍ରନ୍ଥଟି। "ରାଜନୀତି କ୍ଷେତ୍ରରେ ପଣ୍ଡିତ ନେହରୁଙ୍କ ପରି ପାଣ୍ଡିତ୍ୟ ଓ ଶାସନ ପାରଦର୍ଶିତାରେ ସଫଳ ସମନ୍ୱୟ ତାଙ୍କଠାରେ ପରିଦୃଷ୍ଟ ହୋଇଥାଏ। ଓଡ଼ିଶାର ପ୍ରଗତିପାଇଁ ତାଙ୍କର ନେତୃତ୍ୱ ଅପରିହାର୍ଯ୍ୟ ହୋଇଥିବାବେଳେ ଜାତୀୟ ରାଜନୀତିରେ ସେ ଜଣେ ସଫଳ ରାଷ୍ଟ୍ରନୀତିଜ୍ଞ ଭାବରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି।" ୨୦୧୫ ମସିହାରେ ତାଙ୍କର ମହାପ୍ରୟାଣ ଏ ଜାତି ପାଇଁ ଅପୂରଣୀୟ କ୍ଷତି। ଏହି ପ୍ରବୀଣ ରାଜନୀତିଜ୍ଞଙ୍କ ଜନ୍ମ ଯେପରି ରାଜନୀତିର ମହାସାଗରରେ ଅବଗାହନ ପାଇଁ ଅଭିପ୍ରେତ ଥିଲା। ଲେଖକ ଭୂୟାଁ ତାଙ୍କ ସଫଳ ଜୀବନର ବହୁ ଅନାଲୋଚିତ ଅଧ୍ୟାୟକୁ ଉନ୍ମୋଚନ କରିଛନ୍ତି ନିଷ୍ଠା ଓ ଆନ୍ତରିକତାର ସହିତ। ଜାନକୀବଲ୍ଲଭ ଯେ ଜଣେ ମାନବଧର୍ମରେ ବିଶ୍ୱାସୀ ଓ ଧର୍ମ ନିରପେକ୍ଷ ବ୍ୟକ୍ତି ଥିଲେ ତାହା ସେ ଦର୍ଶାଇଛନ୍ତି। ପ୍ରଚଳିତ ମୌଳବାଦ ବିରୋଧରେ ସ୍ୱର ଉତ୍ତୋଳନ କରି ମାନବବାଦ ପ୍ରତିଷ୍ଠା ଦିଗରେ ସେ ବହୁ ଉଲ୍ଲେଖଯୋଗ୍ୟ ପଦକ୍ଷେପ ଗ୍ରହଣ କରିଥିଲେ। ଧର୍ମ, ଦର୍ଶନ, ଆଧ୍ୟାତ୍ମିକତା ଓ ପ୍ରାଚ୍ୟ ସଂସ୍କୃତି ତାଙ୍କ ଅନ୍ତଃଚେତନାର ପ୍ରାଣରସ ହୋଇଥିଲେ ହେଁ ଧର୍ମ ନିରପେକ୍ଷ ମାନବିକତା ଓ ମାନବଧର୍ମକୁ ସର୍ବଶ୍ରେଷ୍ଠ ବୋଲି ସେ ବିଚାରିଛନ୍ତି ଓ ସେ ଦିଗରେ ଦିଗ୍‌ଦର୍ଶନ ଦେଇଛନ୍ତି। ଆସାମରେ ମହିଳାମାନଙ୍କୁ ମସ୍‌ଜିଦରେ ପ୍ରବେଶ କରିବା ଅଧିକାର ଦେବା ତାଙ୍କ ଧର୍ମନିରପେକ୍ଷତା ଓ ମହିଳାଙ୍କ ପ୍ରତି ସମ୍ମାନବୋଧର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ। ଅପରପକ୍ଷରେ ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟରେ ଶ୍ରୀଜଗନ୍ନାଥ ଚେୟାର ପ୍ରତିଷ୍ଠା ତାଙ୍କର ଶ୍ରୀଜଗନ୍ନାଥଙ୍କ ପ୍ରତି ଥିବା ପ୍ରଗାଢ଼ଭକ୍ତି ଓ ଉତ୍କଳପ୍ରୀତିର ନିଦର୍ଶନ।

ଲେଖକ ଜାନକୀବଲ୍ଲଭଙ୍କ ମହାନୁଭବତା ଦେଖାଇବାକୁ ଯାଇ କହିଛନ୍ତି– "ବିଜୁବାବୁଙ୍କ କର୍ମପ୍ରବଣତା ଓ ଦୁଃସାହସିକତାକୁ ଉଲ୍ଲେଖ କରି ତାଙ୍କୁ ସେ 'ଝଡ଼ର ଇଗଲ ଓ ମାଟିର ମୂର୍ତ୍ତିକାର' ବୋଲି ଅଭିହିତ କରିଥିଲେ। ବିଜୁବାବୁଙ୍କର ସାମଗ୍ରିକ ବ୍ୟକ୍ତିତ୍ୱ ଆକଳନରେ କେତେ ସମର୍ଥ ଓ ପରିପୂର୍ଣ୍ଣ ଏ ବାକ୍ୟଟି। କି ଅନୁପମ ବିଶ୍ଳେଷଣ ! ବିଧାନସଭାରେ ସେହି ଅମର ଆତ୍ମାଙ୍କ ପ୍ରତି ଶ୍ରଦ୍ଧା ବ୍ୟକ୍ତ କରି ସେ କହିଥିଲେ, "ବିଜୁବାବୁ ଯିବା ପରଠାରୁ ଗୃହ ଶୂନ୍ୟ ଦେଖାଯାଉଛି। xxx ଏହି ଅନାବିଳ ନିବିଡ଼ ଆତ୍ମୀୟତାର ସ୍ଫୁରଣ ପଛରେ ଜାନକୀବଲ୍ଲଭଙ୍କ ପ୍ରଶସ୍ତତା, ନିଷ୍କପଟ ଭାବ, ନିର୍ମଳ ହୃଦୟବତ୍ତା, ଗୁଣଗ୍ରାହିତା, ବିସ୍ତାରିତ ଉଦାରଭାବର ସଙ୍କେତ ଫୁଟିଉଠିଛି। ତାଙ୍କ ହୃଦୟ ଯୋଦ୍ଧାର ହୃଦୟ। ଯୋଦ୍ଧା ପ୍ରତି ଉପଯୁକ୍ତ ସମ୍ମାନ ଦେବାରେ ପ୍ରାଜ୍ଞ ପ୍ରାଣରେ କୁଣ୍ଠା ଆସିବ ବା କୁଆଡୁ !"(ପୃ.୧୩୪)

ଚତୁର୍ଥ ଅଧ୍ୟାୟଟିର ଶିରୋନାମ ରହିଛି– 'ପ୍ରୟାସ : ପ୍ରଯତ୍ନ ଓ ପ୍ରାପ୍ତି'। କହିବା ବାହୁଲ୍ୟ ଲେଖକଙ୍କ ନାମକରଣରେ କାବ୍ୟିକଛଟା ପ୍ରସ୍ଫୁଟିତ। ଶବ୍ଦ ସଂଯୋଜନା ଧ୍ୱନ୍ୟାତ୍ମକ, ପ୍ରବାହଧର୍ମୀ।

'ଓଡ଼ିଶା ଶାସନର ଏକ ସ୍ୱର୍ଣ୍ଣଯୁଗ' ଶୀର୍ଷକରେ ପ୍ରକାଶିତ ଗ୍ରନ୍ଥଟିର ଉଲ୍ଲେଖକରି ଲେଖକ ଶ୍ରୀଯୁକ୍ତ ସୌମ୍ୟଂରଜନ ପଟ୍ଟନାୟକଙ୍କ ସଂପାଦକୀୟକୁ ଉଦ୍ଧାର କରି କହିଛନ୍ତି ଯେ ଜାନକୀବଲ୍ଲଭଙ୍କ ଶାସନ କାଳରେ ଆରମ୍ଭ ହୋଇଥିବା ବିଭିନ୍ନ କାର୍ଯ୍ୟକ୍ରମ ଓ ତା'ର ସଫଳତା ସଂପର୍କରେ ବିଭିନ୍ନ ଲୋକ ଦେଇଥିବା ମତାମତ ତଥ୍ୟନିଷ୍ଠ। ଓଡ଼ିଶାକୁ ସର୍ବାନ୍ତକରଣରେ ସମୃଦ୍ଧ କରିବାପାଇଁ ସେ ସ୍ୱପ୍ନ ଦେଖିଥିଲେ। ଏ ଦିଗରେ ସେ କେତେଦୂର ସଫଳ ହୋଇଛନ୍ତି ସେକଥା ଭବିଷ୍ୟତ ବିଚାର କରିବ। ଜାନକୀବଲ୍ଲଭ ଯେଉଁ ମହାମାନବମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ଛାତ୍ରାବସ୍ଥାରୁ ସେମାନଙ୍କ ମଧ୍ୟରେ ଥିଲେ ମହାତ୍ମାଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହରୁ, ସ୍ୱାମୀ ବିବେକାନନ୍ଦ, ମଧୁବାବୁ ଓ ପଣ୍ଡିତ ଗୋପବନ୍ଧୁ। ତ୍ୟାଗଭିତ୍ତିକ ଆଦର୍ଶର ମନୋଭୂମି ଉପରେ ଦଣ୍ଡାୟମାନ ହୋଇଛି ତାଙ୍କ ରାଜନୈତିକ ଜୀବନ।

ଏଠାରେ ଲେଖକ 'ଓଡ଼ିଶା ଶାସନର ସ୍ୱର୍ଣ୍ଣଯୁଗ' ଗ୍ରନ୍ଥକୁ ଆଧାର କରି ସର୍ଜନାକର୍ମକୁ ପ୍ରସାରିତ କରିଛନ୍ତି ନାନା ଦିଗରୁ। "ଶ୍ରୀଜଗନ୍ନାଥ, ଭାଷା ଓ ସାହିତ୍ୟ, କଳା ଓ ସଂସ୍କୃତି, କୃଷି, ବିଦ୍ୟୁତ୍, ଶିଳ୍ପ, ଗମନାଗମନ ଓ ପରିବହନ, ଜନଜାତିର ବିକାଶ, ଶିକ୍ଷା ଓ ଗବେଷଣା, ନୂତନ ଚିକିତ୍ସା ପଦ୍ଧତି, ପରିବେଶ, କଟକ ଭୁବନେଶ୍ୱରର ବିକାଶ, ସଂଖ୍ୟାଲଘୁଙ୍କ ସମ୍ମାନ ଓ ସୁରକ୍ଷା ଆଦି ପରିଚ୍ଛେଦରେ ଲିଖିତ ପ୍ରତିବେଦନଗୁଡ଼ିକ ସଂଯୋଜନା କରାଯାଇଛି।" (ପୃ.୧୩୭) ଏହି ଅଧ୍ୟାୟରେ ଜାନକୀବଲ୍ଲଭଙ୍କ ବିଭିନ୍ନ ଜନହିତକର କାର୍ଯ୍ୟ, ଶାସନକାଳରେ ଓଡ଼ିଶାର ପ୍ରଗତି ପାଇଁ ଗ୍ରହଣ କରିଥିବା ପଦକ୍ଷେପ, ଜନଜାତି ପ୍ରୀତି, ଭାଷା ସାହିତ୍ୟ ପ୍ରତି ଗଭୀର ଅନୁରକ୍ତି ପ୍ରଭୃତି ଯାବତୀୟ ବିକାଶ କାର୍ଯ୍ୟକ୍ରମର ବିଚାର ଆଲୋଚନା କରାଯାଇଛି। ଏସବୁ ବିଶ୍ଳେଷଣ ଓ ଆଲୋଚନାରୁ ଜାନକୀବଲ୍ଲଭଙ୍କ ଜୀବନଦୃଷ୍ଟି ଓ ରାଜନୈତିକ ଆଭିମୁଖ୍ୟ ସ୍ପଷ୍ଟ ହୋଇଥାଏ। ଏହି ଅଧ୍ୟାୟଟିରେ ମୁଖ୍ୟତଃ 'ଓଡ଼ିଶା ଶାସନର ସ୍ୱର୍ଣ୍ଣଯୁଗ' ସମ୍ପର୍କରେ ବିସ୍ତୃତ ଆଲୋଚନା କରାଯାଇଛି।

ଜାନକୀବଲ୍ଲଭଙ୍କ ଜୀବନକୁ ମୁଖ୍ୟତଃ ତିନୋଟି ଭାଗରେ ବିଭକ୍ତ କରାଯାଇପାରେ। ପ୍ରଥମତଃ ତାଙ୍କ ବ୍ୟକ୍ତିଗତ ଜୀବନ। ଦ୍ୱିତୀୟରେ ତାଙ୍କ ରାଜନୈତିକ ଜୀବନ ଓ ତୃତୀୟରେ ତାଙ୍କ ସାହିତ୍ୟିକ ଜୀବନ। ଆଶ୍ଚର୍ଯ୍ୟର କଥା ଏହି ତିନୋଟି ଧାରା ମଧ୍ୟରେ ସମନ୍ୱୟ ରକ୍ଷା କରିବା ଅତ୍ୟନ୍ତ କଠିନ ବ୍ୟାପାର ଥିଲା। ତା' ସତ୍ତ୍ୱେ ଏହି ତ୍ରିଧାରାର ମହାମିଳନ ସଂଘଟିତ ହୋଇଥିଲା ତାଙ୍କ ଅନନ୍ୟ ବ୍ୟକ୍ତିତ୍ୱ ଯୋଗୁଁ।

ଏହି ଜୀବନୀଗ୍ରନ୍ଥର ପଞ୍ଚମ ଅଧ୍ୟାୟର ଶୀର୍ଷକ ହେଉଛି, 'ସଂଘର୍ଷ : ସଂଘାତ ଓ ସଂସ୍ଥିତି'। ଏହି ଅଧ୍ୟାୟରେ ତାଙ୍କ କୂଟନୀତି, ତାଙ୍କ ରାଜନୈତିକ ଆଦର୍ଶରେ ବିପଦର ଘନଘଟା, ତହିଁରୁ ଉତ୍ତୀର୍ଣ୍ଣ ହେବାର ଧୈର୍ଯ୍ୟ, ସହନଶୀଳତା ଓ ଆତ୍ମବିଶ୍ୱାସ ପ୍ରଭୃତିର ମନୋଜ୍ଞ ଆଲେଖ୍ୟ ଉତ୍କୀର୍ଣ୍ଣ। ଯେଉଁ ଇଲଷ୍ଟ୍ରେଟେଡ ଉଇକ୍ଲି ତାଙ୍କୁ ଜାତୀୟସ୍ତରରେ ନିନ୍ଦିତ କରିବାର ପ୍ରୟାସ କରିଥିଲା, ତାହା ପରବର୍ତ୍ତୀକାଳରେ ମିଥ୍ୟାରୋପ ବୋଲି ପ୍ରମାଣସିଦ୍ଧ ହୋଇଥିଲା। ଉଇକ୍ଲି ଅଗଷ୍ଟ ୨୭ ସେପ୍ଟେମ୍ବର ୨ ସଂଖ୍ୟାରେ ଯେଉଁ ନିଃସର୍ତ୍ତ କ୍ଷମାପ୍ରାର୍ଥନା କରିଥିଲେ, ତାହା ଏହି ଗ୍ରନ୍ଥରେ ଉଦ୍ଧାର କରାଯାଇଛି।

"We regret the damage done to Mr Patnaik's reputation and offer our apologies to him." ଏହି ଅଧ୍ୟାୟରେ ଓଡ଼ିଶାରେ ଘଟିଥିବା କେତେକ ଉଲ୍ଲେଖଯୋଗ୍ୟ ଘଟଣାକୁ ଉଦ୍ଧାର କରିଛନ୍ତି ଲେଖକ। ଗ୍ରାହମ୍-ଷ୍ଟେନ୍‌ସଙ୍କ ପରି ଖ୍ରୀଷ୍ଟଧର୍ମାବଲମ୍ବୀ ସ୍ୱେଚ୍ଛାସେବୀଙ୍କୁ ମନୋହରଗ୍ରାମରେ (ଆନନ୍ଦପୁର) ଓ ତାଙ୍କ ଦୁଇ ବାଳୁତ ପୁତ୍ରଙ୍କୁ ଯେପରି ନାରକୀୟ ଭାବରେ ପୋଡି ମାରିଦିଆଗଲା ତାହା ଥିଲା ଏକ ବିରଳ ଅମାନୁଷିକତା। ସେପରି ମୟୂରଭଞ୍ଜରେ ନନ୍‌ଙ୍କର ଗଣବଳାତ୍କାର, ଅଞ୍ଜନା ମିଶ୍ର ଗଣବଳାତ୍କାର ପ୍ରଭୃତି ନିନ୍ଦନୀୟ ଘଟଣା ଓଡ଼ିଶାକୁ ସମଗ୍ର ବିଶ୍ୱରେ ନିନ୍ଦିତ କଲା। ଏସବୁ ଦୁଃଖଦ ଘଟଣା ତାଙ୍କୁ ମାନସିକସ୍ତରରେ ଅତ୍ୟନ୍ତ ବିପନ୍ନ ଓ ବ୍ୟଥିତ କଲା। ନୀତିଗତ ଭାବରେ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ ରାଜ୍ୟପାଳ ସି. ରଙ୍ଗରାଜନଙ୍କ ନିକଟରେ। ଲେଖକ ଡଃ ଭୂୟାଁ ଏହାକୁ ବେଶ କରୁଣ ଓ ହୃଦୟସ୍ପର୍ଶୀ ଭାଷାରେ ବର୍ଣ୍ଣନା କରିଛନ୍ତି। ଲେଖକଙ୍କ ଭାଷାରେ ଏହି ଇସ୍ତଫାପତ୍ର ସତେକି ଓଡ଼ିଶା ରାଜ୍ୟ କଂଗ୍ରେସ ପାଇଁ ଥିଲା ଏକ ଦୁର୍ଭାଗ୍ୟର ପରୱାନା। ୧୯୯୯ ମସିହାଠାରୁ ଏଯାବତ୍ ଓଡ଼ିଶା କଂଗ୍ରେସ ଅଣ୍ଟା ସଳଖି ଛିଡ଼ା ହୋଇ ପାରି ନାହିଁ। ଜାତୀୟ ସ୍ତରରେ ଜାନକୀବଲ୍ଲଭଙ୍କ ପ୍ରତି ଯେଉଁ ଆସ୍ଥା ଓ ବିଶ୍ୱାସ ଥିଲା ସେପରି ଆସ୍ଥା ଓ ବିଶ୍ୱାସ ଆଉ କୌଣସି ସମୟରେ କୌଣସି ନେତାଙ୍କଠାରେ ଦେଖାଯାଇ ନାହିଁ। ଜାନକୀବଲ୍ଲଭଙ୍କ ନିଷ୍କ୍ରମଣ ପରେ ରାଜ୍ୟ କଂଗ୍ରେସ ଦଳର ବିପର୍ଯ୍ୟୟ ଆରମ୍ଭ ହୋଇଗଲା। ଜଣେ ବିଚକ୍ଷଣ ରାଜନୀତିଜ୍ଞ ଥିଲେ ଜାନକୀବଲ୍ଲଭ। ତାଙ୍କୁ ଅନେକେ 'ଓଡ଼ିଶାର ଚାଣକ୍ୟ' ବୋଲି ଆଖ୍ୟା ଦେଇଥିଲେ। ଡଃ ଗୋବିନ୍ଦ ଭୂୟାଁ ଓଡ଼ିଶା ରାଜନୀତିର ଦୃଶ୍ୟପଟକୁ ଅତି ମନୋଜ୍ଞ ରୀତିରେ ପରିବେଷଣ କରିଛନ୍ତି।

୨୦୦୪ରୁ ୨୦୦୯ ମସିହା ପର୍ଯ୍ୟନ୍ତ ବିରୋଧୀଦଳର ନେତା ଭାବରେ ଓଡ଼ିଶାର ସ୍ୱାର୍ଥ ପାଇଁ ସେ ଲଢ଼େଇ କରିଛନ୍ତି। ବିଧାନସଭାରେ ତାଙ୍କର ତଥ୍ୟଭିତ୍ତିକ, ସତ୍ୟନିଷ୍ଠ ଓ ତଥ୍ୟ ଆଧାରିତ ଆଲୋଚନାଗୁଡ଼ିକରେ ତାଙ୍କର ଅସାଧାରଣ ବିଦ୍‌ବତ୍ତା, ପାଣ୍ଡିତ୍ୟ, ବାଗ୍ମିତା, ବହୁ ଶାସ୍ତ୍ର ଅଧ୍ୟୟନ ପାରିଦର୍ଶିତା, ମାନବବାଦୀ ଦୃଷ୍ଟିକୋଣ ଓ ପ୍ରଖର ବୁଦ୍ଧି ଓ ପ୍ରତ୍ୟୁପନ୍ନମତିତାର ସ୍ପଷ୍ଟ ପରିଚୟ ମିଳିଥାଏ। ଏସବୁ ମୂଲ୍ୟାୟନ ଓ ଅନୁଶୀଳନ କଲାବେଳେ ଯେ କେହି ବିସ୍ମିତ ହୋଇଥାଏ। ୨୦୦୫ ମସିହାରେ 'ରେଭେନ୍ସା ବିଶ୍ୱବିଦ୍ୟାଳୟ ବିଲ' ଆଲୋଚନା କାଳରେ ରେଭେନ୍ସା ସାହେବଙ୍କ ନାମକୁ କଲେଜ ନାମରୁ କାଟିଦେବାପାଇଁ ଯେଉଁ ପ୍ରସ୍ତାବ ଆସିଲା ସେ ସମ୍ପର୍କରେ ଜାନକୀବଲ୍ଲଭ ଯେଉଁ ସୁଚିନ୍ତିତ ମତ ଦେଇଥିଲେ, ତାହା ପ୍ରଣିଧାନଯୋଗ୍ୟ। ଏ ସଂପର୍କରେ ଲେଖକ ଭୂୟାଁ ବିଶେଷ ଆଲୋକପାତ କରିଛନ୍ତି। ଲେଖକଙ୍କ ଭାଷାରେ, ରେଭେନ୍ସା ସାହେବଙ୍କ ଓଡ଼ିଶାପ୍ରୀତି ହିଁ ଆଧୁନିକ ଓଡ଼ିଶାର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲା। ଏହା ଭୁଲିଯିବା ଉଚିତ ନୁହେଁ ଯେ, ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତିକୁ ଭଲପାଉଥିବା ଜଣେ ବିଦେଶୀ ଶାସକ ଓଡ଼ିଶାରେ ଆଧୁନିକ ଓଡ଼ିଶାର ପ୍ରାଣପ୍ରତିଷ୍ଠାତା ଥିଲେ ଏପରି ଏକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବା ଅବସରରେ। ଲେଖକଙ୍କ ଭାଷାରେ–"ଦଳୀୟ ରାଜନୀତିର ଚିନ୍ତାଧାରାରୁ ଉର୍ଦ୍ଧ୍ୱରେ ରହି ଜଣେ ଯଥାର୍ଥ ଜନନେତା ଭାବରେ ସେ ନିଜର ଗଠନମୂଳକ ମତ ଓ ପରାମର୍ଶ ବିଧାନସଭାରେ ଖୁବ୍ ଦକ୍ଷତାର ସହିତ ସ୍ପଷ୍ଟ ଭାବରେ ଉପସ୍ଥାପନ କରିଛନ୍ତି। ମୁଖ୍ୟମନ୍ତ୍ରୀ ଭାବରେ ସେ ଯେପରି

ପାରଦର୍ଶୀ, ବିରୋଧୀଦଳର ନେତା ରୂପେ ସେ ଅନୁରୂପ ସଫଳ ଓ ସମର୍ଥ–ଏକଥା ନିର୍ବିବାଦରେ ପ୍ରତିପାଦିତ ହୋଇପାରିଛି।" (ପୃ.୨୦୯)

ଆସାମରେ ରାଜ୍ୟପାଳ ଭାବରେ ୨୦୦୯ ମସିହା ଡିସେମ୍ବର ମାସ ଏଗାର ତାରିଖରେ ଯୋଗଦିଅନ୍ତି ଜାନକୀବଲ୍ଲଭ। ସେଠିକାର ରହଣିକାଳ ଓ କାର୍ଯ୍ୟଧାରା ଅତ୍ୟନ୍ତ ପ୍ରଶଂସନୀୟ ଓ ଲୋକାଭିମୁଖୀ ଥିଲା। ଏ ସଂପର୍କରେ ଡକ୍ଟର ଭୂୟାଁ ବିଶେଷ ଆଲୋଚନା କରିଛନ୍ତି। ବହୁ ସ୍ମରଣୀୟ ଉଦ୍ଧୃତିକୁ ସେ ଉଦ୍ଧାର କରିଛନ୍ତି। ବହୁ ଅନାଲୋଚିତ ଦିଗକୁ ଉନ୍ମୋଚନ କରିଛନ୍ତି। ଡକ୍ଟର ଭୂୟାଁ ଏହି ରହଣିକାଳ ମଧ୍ୟରେ ତାଙ୍କୁ ଅତି ଅନ୍ତରଙ୍ଗ ଭାବରେ ଚିହ୍ନିବାର ସୁଯୋଗ ପାଇଥିଲେ। ଆସାମ ଓ ଓଡ଼ିଶା ମଧ୍ୟରେ ଯେଉଁ ସାରସ୍ୱତ, ଆଧ୍ୟାତ୍ମିକ, ସାଂସ୍କୃତିକ ସଂପର୍କ ରହିଛି କେଉଁ ଅଜଣା ସମୟରୁ ତାକୁ ପୁନରୁଦ୍ଧାର କରିବାର ପ୍ରୟାସ କରିଛନ୍ତି ମହାମାନ୍ୟ ରାଜ୍ୟପାଳ ଜାନକୀବଲ୍ଲଭ। ଆସାମର ଜନଜୀବନ, ସଂସ୍କୃତି, ସାହିତ୍ୟ, ଧର୍ମ, ପରମ୍ପରା ପ୍ରଭୃତି ସଂପର୍କରେ ତାଙ୍କ ଅଧ୍ୟୟନ, ଅନୁଶୀଳନ ଓ ଅବବୋଧକୁ ଚମତ୍କାର ଭାବରେ ଲିପିବଦ୍ଧ କରିଯାଇଛନ୍ତି। ଆସାମର ପ୍ରସିଦ୍ଧ ଶାକ୍ତପୀଠ କାମାକ୍ଷା, ଆସାମର ବିହୁ ନୃତ୍ୟ, ଆସାମର ପ୍ରଖ୍ୟାତ ଲେଖିକା ଇନ୍ଦିରା ଗୋସ୍ୱାମୀ, ଆସାମର ସାହିତ୍ୟାନୁଷ୍ଠାନ, ଆସାମର ସତ୍ର : ସାମାଜିକ ଜୀବନର ବିଦ୍ୟାଳୟ, ଅମ୍ବୁବାସୀ ମେଳା, ଆସାମର ହୟଗ୍ରୀବ ମାଧବରୂପୀ ଶ୍ରୀଜଗନ୍ନାଥ, ଆସାମର ଝ, ଆସାମର କୁଳଗୁରୁ ଶ୍ରୀମନ୍ତ ଶଙ୍କରଦେବ ଓ ତାଙ୍କର ଉରେଷା ବର୍ଣ୍ଣନା ପ୍ରଭୃତି ରଚନା ମାଧ୍ୟମରେ ସେ ଗୋଟିଏ ପ୍ରାଚୀନଜାତିକୁ ଓଡ଼ିଶାବାସୀଙ୍କୁ ପରିଚିତ କରାଇଛନ୍ତି। ଏ ସମ୍ପର୍କରେ ଲେଖକ କୁହନ୍ତି– "ରାଜ୍ୟପାଳ ଭାବରେ ନିଷ୍ଠାର ସହିତ ଦାୟିତ୍ୱ ନିର୍ବାହ କରିବା ସଙ୍ଗେ ସଙ୍ଗେ ନିଜର ସଂସ୍କୃତିପ୍ରୀତି, ବହୁଶାସ୍ତ୍ରଦର୍ଶିତା ଓ ପାଣ୍ଡିତ୍ୟ ବଳରେ ଜାନକୀବଲ୍ଲଭ ଆସାମର ଜନଗଣଙ୍କଦ୍ୱାରା ବେଶ ଆଦୃତ ଓ ସମ୍ମାନିତ ହୋଇଛନ୍ତି। କର୍ମଭୂମିର ଦାୟିତ୍ୱ ସହ ସେ ନିଜର ଜନ୍ମଭୂମି ଓଡ଼ିଶାକୁ ଏହି କର୍ମଭୂମି ସହିତ ସାଂସ୍କୃତିକ ସମନ୍ୱୟର ମୈତ୍ରୀ ମନ୍ତ୍ରରେ ଅଭିମନ୍ତ୍ରିତ କରିବା ଦିଗରେ ଅଧିକ ସଚେତନ ଓ କର୍ତ୍ତବ୍ୟନିଷ୍ଠ ହୋଇଛନ୍ତି। କେହି କେହି ରାଜ୍ୟପାଳ ପଦବୀକୁ ବିଳାସ ଓ ବିଶ୍ରାମର ବିସ୍ତାରିତ ମଞ୍ଚ ବୋଲି ବିବେଚନା କରୁଥିବା ବେଳେ ଜାନକୀବଲ୍ଲଭ ତାହାକୁ ଅଭିଜ୍ଞତା ଉପଯୋଗର ସୀମାହୀନ ସୁଯୋଗ ଏବଂ ପାରିଦର୍ଶିତା ପ୍ରଦର୍ଶନର ବାଞ୍ଛିତ ଭୂମି ଭାବରେ ବ୍ୟବହାର କରୁଥିବାର ଲକ୍ଷ୍ୟ କରାଯାଇଛି।" (ପୃ.୩୩୪)

ସାରସ୍ୱତ ସାଧକ ଜାନକୀବଲ୍ଲଭଙ୍କ ବ୍ୟସ୍ତବହୁଳ ଜୀବନରେ ସୁଧାବର୍ଷୀ ଜାହ୍ନବୀଙ୍କ ପରି ମା' ସରସ୍ୱତୀଙ୍କର ଅବ୍ୟାହତ କରୁଣା ନିରନ୍ତର ଝରୁଥିଲା। ଜାନକୀବଲ୍ଲଭଙ୍କ ସାରସ୍ୱତ ସିଦ୍ଧିକୁ ଲେଖକ ମୂଲ୍ୟାୟନ କରିଛନ୍ତି ଅତି ମନୋଜ୍ଞ ଶୈଳୀରେ। ଏହି ଅଧ୍ୟାୟଟିର ଶବ୍ଦଚାତୁର୍ଯ୍ୟ ପ୍ରାଣସ୍ପର୍ଶୀ। ମନ୍ମୟ, ପ୍ରଜ୍ଞାଦୀପ୍ତ ଓ ସ୍ରଷ୍ଟାମାନସର ଆବେଗପ୍ରବଣତାକୁ ପ୍ରତୀକିତ କରିଥାଏ। ନାମକରଣ ମଧ୍ୟ କାବ୍ୟିକ ଅନ୍ୟାନ୍ୟ ପରିଚ୍ଛେଦ ପରି। 'ପ୍ରଜ୍ଞା, ପ୍ରଶାନ୍ତି ଓ ସାରସ୍ୱତ ସ୍ୱାକ୍ଷର'। "ଏହି କାରଣରୁ କବିତାର ଗତି କାଳରୁ କାଳକୁ, ମଣିଷରୁ ମଣିଷର ହୃଦୟକୁ। ଏହା ଅବାରିତ, ଅପ୍ରତିହତ, ଦୃଶ୍ୟରୁ ଦୃଶ୍ୟାତୀତ କବିତାର ଗତି। ତା'ର ଗତିପଥରେ କେତେ କେତେ ଅନୁଭୂତି– କେତେ ଅଶ୍ରୁ ବିଷାଦର ଗାଥା–କେତେ ଆନନ୍ଦ ଉଲ୍ଲାସର କାହାଣୀ। ସବୁ ରୂପ ନେଇଯାଏ

ଗୋଟିଏ ଗୋଟିଏ ଶବ୍ଦରେ। କେତେବେଳେ ତାହା ହୋଇଯାଏ ପ୍ରତୀକ – ଦୃଶ୍ୟ ଓ ଅଦୃଶ୍ୟ, ସ୍ୱର୍ଗ ଓ ନରକର ସଂଯୋଗ ସେତୁ। କେତେବେଳେ ମିଥ୍, କେତେବେଳେ ଚିତ୍ରକଳ୍ପ, ଆର୍କିଟାଇପ, ଯାହା ହେଲେବି ପରିଚୟ କେବଳ କବିତା, ସେ ଚିରସ୍ରୋତା-ସ୍ରୋତସ୍ୱିନୀ। କବିତା ସ୍ୱତଃସ୍ଫୂର୍ତ୍ତ ଆବେଗର ଉଚ୍ଛ୍ୱାସମୟ ଅଭିବ୍ୟକ୍ତି। ସ୍ମୃତି-ମନ୍ଥନର ଶାବ୍ଦିକ ରସରୂପାୟନ। ବର୍ତ୍ତମାନ, ଅତୀତ ଓ ଭବିଷ୍ୟତ– ତ୍ରିକାଳର ଏକୀଭୂତ ରୂପ କବିତା। ଜାତି ଓ ଯୁଗର ନିବିଡ଼ ତଥା ନିଭୃତ ଚିତ୍ତଗହନର ଅବିକଳ କଥା।” (ପୃ.୨୧୦)

ଏଇ ବିଚାର ମାନଦଣ୍ଡରେ ସେ ଜାନକୀବଲ୍ଲଭଙ୍କ କବିତାଗୁଡ଼ିକର କଳାତ୍ମକ ମୂଲ୍ୟ ନିର୍ଦ୍ଧାରଣ କରିଛନ୍ତି। ‘ସିନ୍ଧୁ ଉପତ୍ୟକା’ର ମାର୍ମିକ ବିଶ୍ଳେଷଣ ହୋଇଛି ଏହି ଅଧ୍ୟାୟର ପ୍ରାରମ୍ଭରେ। ତାଙ୍କ ମତରେ ଏହି ଗ୍ରନ୍ଥଟି ପ୍ରଜ୍ଞାଦୀପ୍ତ ଓ ସ୍ୱଚ୍ଛ କବିତ୍ୱର ଅମୃତମୟ ଫଳ। ବ୍ୟକ୍ତିଗତ ଜୀବନରେ ଭେଟୁଥିବା ଅସଂଖ୍ୟ ପ୍ରଶ୍ନବାଚୀର ବିଦଗ୍ଧ ଉତ୍ତର। ରସଘନ କାବ୍ୟଚେତନାର ଶାବ୍ଦିକ ଅଭିବ୍ୟକ୍ତି। ଧ୍ୱନ୍ୟାତ୍ମକ। ଭାବ ବିଶ୍ୱରେ ରହିଛି ସୁଦୂର ଆହ୍ୱାନ ପୁଣି ସାମାଜିକ ଅଙ୍ଗୀକାର। ଏହା ମନ୍ମୟ, ତନ୍ମୟ ପୁଣି ତୁରୀୟ ଜଗତର ରହସ୍ୟମୟ ଉପଲବ୍ଧିର କୋମଳ, ଲଳିତ, ମଧୁର ପ୍ରକାଶ। ଲେଖକ ସିନ୍ଧୁ ଉପତ୍ୟକାର ଛବିଶଟି ଯାକ କବିତାକୁ କାଳଜୟୀ ସୃଷ୍ଟିର କଷଟିରେ ପରଖିଛନ୍ତି। ଶବ୍ଦବ୍ରହ୍ମଙ୍କ ନୀରାଜନା ପରିପ୍ରେକ୍ଷୀରେ କାବ୍ୟମନୀଷାକୁ ଓ ସୃଜନସ୍ୱପ୍ନକୁ କବି ଜାନକୀବଲ୍ଲଭଙ୍କ ଏକ ସ୍ୱତନ୍ତ୍ର ପରିଚୟ ବୋଲି ପ୍ରତିପାଦନ କରିଛନ୍ତି। ଏହି ରଚନାସମୂହ ହିଁ ତାଙ୍କୁ ଅମୃତତ୍ୱର ଅଧିକାରୀ କରିବ ବୋଲି ସେ ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି। “ଜାନକୀବଲ୍ଲଭଙ୍କ କାବ୍ୟଜିଜ୍ଞାସା ହେଉଛି ଜୀବନ ଜିଜ୍ଞାସର ମନ୍ମୟ ସ୍ୱରଲିପି। ତାଙ୍କ ସୃଷ୍ଟିରେ ବ୍ୟକ୍ତି ବିଶ୍ୱ ହୋଇଛି ବିଶ୍ୱବ୍ୟକ୍ତିରେ ପରିଣତ। ଆତ୍ମିକ ଅନୁଭବ ମାନବିକ ଅନୁଭବରେ ହୋଇଛି ସ୍ନିଗ୍ଧ, ସୁନ୍ଦର ଓ ଶାଣିତ। ସାମାଜିକ ଜୀବନ ଜିଜ୍ଞାସା ଜାତୀୟ ଜୀବନଜିଜ୍ଞାସା ସହିତ ହୋଇଛି ଏକାତ୍ମ।” (ପୃ.୨୨୦)

ପ୍ରବନ୍ଧ ‘ସ୍ୱପ୍ନ ଓ ସଂକଳ୍ପ’ ଶିରୋନାମରେ ଲେଖକ ଜାନକୀବଲ୍ଲଭଙ୍କ ଚିନ୍ତା ଓ ଚେତନାର ପ୍ରସାରିତ ଦୃଷ୍ଟିର ବ୍ୟାଖ୍ୟା କରିଛନ୍ତି। ରାଶି ରାଶି ପ୍ରବନ୍ଧ ସେ ରଚନା କରିଥିଲେ ତାଙ୍କ ସମଗ୍ର ଜୀବନକାଳ ମଧ୍ୟରେ। ତାଙ୍କ ସାରସ୍ୱତ, ସୃଜନସ୍ୱପ୍ନ ଜଗତର କଲ୍ୟାଣ ଓ ରାଷ୍ଟ୍ରର ମଙ୍ଗଳବିଧାନ। ‘ଏହି ସ୍ୱପ୍ନ ଖିଆଲି ମନର ଅଭିବ୍ୟକ୍ତି ନୁହେଁ, ଅହଂକାରୀ ରାଜନୀତିଜ୍ଞର କ୍ଷମତା ବିଳାସୀ ଇସ୍ତାହାର ନୁହେଁ; ଜଣେ ସଂସ୍କୃତିପ୍ରେମୀ, ଜାତିପ୍ରେମୀ, ଦେଶପ୍ରେମୀ, କ୍ରାନ୍ତିପୁରୁଷର ବଳିଷ୍ଠ, ମାନସିକ ଅଭିବ୍ୟକ୍ତି।’ (ପୃ.୨୨୩) ତାଙ୍କ ଗଦ୍ୟଶୈଳୀ ରୁଚିର, ମାର୍ଜିତ, ସଂସ୍କୃତ, ଶୁଦ୍ଧ, ଭାବଗର୍ଭକ, ସରଳ, ସାବଲୀଳ, ସୁକୁମାର ଓ ବୈଚିତ୍ର୍ୟମଣ୍ଡିତ। ବହୁ ବର୍ଷ ସାମ୍ବାଦିକତା ଥିଲା ତାଙ୍କ ବୃତ୍ତି ଓ ପ୍ରବୃତ୍ତି ଏକ ସବୁଜ ଶ୍ୟାମଳ ମନୋଭୂମି। ରାଶି ରାଶି ଚିନ୍ତାଗର୍ଭକ, ସମାଜ ଅଭିମୁଖ୍ୟ, ଜନକଲ୍ୟାଣକର ରଚନା ସେ ଭେଟି ଦେଇଛନ୍ତି ପାଠକମାନଙ୍କୁ। ନିର୍ଭୀକ, ନିଷ୍କପଟ ଓ ସତ୍ୟନିଷ୍ଠ ଏହି ସଂପାଦକୀୟ କେତେ ଉଚ୍ଚକୋଟୀର ତାହା ଲେଖକ ପର୍ଯ୍ୟାଲୋଚନା କରି ଦେଖାଇଛନ୍ତି। ଜୀବନ ଓ ଜଗତର ଏପରି କୌଣସି ଦିଗ ନାହିଁ, ଯାହା ଜାନକୀବଲ୍ଲଭଙ୍କ ଲେଖନୀକୁ ସ୍ପର୍ଶ କରି ନାହିଁ। ମନୁଷ୍ୟର ଏମିତି କୌଣସି ସମସ୍ୟା ନାହିଁ ଯାହା ତାଙ୍କ ମଗ୍ନ ଚୈତନ୍ୟକୁ ଆଲୋଡ଼ିତ, ଆନ୍ଦୋଳିତ କରି ନାହିଁ। ଜାତିର ପ୍ରାଣସ୍ପନ୍ଦନ ତାଙ୍କୁ ଯେପରି ଉଚ୍ଚାଟିତ କରିଛି,

ଜାତୀୟ ଜୀବନ ସମସ୍ୟା ସେତିକି ବ୍ୟଥିତ କରିଛି। ଆନ୍ତର୍ଜାତୀୟ ସ୍ତରରେ ମାନବିକ ମୂଲ୍ୟବୋଧର ହ୍ରାସ, ଆଦର୍ଶ ବିଚ୍ୟୁତି, ବିଡ଼ମ୍ବିତ ମାନବିକ ନ୍ୟାୟ ତାଙ୍କୁ ବ୍ୟଥାତୁର କରିଛି। ଏସବୁ ତାଙ୍କ ଚେତନାରେ ତାଙ୍କ ଲେଖନୀରେ ଅତି ମର୍ମସ୍ପର୍ଶୀ ଭାବରେ ରୂପାୟିତ ହୋଇଛନ୍ତି। ଲେଖକ ଡଃ ଭୂୟାଁ ସବିଶେଷ ଭାବରେ ସେସବୁର ଆକଳନ କରିବାପାଇଁ ପ୍ରୟାସ କରିଛନ୍ତି। ତାଙ୍କ ସୃଜନ ଅଭୀପ୍ସାର ମର୍ମସ୍ଥଳ ଉଦ୍‌ଘାଟନ ତାଙ୍କ ସୃଜନଶୀଳତାର ମହାଭାଷ୍ୟ ହୋଇଛି। ସର୍ବୋପରି ଦେଶଭକ୍ତି ଉଦ୍ରେକକାରୀ ବହୁ ସୃଷ୍ଟିରେ ଜାନକୀବଲ୍ଲଭଙ୍କ ଦେଶାତ୍ମବୋଧ ଉତ୍କୀର୍ଣ୍ଣ। ସ୍ତମ୍ଭକାର ଭାବରେ ଏସବୁର ସ୍ରଷ୍ଟା କାଳଜୟୀ ପ୍ରତିଷ୍ଠା ଦାବି କରିଥାନ୍ତି।

ରାମାୟଣ, ମହାଭାରତର ଗଦ୍ୟ-ସାରାଂଶ ଏବଂ ସଂସ୍କୃତ ଶ୍ରୀମଦ୍ ଭାଗବତ ଗ୍ରନ୍ଥର ଗଦ୍ୟାନୁବାଦ ଅତ୍ୟନ୍ତ ଉଚ୍ଚକୋଟୀର। ସେପରି ଗୌତମବୁଦ୍ଧ ଜୀବନୀଗ୍ରନ୍ଥ ଏବଂ ବଙ୍କିମ ଉପନ୍ୟାସମାଳାର ଓଡ଼ିଆ ଅନୁବାଦ, ଉଚ୍ଚମାନର ମାସିକ ପତ୍ରିକା 'ପୌରୁଷର ସଂପାଦନା ପ୍ରଭୃତି ସଂପର୍କରେ ଲେଖକ ଡକ୍ଟର ଭୂୟାଁ ବିସ୍ତାରିତ ଭାବରେ ଆଲୋଚନା କରିଛନ୍ତି। ସାହିତ୍ୟ ତାଙ୍କ ପ୍ରବୃତ୍ତି। ତାଙ୍କ ଜୀବନ। ଏସବୁ ବର୍ଣ୍ଣନା କରିବା ଅବସରରେ ଲେଖକ ଜାନକୀବଲ୍ଲଭଙ୍କ ସୃଷ୍ଟିର ସକଳ ଦିଗକୁ ବ୍ୟଂଜନାତ୍ମକ ଦୃଷ୍ଟିରେ ଅନୁଶୀଳନ କରିଛନ୍ତି। ସରସ୍ୱତୀଙ୍କ ସାଧନା କେବେ ନିଷ୍ଫଳ ଯାଏ ନାହିଁ। ଏଥିପାଇଁ ସେ ପାଇଛନ୍ତି ଅଜସ୍ର ପାଠକୀୟ ଶ୍ରଦ୍ଧା, ବହୁ ସମ୍ମାନ ଓ ପୁରସ୍କାର। ସେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର, ଉତ୍କଳରତ୍ନ ସମ୍ମାନ, ସାହିତ୍ୟ ଭାରତୀ ସମ୍ମାନ, ସମ୍ମାନଜନକ ଡି.ଲିଟ୍ ଉପାଧି, ତିରୁପତି ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟ ତରଫରୁ ପ୍ରଜ୍ଞାନ ବାଚସ୍ପତି ଉପାଧି, ମାଳବ୍ୟ ସ୍ମୃତି ସମ୍ମାନ, ଗୌରୀଶଙ୍କର ସ୍ମୃତିଚକ୍ର ସମ୍ମାନ ପ୍ରଭୃତି ବହୁ ସଂଭ୍ରାନ୍ତ ଅନୁଷ୍ଠାନ ତରଫରୁ ମର୍ଯ୍ୟାଦାବନ୍ତ ପୁରସ୍କାର ଓ ସମ୍ମାନ ଲାଭ କରିବାର ସୌଭାଗ୍ୟ ଲାଭ କରିଛନ୍ତି ଏହି ଅନନ୍ୟ ସାରସ୍ୱତ ସାଧକ। ଏ ସବୁର ବିସ୍ତୃତ ବିବରଣୀ ଦିଆଯାଇଛି ଏହି ଗ୍ରନ୍ଥରେ।

ନବମ ତରଙ୍ଗର ନାମକରଣ ହୋଇଛି ଅଭିନବ ଶୈଳୀରେ। 'ଇତି ନୁହେଁ ଇତିହାସ', କହିବା ବାହୁଲ୍ୟ ଗ୍ରନ୍ଥଟିର ପରିଚ୍ଛେଦ ନାମକରଣ ପରିକଳ୍ପନା ଅତ୍ୟନ୍ତ କାବ୍ୟିକ ଅର୍ଥଦ୍ୟୋତକ ଓ ଶ୍ରୁତିମଧୁର। ବ୍ୟଞ୍ଜନାତ୍ମକ ଓ ପ୍ରତୀକଧର୍ମୀ ନାମକରଣରୁ ହିଁ ସୂଚିତ ହୋଇଥାଏ ସମଗ୍ର ପରିଚ୍ଛେଦଟିର ବୈଶିଷ୍ଟ୍ୟ।

ଏହି ପରିଚ୍ଛେଦଟିରେ ଲେଖକ କର୍ଣ୍ଣଙ୍କ ଚରିତ୍ର ମାଧ୍ୟମରେ ଅତି ନାଟକୀୟ ଶୈଳୀରେ ଜାନକୀବଲ୍ଲଭଙ୍କ ପ୍ରତିଭା, ସାଧନା, ସିଦ୍ଧି, ବାଗ୍ମିତା, ଶୌର୍ଯ୍ୟ, ପୌରୁଷଦୀପ୍ତ ବ୍ୟକ୍ତିତ୍ୱର ଅନୁଦ୍‌ଘାଟିତ ରହସ୍ୟ ଉନ୍ମୋଚନ କରିଛନ୍ତି। ଲେଖକ ଜଣେ ସଫଳ ବ୍ୟକ୍ତି, ଜଣେ ନିରୁଦ୍‌ବିଗ୍ନ ସ୍ଥିତପ୍ରଜ୍ଞ, ଜଣେ କର୍ମଯୋଗୀ, ପ୍ରାଜ୍ଞ ରାଷ୍ଟ୍ରନୀତିଜ୍ଞ ଜାନକୀବଲ୍ଲଭଙ୍କ ଚରିତ୍ରାୟନ କରିଛନ୍ତି ଗଭୀର ଶ୍ରଦ୍ଧା ଓ ଭକ୍ତି ସହିତ। ଅସୀମ ଧୈର୍ଯ୍ୟ, ସହିଷ୍ଣୁତାର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ଜାନକୀବଲ୍ଲଭ। ସେପରି ଥିଲେ ସମୟ ସଚେତନ ବ୍ରହ୍ମଜ୍ଞ ପୁରୁଷ। ସ୍ୱାସ୍ଥ୍ୟକୁ ସମ୍ପଦ ମଣୁଥିବା ଏହି ମହାନ୍ ବ୍ୟକ୍ତିଜଣକ ବୁଝିଥିଲେ ନିରାମୟ ଜୀବନର ମହତ୍ତ୍ୱ। ଜଗତର କଲ୍ୟାଣ କରିବାକୁ ହେଲେ ସୁସ୍

ନିରାମୟ ରହିବା ଏକାନ୍ତ ଅପରିହାର୍ଯ୍ୟ ତାଙ୍କ ବିଚାରରେ। ଧୂଳିମାଟିର ମଣିଷ ଭାବରେ ସାଧାରଣ ମଣିଷର ଆର୍ତ୍ତିକୁ ସେ ହୃଦୟଙ୍ଗମ କରିପାରୁଥିଲେ ସହଜରେ। ଲେଖକ ଗ୍ରନ୍ଥଟିରେ ତାଙ୍କୁ 'ଶତାବ୍ଦୀର ସଫଳ ପୁରୁଷ' ଭାବରେ ଆଖ୍ୟାୟିତ କରିଛନ୍ତି। ଲେଖକଙ୍କ ଭାଷାରେ– "ଜାନକୀବଲ୍ଲଭଙ୍କ ଜୀବନ ଏକ ମହାକାବ୍ୟ। ଏହି ମହାକାବ୍ୟ ଦୀର୍ଘ ସତୁରି ବର୍ଷର ଜାତୀୟ ଇତିହାସର ଏକ ଉଜ୍ଜ୍ୱଳ ଆଲେଖ୍ୟ।' (ପୃ.୩୪୫) ××× "ଜାନକୀବଲ୍ଲଭ ରାଜନୀତିକ ନେତା କେବଳ ନୁହନ୍ତି, ସେ ଜଣେ ସମର୍ଥ କୂଟନୀତିଜ୍ଞ ଓ ରାଷ୍ଟ୍ରନୀତିଜ୍ଞ ମଧ୍ୟ।" ଏସବୁ ଭିତରେ ତାଙ୍କର ସମ୍ବେଦନଶୀଳ ମାନବିକ ବ୍ୟକ୍ତିତ୍ୱଟି ସତତ ଦୀପ୍ତିମାନ ଓ ସେହି ନମନୀୟ ବ୍ୟକ୍ତିସତ୍ତା ହିଁ ତାଙ୍କୁ ସବୁକ୍ଷେତ୍ରରେ ଦେଇଛି ପ୍ରତିଷ୍ଠା ଓ ମାନ୍ୟତା।" (ପୃ.୩୪୮) ସାହିତ୍ୟ, ରାଜନୀତି ଓ ସମାଜନୀତିରେ ଧୁରୀଣ ଏହି ମହାନ୍ ବ୍ୟକ୍ତିତ୍ୱଙ୍କୁ ଶବ୍ଦ ବ୍ରହ୍ମଙ୍କ ପ୍ରତିରୂପରେ ସଜାଇବା ଏକ ମହାନ୍ କୃତି। ଏହା ଅବିସମ୍ବାଦିତ।

ଲେଖକ ଉପସଂହାରରେ ଆଶାପୋଷଣ କରିଛନ୍ତି ଏହି ମହାନ୍ ବ୍ୟକ୍ତିତ୍ୱ ହୁଅନ୍ତୁ ଶତାୟୁ ଓ ଆହୁରି କିଛି ଉପହାର ଦିଅନ୍ତୁ ଇତିହାସକୁ। କିନ୍ତୁ ଈଶ୍ୱରଙ୍କ ଇଚ୍ଛା ଭିନ୍ନ। ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ସମାରୋହରେ କୁଳାଧିପତିଭାବରେ ଯୋଗଦେବା ଉଦ୍ଦେଶ୍ୟରେ ତିରୁପତି ଯାଆନ୍ତି ଜାନକୀବଲ୍ଲଭ। ପ୍ରଭୁ ବାଲାଜୀଙ୍କୁ ଦର୍ଶନ ସାରି ଫେରିବାପରେ ହୃଦାଘାତରେ ଶେଷ ନିଃଶ୍ୱାସ ତ୍ୟାଗ କରନ୍ତି ଈଶ୍ୱରଙ୍କର ଏହି ବରପୁତ୍ର; ସେହି ପବିତ୍ର ତିରୁପତି ମାଟିରେ। ଜରା ବ୍ୟାଧି ଭୋଗ କରିବାକୁ ହୋଇନି। ମୃତ୍ୟୁର ଭୟ ସଂତ୍ରସ୍ତ କରିନି। ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ଏପରି ଏକ ଅମୃତବେଳାରେ ଇହଧାମ ତ୍ୟାଗ କରିବା ମଧ୍ୟ ସେହିପରି ଏକ ଅଲୌକିକ କରୁଣା ବୋଲି ବିଚାର କରିବାକୁ ହେବ।

ଡକ୍ଟର ଭୂୟାଁଙ୍କର ଭାଷାଶୈଳୀ ଅତି ମନୋଜ୍ଞ; ସୁଖପାଠ୍ୟ, ତଥ୍ୟଭିତ୍ତିକ, ପ୍ରମାଣସିଦ୍ଧ। ଏପରି ଏକ ଚମତ୍କାର ଜୀବନୀ ରଚନା କରି ସେ କେବଳ ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରି ନାହାନ୍ତି ବରଂ ଏକ ଜାତୀୟ କର୍ତ୍ତବ୍ୟ ପାଳନ କରିଛନ୍ତି। ଇତିହାସର ଜଣେ ଅନନ୍ୟ ଚରିତ୍ର ଭାବରେ ଏହି ମହାନ୍ ରାଷ୍ଟ୍ରନୀତିଜ୍ଞଙ୍କୁ ରୂପାୟିତ କଲାବେଳେ ଲେଖକ ଡଃ ଗୋବିନ୍ଦ ଭୂୟାଁଙ୍କୁ ଅଶେଷ ଶ୍ରମସ୍ୱୀକାର କରିବାକୁ ହୋଇଥିବ ନିଶ୍ଚୟ ! ଏହି ଅବସରରେ ମୁଁ ସ୍ରଷ୍ଟାଙ୍କୁ ଅଭିନନ୍ଦନ ଜ୍ଞାପନ କରୁଛି ଏବଂ ଜଣେ ପ୍ରାଜ୍ଞ ରାଷ୍ଟ୍ରନାୟକଙ୍କ ମହିମା ଓ ଗରିମାକୁ ବର୍ଣ୍ଣାଢ଼୍ୟ ଶବ୍ଦରୂପ ଦେବାରେ ଡଃ ଗୋବିନ୍ଦ ଭୂୟାଁଙ୍କର ଆନ୍ତରିକ ନିଷ୍ଠାକୁ ମୁଁ ସାଧୁବାଦ ଜଣାଉଛି।

*(ପୁସ୍ତକ ସମୀକ୍ଷାଟି ଡଃ ଗୋବିନ୍ଦ ଭୂୟାଁଙ୍କ ରଚିତ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଜୀବନୀ 'ସାର୍ଥକସାରଥି ଜାନକୀବଲ୍ଲଭ'ର ଏକ ଆଲୋଚନା। ପୁସ୍ତକଟି କଟକର ଅନ୍ୟତମ ପ୍ରସିଦ୍ଧ ପ୍ରକାଶନ ସଂସ୍ଥା 'ବିଦ୍ୟାପୁରୀ' ଦ୍ୱାରା ୨୦୧୪ ମସିହାରେ ପ୍ରକାଶ ପାଇଛି।)*



# ବାପା ଥିଲେ ରତ୍ନଗର୍ଭା ସମୁଦ୍ର

ସୁଦତ୍ତା ପଟ୍ଟନାୟକ

ବାପା ଚାଲିଯିବାର ବର୍ଷଟିଏ ଅତିକ୍ରାନ୍ତ ହେବାକୁ ଯାଉଛି। ଅନେକଥର କଲମ ଧରିଛି ତାଙ୍କ ସଂପର୍କରେ କିଛି ଲେଖିବାପାଇଁ। ହୃଦୟର ନିଭୃତ କୋଣରେ ସାଇତି ରଖିଥିବା କିଛି ଆବେଗ ଓ ସ୍ମୃତିକୁ ଭାଷାରେ ଅଭିବ୍ୟକ୍ତ କରିବାପାଇଁ। କାହିଁକି କେଜାଣି ପ୍ରତିଥର ଅସଫଳ ହୋଇଛି  ମୋ ପ୍ରୟାସରେ। ବୋଧହୁଏ ଏଇଥିପାଇଁ କି ଯେ ସେ ଜଣେ ସାଧାରଣ ପିତା ନ ଥିଲେ। ସେ ଥିଲେ ରତ୍ନଗର୍ଭା ସମୁଦ୍ର, ଯାହାଙ୍କର ଗଭୀରତା ମାପିବାର ସାମର୍ଥ୍ୟ ମୋର ନାହିଁ। ତହିଁରୁ କେତୋଟି ମଣିମାଣିକ୍ୟ ସାଉଁଟି ଆଣିବାର ବ୍ୟର୍ଥ ପ୍ରୟାସ କରୁଛି ମାତ୍ର।

୨୦୧୫ ମସିହା ଏପ୍ରିଲ ୨୧ ତାରିଖ। ସେ ଦିନଟି ଆମ ପାଇଁ ଏକ ଅବିସ୍ମରଣୀୟ ଦିନ ହୋଇ ରହିବ। ସୁସ୍ଥ ଶରୀର ନେଇ ତିରୁପତି ଅଭିମୁଖେ ସେ ଯାତ୍ରାରମ୍ଭ କରିଥିଲେ। ମନରେ ଥିଲା ପ୍ରସନ୍ନତା। ନିୟତିର କ୍ରୂର ନିର୍ଦ୍ଦେଶରେ ପରଦିନ ଫେରିଆସିଥିଲା ତାଙ୍କର ଜଡ଼, ପ୍ରାଣହୀନ ଶରୀର। ମୁଁ ଫରେଷ୍ଟ ପାର୍କ ଘରେ ପହଞ୍ଚିଲାବେଳକୁ ଟିଭିରୁ ଏହି ଅଭାବନୀୟ ଘଟଣାର ଖବର ପାଇ କିଛି ଲୋକ ଚାଲିଆସିଥିଲେ। ଧୀରେଧୀରେ ଟିଭି ଓ ଗଣମାଧ୍ୟମର ପ୍ରତିନିଧି, ବନ୍ଧୁ, ଆତ୍ମୀୟସ୍ୱଜନ ଓ ଶୁଭେଚ୍ଛୁମାନଙ୍କର ଭିଡ଼ ବଢ଼ିବାକୁ ଲାଗିଲା। ଜ୍ୟେଷ୍ଠା କନ୍ୟା ଭାବରେ ମୋତେ ଏସବୁର ସାମ୍ନା କରିବାକୁ ପଡ଼ିଥିଲା। ମୋର ପୀଡ଼ିତା ମା'ଙ୍କୁ ଏହି ମର୍ମଭେଦୀ ଖବରଟି ଶୁଣାଇବାପାଇଁ ନିଜକୁ ଶକ୍ତ କରିବାକୁ ପଡ଼ିଥିଲା। ପରିସ୍ଥିତି ମୋତେ ଶୋକ ପାଳିବାର ସୁଯୋଗ ଦେଇ ନ ଥିଲା। ପିତୃବିୟୋଗଜନିତ ଦୁଃଖ ଓ ଆବେଗ ଅବିଳମ୍ବେ ମର୍ମସ୍ଥଳରେ ହିମଖଣ୍ଡ ପାଲଟି ଯାଇଥିଲା।

ତିନି ସନ୍ତାନଙ୍କ ଭିତରେ ମୁଁ ଥିଲି ବାପାଙ୍କର ଅଧିକ ପ୍ରିୟ। ମୋ ଭାଇ, ଭଉଣୀ ଓ ମୋ ଭିତରେ ବୟସର ବ୍ୟବଧାନ ଅଧିକ ଥିଲା। ଦୀର୍ଘ ସାତବର୍ଷ କାଳ ମୁଁ ପିତାମାତାଙ୍କର ଏକମାତ୍ର ସନ୍ତାନ ଥିବାରୁ ସେମାନଙ୍କ ଧ୍ୟାନ ମୋ ଉପରେ କେନ୍ଦ୍ରିତ ଥିଲା। ଦୈନିକ ଖବରକାଗଜ 'ପ୍ରଜାତନ୍ତ୍ର'ର ସମ୍ପାଦକଭାବରେ ବାପା ତାଙ୍କର ବୃତ୍ତି ଆରମ୍ଭ କରିଥିଲେ। କଟକର ବିହାରୀବାଗ୍‌ଠାରେ ସେଇ ପ୍ରେସ୍ ପରିସର ମଧ୍ୟରେ ଛୋଟ କେତୋଟି କୋଠରି ଥିବା ଘରଟିରେ ଆମେ ରହିଥିଲୁ। ବାପା ଥିଲେ ଗମ୍ଭୀର ଓ ସ୍ୱଳ୍ପଭାଷୀ। ତାଙ୍କର ଜୀବନଶୈଳୀ ଥିଲା ଅତ୍ୟନ୍ତ ସରଳ ଓ ନିରାଡ଼ମ୍ବର। ଖଦଡ଼ ଧୋତି ଓ ପଞ୍ଜାବି ଥିଲା ତାଙ୍କର ନିତିଦିନର ପରିଧେୟ। ପକେଟ୍‌ରେ ସ୍ଥାନ ପାଉଥିଲା ଫାଉଣ୍ଟେନ୍ ପେନ୍‌ଟିଏ। ସକାଳୁ ଉଠିବା ପରେ ପ୍ରାତଃଭ୍ରମଣ, ଯୋଗାଭ୍ୟାସ ତା'ପରେ ଖବରକାଗଜ, ବହିପଢ଼ା ଓ କିଛିସମୟ ଲେଖାଲେଖି।

ସ୍ନାନ ଉପରାନ୍ତେ ପ୍ରାର୍ଥନା କରିବା ପରେ ସେ ଜଳଖିଆ ଖାଇସାରି ଅଫିସ୍ ବାହାରିଯାଉଥିଲେ। ଖାଦ୍ୟପେୟ ଦୃଷ୍ଟିରୁ ସେ ଥିଲେ ମିତହାରୀ। ଶୈଶବର ସ୍ମୃତିରେ ବାପାଙ୍କର ସେହି ପ୍ରଥମ ବହିଘରଟି ଆଖିଆଗରେ ନାଚିଉଠେ। ତାଙ୍କ ଶୟନକକ୍ଷକୁ ଲାଗି ଗୋଟିଏ ଛୋଟ କୋଠରି, ଉପରେ ଆଜ୍‌ବେଷ୍ଟସ୍‌ର ଛାତ। କୋଠରି ଭିତରେ ଦୁଇ କାନ୍ଥକୁ ଲାଗି କାଠର ର୍‍ୟାକ୍। ପଛପଟେ ବହି ଓ ମାଗାଜିନ୍‌ର ସ୍ତୂପ। ମଝିରେ କେବଳ ଜଣେ ଚଳପ୍ରଚଳ ହେବାପାଇଁ ସରୁ ରାସ୍ତାଟିଏ। ବାପା ଯେତେବେଳେ ଚାବି ଖୋଲି ସେ କୋଠରି ଭିତରକୁ ଯାଆନ୍ତି, ମୋତେ ଲାଗେ ସତେକି ସେ ଆଲାଦିନ୍‌ର ଗୁମ୍ଫା ଭିତରକୁ ପ୍ରବେଶ କରୁଛନ୍ତି। ଅତି ଛୋଟ ଥିବାବେଳେ ମୁଁ କେବଳ ତାଙ୍କୁ ଦୂରରୁ ନିରୀକ୍ଷଣ କରେ। ପଢ଼ିବା ବୟସ ହେବାପରେ ତାଙ୍କ ପଛେପଛେ ସେ କୋଠରି ଭିତରକୁ ପ୍ରବେଶ କରେ। ବାପା ମଧ୍ୟ ମୋର ଆଗ୍ରହ ଦେଖି ଖୁସି ହୁଅନ୍ତି ଓ ପିଲାଙ୍କ ପଢ଼ିବା ଉପଯୋଗୀ ବହିଟିଏ ଧରାଇ ଦିଅନ୍ତି। ରତ୍ନଟିଏ ପାଇଲା ଭଳି ସେ ବହିଖଣ୍ଡିକ ଧରି ମୁଁ ବାହାରକୁ ଧାଏଁ। ପରବର୍ତ୍ତୀ ସମୟରେ ମୋର ପୁସ୍ତକ ପ୍ରତି ଅନୁରାଗର ସ୍ରଷ୍ଟା ଯେ ମୋର ବାପା ଥିଲେ, ଏ କଥା କହିବା ବାହୁଲ୍ୟ। ସେତେବେଳେ ଟି.ଭି. ନ ଥିଲା, ବାହାରକୁ ବୁଲିଯିବାପାଇଁ ଯଥେଷ୍ଟ ଆର୍ଥିକ ସମ୍ବଳ ନ ଥିଲା। ତା'ଛଡ଼ା ବାପାଙ୍କ ପାଇଁ କର୍ମ ହିଁ ଥିଲା ଉପାସନା। ଓଡ଼ିଆ ପ୍ରଜାତନ୍ତ୍ର ଓ ଇଂରାଜୀ ଇଷ୍ଟର୍ଣ୍ଣ ଟାଇମ୍‌ସ ଦୁଇଟି ଦୈନିକ ଖବରକାଗଜର ସମ୍ପାଦକ ଭାବରେ ତାଙ୍କୁ ଅନେକ ଗୁରୁଦାୟିତ୍ୱ ସମ୍ଭାଳିବାକୁ ପଡୁଥିଲା, ଯେଉଁଥିରୁ ମୁକ୍ତ ହେବା ତାଙ୍କ ପକ୍ଷରେ କଷ୍ଟକର ଥିଲା। ତେଣୁ ଦଶହରା ଛୁଟି ଓ ଲମ୍ବା ଗ୍ରୀଷ୍ମଛୁଟିଗୁଡ଼ିକ ମୋର ବହି ପଢ଼ିବାରେ ହିଁ କଟିଯାଉଥିଲା। ବାପା ଅଯଥା ଅର୍ଥବ୍ୟୟ କରିବାକୁ ପସନ୍ଦ କରୁ ନ ଥିଲେ। କିନ୍ତୁ ପୁସ୍ତକର ଦୁର୍ବାର ଆକର୍ଷଣ ତାଙ୍କୁ ବହି କିଣିବାରୁ କ୍ଷାନ୍ତ କରିପାରୁ ନ ଥିଲା। ଦିଲ୍ଲୀରେ ଥିବା ସମୟରେ ଥରେ ତାଙ୍କୁ ମୁଁ କହିଥିଲି, ତୁମର ରେଜେଇଟି ବହୁତ ପୁରୁଣା ହୋଇଯାଇଛି। ମୋତେ ପଇସା ଦିଅ, ତୁମ ପାଇଁ ଭଲ ରେଜଇଟେ କିଣିଆଣିବି। ସେ କହିଥିଲେ– ଆଜି ଥାଉ, ପରେ ଦେଖିବା। ଏହାର ଦଶ ମିନିଟ୍ ପରେ ସେ ତାଙ୍କର ଜଣେ ସହଯୋଗୀ ବନ୍ଧୁଙ୍କୁ ନେଇ ବହିଦୋକାନ ଅଭିମୁଖେ ବାହାରିଯାଇଥିଲେ।

ସ୍କୁଲ ଜୀବନରେ ବାପା ମୋ ଭିତରେ ସଂସ୍କୃତ ଭାଷା ପ୍ରତି ଆଦର ସୃଷ୍ଟି କରିଥିଲେ। ସଂସ୍କୃତରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା। ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ମୁଁ ହାଇସ୍କୁଲରେ ସଂସ୍କୃତକୁ ଅତିରିକ୍ତ ବିଷୟ ଭାବରେ ଗ୍ରହଣ କରିଥିଲି। ଆମ ପାଠ୍ୟକ୍ରମରେ ବିଶିଷ୍ଟ କବି ଭର୍ତ୍ତୃହରିଙ୍କ ନୀତିଶତକର କେତୋଟି ଶ୍ଳୋକ ସ୍ଥାନ ପାଇଥିଲା। ସେ ସମୟରେ ବାପା ଭର୍ତ୍ତୃହରିଙ୍କ ଶତକତ୍ରୟୀ (ନୀତିଶତକ, ଶୃଙ୍ଗାରଶତକ ଓ ବୈରାଗ୍ୟଶତକ)ର ଓଡ଼ିଆ ପଦ୍ୟାନୁବାଦ କରୁଥିଲେ ଓ ମତେ ପଢ଼ି ଶୁଣାଉଥିଲେ। ଆଦି ଶଙ୍କରାଚାର୍ଯ୍ୟଙ୍କ 'ଭଜ ଗୋବିନ୍ଦମ୍' ପଢ଼ି ବୁଝାଉଥିବା ସମୟରେ ମୋତେ ବହୁତ ଆନନ୍ଦ ମିଳୁଥିଲା।

ବାପାଙ୍କ ଚିନ୍ତାଧାରା ଥିଲା ଅତ୍ୟନ୍ତ ଉଦାର ଓ ପ୍ରଗତିଶୀଳ। ସେ ରକ୍ଷଣଶୀଳତା ଓ ଅନ୍ଧବିଶ୍ୱାସର ବହୁ ଊର୍ଦ୍ଧ୍ୱରେ ଥିଲେ। ନାରୀଟିଏ ଉଚ୍ଚଶିକ୍ଷିତା ହେବା ସଙ୍ଗେସଙ୍ଗେ ସ୍ୱାବଲମ୍ବୀ

ହେଉ– ଏହା ସେ ଚାହୁଁଥିଲେ ଓ ନିଜ ପରିବାରରେ ହିଁ ମୋ ମା'ଙ୍କ କ୍ଷେତ୍ରରେ ଏହା ପ୍ରତିପାଦିତ କରିଥିଲେ। ଅବଶ୍ୟ ମୋ ମା' ବିବାହ ପୂର୍ବରୁ ବି.ଏ. ପାସ୍ କରିଥିଲେ। କିନ୍ତୁ ବମ୍ବେର ଟାଟା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସୋସିଆଲ୍ ସାଇନ୍‌ସରେ ଡିପ୍ଲୋମା କୋର୍ସ କରିବାପାଇଁ ସେ ମା'ଙ୍କୁ ପ୍ରୋତ୍ସାହିତ କରିଥିଲେ। ମା'ଙ୍କ ଆତ୍ମବିଶ୍ୱାସ ବୃଦ୍ଧି ପାଇଥିଲା। ପରବର୍ତ୍ତୀ ସମୟରେ ମା'ଙ୍କର ରାଜନୀତିରେ ପ୍ରବେଶ ଓ ବିଭିନ୍ନ ଭୂମିକାରେ ନିଜର ଦାୟିତ୍ୱ ନିର୍ବାହ କରିବା ନିମନ୍ତେ ଏହି ଆତ୍ମବିଶ୍ୱାସ ହିଁ କାମ ଦେଇଥିଲା। ଆଜି ଜୀବନର ଅପରାହ୍ନରେ ବାପାଙ୍କୁ ହରାଇ ସେ ଅତ୍ୟନ୍ତ ବିଷାଦଗ୍ରସ୍ତ ହୋଇପଡ଼ିଛନ୍ତି ଓ ବାପାଙ୍କ ବ୍ୟତିରେକେ ନିଜକୁ ଅସଂପୂର୍ଣ୍ଣ ମନେକରୁଛନ୍ତି।

୧୯୬୭ ମସିହାରେ 'ପ୍ରଜାତନ୍ତ୍ର'ରୁ ବିଦାୟ ନେଇ ବାପା ଗୋଟିଏ ଭଡ଼ାଘରେ 'ପୌରୁଷ' ପତ୍ରିକା ଆରମ୍ଭ କଲେ। 'ରିଡର୍ସ ଡାଇଜେଷ୍ଟ' ପତ୍ରିକା ଭଳି 'ପୌରୁଷ' ରେ ସାହିତ୍ୟ, ବିଜ୍ଞାନ, ଧର୍ମ, ପରମ୍ପରା, କ୍ରୀଡ଼ା ଆଦି ବିଭିନ୍ନ ବିଷୟ ଉପରେ ଆଧାରିତ ଲେଖା ଏବଂ ଅନୁବାଦ ଗଚ୍ଛମାନ ସ୍ଥାନ ପାଉଥିଲା। ବାପା ନିଜେ ଅନେକ କଥା ଲେଖୁଥିଲେ ଓ ଲେଖକମାନଙ୍କୁ ମାର୍ଗଦର୍ଶନ ଦେଉଥିଲେ। ସମୟେ ସମୟେ ମୋତେ ଶ୍ରୁତଲିଖନ ନେବାପାଇଁ ମଧ୍ୟ ଡାକୁଥିଲେ। ସେତେବେଳେ ମୁଁ ଦଶମ ଶ୍ରେଣୀର ଛାତ୍ରୀ ଥିଲି। ତାଙ୍କ ଜ୍ଞାନର ବ୍ୟାପକତା ମୋତେ ଆଶ୍ଚର୍ଯ୍ୟ କରିଦେଉଥିଲା। ଅଳ୍ପଦିନ ମଧ୍ୟରେ ହିଁ 'ପୌରୁଷ' ସବୁ ବର୍ଗର ପାଠକମାନଙ୍କଦ୍ୱାରା ଆଦୃତ ହୋଇ ଓଡ଼ିଶାରେ ସର୍ବାଧିକ ପ୍ରସାରିତ ପତ୍ରିକାଭାବରେ ନିଜର ପରିଚୟ ସୃଷ୍ଟି କରିପାରିଥିଲା। ଏହା କେବଳ ବାପାଙ୍କର ଦୃଢ଼ସଂକଳ୍ପ ଓ ଗଭୀର ଆତ୍ମବିଶ୍ୱାସ ହେତୁ ସମ୍ଭବ ହୋଇପାରିଥିଲା।

୧୯୭୧ ମସିହାରେ ବାପା ସାଂସଦ ହୋଇ ଦିଲ୍ଲୀ ଯାତ୍ରା କଲେ। ଏହା ପରେ ପରେ ତାଙ୍କର ରାଜନୈତିକ ଉତ୍‌ଥାନ ଆରମ୍ଭ ହେଲା। ସେ ଓଡ଼ିଶା ଆସୁଥିବା ସମୟରେ ଆମ ଘରେ ବିଭିନ୍ନ କାମପାଇଁ ଆଶାୟୀ ଲୋକମାନଙ୍କ ଭିଡ଼ ଜମୁଥିଲା। ପରିବାରପାଇଁ ସମୟ ଦେବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା। ତେବେ ଆମେ ଯେତେବେଳେ ଛୁଟିରେ ଦିଲ୍ଲୀ ଯାଉଥିଲୁ ସେତେବେଳେ ତାଙ୍କର ସାନ୍ନିଧ୍ୟ ପାଇପାରୁଥିଲୁ। ଖାଇବା ଟେବୁଲରେ ବସି ତାଙ୍କଠାରୁ ଅନେକ ଗପ ଶୁଣୁଥିଲୁ। ତାଙ୍କର ପିଲାଦିନର ଦୁଷ୍ଟାମି, ସ୍କୁଲରେ ପଢୁଥିବା ସମୟରେ ନିଜର ବନ୍ଧୁମାନଙ୍କୁ ଉପଲକ୍ଷ୍ୟ କରି ବ୍ୟଙ୍ଗ କବିତା ରଚନା, ଏହିଭଳି ଅନେକ ଲଘୁ ଉପାଖ୍ୟାନର ସେ ଅବତାରଣା କରୁଥିଲେ। ଯଦି ତାଙ୍କର କୌଣସି ଅନ୍ତରଙ୍ଗ ବନ୍ଧୁ ଆମ ସହିତ ରାତ୍ରିଭୋଜନରେ ଯୋଗ ଦେଉଥିଲେ, ତେବେ ତାଙ୍କ ସହିତ ସେ ମୃଦୁ ପରିହାସ କରିବାକୁ ପଛାଉ ନ ଥିଲେ। ବାପାଙ୍କ ଚରିତ୍ରର ଏହି ଦିଗଟି ମୋତେ ଅତ୍ୟନ୍ତ ଆମୋଦିତ କରୁଥିଲା।

ବାପା ଥିଲେ ସ୍ୱାସ୍ଥ୍ୟ ପ୍ରତି ସଦା ଯତ୍ନଶୀଳ। ବନାରସରେ ସ୍ନାତକୋତ୍ତର ଶିକ୍ଷା ଲାଭ କରୁଥିବା ସମୟରେ ସେ ପ୍ରତିଦିନ ସକାଳୁ ନିଜ ବନ୍ଧୁମାନଙ୍କୁ ନ ଜଣାଇ ହଷ୍ଟେଲରୁ କେଉଁଆଡ଼େ ବାହାରିଯାଉଥିଲେ। ପ୍ରକୃତରେ ସେ ଗଙ୍ଗାକୂଳକୁ ହିଁ ଯାଉଥିଲେ। ଗଙ୍ଗାର

ପଟୁମାଟିକୁ ସାରାଦେହରେ ବୋଳି ହୋଇ ସେ ପ୍ରାୟ ଘଣ୍ଟେ ପର୍ଯ୍ୟନ୍ତ ନଦୀ ତୀରରେ ପଡ଼ି ରହୁଥିଲେ। ଥରେ ତାଙ୍କର ବନ୍ଧୁମାନେ ଉତ୍ସୁକତାବଶତଃ ତାଙ୍କୁ ଅନୁସରଣ କରି ଏ ଦୃଶ୍ୟ ଦେଖିବାକୁ ପାଇଥିଲେ। ଏହା ପ୍ରାକୃତିକ ଚିକିତ୍ସାର ଏକ ଅଙ୍ଗ ଜାଣିବାପରେ ସେମାନେ ମଧ୍ୟ ଅତ୍ୟନ୍ତ ପ୍ରଭାବିତ ହୋଇଥିଲେ। ବାପା ଥିଲେ ସନ୍ତରଣପ୍ରିୟ। କେବଳ ନଦୀ ନୁହେଁ, ସମୁଦ୍ରରେ ମଧ୍ୟ ସନ୍ତରଣ କରିବାକୁ ସେ ଭଲପାଉଥିଲେ।

ବିଭିନ୍ନ ପ୍ରକାର ଚିକିତ୍ସା ପଦ୍ଧତି ଉପରେ ବାପାଙ୍କର ବିଶ୍ୱାସ ଥିଲା। ଆୟୁର୍ବେଦ ହେଉ କିମ୍ବା ୟୁନାନୀ, ପ୍ରାକୃତିକ ଚିକିତ୍ସା ହେଉ କିମ୍ବା ଯୋଗ ଥେରାପି, ସବୁର ଯେ ମହତ୍ତ୍ୱ ରହିଛି ଏହା ସେ ଅନୁଭବ କରୁଥିଲେ। ଯେଉଁ ତିନିଥର ସେ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇଥିଲେ, ସେହି ସେହି କାର୍ଯ୍ୟକାଳ ଭିତରେ ସେ ଏହି ଚିକିତ୍ସା ପଦ୍ଧତିଗୁଡ଼ିକର ପ୍ରସାରପାଇଁ ଆବଶ୍ୟକ ପଦକ୍ଷେପ ଗ୍ରହଣ କରିଥିଲେ। 'ଓଡ଼ିଶା ଶାସନର ସୁବର୍ଣ୍ଣଯୁଗ' ପୁସ୍ତକରେ ବହୁ ବ୍ୟକ୍ତି ତାଙ୍କର ଅବଦାନ ସଂପର୍କରେ ଲେଖିଛନ୍ତି। ସ୍ୱାସ୍ଥ୍ୟର ଯତ୍ନ ନେବାକୁ ହେଲେ ଶୃଙ୍ଖଳା ଯେ ଏକାନ୍ତ ଆବଶ୍ୟକ, ଏହା ଉପରେ ସେ ଗୁରୁତ୍ୱ ଦେଉଥିଲେ। ମୁଖ୍ୟମନ୍ତ୍ରୀ ଥିବା ଅବସ୍ଥାରେ ମଧ୍ୟ ସେ ପ୍ରତିଦିନ ପ୍ରାତଃଭ୍ରମଣ (ବର୍ଷାଦିନେ କରିଡର୍‌ରେ ହେଉପଛେ), ଯୋଗାସନ ଓ ପ୍ରାଣାୟାମ ଅଭ୍ୟାସ କରୁଥିଲେ।

ବାପା ଥିଲେ ଏକ ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱ। ସାହିତ୍ୟ ଓ ରାଜନୀତି ବ୍ୟତୀତ ତାଙ୍କର ଅନେକ ବିଷୟରେ ଆଗ୍ରହ ଥିଲା। କଳା ଓ ସଂସ୍କୃତିପ୍ରେମୀ ହୋଇଥିବାରୁ ସେ ନୃତ୍ୟ ଓ ସଙ୍ଗୀତରେ ମଧ୍ୟ ରୁଚି ରଖୁଥିଲେ। ଗୌହାଟୀର ରାଜ୍ୟପାଳ ଭବନରେ ଗୋଟିଏ ବଡ଼ ହଲ୍ ଥିଲା, ଯେଉଁଠି ଆସାମର ବିହୁ ତଥା ଅନ୍ୟାନ୍ୟ ଲୋକନୃତ୍ୟ ଓ ସଙ୍ଗୀତ କାର୍ଯ୍ୟକ୍ରମ ଆୟୋଜିତ ହେଉଥିଲା। ଓଡ଼ିଶାରୁ ବିଶିଷ୍ଟ କଳାକାରମାନେ ନିମନ୍ତ୍ରିତ ହୋଇ ଆସାମ ଯାଉଥିଲେ ଏବଂ ଓଡ଼ିଶୀ, ଗୋଟିପୁଅ ନୃତ୍ୟ ତଥା ସଙ୍ଗୀତ ପରିବେଷଣ କରୁଥିଲେ। ବାପା ଏସବୁର ପୃଷ୍ଠପୋଷକତା କରୁଥିଲେ। ସେ ଓଡ଼ିଶା ଆସୁଥିବା ସମୟରେ ତାଙ୍କ ନିଜ ବାସଭବନରେ ମଧ୍ୟ କେତେଥର ଛୋଟ ଛୋଟ ସଙ୍ଗୀତ ଆସରମାନ ଆୟୋଜିତ ହୋଇଛି।

ବାପାଙ୍କ ଜୀବନର ଶେଷ ଅଧ୍ୟାୟ ଥିଲା ଆସାମର ରାଜ୍ୟପାଳ ଭାବରେ କାର୍ଯ୍ୟଗ୍ରହଣ। ଆସାମର ଜନଜୀବନ, ସେମାନଙ୍କ କଳା, ସଂସ୍କୃତି ଓ ଧର୍ମୀୟଭାବନା ସହିତ ସେ ଓତପ୍ରୋତ ଭାବରେ ଜଡ଼ିତ ହୋଇଯାଇଥିଲେ। ତାଙ୍କର ଦୃଢ଼ବିଶ୍ୱାସ ଥିଲା ଯେ ଆଧ୍ୟାତ୍ମିକତା ହିଁ ବ୍ୟକ୍ତି ଜୀବନର ଆଧାରଶିଳା। ଏହା ଯେତେ ମଜବୁତ୍ ହେବ ଜୀବନ ସେତେ ସରସ, ସୁନ୍ଦର ଓ ପଲ୍ଲବିତ ହୋଇଉଠିବ। ଆସାମର ମହାନ୍ ବୈଷ୍ଣବ ସନ୍ଥ ଶଙ୍କରଦେବଙ୍କ ସତ୍ର (ମଠ) ଗୁଡ଼ିକୁ ବୁଲି ଦେଖିବାରେ ତାଙ୍କର ଅଶେଷ ଆଗ୍ରହ ଥିଲା। ତାଙ୍କ ସହିତ ଆମେ ମାଜୋଲି ଦ୍ୱୀପରେ ଥିବା ଏହି ବୈଷ୍ଣବ ଗୁରୁଙ୍କ ଜନ୍ମସ୍ଥାନ ପରିଦର୍ଶନ କରିଥିଲୁ। ବୈଷ୍ଣବ ଭକ୍ତମାନଙ୍କ ସଂକୀର୍ତ୍ତନ ଓ ନୃତ୍ୟ ତାଙ୍କୁ ମୁଗ୍ଧ କରିଥିଲା।

ମହାପ୍ରଭୁ ଜଗନ୍ନାଥଙ୍କ ପ୍ରତି ଆସାମର ହିନ୍ଦୁମାନଙ୍କର ପ୍ରଗାଢ଼ ଭକ୍ତି। ବାପା ଆସାମର ଡିବ୍ରୁଗଡ଼ଠାରେ ଏକ ସୁଦୃଶ୍ୟ ଜଗନ୍ନାଥ ମନ୍ଦିର ନିର୍ମାଣ କରାଇବାର ସ୍ୱପ୍ନ ଦେଖିଥିଲେ।

ତାଙ୍କର ନିରବଚ୍ଛିନ୍ନ ଉଦ୍ୟମ ଫଳରେ ଅବସରଗ୍ରହଣର ଠିକ୍ ପୂର୍ବରୁ ହିଁ ଏହା ସାକାର ରୂପ ନେଇଥିଲା। ଗୌହାଟୀଠାରେ ଅନ୍ୟ ଏକ ମନ୍ଦିର ଏବେ ନିର୍ମାଣାଧୀନ ଅବସ୍ଥାରେ ଅଛି।

ବାପାଙ୍କ ସହିତ ଆସାମର ଅନେକ ସ୍ଥାନ ବୁଲି ଦେଖିବାର ସୁଯୋଗ ମୋତେ ମିଳିଛି। କେବଳ ରାଜଭବନର କର୍ମଚାରୀ ସମୂହ ନୁହନ୍ତି, ଆସାମରେ ଯେକୌଣସି ବ୍ୟକ୍ତି ତାଙ୍କ ସଂସ୍ପର୍ଶରେ ଆସୁଥିଲେ, ତାଙ୍କୁ ଭଲପାଇ ବସୁଥିଲେ। ସେବକମାନଙ୍କ ପ୍ରତି ତାଙ୍କର ଅମାୟିକ ବ୍ୟବହାର ଓ ଅନୁକମ୍ପା ସେମାନଙ୍କ ହୃଦୟ ଜୟ କରିପାରିଥିଲା। ଅନେକଥର କ୍ଷମତାକୁ ଆସି ସୁଦ୍ଧା ତାଙ୍କ ଜୀବନଶୈଳୀରେ କୌଣସି ପରିବର୍ତ୍ତନ ଆସି ନ ଥିଲା। କେନ୍ଦ୍ରମନ୍ତ୍ରୀ ହେବାଠାରୁ ଆରମ୍ଭ କରି ତିନି ତିନି ଥର ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ମଣ୍ଡନ କରିଥିଲେ। କିନ୍ତୁ କୌଣସି ପଦପଦବୀର ମୋହ ତାଙ୍କୁ ଅନ୍ଧ କରିଦେଇ ନ ଥିଲା। ଏସବୁ ଯେ ଅନିତ୍ୟ – ଏହି ଉପଲବ୍ଧି ତାଙ୍କୁ କର୍ମଯୋଗୀ ଭାବରେ ଜୀବନ ଜିଇଁବାକୁ ପ୍ରେରିତ କରିଥିଲା।

ବାପା ପୁରୁଷାର୍ଥକୁ ପ୍ରାଧାନ୍ୟ ଦେଲେ ମଧ୍ୟ ତାଙ୍କର ସମସ୍ତ କର୍ମ ପରମାତ୍ମାଙ୍କଠାରେ ସମର୍ପଣ କରୁଥିଲେ। ତାଙ୍କର ଇଷ୍ଟ ଥିଲେ ମହାପ୍ରଭୁ ଶ୍ରୀଜଗନ୍ନାଥ। କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ସେ ଜଗନ୍ନାଥ ଦର୍ଶନ କରିବାକୁ ଭୁଲୁ ନ ଥିଲେ। ପ୍ରଭୁଙ୍କ ମୁଖାରବିନ୍ଦକୁ ନିରୀକ୍ଷଣ କରି ସେ ଜାଣିପାରୁଥିଲେ ଆଗକୁ କାର୍ଯ୍ୟରେ କୌଣସି ବାଧା ଅଛି କି ନା। ସେ ପ୍ରତିଦିନ ବିଷ୍ଣୁ ସହସ୍ର ନାମ ଓ ନାରାୟଣ କବଚ ପାଠ କରୁଥିଲେ ଏବଂ ଆମକୁ ମଧ୍ୟ ଏହା କରିବାପାଇଁ ଉପଦେଶ ଦେଉଥିଲେ। ପ୍ରଭୁଙ୍କପ୍ରତି ତାଙ୍କର ଶ୍ରଦ୍ଧା, ବିଶ୍ୱାସ ଓ ଆତ୍ମସମର୍ପଣଭାବ ମୋତେ ଏହି ମାର୍ଗରେ ଚାଲିବାପାଇଁ ଅନୁପ୍ରେରିତ କରିପାରିଛି।

ପରିପକ୍ୱ ବୟସରେ ବୁଝିଥିଲି ଯେ ବାପା ହେଉଛନ୍ତି ସ୍ଥିତପ୍ରଜ୍ଞ। ସ୍ୱଳ୍ପ ବୟସରେ ଏ ଶବ୍ଦଟିର ମର୍ମ ବୁଝିବାର ଶକ୍ତି ମୋର ନ ଥିଲା। ତାଙ୍କୁ କେବେ ଆନନ୍ଦରେ ଉଦ୍‌ବେଳିତ ହେବା କିମ୍ବା ଦୁଃଖରେ ମ୍ରିୟମାଣ ହୋଇପଡ଼ିବା ଦେଖି ନାହିଁ। ରାଜନୈତିକ ଜୀବନରେ ସେ ବହୁ ଝଡ଼ଝଞ୍ଜାର ସମ୍ମୁଖୀନ ହୋଇଛନ୍ତି। ମତଭେଦ ଓ ଭୁଲ୍ ବୁଝାମଣା ହେତୁ ଅନ୍ତରଙ୍ଗ ବନ୍ଧୁମାନେ ତାଙ୍କଠାରୁ ଦୂରେଇ ଯାଇଛନ୍ତି। କିନ୍ତୁ ହର୍ଷ-ବିଷାଦ, ସୁଖ-ଦୁଃଖ, ମାନ-ଅପମାନ, ନିନ୍ଦା-ସ୍ତୁତି ସମସ୍ତ ପ୍ରକାର ପରିସ୍ଥିତିରେ ସେ ରହିଛନ୍ତି ଶାନ୍ତ, ସ୍ଥିର ଓ ଅବିଚଳିତ। ତାଙ୍କୁ କ୍ରୋଧରେ ନିୟନ୍ତ୍ରଣ ହରାଇବା କେବେ ମୁଁ ଦେଖି ନାହିଁ, ଯାହାକି ମୋତେ ଆଶ୍ଚର୍ଯ୍ୟଚକିତ କରିଛି। ଶ୍ରୀମଦ୍ ଭଗବଦ୍‌ଗୀତାର ଦ୍ୱାଦଶ ଅଧ୍ୟାୟ ଭକ୍ତିଯୋଗର ଶେଷ ଆଠଟି ଶ୍ଳୋକରେ ଯୋଗେଶ୍ୱର କୃଷ୍ଣ ତାଙ୍କ ପ୍ରିୟ ଭକ୍ତର ଯେଉଁ କେତୋଟି ଗୁଣର ଅବତାରଣା କରିଛନ୍ତି, ତାହା ପାଠ କରିବା ସମୟରେ ମୋର ମନେହୁଏ ମୋ ପିତା ହିଁ ଏ ସମସ୍ତ ଗୁଣର ଅଧିକାରୀ ଅଟନ୍ତି।

ଶେଷସମୟ ପର୍ଯ୍ୟନ୍ତ ବାପା ମୋର କାର୍ଯ୍ୟକ୍ଷମ ଥିଲେ। ଉତ୍ତୀର୍ଣ୍ଣ ବୟସ ତାଙ୍କର ମନୋବଳ ଓ ଧୀ-ଶକ୍ତିକୁ ପରାହତ କରିପାରି ନ ଥିଲା। ଆଜି ପିତୃମନସ୍କ ହୋଇ ତାଙ୍କ ଉଦ୍ଦେଶ୍ୟରେ କେତୋଟି ପଙ୍‌କ୍ତି ଲେଖୁଥିବା ସମୟରେ ହୃଦୟରେ ଜମାଟ ବାନ୍ଧିଥିବା

ବରଫଖଣ୍ଡଟି ତରଳିବା ଆରମ୍ଭ କରିଛି। ଅଣୁରେ ଅଣୁରେ ଅନୁଭବ କରିପାରୁଛି ତାଙ୍କର ସୂକ୍ଷ୍ମାତିସୂକ୍ଷ୍ମ ଅସ୍ତିତ୍ୱ। ଆକାଶ ଭଳି ଉତ୍ତୁଙ୍ଗ ତାଙ୍କର ବ୍ୟକ୍ତିତ୍ୱ। ସାଗରଭଳି ଅତଳସ୍ପର୍ଶୀ ତାଙ୍କର ଜ୍ଞାନର ଗରିମା। ଏଭଳି ଜଣେ ବ୍ୟକ୍ତିଙ୍କୁ ପିତା ଭାବରେ ପାଇ ମୁଁ ଗର୍ବିତ। ମନରେ କିନ୍ତୁ ଗ୍ଲାନି ଯେ କନ୍ୟା ଭାବରେ ମୁଁ ତାଙ୍କ ପ୍ରତିଭାର ଉତ୍ତରାଧିକାରିଣୀ ହୋଇପାରି ନାହିଁ। ସେ ରାଜ୍ୟପାଳ ପଦରୁ ଅବସର ନେବା ପରେ ଭାବିଥିଲି ତାଙ୍କ ପାଖରେ ଏବେ କେବଳ ସମୟ ହିଁ ସମୟ। ତିରୁପତିରୁ ଫେରି ସେ ତାଙ୍କର ପ୍ରିୟ ଜନ୍ମମାଟି ରାମେଶ୍ୱରଠାରେ ସଯତ୍ନ-ବର୍ଦ୍ଧିତ ସବୁଜ ବୃକ୍ଷଲତା ଘେରା ଫାର୍ମହାଉସ୍‌ଟିରେ ଅଧିକ ସମୟ ଅତିବାହିତ କରିଥାନ୍ତେ। ମୋତେ ମଧ ତାଙ୍କର ସାନ୍ନିଧ ମିଳିଥାନ୍ତା। ତାଙ୍କଠାରୁ ଅନେକ କିଛି ଜାଣିବାକୁ ଥିଲା, ଅନେକ କିଛି ଶିଖିବାକୁ ଥିଲା। ବହୁ କଥା ଅକୁହା ରହିଗଲା। ସେ ଚାଲିଗଲେ ମହାଯାତ୍ରାର ପଥିକ ସାଜି, କେଉଁ ଅପହଞ୍ଚ ଇଲାକାର ସୀମାହୀନ ବ୍ୟାପ୍ତି ମଧରେ ନିରୁଦ୍ଦିଷ୍ଟ ହୋଇଗଲେ ସବୁଦିନ ପାଇଁ। ଆଉ ମୁଁ ସେହି ମହାର୍ଘ ସମୟର ପ୍ରତୀକ୍ଷାରେ ହିଁ ରହିଗଲି। 'ନଳିନୀ ଦଳଗତ ଜଳମତି ତରଳଂ, ତଦ୍‌ବତ୍ ଜୀବନଂ ଅତିଶୟ ଚପଳମ୍'–ଭଜଗୋବିନ୍ଦମ୍‌ରେ ଆଦିଗୁରୁ ଶଙ୍କରାଚାର୍ଯ୍ୟଙ୍କ ସେହି ଆପ୍ତବାଣୀକୁ ବୁଦ୍ଧି ଗ୍ରହଣ କଲେ ସୁଦ୍ଧା ମନ ସହଜରେ ବୁଝେନା। ସଂସାରର ମହାମୋହରୁ ମୁକ୍ତ ହେବା କ'ଣ ସହଜ କଥା ? ବାପାଙ୍କର ସ୍ମୃତି ଓ ଆଦର୍ଶକୁ ପାଥେୟ କରି ମୋତେ ଆଗକୁ ଚାଲିବାକୁ ହେବ–ପଥ ଯେପର୍ଯ୍ୟନ୍ତ ବାକି ଅଛି।



# ଲେଖକ ପରିଚୟ

**ଜାନକୀବଲ୍ଲଭ ପଟ୍ଟନାୟକ :** ଜାନକୀବଲ୍ଲଭ ପଟ୍ଟନାୟକ କେନ୍ଦ୍ର ସରକାରରେ ମନ୍ତ୍ରୀ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓ ଆସାମର ରାଜ୍ୟପାଳ ଦାୟିତ୍ୱ ନିର୍ବାହ କରିଥିଲେ । ଯଶସ୍ୱୀ ସାରସ୍ୱତ ସାଧକ, ସଂସ୍କୃତିପ୍ରେମୀ ଓ ସାମ୍ବାଦିକ ଭାବେ ଖ୍ୟାତ । ଅନୁବାଦ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ।

**ବୈଷ୍ଣବ ଚରଣ ସାମଲ :** ଉତ୍କଳ ବିଶ୍ୱବିଦ୍ୟାଳୟ ଓ ବିଶ୍ୱଭାରତୀର ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ପ୍ରାକ୍ତନ ପ୍ରଫେସର । ପ୍ରାବନ୍ଧିକ, ସାହିତ୍ୟ ସମାଲୋଚକ । ସଂପର୍କ : ଶାନ୍ତିବିହାର, ଚାଉଳିଆଗଞ୍ଜ, କଟକ-୪ ।

**ଦାଶ ବେନହୁର :** ଓଡ଼ିଶାର ବିଭିନ୍ନ ମହାବିଦ୍ୟାଳୟରେ ରାଜନୀତି ବିଜ୍ଞାନ ବିଭାଗରେ ଅଧ୍ୟାପନା ଓ ଅଧକ୍ଷ ଭାବେ କାର୍ଯ୍ୟ କରି ଅବସର ଗ୍ରହଣ । ଶିଶୁସାହିତ୍ୟ ଓ କଥାସାହିତ୍ୟରେ ଯଶସ୍ୱୀ ସ୍ରଷ୍ଟା । ଶିଶୁ-ସାହିତ୍ୟ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀର 'ବାଲ ସାହିତ୍ୟ ପୁରସ୍କାର' ପ୍ରାପ୍ତ । ସଂପର୍କ : ଭିଆଇଏମ୍-୧୬୧, ଶୈଳଶ୍ରୀ ବିହାର, ଭୁବନେଶ୍ୱର-୭୫୧୦୨୧

**ବାବାଜୀ ଚରଣ ପଟ୍ଟନାୟକ :** ଓଡ଼ିଆ ଭାଷା-ସାହିତ୍ୟ ବିଭାଗରେ ଅଧ୍ୟାପନା କରି ଅବସର ଗ୍ରହଣ । ସାହିତ୍ୟ ପତ୍ରିକା 'ଝଙ୍କାର'ର ଅନ୍ୟତମ ସମ୍ପାଦକ, ସମାଲୋଚନା ସାହିତ୍ୟ ଲେଖକ । ସଂପର୍କ : ବି-୪୯, ସେକ୍ଟର-୮, ସିଡିଏ, କଟକ ।

**ସଂଗ୍ରାମ ଜେନା :** ରାଜସ୍ୱ ବିଭାଗର ବରିଷ୍ଠ ଅଧିକାରୀ ଭାବେ ଅବସର ଗ୍ରହଣ । ସାହିତ୍ୟ ପତ୍ରିକା 'ନିଶାନ୍ତ'ର ସଂପାଦକ, ଅନୁବାଦକ, ପ୍ରାବନ୍ଧିକ ଓ କବି ଭାବେ ପରିଚିତ । ଅନୁବାଦ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ । ସଂପର୍କ : ଅଦ୍ୱୈତ ଭବନ, ଶ୍ରୀରାମନଗର, କଟକ-୧୨ ।

**ଅସିତ ମହାନ୍ତି :** 'ପୌରୁଷ'ର ସମ୍ପାଦକ, ଆମ ଓଡ଼ିଶାର ପ୍ରକାଶନ ସମ୍ପାଦକ ଭାବେ କାର୍ଯ୍ୟରତ । ଅନୁବାଦ ସାହିତ୍ୟ, ପ୍ରବନ୍ଧ, ସ୍ତମ୍ଭ ରଚନା ଓ ଗ୍ରନ୍ଥ ସଂପାଦନାରେ ପ୍ରସିଦ୍ଧି ରହିଛି । ଅନୁବାଦ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ । ସଂପର୍କ : ଆମ ଓଡ଼ିଶା, କ୍ୱାର୍ଟର୍ସ ନଂ. ୪ ଆର୍ ୧/୨, ୟୁନିଟ୍-୩, ଭୁବନେଶ୍ୱର-୧ ।

**ଗୋବିନ୍ଦ ଚନ୍ଦ୍ର ଚାନ୍ଦ :** ଉତ୍କଳ ସାହିତ୍ୟ ସମାଜର ଉପସଭାପତି, ଓଡ଼ିଶା ଶିଶୁ ସାହିତ୍ୟ ଲେଖକ ସମ୍ମେଳନର ସାଧାରଣ ସଂପାଦକ । ଶିଶୁ ସାହିତ୍ୟ, ପ୍ରବନ୍ଧ, ଜୀବନୀ ଓ ସମାଲୋଚନା ଲେଖକ । ସଂପର୍କ : ବିଠ୍ଠଳଭବନ, ଆଦିତ୍ୟନଗର, ପୋଡାପୋଖରୀ, ନୂଆବଜାର, କଟକ-୪ ।

**ୱାସ୍‌ବୀର ହୁସେନ୍ :** ଆସାମ ରାଜ୍ୟର ଜଣେ ବିଶିଷ୍ଟ ଲେଖକ ଓ ସାମ୍ବାଦିକ । ଆମ ଓଡ଼ିଶା ପକ୍ଷରୁ ପ୍ରକାଶିତ ଇଂରାଜୀ ପୁସ୍ତକ 'ଦି ମାର୍ଚ୍ଚ ଟୁ ଏ ମଡର୍ଣ୍ଣ ଓଡ଼ିଶା'ର ଯୁଗ୍ମ-ସଂପାଦକ । ସଂପର୍କ : wasbir@yahoo.com

**ପ୍ରଶାନ୍ତ କୁମାର ବିଶ୍ୱାଳ :** ଇଂରାଜୀ ଭାଷା-ସାହିତ୍ୟ ବିଭାଗର ପ୍ରାଧ୍ୟାପକ । ଓଡ଼ିଆ ପ୍ରବନ୍ଧ ଓ ସମାଲୋଚନା ଲେଖନ୍ତି । ସଂପର୍କ : ଲକ୍ଷ୍ମୀନାରାୟଣ ସାହୁ ମହାବିଦ୍ୟାଳୟ, ଜଗତ୍‌ପୁର, କଟକ ।

**କୃଷ୍ଣଚନ୍ଦ୍ର ଭୂୟାଁ :** ଓଡ଼ିଆ ଭାଷାସାହିତ୍ୟ ବିଭାଗରେ ଅଧ୍ୟାପନା କରି ଅବସର ଗ୍ରହଣ। କୋଲକାତାରେ ଅବସ୍ଥାନ କରୁଥିବା ଶ୍ରୀ ଭୂୟାଁ ପ୍ରବନ୍ଧ, ସାହିତ୍ୟ ସମାଲୋଚନାରେ ଲେଖନୀ ଚାଳନା କରି ସ୍ୱତନ୍ତ୍ର ପରିଚୟର ଅଧିକାରୀ । ସଂପର୍କ : ସଲ୍ଟଲେକ୍, କୋଲକାତା, ଫୋନ୍ - ୦୯୪୩୩୧୪୧୭୨୪

**ପ୍ରତିଭା ରାୟ :** ଶିକ୍ଷାବିଭାଗରେ ଅଧ୍ୟାପନା ଓ ଓଡ଼ିଶା ଲୋକସେବା ଆୟୋଗ ସଦସ୍ୟ ଭାବେ ଅବସର। କଥାସାହିତ୍ୟ, ଭ୍ରମଣକାହାଣୀ, ଆତ୍ମଜୀବନୀର ଲେଖିକା ଭାବେ ସ୍ୱତନ୍ତ୍ର ପରିଚୟ ଲାଭ କରିଛନ୍ତି। ଜ୍ଞାନପୀଠ, ମୂର୍ତ୍ତିଦେବୀ ଓ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ। ସଂପର୍କ : ଗଜପତି ନଗର, ଭୁବନେଶ୍ୱର।

**ଭର୍ତ୍ତୃହରି ମହତାବ :** ଜନନେତା, ସାମ୍ବାଦିକ ଓ ସାରସ୍ୱତ ସ୍ରଷ୍ଟା। ସାଂସଦ, 'ପ୍ରଜାତନ୍ତ୍ର ପ୍ରଚାର ସମିତି'ର ଅଧ୍ୟକ୍ଷ। 'ପ୍ରଜାତନ୍ତ୍ର'ର ସଂପାଦକ ଓ 'ଝଙ୍କାର'ର ମୁଖ୍ୟ ସଂପାଦକ ଭାବେ କାର୍ଯ୍ୟରତ। ସ୍ତମ୍ଭକାର ଓ ପ୍ରାବନ୍ଧିକ ଭାବେ ପରିଚିତ। ସଂପର୍କ : ବିହାରୀବାଗ, କଟକ-୨ ।

**ଅନ୍ନଦା ପ୍ରସାଦ ରାୟ :** ରାଜନୀତିଜ୍ଞ, ସାରସ୍ୱତ ସାଧକ ଓ ସାମ୍ବାଦିକ। 'ଉତ୍କଳ ସାହିତ୍ୟ ସମାଜ'ର ପ୍ରାକ୍ତନ ସଭାପତି। ଦୈନିକ 'ମାତୃଭାଷା'ର ପ୍ରାକ୍ତନ ସଂପାଦକ। ସଂପର୍କ : କୃଷ୍ଣକାନ୍ତ ଭବନ, ତେଲେଙ୍ଗାବଜାର, କଟକ-୯ ।

**ନିରଞ୍ଜନ ପଟ୍ଟନାୟକ :** ରାଜନେତା, ପୂର୍ବତନ ମନ୍ତ୍ରୀ, ସଂସ୍କୃତି ଓ ସାହିତ୍ୟପ୍ରେମୀ। ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ପୂର୍ବତନ ସଭାପତି। ସଂପର୍କ : ନୟାପଲ୍ଲୀ, ଭୁବନେଶ୍ୱର।

**ଶ୍ରୀନିବାସ ଉଦ୍‌ଗାତା :** ଓଡ଼ିଆ କବିତା ଓ ଅନୁବାଦ ସାହିତ୍ୟରେ ଯଶସ୍ୱୀ ପୁରୁଷ। 'ପଦ୍ମଶ୍ରୀ' ସମ୍ମାନରେ ଭୂଷିତ। ଓଡ଼ିଶା ସାହିତ୍ୟ ଏକାଡେମୀର ପୂର୍ବତନ ଉପସଭାପତି। ସଂପର୍କ : କବି କୁଟୀର, ବଲାଙ୍ଗିର।

**ହରେକୃଷ୍ଣ ଶତପଥୀ :** ସଂସ୍କୃତ ଭାଷା-ସାହିତ୍ୟର ବିଦ୍ୱାନ୍ ଲେଖକ ଓ ବାଗ୍ମୀ ଏବଂ ତିରୁପତି କେନ୍ଦ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି। ସଂପର୍କ : ଫୋନ୍ - ୦୯୪୪୦୬୨୬୫୫୧ ।

**ରାଜେନ୍ଦ୍ର ନାରାୟଣ ଦାସ :** ସ୍ତମ୍ଭକାର, ଆତ୍ମଜୀବନୀକାର ଓ ପ୍ରାବନ୍ଧିକ। ଜର୍ମାନୀରେ ଅବସ୍ଥାନ କରୁଥିବା ଇଂ ଶ୍ରୀ ଦାସ ଜଣେ ସଚ୍ଚା ସଂସ୍କୃତିପ୍ରେମୀ ଓ ସାହିତ୍ୟ-ପ୍ରାଣ ବ୍ୟକ୍ତି। ସଂପର୍କ : ଜର୍ମାନୀ। ଫୋନ୍ - ୦୪୯୨୧୩୧୧୨୪୯୩୦୨

**ସଦାନନ୍ଦ ଅଗ୍ରୱାଲ :** ପ୍ରାବନ୍ଧିକ ଓ ଗବେଷକ। ଅନେକ ଅବଲୁପ୍ତ ତଥ୍ୟ ପ୍ରକାଶ କରି ଧର୍ମଧାରା, ସାହିତ୍ୟ ଓ ଗବେଷଣା କ୍ଷେତ୍ରରେ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଛନ୍ତି। ତିରୁପତି ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟରୁ ସମ୍ମାନଜନକ ଡକ୍ଟରେଟ୍ ପ୍ରାପ୍ତ। ସଂପର୍କ : ମେଣ୍ଡା, ଜିଲ୍ଲା : ସୁବର୍ଣ୍ଣପୁର।

**ଅଧ୍ୟାପକ ବିଶ୍ୱରଂଜନ :** କଥାଶିଳ୍ପୀ, ସ୍ତମ୍ଭକାର, ପ୍ରାବନ୍ଧିକ ଓ ସଂପାଦକ ଭାବେ ପରିଚିତ। ରାଜନୀତି ବିଜ୍ଞାନର ଅଧ୍ୟାପକ ଭାବେ କାର୍ଯ୍ୟ କରି ଅଧ୍ୟକ୍ଷ ପଦରୁ ଅବସର ଗ୍ରହଣ। ଦୈନିକ ସମ୍ବାଦପତ୍ର 'ଖବର'ର ସଂପାଦକ ଭାବେ କାର୍ଯ୍ୟ ନିର୍ବାହ କରିଥିଲେ। ସଂପର୍କ : କଂସାରୀଝର, ଭୁବନେଶ୍ୱର।

**ଗୌରହରି ଦାସ :** ସାମ୍ବାଦିକ, କଥାଶିଳ୍ପୀ ଓ ସ୍ତମ୍ଭକାର। ସାହିତ୍ୟ ପତ୍ରିକା 'କଥା'ର ସଂପାଦକ। କଥା ସାହିତ୍ୟ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ। କେନ୍ଦ୍ର ସାହିତ୍ୟ ଏକାଡେମୀର ଓଡ଼ିଆ ଭାଷା କାର୍ଯ୍ୟନିର୍ବାହିକା ପରିଷଦର ଆବାହକ। ସଂପର୍କ : ବରମୁଣ୍ଡା, ଭୁବନେଶ୍ୱର। ଫୋନ୍ - ୦୯୪୩୭୦୭୭୨୮୮

**ପ୍ରଭାକର ସ୍ୱାଇଁ :** ଅନୁବାଦକ, ପ୍ରାବନ୍ଧିକ ଓ ସାରସ୍ୱତ ସଂଗଠକ। 'ସାରଳା ସାହିତ୍ୟ ସଂସଦ'ର ପ୍ରତିଷ୍ଠାତା ଓ ଅଧ୍ୟକ୍ଷ। ଅନୁବାଦ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ। ସଂପର୍କ : ମହାନଦୀ ବିହାର, କଟକ-୪ ।

**ଗୋବିନ୍ଦ ଚନ୍ଦ୍ର ସାହୁ :** ଜଳସମ୍ପଦ ବିଭାଗରେ ଯନ୍ତ୍ରୀମୁଖ୍ୟ ପଦରୁ ଅବସର ଗ୍ରହଣ। ଅନୁବାଦକ ଓ 'ଚିରସ୍ରୋତା ମହାନଦୀ' ପତ୍ରିକାର ସଂପାଦକ। ସଂପର୍କ : ମହାନଦୀ ବିହାର, କଟକ।

**ରବି କାନୁନ୍‌ଗୋ :** ଗାଳ୍ପିକ, ସ୍ତମ୍ଭକାର ଓ ସଂପାଦକ। ଦୈନିକ ସମ୍ବାଦପତ୍ର 'ସୂର୍ଯ୍ୟପ୍ରଭା'ର ସଂପାଦକ। 'ରାଉରକେଲା ବୁଦ୍ଧିଜୀବୀ ଫୋରମ୍'ର କର୍ମକର୍ତ୍ତା ଭାବେ ଦାୟିତ୍ୱ ନିର୍ବାହ କରିଥିଲେ। ସଂପର୍କ : ୯୩ ହାଉସିଂ ବୋର୍ଡ଼, ନାଗେଶ୍ୱରଟାଙ୍ଗୀ, ଭୁବନେଶ୍ୱର-୨।

**ଅରୁଣ କୁମାର ପଣ୍ଡା :** ସାଂବାଦିକ, କଥାକାର, ସ୍ତମ୍ଭକାର ଓ ଅନୁବାଦକ। ଦୈନିକ ସମ୍ବାଦପତ୍ର 'ସମାଜ'ରେ କାର୍ଯ୍ୟ କରି ଅବସର ଗ୍ରହଣ। ସାହିତ୍ୟ, ସଂସ୍କୃତି ଓ ଧର୍ମୀୟ ସଂଗଠନ ସହ ସଂପୃକ୍ତ। 'କଟକ ଜିଲ୍ଲା ସଂସ୍କୃତି ପରିଷଦର ସଭାପତି। ସଂପର୍କ : ସିଡିଏ, ମର୍କତ ନଗର, କଟକ।

**ନଟବର ଖୁଣ୍ଟିଆ :** ପ୍ରାବନ୍ଧିକ, ସ୍ତମ୍ଭକାର, ଭ୍ରମଣ ସାହିତ୍ୟ ଓ ଜୀବନୀ ସାହିତ୍ୟ ଲେଖକ। କୃଷି ଓ ଅର୍ଥନୀତି ସଂପର୍କରେ ବିଭିନ୍ନ ପ୍ରବନ୍ଧ ରଚନା। ବ୍ୟାଙ୍କ ସେବାରେ କାର୍ଯ୍ୟ କରି ଅବସର ଗ୍ରହଣ। ସଂପର୍କ : ଭୁବନେଶ୍ୱର, ଫୋନ୍ - ୦୯୯୩୭୯୫୧୨୬୨।

**ତୁଳସୀ ଜୈନ :** ସ୍ତମ୍ଭକାର, ଧର୍ମସାହିତ୍ୟ-ଦର୍ଶନର ଲେଖକ। ଜୈନଧର୍ମ ସଂପର୍କରେ ଅବଗାହୀ। ସଂପର୍କ : ତୁସରା, ବଲାଙ୍ଗୀର।

**ଶିବପ୍ରସାଦ ତ୍ରିପାଠୀ :** ଧର୍ମସାହିତ୍ୟ ରଚନା ଓ ସ୍ତମ୍ଭରଚନା। ସାମ୍ବାଦିକଭାବେ କାର୍ଯ୍ୟ ନିର୍ବାହ। ସଂପର୍କ : ବଡ଼ବଜାର, ସମ୍ବଲପୁର-୭୬୮୦୦୩।

**ଦେବସ୍ନାନ ଦାସ :** ଆଇନ୍‌ଜୀବୀ ଭାବେ କାର୍ଯ୍ୟ ନିର୍ବାହ କରୁଥିବା ଶ୍ରୀ ଦାସ ଉତ୍କଳ ସାହିତ୍ୟ ସମାଜର ଉପସଭାପତି। ସ୍ତମ୍ଭ ଲେଖକ। ସାହିତ୍ୟ ଓ ସାଂସ୍କୃତିକ ସଂଗଠକ। ସଂପର୍କ : ବଙ୍ଗାଳୀ ସାହି, କଟକ-୯।

**ସାଫଲ୍ୟ ନନ୍ଦୀ :** ଅନୁବାଦକ ଓ ପ୍ରାବନ୍ଧିକ। ଜାତୀୟ ଗ୍ରନ୍ଥାଗାର କୋଲକାତାରେ ଓଡ଼ିଆ ବିଭାଗର ଗ୍ରନ୍ଥାଗାରିକ ପଦରୁ ଅବସର। ସଂପର୍କ : ଅଶୋକ ଘୋଷ ବିଲ୍ଡିଂ, ମୁଖାର୍ଜୀପଡ଼ା, ହାୱଡ଼ା-୪।

**ବାସନ୍ତୀ ପ୍ରଧାନ :** ଶିଶୁ ସାହିତ୍ୟ ଲେଖିକା। କଟକ ମହାନଗର ନିଗମର କର୍ପୋରେଟର ଭାବେ କାର୍ଯ୍ୟ ନିର୍ବାହ କରିଥିଲେ। ସଂପର୍କ : ଛତ୍ରବଜାର, କଟକ।

**ରବୀନ୍ଦ୍ର କୁମାର ବେହେରା :** ପ୍ରଧାନ ଶିକ୍ଷକ ଓ ଶିଶୁ-ସାହିତ୍ୟ ଲେଖକ। ଓଡ଼ିଶା ଶିଶୁ-ସାହିତ୍ୟ ଲେଖକ ସମ୍ମେଳନର କର୍ମକର୍ତ୍ତା। ସଂପର୍କ : ମହାନଦୀବିହାର, କଟକ-୪।

**ବିଭୂତି ପଟ୍ଟନାୟକ :** ପ୍ରସିଦ୍ଧ କଥାଶିଳ୍ପୀ, ସ୍ତମ୍ଭକାର, ଜୀବନୀକାର ଓ ପତ୍ରିକା ସଂପାଦକ। କଥାସାହିତ୍ୟ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ। 'କୃଷକ'ର ପୂର୍ବତନ ସଂପାଦକ ଭାବେ କାର୍ଯ୍ୟ କରିଥିବା ଶ୍ରୀ ପଟ୍ଟନାୟକ ଅଧୁନା 'ଗଳ୍ପ' ପତ୍ରିକାର ସଂପାଦକ। ସଂପର୍କ : ଲୁଇସ୍‌ରୋଡ୍, ଭୁବନେଶ୍ୱର।

**ଶରତ କୁମାର କର :** ପୂର୍ବତନ ମନ୍ତ୍ରୀ, ପୂର୍ବତନ ସାଂସଦ ଓ ଓଡ଼ିଶା ବିଧାନସଭାର ପୂର୍ବତନ ବାଚସ୍ପତି। ଲେଖକ, ସାହିତ୍ୟ ଓ ସାଂସ୍କୃତିକ ସଂଗଠନସହ ସଂପୃକ୍ତ। ସଂପର୍କ : ଶହୀଦ ନଗର, ଭୁବନେଶ୍ୱର।

**ଅନାଦି ସାହୁ :** କଥାକାର, ଆତ୍ମଜୀବନୀକାର, ରମ୍ୟରଚନା ସ୍ରଷ୍ଟା। ରାଜନେତା ଓ ପୂର୍ବତନ ସାଂସଦ। ଓଡ଼ିଶା ପୁଲିସ୍ ସେବାର ବରିଷ୍ଠ ପଦାଧିକାରୀ ଭାବେ ଅବସର। ସଂପର୍କ : ସିଡିଏ, କଟକ।

**ରାମଚନ୍ଦ୍ର ବେହେରା :** କଥାଶିଳ୍ପୀ ଓ ପ୍ରାବନ୍ଧିକ। ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରାକ୍ତନ ସଭାପତି। ବିଭିନ୍ନ ମହାବିଦ୍ୟାଳୟରେ ଇଂରାଜୀ ବିଭାଗରେ ଅଧ୍ୟାପନା ଓ ଅଧ୍ୟକ୍ଷ ପଦ ନିର୍ବାହ ପରେ ଅବସର। କଥାସାହିତ୍ୟ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ। ସଂପର୍କ : ଲ' କଲେଜ ରୋଡ୍, କେନ୍ଦ୍ରାପଡ଼ା।

**ବରେନ୍ଦ୍ର କୃଷ୍ଣ ଧଳ :** ଅନୁବାଦକ, ସ୍ତମ୍ଭକାର, ସାଂବାଦିକ, ଆତ୍ମଜୀବନୀ ସ୍ରଷ୍ଟା ଓ କଥାଶିଳ୍ପୀ। ଅନୁବାଦ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ। ସଂପର୍କ : ଭୁବନେଶ୍ୱର, ଫୋନ୍ - ୯୪୩୭୦୩୯୪୧୭।

**ପାବକ କାନୁନ୍‌ଗୋ :** ଜୀବନୀକାର, ପ୍ରାବନ୍ଧିକ ଓ ସ୍ତମ୍ଭକାର। ଅଧ୍ୟାପନା କାର୍ଯ୍ୟରୁ ଅବସର ପରେ 'ଜ୍ଞାନମଣ୍ଡଳ' ପାଇଁ କାର୍ଯ୍ୟ ସହ ସ୍ୱାଧୀନତା ସଂଗ୍ରାମ ଓ ସଂଗ୍ରାମୀଙ୍କ ସଂପର୍କରେ ଗବେଷଣା। ସଂପର୍କ : ସିଡିଏ, କଟକ।

**ଗଣେଶ୍ୱର ବେହେରା :** ରାଜନେତା ଓ ପୂର୍ବତନ ମନ୍ତ୍ରୀ। ପ୍ରାବନ୍ଧିକ ଓ ସ୍ତମ୍ଭ ଲେଖକ ଭାବେ ପରିଚିତ। ସଂପର୍କ : ଗ୍ରାମ/ପୋ:ଅ - ଚଉଦକୁଲାଟ, ଜିଲ୍ଲା - କେନ୍ଦ୍ରାପଡ଼ା।

**ତପନ ମିଶ୍ର :** ବରିଷ୍ଠ ସାମ୍ବାଦିକ ଓ ସ୍ତମ୍ଭକାର। 'ସମାଜ' ସମ୍ବାଦପତ୍ରରେ କାର୍ଯ୍ୟରତ। ବିଭିନ୍ନ ସମସ୍ୟାମୂଳକ ପ୍ରସଙ୍ଗକୁ ନେଇ ତଥ୍ୟନିଷ୍ଠ ପ୍ରବନ୍ଧ ରଚନା। ସଂପର୍କ : ୧୧୬୦/ସି - ସେକ୍ଟର ୬, ସିଡିଏ, କଟକ।

**ମହେଶ୍ୱର ମହାନ୍ତି :** ଶିଶୁ ସାହିତ୍ୟିକ, ପ୍ରାବନ୍ଧିକ, ପାଠ୍ୟପୁସ୍ତକ ଲେଖକ। ଓଡ଼ିଆ ଭାଷାସାହିତ୍ୟ ବିଭାଗରେ ଅଧ୍ୟାପନା କରି ଅବସର ଗ୍ରହଣ। ଓଡ଼ିଶା ଶିଶୁ-ସାହିତ୍ୟ ଲେଖକ ସମ୍ମେଳନର ସଭାପତି ଶ୍ରୀ ମହାନ୍ତି କେନ୍ଦ୍ର ସାହିତ୍ୟ ଏକାଡେମୀର 'ବାଲ ପୁରସ୍କାର' ଲାଭ କରିଛନ୍ତି। ସଂପର୍କ : କେଉଁଝର କଲୋନୀ, କଟକ।

**ସୁଭାଷ ଚନ୍ଦ୍ର ପଟ୍ଟନାୟକ :** ବରିଷ୍ଠ ସାମ୍ବାଦିକ, ସ୍ତମ୍ଭକାର, ପ୍ରାବନ୍ଧିକ ଓ ବାଗ୍ମୀ। ଅନେକ ସାରସ୍ୱତ ଓ ସାଂସ୍କୃତିକ ସଂଗଠନ ସହ ସଂପୃକ୍ତ। ସଂପର୍କ : ଭି.ଆର୍.୩୨ - ୟୁନିଟ୍-୬, ଭୁବନେଶ୍ୱର।

**ଝୁମ୍‌ଝୁମ୍ ନାୟକ :** ଯଶସ୍ୱୀ କଥାଶିଳ୍ପୀ। ଓଡ଼ିଶା ଲେଖିକା ସଂସଦର କମକର୍ତ୍ତା ଭାବେ କାର୍ଯ୍ୟ ନିର୍ବାହ। ସଂପର୍କ : ମାର୍ଫତ - ଆଡ଼ଭୋକେଟ୍ ଧରଣୀଧର ନାୟକ, ତଳତେଲେଙ୍ଗା ବଜାର, କଟକ-୯।

**ରମାକାନ୍ତ ଜେନା :** ଶିକ୍ଷା ବିଭାଗର ଅବସରପ୍ରାପ୍ତ ଅଧ୍ୟାପକ ଓ ଲେଖକ। ସଂପର୍କ : ଅରୁଣୋଦୟନଗର, କଟକ-୧୨।

**ବିଶ୍ୱରଂଜନ ମହାନ୍ତି :** ପ୍ରଦେଶ କଂଗ୍ରେସ କମିଟିର ସାଧାରଣ ସମ୍ପାଦକ ଓ ମୁଖପାତ୍ର। ସଂପର୍କ : ମଧୁସୂଦନନଗର, ଜଟଣୀ, ଖୋର୍ଦ୍ଧା - ୭୫୨୦୫୦।

**ଆକାଶ ଭୂୟାଁ :** ବହୁରାଷ୍ଟ୍ରୀୟ କମ୍ପାନୀରେ ସଫ୍‌ଟ୍‌ୱେୟାର ଇଞ୍ଜିନିୟର ଭାବରେ କାର୍ଯ୍ୟ କରି ସ୍ୱେଚ୍ଛାକୃତ ଅବସର ଗ୍ରହଣ। ଯୁବ-ସମାଜସେବୀ ଭାବରେ ସକ୍ରିୟ। ଛାତ୍ରାବସ୍ଥାରୁ ଲେଖାଲେଖିରେ ରୁଚି ରହିଛି। ବହୁ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନ ସହ ସଂପୃକ୍ତ। ସଂପର୍କ : 'ଶକୁନ୍ତଳା', ମହାନଦୀ ବିହାର, କଟକ-୪।

**ସୁଲୋଚନା ଦାସ :** କଥାଶିଳ୍ପୀ, ପ୍ରାବନ୍ଧିକା ଓ ସାହିତ୍ୟ ସମାଲୋଚନା ଲେଖିକା। ଓଡ଼ିଆ ଭାଷା-ସାହିତ୍ୟ ବିଭାଗରେ ପ୍ରାଧ୍ୟାପିକା ପଦରୁ ଅବସର ଗ୍ରହଣ। ସଂପର୍କ : ଜେତବନ, ଶ୍ରୀରାମନଗର, ବାଦାମବାଡ଼ି, କଟକ-୧୨।

**ସୁଦେଷ୍ଣା ପଟ୍ଟନାୟକ :** ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଜ୍ୟେଷ୍ଠା କନ୍ୟା। 'ଇଷ୍ଟର୍ଣ୍ଣ ମିଡିଆ'ର ନିର୍ଦ୍ଦେଶିକା ଓ 'ପୌରୁଷ' ପତ୍ରିକାର ଉପଦେଷ୍ଟା। ଏକଦା ସେ ଇଂରାଜୀ ଭାଷା-ସାହିତ୍ୟରେ ଅଧ୍ୟାପନା କରୁଥିଲେ। ସଂପର୍କ : 'ସୁଧର୍ମା', ୧୮୫, ଭି.ଆଇ.ପି ଏରିଆ, ନୟାପଲ୍ଲୀ, ଭୁବନେଶ୍ୱର।





ଗୁରୁତ୍ୱପୂର୍ଣ୍ଣ ଆଲୋଚନାରେ ନିମଗ୍ନ : ତତ୍‌କାଳୀନ ପ୍ରଧାନମନ୍ତ୍ରୀ
ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓ କେନ୍ଦ୍ରମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ



ଶ୍ରୀ ଜାନକୀବଲ୍ଲଭଙ୍କ କବିତା ପୁସ୍ତକ 'ସିନ୍ଧୁ ଉପତ୍ୟକା'କୁ ଉନ୍ମୋଚନ କରୁଛନ୍ତି
ବିଖ୍ୟାତ କବି ପଦ୍ମଶ୍ରୀ ସଚ୍ଚି ରାଉତରାୟ : ପାର୍ଶ୍ୱରେ ଶ୍ରୀ ପଟ୍ଟନାୟକ



ପ୍ରଥମଥର ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ଶପଥପାଠ
ଶ୍ରୀ ଜାନକୀବଲ୍ଲଭଙ୍କୁ ଶପଥପାଠ କରାଉଛନ୍ତି
ରାଜ୍ୟପାଳ ଶ୍ରୀ ସି.ଏମ୍.ପୁନାଚା (ତା ୧୦.୬.୧୯୮୦ରିଖ)



ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ ପରେ
ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେଙ୍କ ସହ ଶ୍ରୀ ଜାନକୀବଲ୍ଲଭ (ତା ୧୦.୩.୮୫ରିଖ)



ମୁଖ୍ୟମନ୍ତ୍ରୀ ଭାବରେ ତୃତୀୟଥରପାଇଁ ଶପଥ ଗ୍ରହଣ କରୁଛନ୍ତି ଶ୍ରୀ ଜାନକୀବଲ୍ଲଭ
ରାଜଭବନ ପରିସରରେ ଶପଥପାଠ କରାଉଛନ୍ତି
ରାଜ୍ୟପାଳ ଶ୍ରୀ ବି.ସତ୍ୟନାରାୟଣ ରେଡ୍‌ଡୀ (ତା. ୧୫.୩.୧୯୯୫ରିଖ)



କେନ୍ଦ୍ରମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ
ତାଙ୍କ ଡାହାଣରେ କେନ୍ଦ୍ରମନ୍ତ୍ରୀ ପ୍ରଣବ ମୁଖାର୍ଜୀ ଓ
ବାମରେ ତତ୍କାଳୀନ ରାଷ୍ଟ୍ରପତି ନୀଲମ୍ ସଂଜୀବ୍ ରେଡ୍‌ଡୀ



ଭାରତବର୍ଷର ତତ୍କାଳୀନ ରାଷ୍ଟ୍ରପତି ଶ୍ରୀ ଆର୍. ଭେଙ୍କଟରମଣଙ୍କ ସହ ଶ୍ରୀ ଜାନକୀବଲ୍ଲଭ



ଆତ୍ମୀୟତାର ଅନାବିଳ ଆଲିଙ୍ଗନ
(ତତ୍କାଳୀନ ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂହ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ)



ରାଷ୍ଟ୍ରପତି ଡକ୍ଟର ଶଙ୍କର ଦୟାଲ ଶର୍ମାଙ୍କ ସହ ଶ୍ରୀ ପଟ୍ଟନାୟକ
(ଏକ ସୌଜନ୍ୟମୂଳକ ସାକ୍ଷାତ୍)



ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ପି.ଭି. ନରସିଂହ ରାଓ ଓ ଶ୍ରୀ ଜାନକୀବଲ୍ଲଭ



ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖରଙ୍କ ଓ ଶ୍ରୀ ଜାନକୀବଲ୍ଲଭ



ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ଏଚ୍‌.ଡି. ଦେବଗୌଡ଼ାଙ୍କ ସହ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ



ଆଲୋଚନାରତ ଦୁଇ ନେତା : ତତ୍‌କାଳୀନ ପ୍ରଧାନମନ୍ତ୍ରୀ
ଶ୍ରୀ ଇନ୍ଦ୍ରକୁମାର ଗୁଜୁରାଲ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ



ଶ୍ରଦ୍ଧା ଓ ସୌଜନ୍ୟର ସ୍ମାରକୀ
(ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳବିହାରୀ ବାଜପେୟୀଙ୍କୁ ଅଙ୍ଗବସ୍ତ୍ର ପ୍ରଦାନ କରି ସ୍ୱାଗତ କରୁଛନ୍ତି
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ)



ନିବିଡ଼ ବନ୍ଧୁତାର ନିଦର୍ଶନ : ଉପରାଷ୍ଟ୍ରପତି ଶ୍ରୀ କୃଷ୍ଣକାନ୍ତ ଓ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ (ଉପରାଷ୍ଟ୍ରପତିଙ୍କ ଓଡ଼ିଶା ଆଗମନ ଅବକାଶରେ)



ରାଜନୀତି ଓ ସାହିତ୍ୟର ଦୁଇ ପ୍ରମୁଖ ବ୍ୟକ୍ତିତ୍ୱ :
ଜାନକୀବଲ୍ଲଭ ଓ ନନ୍ଦିନୀ ସତପଥୀ



ଡକ୍ଟର ହରେକୃଷ୍ଣ ମହତାବଙ୍କର ୮୬ତମ
ପବିତ୍ର ଜନ୍ମ ଦିବସରେ ପୁଷ୍ପଗୁଚ୍ଛ ସହ
ଅଭିନନ୍ଦନ ଜ୍ଞାପନ କରୁଛନ୍ତି ଶ୍ରୀ ଜାନକୀବଲ୍ଲଭ



ଶତାୟୁ ପୁରୁଷ 'ସମାଜ'ର ସଂପାଦକ
ପଦ୍ମଭୂଷଣ ରାଧାନାଥ ରଥଙ୍କ ଜନ୍ମଶତବାର୍ଷିକୀ ଅବକାଶରେ
(ଡକ୍ଟର ରଥ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ)



ଏକତ୍ର : ଓଡ଼ିଶାର ଦୁଇ ବରପୁତ୍ର
ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ



ଭୁବନେଶ୍ୱରରେ ଜ୍ଞାନମଣ୍ଡଳ କାର୍ଯ୍ୟାଳୟରେ ସଂଗ୍ରାମୀ ବିନୋଦ କାନୁନ୍‌ଗୋ ଓ
ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ



ନିଶ୍ଚିନ୍ତକୋଇଲି ବ୍ଲକ୍ ଅନ୍ତର୍ଗତ ବରପଡ଼ାଠାରେ ଲୁଣାନଦୀସେତୁର ଉଦ୍‌ଘାଟନ :
ସ-ସ୍ତ୍ରୀକ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ଓ ପାର୍ଶ୍ୱରେ ସେତୁ କମିଟିର ସଂପାଦକ
ଡକ୍ଟର ଗୋବିନ୍ଦ ଭୂୟାଁ (ତା ୩୧/୮/୧୯୮୭)



ଗୁରୁତ୍ୱପୂର୍ଣ୍ଣ ଆଲୋଚନାରେ ନିମଗ୍ନ : ତତ୍‌କାଳୀନ ପ୍ରଧାନମନ୍ତ୍ରୀ
ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓ କେନ୍ଦ୍ରମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ



ଶ୍ରୀ ଜାନକୀବଲ୍ଲଭଙ୍କ କବିତା ପୁସ୍ତକ 'ସିନ୍ଧୁ ଉପତ୍ୟକା'କୁ ଉନ୍ମୋଚନ କରୁଛନ୍ତି
ବିଖ୍ୟାତ କବି ପଦ୍ମଶ୍ରୀ ସଚ୍ଚି ରାଉତରାୟ : ପାର୍ଶ୍ୱରେ ଶ୍ରୀ ପଟ୍ଟନାୟକ



ପ୍ରଥମଥର ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ଶପଥପାଠ
ଶ୍ରୀ ଜାନକୀବଲ୍ଲଭଙ୍କୁ ଶପଥପାଠ କରାଉଛନ୍ତି
ରାଜ୍ୟପାଳ ଶ୍ରୀ ସି.ଏମ୍.ପୁନାଚା (ତା ୧୦.୬.୧୯୮୦ରିଖ)



ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ ପରେ
ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେଙ୍କ ସହ ଶ୍ରୀ ଜାନକୀବଲ୍ଲଭ (ତା ୧୦.୩.୮୫ରିଖ)



ମୁଖ୍ୟମନ୍ତ୍ରୀ ଭାବରେ ତୃତୀୟଥରପାଇଁ ଶପଥ ଗ୍ରହଣ କରୁଛନ୍ତି ଶ୍ରୀ ଜାନକୀବଲ୍ଲଭ
ରାଜଭବନ ପରିସରରେ ଶପଥପାଠ କରାଉଛନ୍ତି
ରାଜ୍ୟପାଳ ଶ୍ରୀ ବି.ସତ୍ୟନାରାୟଣ ରେଡ୍‌ଡୀ (ତା. ୧୫.୩.୧୯୯୫ରିଖ)



କେନ୍ଦ୍ରମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ
ତାଙ୍କ ଡାହାଣରେ କେନ୍ଦ୍ରମନ୍ତ୍ରୀ ପ୍ରଣବ ମୁଖାର୍ଜୀ ଓ
ବାମରେ ତତ୍‌କାଳୀନ ରାଷ୍ଟ୍ରପତି ନୀଲମ୍ ସଂଜୀବ୍ ରେଡ୍‌ଡୀ



ଭାରତବର୍ଷର ତତ୍‌କାଳୀନ ରାଷ୍ଟ୍ରପତି ଶ୍ରୀ ଆର୍. ଭେଙ୍କଟରମଣଙ୍କ ସହ ଶ୍ରୀ ଜାନକୀବଲ୍ଲଭ



ଆତ୍ମୀୟତାର ଅନାବିଳ ଆଲିଙ୍ଗନ
(ତତ୍‌କାଳୀନ ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂହ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ)



ରାଷ୍ଟ୍ରପତି ଡକ୍ଟର ଶଙ୍କର ଦୟାଲ ଶର୍ମାଙ୍କ ସହ ଶ୍ରୀ ପଟ୍ଟନାୟକ
(ଏକ ସୌଜନ୍ୟମୂଳକ ସାକ୍ଷାତ୍)



ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ପି.ଭି. ନରସିଂହ ରାଓ ଓ ଶ୍ରୀ ଜାନକୀବଲ୍ଲଭ



ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖରଙ୍କ ଓ ଶ୍ରୀ ଜାନକୀବଲ୍ଲଭ



ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ଏଚ୍‌.ଡି. ଦେବଗୌଡ଼ାଙ୍କ ସହ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ



ଆଲୋଚନାରତ ଦୁଇ ନେତା : ତତ୍‌କାଳୀନ ପ୍ରଧାନମନ୍ତ୍ରୀ
ଶ୍ରୀ ଇନ୍ଦ୍ରକୁମାର ଗୁଜୁରାଲ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ



ଶ୍ରଦ୍ଧା ଓ ସୌଜନ୍ୟର ସ୍ମାରକୀ
(ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳବିହାରୀ ବାଜପେୟୀଙ୍କୁ ଅଙ୍ଗବସ୍ତ୍ର ପ୍ରଦାନ କରି ସ୍ୱାଗତ କରୁଛନ୍ତି
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ)



ନିବିଡ଼ ବନ୍ଧୁତାର ନିଦର୍ଶନ : ଉପରାଷ୍ଟ୍ରପତି ଶ୍ରୀ କୃଷ୍ଣକାନ୍ତ ଓ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ (ଉପରାଷ୍ଟ୍ରପତିଙ୍କ ଓଡ଼ିଶା ଆଗମନ ଅବକାଶରେ)



ରାଜନୀତି ଓ ସାହିତ୍ୟର ଦୁଇ ପ୍ରମୁଖ ବ୍ୟକ୍ତିତ୍ୱ :
ଜାନକୀବଲ୍ଲଭ ଓ ନନ୍ଦିନୀ ସତପଥୀ



ଡକ୍ଟର ହରେକୃଷ୍ଣ ମହତାବଙ୍କର ୮୬ତମ
ପବିତ୍ର ଜନ୍ମ ଦିବସରେ ପୁଷ୍ପଗୁଚ୍ଛ ସହ
ଅଭିନନ୍ଦନ ଜ୍ଞାପନ କରୁଛନ୍ତି ଶ୍ରୀ ଜାନକୀବଲ୍ଲଭ



ଶତାୟୁ ପୁରୁଷ 'ସମାଜ'ର ସଂପାଦକ
ପଦ୍ମଭୂଷଣ ରାଧାନାଥ ରଥଙ୍କ ଜନ୍ମଶତବାର୍ଷିକୀ ଅବକାଶରେ
(ଡକ୍ଟର ରଥ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ)



ଏକତ୍ର : ଓଡ଼ିଶାର ଦୁଇ ବରପୁତ୍ର
ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ



ଭୁବନେଶ୍ୱରରେ ଜ୍ଞାନମଣ୍ଡଳ କାର୍ଯ୍ୟାଳୟରେ ସଂଗ୍ରାମୀ ବିନୋଦ କାନୁନ୍‌ଗୋ ଓ
ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ



ନିଶ୍ଚିନ୍ତକୋଇଲି ବ୍ଲକ୍ ଅନ୍ତର୍ଗତ ବରପଡ଼ାଠାରେ ଲୁଣାନଦୀସେତୁର ଉଦ୍‌ଘାଟନ :
ସ-ସ୍ତ୍ରୀକ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ଓ ପାର୍ଶ୍ୱରେ ସେତୁ କମିଟିର ସଂପାଦକ
ଡକ୍ଟର ଗୋବିନ୍ଦ ଭୂୟାଁ (ତା ୩୧/୮/୧୯୮୭)

"...ଶାସନକ୍ଷେତ୍ରରେ ନିଷ୍ପତ୍ତି ନେବାର ଦକ୍ଷତା ଓଡ଼ିଶାର ରାଜନୀତିକ ଇତିହାସରେ ଜାନକୀବଲ୍ଲଭଙ୍କୁ ସର୍ବଦା ସ୍ମରଣୀୟ ରଖିବ । ତାଙ୍କ ଦେହାନ୍ତରେ ଓଡ଼ିଶା ରାଜନୀତିରେ ଗୋଟିଏ ଯୁଗର ଅବସାନ ଘଟିଲା ।"

– ନବୀନ ପଟ୍ଟନାୟକ, ମୁଖ୍ୟମନ୍ତ୍ରୀ, ଓଡ଼ିଶା

"...ତାଙ୍କ ପରଲୋକରେ ଦେଶ ଜଣେ ପ୍ରଖ୍ୟାତ ନେତାଙ୍କୁ ହରାଇଲା ଓ ମୁଁ ଦୀର୍ଘଦିନର ଜଣେ ଘନିଷ୍ଠ ବନ୍ଧୁ ଓ ସହକର୍ମୀଙ୍କୁ ହରାଇଲି ।"

– ପ୍ରଣବ ମୁଖାର୍ଜୀ, ଭାରତର ମହାମହିମ ରାଷ୍ଟ୍ରପତି

"...ସେ ଥିଲେ ଓଡ଼ିଶା ରାଜନୀତିର ବିଶାଳ ସ୍ତମ୍ଭ । ସମସାମୟିକ ରାଜନୀତିରେ ତାଙ୍କ ଭଳି ନେତା ବିରଳ । ଓଡ଼ିଶାର ଉନ୍ନତି ଓ ପ୍ରଗତିରେ ଜାନକୀବଲ୍ଲଭଙ୍କ ଅବଦାନ ଚିରସ୍ମରଣୀୟ ହୋଇ ରହିବ ।"

– ନରେନ୍ଦ୍ର ମୋଦି, ପ୍ରଧାନମନ୍ତ୍ରୀ

"...ଜାନକୀବଲ୍ଲଭଙ୍କ ମୃତ୍ୟୁ କଂଗ୍ରେସରେ ଶୂନ୍ୟତା ସୃଷ୍ଟି କରିଛି; ଆଗାମୀ ବହୁବର୍ଷଯାଏ ଦଳ ତାଙ୍କର ଅନୁପସ୍ଥିତିର ପୀଡ଼ାକୁ ଅନୁଭବ କରିବ । ସେ ଜଣେ ସଚ୍ଚା କଂଗ୍ରେସ ନେତା ଥିଲେ ।"

– ସୋନିଆ ଗାନ୍ଧୀ
ସଭାନେତ୍ରୀ, ଭାରତୀୟ ଜାତୀୟ କଂଗ୍ରେସ

ଜାନକୀବଲ୍ଲଭ ସ୍ମାରକୀ ପ୍ରତିଷ୍ଠାନ
କଟକ